# ସାହିତ୍ୟ ସ୍ରୋତ

ଲେଖକ :
**ଅଧ୍ୟାପକ ଦିଲ୍ଲୀପ କୁମାର ସ୍ୱାଇଁ**
ପାରାଦ୍ୱୀପ ମହାବିଦ୍ୟାଳୟ, ଜଗତସିଂହପୁର

ପ୍ରକାଶିକା :
**ଅନସୂୟା ଦାଶ**
**ଚିତ୍ରୋତ୍ପଳା ପବ୍ଲିକେଶନ୍ସ**
ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨
ଫୋନ ନମ୍ବର—୦୬୭୧/୭୪୨୩୨୫

ପ୍ରଥମ ସଂସ୍କରଣ :
**ବିଜୟା ଦଶମୀ—୧୯୯୭**

ମୁଦ୍ରାକର :
**କେଶବ ଚରଣ ରଥ**
**ପ୍ରକାଶ ପ୍ରିଣ୍ଟର୍ସ**
କଟକ-୯

ମୂଲ୍ୟ—ଟ ୯୦-୦୦
( ନବେଟଙ୍କା ମାତ୍ର )

**SAHITYA SROTA**

Written by ;
Prof. Dillipa Kumar Swain
Paradip College, Jagatsinghpur

Publisher ;
Anasuya Dash
Chitrotpala Publications
Bateswar, Po. Salipur, Cuttack-754202
First Edition : Bijaya Dasami-1997
I. S. B. N.—81-86566-26-5
Price—Rs. 90-00

# ଉତ୍ସର୍ଗ

ପ୍ରାଣକୃଷ୍ଣ ସ୍ୱାଇଁ
ନିର୍ମଳା ସ୍ୱାଇଁଙ୍କ
ପାଦତଳେ

•

ରକ୍ତର
ଦଲୁ

# ଆରମ୍ଭରୁ ଉପସଂହାର

ସାହିତ୍ୟ ଶ୍ରେଣୀରେ ଅଧ୍ୟାପନା କରିବା ଓ ସାହିତ୍ୟକୁ ହୃଦୟସ୍ଥ କରି ବୁଝିବା ଏକାକଥା ନୁହେଁ । ସାହିତ୍ୟରେ ଏମିତି ଅନେକ କଥା ଅଛି ଯାହା ବୁଝିହୁଏ, ବୁଝାଇ ହୁଏନାହିଁ । ସୃଜନଶୀଳ ସାହିତ୍ୟକୁ ଅବବୋଧ ଭିତରେ ଆଙ୍କିବା ସହଜ ଜଣାପଡୁଥିଲେ ମଧ୍ୟ ସହଜ ନୁହେଁ । ନଈରେ ପହଁରି ହୁଏ କିନ୍ତୁ ନଈପାଣିକୁ କ'ଣ ମାପିହୁଏ ? ସାହିତ୍ୟ ତ ନଦୀ ହୋଇ ବହୁଥାଏ ପୁଣି ନଦୀରେ ନ ଥାଏ । ଏହିପରି ଏକ ଚେତନାର ନଦୀକୁ ଧରି ରଖିବାକୁ ହୃଦୟକୁ ବନ୍ଦ କରି ବାନ୍ଧିଲେ ମଧ୍ୟ ତାହା କମ୍ ହୁଏ । ମୁଁ ଏହିପରି ଏକ ଚେତନା ସ୍ରୋତରେ ଭାସିଯାଉଥିବା କାଗଜ ଡଙ୍ଗାଟିଏ । ଅଜ୍ଞାତ ମୋର ଭବିଷ୍ୟତ, ମୁଁ ଜାଣେନା କେଉଁ ଗାଁ ଦାଣ୍ଡର ଶୁଖିଲା ଭୂଇଁରେ ମୋ ଅଜ୍ଞାତ ଡଙ୍ଗାର ଅପମୃତ୍ୟୁ ହେବ । ତଥାପି ମୁଁ ସାହିତ୍ୟ ସ୍ରୋତରେ ଭାସୁଛି ଓ ଭାସୁଥିବି ଜୀବନର ଶେଷଲଗ୍ନ ଯାଏ ।

'ସାହିତ୍ୟ ସ୍ରୋତ'ର ପରିକଳ୍ପନା ଆକସ୍ମିକ ନୁହେଁ । ସାହିତ୍ୟ ଶ୍ରେଣୀରେ ଛାତ୍ରଛାତ୍ରୀମାନଙ୍କୁ କବିତା, ନାଟକ, ଉପନ୍ୟାସତତ୍ତ୍ୱ ପଢ଼ାଇଲାବେଳେ ଭଲ ବହିଟିଏ ଯୋଗାଇଦେବାର ଅକ୍ଷମତା ମୋତେ ବାରମ୍ବାର ମାନସିକ ଯନ୍ତ୍ରଣା ପ୍ରଦାନ କରିଛି । ସମ୍ମାନ ଶ୍ରେଣୀ ଓ ଉପାଧ୍ୟୁତ୍ତର ଛାତ୍ରଛାତ୍ରୀମାନଙ୍କ ପାଇଁ ଏକ ଆବଶ୍ୟକୀୟ ପୁସ୍ତକ ରଚନା କରିବା ପାଇଁ ଅନେକ ଛାତ୍ରଛାତ୍ରୀଙ୍କ ଅନୁରୋଧ ଏମିତି ଏକ ଅପରିପକ୍ୱ ସୃଷ୍ଟିକୁ ଆଲୋକକୁ ଆଣିପାରିଛି । କବିତା, ନାଟକ, ଏକାଙ୍କିକା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା, ସମାଲୋଚନା ସାହିତ୍ୟର ସଂଜ୍ଞା, ସ୍ୱରୂପ, ପ୍ରକାରଭେଦ ଓ ବିକାଶଧାରା ସମ୍ପର୍କରେ ଏ ପୁସ୍ତକରେ ଆଲୋଚନା କରାଯାଇଛି । ପୁସ୍ତକର କଳେବର ଦୃଷ୍ଟିରୁ ବିକାଶପର୍ବ ଆଲୋଚନାକୁ ସୀମିତ କରାଯାଇଛି । ସାହିତ୍ୟ ଛାତ୍ରଛାତ୍ରୀ ଓ ସାହିତ୍ୟରେ ରୁଚିରଖିଥିବା ଛାତ୍ରଛାତ୍ରୀ ଓ ପାଠକମାନଙ୍କ ପ୍ରତି ଏହା ସହାୟକ ହେବ ବୋଲି ମୋର ଆଶା ।

ଚନ୍ଦ୍ରଗୋପୀ ପବ୍ଲିକେଶନ୍‌ସର କବିବନ୍ଧୁ ସଦାଶିବ ଦାସଙ୍କୁ କୃତଜ୍ଞତା ଜଣାଇବି ତାଙ୍କର ସାଧୁ ସହଯୋଗ ପାଇଁ । ଉକ୍ତ ପବ୍ଲିକେଶନ୍‌ସ 'ଲୋକଜୀବନ ଓ ଲୋକସାହିତ୍ୟ' ନାମରେ ମୋର ପ୍ରଥମ ପୁସ୍ତକ ପ୍ରକାଶ କରି ମୋତେ ଅଧିକ ଉତ୍ସାହିତ କରିଛନ୍ତି । ପାରାଦ୍ୱୀପ ମହାବିଦ୍ୟାଳୟର ଓଡ଼ିଆ ସମ୍ମାନ ଛାତ୍ର ବିଚିତ୍ରାନନ୍ଦ ସ୍ୱାଇଁର ଶ୍ରଦ୍ଧା ଓ ସମ୍ମାନ ଏ ପୁସ୍ତକକୁ ଶୀଘ୍ର ପ୍ରସ୍ତୁତ କରିବାରେ ସାହାଯ୍ୟ କରିଛି ।

'ସାହିତ୍ୟ ସ୍ରୋତ' ଭୂମିଷ୍ଠ ହେବା ପଛରେ ଅନେକଙ୍କର ପରାମର୍ଶ ଓ ଆଶୀର୍ବାଦ ମୋତେ ଅନୁଗୃହିତ କରିଛି । ସେମାନଙ୍କ ହୃଦୟକୁ ଏ ପୁସ୍ତକ ଛୁଇଁ ପାରିଲେ ସାର୍ଥକ ହେବ ।

ଅଧ୍ୟାପକ ଦିଲ୍ଲୀପ କୁମାର ସ୍ୱାଇଁ
ପାରାଦ୍ୱୀପ ମହାବିଦ୍ୟାଳୟ

# ବିଷୟ ସୂଚୀ

# କବିତା

## କବିତା କଳ୍ପଲତା :

କବିତାକୁ ବୁଝିବା ପାଇଁ ବୁଝେଇବା ପାଇଁ ଧରାବନ୍ଧା ପନ୍ଥା ନିରୂପଣ ଓ ହାତ ଗଣିତ ଅବବୋଧର ସମସ୍ତ ସରିଯାଇଛି । ସାଂପ୍ରତିକ କବିତାରେ ବିଜ୍ଞାନ ଓ ବ୍ୟାବହାରିକ କଳାର ବହୁଳ ପ୍ରୟୋଗ କବିତାକୁ ସହଜତମ ଓ ସ୍ୱାଭାବିକ୍ କରିବାରେ ପ୍ରୟାସ କରିଛି । ସାହିତ୍ୟ ଶ୍ରେଣୀରେ କବିତାକୁ ବୁଝେଇବା, ପ୍ରଶ୍ନପତ୍ରରେ କବିତାର ବ୍ୟାଖ୍ୟା କରିବା ଭିନ୍ନ କଥା; କିନ୍ତୁ ହୃଦୟବାନ୍ ସାହିତ୍ୟିକ କେବେ କବିତାକୁ ବୁଝି ନ ଥାଏ କି ବୁଝେଇବାରେ ବାରମ୍ବାର ନିଜର ଅକ୍ଷମତା ପ୍ରକାଶ କରିଥାଏ । ଏପରି ଏକ ସୃଜନଶୀଳ ଅପାରଗତା ଓ ଆଗ୍ରହବୋଧରୁ କବିତା ଆହୁରି ସୁନ୍ଦର ପ୍ରଶ୍ନବାଚୀ ହୋଇ ଆମକୁ ବାରମ୍ବାର ଆଘାତ କରେ । ଯିଏ ଏହି ଆଘାତରେ ଭାଙ୍ଗି ନ ଯାଇ, ଘୃଣି ନ ଯାଇ କବିତାକୁ ସମ୍ମୁଖୀନ ହୁଏ, ସିଏ କବି ପାଲଟିଯାଏ । କବିତାର ରସିକ ଗ୍ରାହକ ବନିଯାଏ; କିନ୍ତୁ ଯିଏ ମାନସିକ ବୌଦ୍ଧିକ କ୍ଷତାକ୍ତ ହୋଇ ଓହ୍ଲାଇ ଆସେ, ତା' ପାଇଁ କବିତା ଦୁର୍ବୋଧ ପାଲଟିଯାଏ । ବୋଧହୁଏ କିଛି ବୁଝି ନ ଥିବା ଓ କବିତାକୁ ଝୁଁରୁଥିବା ମଣିଷଟି ସବୁଠାରୁ ବଡ଼ କବି । କବିତା ଲତାପରି ସଂଚରଣଶୀଳ ନରମ, ଏହିପରି ଏକ ନରମ ନିର୍ବିକଳ୍ପ ଅନୁଭବକୁ କମାର ଗରମ ନିଆଁରେ ଲୁହାକୁ ଆଉଟିଲା ପରି ଚେତନା ଆଉଟି ପାଉଟି ହୋଇ ବିଭିନ୍ନ ବର୍ଣ୍ଣର, ବର୍ଗର କବିତା ସୃଷ୍ଟି ହୋଇଥାଏ, କବିତା ଲତା ପ୍ରସୂନରେ ଭରିଯାଏ ।

କବିତା ନିଜେ ଗୋଟାଏ ଚେତନା, ଏହାକୁ ଅନ୍ୟର ଚୈତନ୍ୟ ଓ ଭାବକଲ୍ପ ସହ ବୁଝି ହେବ କପରି ? ପୁଣି କବିତା ଗୋଟିଏ ଅପୂର୍ଣ୍ଣ କଳା । କବି ନିଜ ସୃଷ୍ଟିର ପୂର୍ଣ୍ଣାଙ୍ଗ ଅନୁଭବକୁ ପ୍ରକାଶ କରିଥିଲେହେଁ ରସିକ ପାଠକ ସେଥିରେ ନିଜ ସୃଜନଶୀଳତାକୁ ମିଶାଇ ଅମଳ କାବ୍ୟରସ ଆସ୍ୱାଦନ କରିଥାଏ । ସେଥିପାଇଁ କବିତାକୁ ଅନ୍ୟ କଥାରେ ଅନ୍ୟ ଦୃଷ୍ଟିରେ ବୁଝାଯିବ ନାହିଁ । ନିଜେ ଯେତେବେଳେ ପାଠକ ନିଜ ଅବବୋଧଦ୍ୱାରା କବିତାକୁ ଗ୍ରହଣ କରିବ ସେତେବେଳେ ସେ କାବ୍ୟାଲୋକରେ ଆଲୋକିତ ହେବ । ଏଇଥିପାଇଁ କୁହାଯାଇପାରେ କବିତାକୁ ବୁଝିବାପାଇଁ ସୃଜନଶୀଳ ହୃଦୟର ଆବଶ୍ୟକତା ଅଛି ।

ଆମକୁ ଭାରତୀୟ ପରମ୍ପରା ପରିପ୍ରେକ୍ଷୀରେ କୁହାଯାଇଛି ଶରାଘାତ କ୍ରୌଞ୍ଚ ପକ୍ଷୀର ଦୁଃଖରେ ବାଲ୍ମୀକୀଙ୍କଦ୍ୱାରା ସୃଷ୍ଟିର ପାରମ୍ପରିକ ସାରସ୍ୱତ ସଙ୍କୀର୍ତ୍ତନ ଅସମ୍ଭବ ହେଲା । ମହାମୁନି ବାଲ୍ମୀକୀ କ୍ରୌଞ୍ଚ ଦମ୍ପତିଙ୍କ ଦୁଃଖରେ ରାମାୟଣ ରଚନା କଲେ ଓ ସ୍ୱତଃସ୍ଫୂର୍ତ୍ତି ଭାବରେ ତାଙ୍କ କଣ୍ଠରୁ ଉଚ୍ଚାରିତ ହେଲା--

"ମାନିଷାଦ ପ୍ରତିଷ୍ଠାତ୍ୱମଗମଶାଶ୍ୱତୀସମା
ଯତ୍ କ୍ରୌଞ୍ଚ ମିଥନା ଦେକମବଧି କାମ ମୋହିତମ୍ ।"

ସାହିତ୍ୟ ସମାଲୋଚକମାନେ ଓ କବିତାର ପ୍ରବୀଣ ସମାଲୋଚକମାନେ ସୃଜନଶୀଳ ସାହିତ୍ୟର ଆଦିମ ଉତ୍ସ ରୂପେ ଉକ୍ତ ଶ୍ଳୋକକୁ ବାରମ୍ବାର ବ୍ୟବହାର କରିଛନ୍ତି । ଗୋଟିଏ ପିଢ଼ୀରୁ ନେଇ ଅନ୍ୟ ପିଢ଼ୀ ଉପରେ ଲଦି ଦେଇଛନ୍ତି । ଶରାଘାତ କ୍ରୌଞ୍ଚ ପକ୍ଷୀର ଦୁଃଖରେ ହୃଦୟବାନ ବାଲ୍ମୀକୀ ବିମୋହିତ ହୋଇଗଲେ । ଅପରନ୍ତୁ ଏପରି କୁହାଯାଇପାରେ କ୍ରୌଞ୍ଚ ପକ୍ଷୀର ଦୁଃଖରେ ବାଲ୍ମୀକୀ କବି ହୋଇଗଲେ । ତାଙ୍କ ଭିତରେ ଥିବା ସୁପ୍ତ ସୃଜନଶୀଳ ହୃଦୟ ଏପରି ଏକ ଅଭାବନୀୟ ବିଭିନ୍ନ ମୁହୂର୍ତ୍ତରେ କବିଟିଏ ହେବାପାଇଁ ଯଥେଷ୍ଟ ହେଲା, ଦୁଃଖ ପକ୍ଷୀର ଶବ୍ଦ ବାଲ୍ମୀକୀର । ଏଇଠି ଗୋଟିଏ କଥା ବିଚାର କରାଯାଉ ଆମକୁ ଏ ଯାବତ ଅକସ୍ମାତ୍ ବନ୍ଧାଯାଇଥିବା ଅନ୍ୟ କ୍ରୌଞ୍ଚର ଦୁଃଖ ବିଷୟରେ କୁହାଯାଇଛି କି ? ରମଣର ଶେଯରୁ ଉଠିବା ପୃଥିବୀର ସବୁଠାରୁ କଷ୍ଟତମ ଓ ନିଷ୍ଠୁରତମ ଘଟଣା, ଶୃଙ୍ଗାରର ସର୍ବଶେଷ ଆନନ୍ଦପାଇଁ ମତ୍ତ ମଣିଷ ଅଧୀର ହୁଏ । ସେହି ଅଲୌକିକ ଆବେଗ ତା' ଦେହରେ ଚରିଗଲା ପରେ ସେ ପ୍ରିୟାଠାରୁ ଦେହ ବିଚ୍ଛିନ୍ନ କରିଥାଏ । କିନ୍ତୁ ନିରବଧି ରମଣ ଚାଲିଥିବାବେଳେ ପ୍ରେୟସୀକୁ ପ୍ରିୟ ଛାଡ଼ି ଚାଲିଯିବାରେ ପୁଣି ମରିଯିବାରେ ପ୍ରେୟସୀ ଯେ କି କଷ୍ଟ ପାଇଥିବ, ସେ ଦୁଃଖ ଆଉ ଆବେଗ ବର୍ଣ୍ଣନା ପାଇଁ ଯେ କୌଣସି ଭାଷା ସାହିତ୍ୟରେ ଶବ୍ଦ ନିଅଣ୍ଟ ପଡ଼ିବ ନିଶ୍ଚୟ । ଏପରି ଏକ ଚମକପ୍ରଦ କ୍ଲାସିକ୍ ହୃଦୟ ବିଦାରକ ଯନ୍ତ୍ରଣାକୁ ଆମଠାରୁ ଦୂରେଇ ରଖାଯାଇଛି, ଅଥଚ ବାଲ୍ମୀକୀଙ୍କ ପ୍ରଥମ ଶ୍ଳୋକରେ ହିଁ ପ୍ରେୟସୀ

ହୃଦୟର ରମଣ ଓ ରକ୍ତସ୍ନାନ ଦୁଃଖ ବୁଝିବାକୁ ଆମକୁ ବାଧ୍ୟ କରାଯାଇଛି । ବିଧବା ପକ୍ଷୀର ଦୁଃଖ ଆମକୁ ଶୁଣାଇଥିଲେ କବିତା କେତେ ବଳିଷ୍ଠ ନ ହୋଇଥାଆନ୍ତା ସତରେ ! ସେହିପରି କୁହାଯାଇ ପାରିବ କ୍ରୌଞ୍ଚ ପକ୍ଷୀର ମୃତ୍ୟୁରେ ଶିକାରୀର ଆନନ୍ଦ, ବିଷାଦ ବିଷୟରେ ଆମକୁ କିଛି କୁହାଯାଇ ନାହିଁ । ଯେଉଁ ଗଛରେ ପକ୍ଷୀଯୁଗଳ ମିଥୁନ ଲୀଳା ରଚନା କରୁଥିଲେ, ସେହି ଗଛର ମାନସିକତା ବିଷୟରେ ଆମେ ସମ୍ପୂର୍ଣ୍ଣ ଅଜ୍ଞ । ଗୋଟିଏ ବିଶିଷ୍ଟ ଘଟଣାର ଏକ ଅଂଶ ମାତ୍ର ବାଲ୍ମୀକୀଙ୍କ ଚେତନାରେ ଧରା ଦେଇଛି, କାବ୍ୟ ରଚନାର ପୃଷ୍ଠଭୂମିରେ କେବଳ ଗୋଟିଏ ଅଂଶବିଶେଷ ନୁହେଁ ସମଗ୍ର ଘଟଣା ପ୍ରଭାବ ବିସ୍ତାର କରିଛି । ଆଜି ଏପରି ଦୃଶ୍ୟ ଘଟୁନାହିଁ ନା ବାଲ୍ମୀକୀ-ମାନଙ୍କର ଦୃଷ୍ଟିପାତ ହେଉନାହିଁ ଅତଏବ ଏ ଏକ ସଙ୍କଟର ପ୍ରଶ୍ନ । ଯଦି ଏପରି ଦୁଇଟି ଅବସ୍ଥା ମିଶିଯାଆନ୍ତେ ତେବେ ସମଗ୍ର ଘଟଣାର ଗୁରୁତ୍ୱ ଏକ ବର୍ତ୍ତୁଳ ଆଭା ସୃଷ୍ଟି କରନ୍ତା । ଆମେ ଆମ କବିତା ସୃଷ୍ଟିର ଅନେକ ଗୁରୁତ୍ୱପୂର୍ଣ୍ଣ ଉତ୍ସକୁ ଅବହେଳା କରିଛୁ, ଘଟଣାକ୍ରମେ ଯାହାକୁ ଗ୍ରହଣ କରିଛୁ ତାକୁ ପରିପୂର୍ଣ୍ଣ ଅଧ୍ୟୟନ କରିପାରୁ ନାହୁଁ । କବିତା କଳ୍ପନାର ଏକ ନିବିଡ଼ ପର୍ଯ୍ୟାୟରେ ଶରାଘାତ କ୍ରୌଞ୍ଚ ପକ୍ଷୀ ନୁହେଁ ବରଂ ସମଗ୍ର ଘଟଣା ଅବଲମ୍ବନ କବିର ମୁଖ୍ୟ ଉତ୍ସ ।

## ॥ ଦୁଇ ॥

କମାର ଲୁହା ଆଉଟୁଛି, ଗୋଟିଏ କ୍ଷୁଦ୍ର ଗୁମ୍ଫାରେ କିଛି ଜାଗା ମାଡ଼ିବସି ନିଆଁ ଜଳୁଛି, କମାର ସେହି ନିଆଁରେ ଲୁହା ଖଣ୍ଡକୁ ତତଉଛି, ନିଆଁରେ ଲୁହାକୁ ଉତ୍ତପ୍ତ କରି ସେହି ଉତ୍ତପ୍ତ ଲୁହାଖଣ୍ଡ ଉପରେ ପ୍ରହାର କରି ସେଥିରୁ ନାନାବିଧ ହତିଆର, ଯନ୍ତ୍ରପାତି ତିଆରି କରୁଛି । କବି କମାର ପରି, ତା'ର ଅନୁଭବକୁ ଏକ ନୈସର୍ଗିକ ଚେତନାର ନିଆଁରେ ଜାଳି ଜାଳି ଏକ ପରିଣତ ପର୍ଯ୍ୟାୟରେ ସେ ସୁନ୍ଦର ଶବ୍ଦବିନ୍ୟାସ କରେ, ଭାବନାର ପରିପକ୍ୱତା ଶେଷରେ ବିଭିନ୍ନ ଶବ୍ଦ ଓ ବାକ୍ୟ ମାଧ୍ୟମରେ ଉଚ୍ଚାରିତ ହୁଏ । କମାର ଯେପରି କଅଁଳ ଲୁହାକୁ ନେଇ ସହଜରେ କୌଣସି ଶକ୍ତିଶାଳୀ ଅସ୍ତ୍ର ତିଆରି କରିପାରିବ ନାହିଁ, କବି ସେହିପରି ପରିପକ୍ୱ ବିହୀନ ଚେତନା ଓ ନିର୍ଦ୍ଦୁଲ ଶବ୍ଦ ପ୍ରୟୋଗରେ ସାର୍ଥକ କବିତା ସୃଷ୍ଟି କରିପାରିବ ନାହିଁ । କବିର ମସ୍ତିଷ୍କକୁ କମାରଶାଳ ସହ କଳନା କରାଯାଇ ପାରିବ । କବିର ଏହି ମାନସିକ ମନ୍ଥନର ସକ୍ରିୟାକ ପ୍ରକ୍ରିୟା ଏହି ମସ୍ତିଷ୍କ ମଧ୍ୟରେ ସଂଘଟିତ ହୋଇଥାଏ । କବି ଅନେକ ଭାବନା ଓ କବିତା ରଚନାର ଉପାଦାନ ଭିତରୁ ଗୋଟିଏ ଶକ୍ତିଶାଳୀ ଅନୁଭବକୁ ଗ୍ରହଣ କରିନିଏ । ଏହି ଅନୁଭବଟି କବିତାରେ ରୂପ ନେବା ପୂର୍ବରୁ ବିଭିନ୍ନ ଦୃଷ୍ଟିକୋଣରୁ କବିକୁ ଆକ୍ରମଣ କରିଥାଏ । ଅଟିତ ସହ ବର୍ତ୍ତିତ ଘଟଣାର ସାମଞ୍ଜସ୍ୟ ସଂଯୋଜନା କରି କବି ଅନେକ ସମୟରେ ନିଜର ସୃଷ୍ଟିକୁ ସାର୍ଥକ ରୂପ

ଦେବାକୁ ପ୍ରୟାସ କରିଥାଏ । ପୁଣି କମାରଶାଳର ପ୍ରଜ୍ୱଳିତ ଅଗ୍ନିଶିଖାକୁ ଜଳାଇ ରଖିବାପାଇଁ ଫୁଙ୍କର ଆବଶ୍ୟକତା ହୋଇଥାଏ । ଏହି ଫୁଙ୍କଟି କବି ପାଇଁ ତାହାଲେ କ'ଣ ? କବିର ଚୈତନ୍ୟସ୍ତରକୁ ପରିପୁଷ୍ଟ କରିବାପାଇଁ ବା ଏପରି କହିହେବ ତା' ଭିତରେ ଥିବା ଅବବୋଧର ଅଗ୍ନିକୁ ସତେଜ କରିବାପାଇଁ ପରିବେଶ ଓ ପରିସ୍ଥିତି କବିର ମନନଶୀଳତା ଓ ମାନସିକ ସ୍ତରକୁ ଆଲୋକିତ କରିଥାଏ । ନିଆଁ ଯଦି ପୂର୍ଣ୍ଣ କ୍ଷମତା ସହ ଜଳେ ତାହାଲେ କମାରକୁ ନିଆଁରେ ଲୁହାକୁ ନରମ ଓ ମନମୁତାବକ ତିଆରି କରିବାରେ ଅସୁବିଧା ହୁଏନାହିଁ । କବି ସେହିପରି ଏକ ଉତ୍ତରିତ ଚେତନାକୁ ନେଇ ଶବ୍ଦବିନ୍ୟାସ କରି କବିତା ସୃଷ୍ଟି କରିଥାଏ । କବିତା ଅନେକ କଳ୍ପନା ଭିତରୁ ଏକ ସଫଳତମ ଓ ଶ୍ରେଷ୍ଠ କଳ୍ପନା । ଗୋଟିଏ କାଳ୍ପନିକ ଭାବବସ୍ତୁକୁ କବି ବିଭିନ୍ନ ଦୃଷ୍ଟିକୋଣରୁ ପରୀକ୍ଷା କରିଥାଏ । କମାର ଲୁହାକୁ ନେଇ ନିର୍ମାଣ କଲାବେଳେ ଯେପରି ଏହାର ବିଭିନ୍ନ ବୈଷୟିକ ଦିଗ ଉପରେ ଗୁରୁତ୍ୱ ଦେଇଥାଏ କବି ସେହିପରି କବିତା ସୃଷ୍ଟି ସମୟରେ ଏହାର କାରିଗରୀ ଦିଗ ଉପରେ ଗୁରୁତ୍ୱ ଦେଇଥାଏ । ଜଣେ ଭଲ କମାର ଯେମିତି ମଜବୁତ୍ ଯନ୍ତ୍ର ତିଆରି କରିଥାଏ ସେହିପରି ଜଣେ ସଫଳ କବି ସାର୍ଥକ କବିତା ସୃଷ୍ଟି କରିଥାଏ । କବିକୁ କମାର ସହ ଗ୍ରହଣ କରିବାରେ ଅନେକ ସାମଞ୍ଜସ୍ୟତା ରହିଛି । କବିତା ସୃଷ୍ଟିଶୀଳ । କେବଳ ଜଣେ କବିତା ଲେଖିଲେ ଯେ କବି ହୋଇଯିବ ଏପରି କିଛି ନୁହେଁ । ଗୀତ ଗାଉଥିବା, ଚିତ୍ର ଆଙ୍କୁଥିବା, ଯନ୍ତ୍ର ସଙ୍ଗୀତରେ ପାରଙ୍ଗମତା ହାସଲ କରିଥିବା ଶିଳ୍ପୀ ପାଖରେ ମଧ୍ୟ କବିତ୍ୱ ଲକ୍ଷ୍ୟ କରାଯାଇ ପାରିବ । କବିତ୍ୱ ଏକ ମୁକ୍ତ ଚେତନା, ଅପରନ୍ତୁ ଏହାକୁ ଏକ ସୃଜନଶୀଳ ଚେତନା କହିଲେ ଭୁଲ୍ ହେବନାହିଁ ।

## ॥ ତିନି ॥

ନିଆଁ ଜଳୁଛି, ଭାତହାଣ୍ଡି ଚୁଲି ଉପରେ ବସିଛି, କାଠ ପରେ କାଠ ଚୁଲି ମୁହଁରେ ଲଦାହେଉଛି, ପାଣି ଗରମ ହେଉଛି, ବୁହୁଳ ପଡ଼ୁଛି । ପୁଣି ନିଆଁକୁ ପ୍ରଖର କରିବା ପାଇଁ ଅନ୍ତର ଜାଳେଣି ଯୋଗାଇ ଦିଆଯାଉଛି । ବୁହୁଳସବୁ ନିର୍ଦ୍ଦିଷ୍ଟ ଦ୍ରୁତତା ଅତିକ୍ରମ କରି ଭାତରେ ବଦଳି ଯାଉଛନ୍ତି । ହାଣ୍ଡି ମୁହଁଯାକେ ଭାତ ଓ ପେଜମାନେ ଶୋଭାଯାତ୍ରାରେ ବାହାରି ଆସୁଛନ୍ତି, କେହି କେହି ବିଦ୍ରୋହ କରି ତଳେ ପଡ଼ୁଛନ୍ତି । ଏପରି ଅବସ୍ଥାରେ ହାଣ୍ଡିରୁ ପେଜ ଉତୁରି ପଶିଲା ଚୁଲିରେ, ନିଆଁକୁ ନିଭାଇ ଦେଲା ଶକ୍ତିଶାଳୀ ପେଜ, ସବୁଠି ଗୋଟାଏ ପୋଡ଼ା ପେଜର ବାସ୍ନାରେ ମୁଖରିତ ହୋଇ ଉଠିଲା ଚଉଦିଗ । ପାଣିରେ ବୁହୁଳ ପୁଣି ବୁହୁଳରୁ ପେଜ ଉତୁରି ଆସିଲା ଏକ ବିବର୍ତ୍ତନର ପ୍ରକ୍ରିୟା ମଧ୍ୟ ଦେଇ । ଏ କ'ଣ କମ୍ ଗୋଟାଏ ଅନୁଭବର ଅବସ୍ଥା । ଏପରି ଅନୁଭବ ଦେଇ କବିତା ସୃଷ୍ଟି ହୋଇଥାଏ, ଚେତନା ସବୁ ବୁହୁଳରେ

ପରିଣତ ହୋଇ କବିତ୍ୱ ପରିବେଶରେ ଶବ୍ଦଦାନରେ ଏକ ନିର୍ଦ୍ଦିଷ୍ଟ ଉତ୍ତରଣ ପରେ କବିତାରେ ପହଞ୍ଚି ଥାଆନ୍ତି । ପୋଡ଼ା ପେଜର ମହକରେ ଯେମିତି ଚଉଦିଗରେ ଆନନ୍ଦ ସଞ୍ଚରିଯାଏ ସେମିତି କବିତାର ସୌରଭ ମହକରେ ସ୍ଥିରଆଡ଼େ ଦିବ୍ୟ କାବ୍ୟ ଆନନ୍ଦ ଖେଳିଯାଏ । କବିତା କେବଳ ଶବ୍ଦ କ୍ଷେପଣ ନୁହେଁ, ଶକ୍ତିଶାଳୀ ଅନୁଭବ ମାଧ୍ୟମରେ ଭାବାତ୍ମକ ଶବ୍ଦକୁ ଗୋଟିଏ ପରେ ଗୋଟିଏ ଖଞ୍ଜାଯାଇଥାଏ । କବିତାର ସଂରଚନା ଭିତରୁ ଗୋଟିଏ ଶବ୍ଦକୁ ଅଲଗା କରିଦେଲେ ତା'ର ବିକଳ୍ପ ଶବ୍ଦକୁ ବ୍ୟବସ୍ଥା ହୋଇ ପାରେନାହିଁ । କବିତାର ଭାବ ପର୍ଯ୍ୟାପ୍ତ ଗଭୀରତମ ପ୍ରଦେଶରେ ଆତ୍ମଗୋପନ କରିଥାଏ । ଗରମ ପାଣିର ନିର୍ଦ୍ଦିଷ୍ଟ ଉତ୍ତରଣ ଯେମିତି ପେଜ ସୃଷ୍ଟି କରିଏ, ଚେତନା ରୂପକ ଚାଉଳ ସେହିପରି ଦଗ୍ଧିଭୂତ ହୋଇ କାବ୍ୟରସ ସୃଷ୍ଟି କରିଥାଏ । କବିତା ସୃଷ୍ଟି ହୋଇଥାଏ, ଏହାକୁ ଉଦ୍ଦେଶ୍ୟ ମୂଳକ ଭାବରେ ସୃଷ୍ଟି କରାଯାଇ ପାରିବ ନାହିଁ । କବିତା କଳ୍ପନାର ଫସଲ । କବି ସେହିପରି ଏକ ନିର୍ବିକଳ୍ପ ସ୍ତରକୁ ଓହ୍ଲାଇଯାଇ କବିତା ସୃଷ୍ଟି କରିଥାଏ । କବିତା ସୃଷ୍ଟି ପର୍ଯ୍ୟାୟରେ କବି ଈଶ୍ୱରରେ ବଦଳିଯାଏ ।

## ॥ ଚାର ॥

ସବୁ ସୀମାବଦ୍ଧତା ବାହାରେ ଯେଉଁ ଦିବ୍ୟସୁଖର ଉପଲବ୍ଧି ହୋଇଥାଏ ତାହା ହିଁ ବାସ୍ତବ ସୁଖ । ରତିସୁଖ ଓ କବିତାରି ଆନନ୍ଦଗତ ସୁଖକୁ ଏକ ଅର୍ଥରେ ଗ୍ରହଣ କରାଯାଇଥାଏ । ଏପରି ସୁଖ ପାଇବାପାଇଁ କି ବ୍ୟାକୁଳତା କି ପ୍ରୟାସ ସତରେ ! ହୃଦୟ ମନ୍ଥନର ଅମୃତ ତମ ବିନ୍ଦୁରୂପେ ପ୍ରେମକୁ ପାଇହୁଏ । ଦୁଇଟି ହୃଦୟର ନିବିଡ଼ତମ ସଂକ୍ରମଣରେ ରତିଭାବ ହୃଦୟରେ ସୃଷ୍ଟି ହୋଇଥାଏ । ମୁଖଚୁମ୍ବନ ଗଭୀର ଅଙ୍ଗ ଆବେଦନ ଦେଇ ପୁରୁଷ ଆଗେଇଗଲେ ସର୍ବଶେଷ ସୁଖ ନିକଟକୁ ଗଭୀର ଆଶ୍ଳେଷ, ସବୁ ହରେଇ ନିଆଁକୁ ପାଇବାର ନିଶାରେ ସେ ଏକ ନିବିଡ଼ ମୁଦ୍ରାରେ ଜାବୁଡ଼ିଧରେ ତା'ର ପ୍ରିୟ ପୃଥିବୀକୁ, ପୁରୁଷଟିଏ ଭୁଲିଯାଏ ନିଜର ଚତୁଃପାର୍ଶ୍ୱ, ସାମାଜିକ ବିବେକବୋଧ ଓ ବିସ୍ତୃତପରିଚୟ । ସେ ଗଛଚଢ଼ା ଆରମ୍ଭ କରେ । ଖଜୁରୀ ଗଛ ମଧୁମିତ, ତା' ଦେହରେ ପୁରିରହିଛି ଦେହ ନିଶା, ଗଛ ଚଢ଼ାଳୀ ପ୍ରଥମ ପର୍ବରୁ ହିଁ ବାଧାବନ୍ଧନର ସମ୍ମୁଖୀନ ହୁଏ । ଗଛର ବିକ୍ଷୋଭ ସହି ସେ ବାରମ୍ବାର କ୍ଷତାକ୍ତ ହୁଏ, ରକ୍ତାକ୍ତ ହୁଏ । ତଥାପି ଗଛ ଚଢ଼ାର ନିଶା ସେ ଛାଡ଼େନାହିଁ । ଗଛ ଚଢ଼ାର ଅଧା ପର୍ଯ୍ୟାୟରୁ ସେ ଅଟକି ଯାଏନାହିଁ ବରଂ ସମସ୍ତ କଷ୍ଟ ସହି ଉପରି ମଧୁଭଣ୍ଡାର ନିକଟରେ ପହଞ୍ଚିବାକୁ ପଡ଼ିବ ସେ ବ୍ୟଗ୍ର ହୋଇପଡ଼େ । ମଧୁଭଣ୍ଡାର ନିକଟରେ ପହଞ୍ଚିଲା ପରେ ସେ କୋଳି ଖାଇବା ଭୁଲିଯାଏ । ଭୁଲିଯାଏ ତା'ର ରକ୍ତସ୍ରାବୀ କ୍ଷତାକ୍ତ ଶରୀରକୁ । କେବଳ ଏକ ଶିହରିତ ଆନନ୍ଦ ଅପେକ୍ଷାରେ ତା'ର ଦେହରୁ ସମସ୍ତ ଯନ୍ତ୍ରଣାକୁ ଅପସରି ଦିଏ, ସେ କି ଅନନ୍ଦର ଅନ୍ତିମ ଅବସ୍ଥା ।

ଯେତେବେଳେ ସେ ମଧୁଭଣ୍ଡାର ଭିତରେ ପ୍ରବେଶ କରେ ଓ ସମଗ୍ର ମଧୁଭାଣ୍ଡ ଭିତରେ ସେ ମଧୁମକ୍ଷିକାଟିଏ ପରି ଉବୁଟୁବୁ ହେଉଥାଏ, ଏପରି ଏକ ଆନନ୍ଦ ପାଇଁ ତ ସେ ବାରମ୍ବାର ଖଜୁରୀ ଗଛ ଚଢ଼େ, ଝୋଟାକୁ ଧୁଏ କିନ୍ତୁ ଚରମ ଆନନ୍ଦକୁ ହାତଛଡ଼ା ହେବାକୁ ଦିଏନାହିଁ । ଯିଏ ଥରେ ଆନନ୍ଦମୁହାଁ ହୋଇଛି ତା' ପାଇଁ ପୃଥିବୀର ଅନ୍ୟ ସବୁ ଜାଗତିକତା ତୁଚ୍ଛ ବୋଲି ପ୍ରମାଣିତ ହୋଇ ସାରିଛି । ସେଇ ଚରମ ଆନନ୍ଦ ପାଇଁ ତ ପୃଥିବୀରେ ହୃଦୟ ବିନିମୟ ଓ ମାନବ ସଭ୍ୟତା ବଞ୍ଚି ରହିଛି ।

କବିତା ଆନନ୍ଦ ଦାନର ସେହିପରି ଏକ ଅବସ୍ଥା । ରତିବିଳାସୀ ମଣିଷ ଯେମିତି ରମଣ ପର୍ବ ଶେଷ ପର୍ଯ୍ୟନ୍ତ ନିଜର ଯୋଗଚର୍ଯ୍ୟାକୁ ବଳବତ୍ତର ରଖିଥାଏ, କବି ଠିକ୍ ସେମିତି କବିତାଟିଏ ଉତ୍ତୁଙ୍ଗପର୍ଯ୍ୟନ୍ତ ତା'ର ସାଧନା ଅବ୍ୟାହତ ରଖିଥାଏ । ଏପରି ଆନନ୍ଦ ସୃଷ୍ଟି କରିବା ପାଇଁ କବି ଯୋଗୀରେ ବଦଳିଯାଏ । ଅବିରତ ଶବ୍ଦ ବ୍ୟାୟାମ ମାଧ୍ୟମରେ ସେ ବାରମ୍ବାର ଗୋଟାଏ ଚେତନାର ଗଛ ଚଢ଼ୁଥାଏ । ଯେତେବେଳେ ଏହି ଗଛଚଢ଼ା ଭିତରୁ ମଧୁଭାଣ୍ଡ (କାବ୍ୟରସ)ର ସନ୍ଧାନ ପାଇଯାଏ ସେତେବେଳେ ସେ ଚରମ ପ୍ରଶାନ୍ତିରେ ବିଶୃଙ୍ଖଳିତ ହୋଇପଡ଼େ । ଜଣେ ଯୋଗୀ ତପସ୍ୟା ଶେଷରେ ଯେଉଁ ଆନନ୍ଦ ପାଇଥାଏ, ଜଣେ କାମପ୍ରବଣ ପୁରୁଷ କାମଚର୍ଚ୍ଚା ଶେଷରେ ଯେଉଁ ରତିସୁଖ ପାଇଥାଏ, ଜଣେ ପ୍ରତାପଶାଳୀ ରାଜା ଅଶ୍ୱମେଧ ଯଜ୍ଞ ଶେଷରେ ଯେଉଁ ପୁଣ୍ୟ ଅର୍ଜନ କରିଥାଏ, କବିଟିଏ ସାର୍ଥକ କବିତାଟିଏ ସୃଷ୍ଟି କରିସାରିବା ପରେ ସେହି ଉପଯୁକ୍ତ ଆନନ୍ଦର ଅଧିକାରୀ ହୋଇପଡ଼େ । ଏହି କାବ୍ୟ ଆନନ୍ଦ ପାଇଁ ତାକୁ ଅନନ୍ତ କଷ୍ଟ ସହିବାକୁ କାହିଁକି ନ ପଡ଼ୁ, ପଛକେ ସେ ନିଜ ପ୍ରଚେଷ୍ଟାରୁ ଓହରି ନ ଯାଇ ରସ ନିଷ୍ପତ୍ତି ପର୍ଯ୍ୟାୟର ଶେଷତମ ବିନ୍ଦୁ ପର୍ଯ୍ୟନ୍ତ ଅପେକ୍ଷା କରିଥାଏ । ଆମ ପ୍ରାଚୀନ କାବ୍ୟ ସାହିତ୍ୟରେ ରତିସୁଖ ଓ କାବ୍ୟସୁଖ ମଧ୍ୟରେ ସୁସମ୍ପର୍କ ଥିବା ଜଣାଯାଏ । ପ୍ରାଚୀନ ଚର୍ଯ୍ୟାପଦ ମାନଙ୍କରେ ଡ଼ୋମ୍ବୀ, ଶବରୀ ଆଦି ଚରିତ୍ର ମାଧ୍ୟମରେ ନିର୍ବିକଳ୍ପ ନିର୍ବାଣର କାମନା କରାଯାଇଛି । ଶରୀର ସାଧନା ମାଧ୍ୟମରେ ଦେହ ଭିତରେ ଥିବା ବିଭିନ୍ନ ଚକ୍ରକୁ ଭେଦକରି ଶେଷରେ ଶତଦଳରେ ପହଞ୍ଚି ପାରିଲେ ଏକ ନୂଆ ଦୁନିଆ ବା ଦିବ୍ୟାନୁଭୂତିର ଦର୍ଶନ ମିଳିଥାଏ । ଉକ୍ତ ଅବସ୍ଥାକୁ ରତିସୁଖର ଚରମ ପର୍ଯ୍ୟାୟ ସହି ପ୍ରାଚୀନ କବିମାନେ ଗ୍ରହଣ କରି ନେଇଛନ୍ତି । କାବ୍ୟରସ ଓ ରତିରସର ସ୍ୱାଦ ଏକ ଓ ଅଭିନ୍ନ । ଏହାର ଆସ୍ୱାଦନ ପଛରେ ରହିଛି ରସିକ ଚିତ୍ତର ସାଧନା ଓ କର୍ମଯୋଗ । କବିଟିଏ ହେବା ସହଜ କଥା; କିନ୍ତୁ କବିତାର ପାଠକ ହେବା ସହଜ କଥା ନୁହେଁ । କବିତା ଏକ ନିର୍ବିକଳ୍ପ ନିର୍ମାଣ, ଚେତନାର ବିଭିନ୍ନ ଦିଗକୁ କବି ସଞ୍ଚରି ନ ଗଲେ କବିତା ସୃଷ୍ଟି ହୋଇ ପାରିବ ନାହିଁ ।

## ॥ ପାଞ୍ଚ ॥

ଗୋଟିଏ ପକ୍ଷରେ ସ୍ରଷ୍ଟା ଅପର ପକ୍ଷରେ ତା'ର ସୃଷ୍ଟି । କେତେବେଳେ କୃଷ୍ଣଙ୍କର ଓଠ ତ କେତେବେଳେ ବଂଶୀ । ଗୋପ ଦାଣ୍ଡର ଧୂଳିରେ ଆଣ୍ଠେଇ ପଡ଼େ ଗୋଟାଏ ଅପରପକ୍ୱ ଝୁଲନ୍ତ ପୃଥିବୀ । କିଏ କିଏ ଆସନ୍ତି, ତା' ଦେହରୁ ଧୂଳି ଝାଡ଼ି ଦିଅନ୍ତି । ତାକୁ ସାବଧାନ କରାଇ ଦିଅନ୍ତି । ଏ ପାଗଳା ! ଏମିତି ଖରାବେଳେ ଏକା ଏକା ବୁଲନ୍ତି ? କେହି କେହି ଦୟାପରବଶ ହୋଇ ତା' ବଂଶୀଟିକୁ ତଳୁ ଟେକାଇ ଦିଅନ୍ତି । କିଏ ମୟୂର ଚନ୍ଦ୍ରିକାକୁ ସଜାଇ ଦିଏ । କେଉଁ ଗୋପାଳୁଣୀ ହସି ହସି ଗଡ଼ି ଯାଆନ୍ତି । ପୁଣି ବଂଶୀରୁ ସ୍ୱର ଛୁଟେ । ଗଉଡ଼ୁଣୀମାନେ ପରିବା କାଟୁ କାଟୁ ଆଙ୍ଗୁଠି କାଟି ବସନ୍ତି । ଗାଈ ଦୁହୁଁ ଦୁହୁଁ କ୍ଷୀରସବୁ ସ୍ରୋତସ୍ୱିନୀ ପାଲଟି ଯାଆନ୍ତି । ଯମୁନାର ନୀଳ ଜଳରାଶିରେ ପୁଣି ଜୁଆର ଆସେ । କାଳୀୟ ନାଗ କାଳିନ୍ଦୀ ହ୍ରଦରେ ଉଡ଼ମୋଡ଼ ହୁଏ । ଗୋପାଳ ବାଳକମାନଙ୍କ ଚେତନାର ପେଣ୍ଡୁଟି ପାଣିରେ ହଜିଯାଏ । ବର୍ଷା ଆସେ ଗୋପାଳୁଣୀମାନେ ଭିଜନ୍ତି । କଦମ୍ବ ଗଛରେ ଫୁଲର ସୁଅ ଛୁଟେ । ପଦ୍ମ ପାଲିଙ୍କିରେ ଦୋଳି ଖେଳନ୍ତି ଦୋଳଗୋବିନ୍ଦ । ପୁଣି ହେନା, ମାଳତୀ, କୁରେଇ ଫୁଲର ବାସ୍ନାରେ ବେଖିଆଲ ପାଲଟି ଯାଉ ମୁଁ, ଆମ୍ଭେ, ଆମ୍ଭେମାନେ, ସମସ୍ତେ ।

ଆରଦୃଶ୍ୟ କେବଳ ଯଶୋଦାମାନେ ହିଁ ଦେଖନ୍ତି । କେବଳ ଯଶୋଦା । ସମସ୍ତେ ଦେବକୀ ହୋଇ ପାରିବେ । ଜନ୍ମ କରି ପାରିବେ, ଜନ୍ମ କଲେ ଜଣେ ମା' ହୋଇଯାଏ; କିନ୍ତୁ ପୁଅ ପାଟିରେ ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କରିପାରେ ନାହିଁ । ଯଶୋଦାଟିଏ ହେବା ବଡ଼ କଷ୍ଟ । ସମସ୍ତେ ଦେବକୀ ହୋଇ ପାରିବେ, ଜନ୍ମ କରି ପାରିବେ; କିନ୍ତୁ କେତେଜଣ ଯଶୋଦା ହୋଇ ପାରିବେ ? ସେଥିପାଇଁ କୃଷ୍ଣ ଓ ଯଶୋଦା ଯେ କୌଣସି ସମୟର ପୃଥିବୀ ପାଇଁ ବିରଳ ଅନୁଭବ । ସବୁ ମା' ମାନଙ୍କର ଉତ୍ତରଣ ହେଉଛି ଯଶୋଦା । ଯଶୋଦା ଏକ ନାମବିଶେଷ ନୁହେଁ, ସେ କୃଷ୍ଣର ମା' କି ନନ୍ଦ ରାଜାର ସ୍ତ୍ରୀ ନୁହେଁ । ଯଶୋଦା ଏକ ଚେତନା, ଏକ ନିର୍ବିକଳ୍ପ ଅବସ୍ଥା । ଏକ ଉତ୍ତରଣ, ଏକ ସ୍ତର । ଯେଉଁଠି ଜଣେ ନାରୀ ପହଞ୍ଚିଲେ ମା' ହୋଇଯାଏ ଏବଂ ମୋକ୍ଷ ପାଇଯାଏ । ସେ ବନ୍ଧ୍ୟା ହେଉ କି ଗାନ୍ଧାରୀ, ସେ କୁନ୍ତୀ ହେଉ କି ମାଦ୍ରୀ ସମସ୍ତେ ସେହି ଉତ୍ତରଣରେ ଏକ ଓଁକାର ଧ୍ୱନିକୁ ହିଁ ଉପଲବ୍ଧି କରିବେ । ନ ହେଲେ ଯଶୋଦା ମାଗଣାରେ କହି ଥାଆନ୍ତା—

"ଭୁଚ୍ଛା ମାଟିଟା ଖାଇ
ନାଚୁଛୁ କାହିଁପାଇଁ
ଉଠିଲୁ ଏଡ଼େ ବେଗି କାହିଁକି ରେ ଦୁଃଖିଧନ
ଦଧି ମନ୍ଥାଇ ଦେବୁ ନାହିଁକି ରେ ।"

ଭାବ ସାଧାରଣ ମଣିଷର ସ୍ତର ଅନନ୍ୟ ମଣିଷର । ସେ ହେଉଛି ଯଶୋଦା । ସେ ହେଉଛି କବି । ଏକ ସାଧାରଣ ସ୍ତରର ସ୍ଥିରୀକୃତ ଚେତନା ସହ ଜଣମାଝି ଭାବ ବିଶ୍ୱର ବଳୟରେ କୃଷ୍ଣଟିଏ ତିଆରି କରିବା କ'ଣ କମ କଷ୍ଟ । ନିଜକୁ ଦଶ ମାସ (କାହିଁ କେତେ ମାସ) ପାଳିନାଲି ପୁଣି ନାଳରକ୍ତ ବନ୍ଧନମୟରେ ହାତକୁ ହାତୁଡ଼ି କରି ଜନ୍ମ ଦେବା କ'ଣ ଗ୍ରେଟିଆ କଥା । ଯେ କେହି ଜନ୍ମ ହୋଇଥିଲେ ଯାଏ ଆସେ ନାହିଁ । ଯେତେବେଳେ କୃଷ୍ଣ ଜନ୍ମ ହେବେ ସେ ସମୟରେ ପୃଥିବୀ କାବ୍ୟମୟ ହେବାକୁ ବାଧ୍ୟ । ଝଡ଼ର ହୁଙ୍କାର ଆଉ ବାତ୍ୟା ବିକ୍ଷୋଭର ତାଳେ ତାଳେ ପୃଥିବୀର ପାଣିପାଗ ବଦଳି ଯିବ । ବଦଳିଗଲେ ସିନା ଜଣେ ଯଶୋଦା ତିଆରି ହୋଇ ପାରିବ । କିନ୍ତୁ ଯଶୋଦାଟିଏ ହୋଇଗଲେ ସେ ଦୃଶ୍ୟକୁ ଭୁଲିବା କଷ୍ଟ । ନଚେତ୍ କିଇତ ସଞ୍ଚରେ ସେ କହନ୍ତା—

"ଅଦ୍‌ଭୁତ କଳା ସମୁଦ୍ର ଉଜାଣି ଲହରୀ
ମାଡ଼ିଆସେ ଏବଂ ତା'ର କଳାମେଘୀ ଅନ୍ଧାର ଜାଲରେ
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପାହାଡ଼ ଓ ବଣ
ମାଛ ପରି କଲବଲ ହାଉଯାଉ ହେଉଥାନ୍ତି
ଅଘଟଣ ଯେଉଁପରି ଲେଖିଥିଲି ତା' ପାଟିରେ
ସେ କଳା ବଦନରେ ।"

(ଅରଦୃଶ୍ୟ—ସୀତାକାନ୍ତ ମହାପାତ୍ର)

ଅଘଟଣରୁ ହିଁ ଉଦ୍ଧରଣ ଆସେ । ଅଘଟଣ ନ ଥିଲେ ଘଟଣା ତିଆରି ହୋଇ ପାରେନା । ଅଘଟଣ ନ ଥିଲେ ଯଶୋଦା ଓ କୃଷ୍ଣଙ୍କ ସମ୍ପର୍କ ଦ୍ୱିଗୁଣିତ ହୋଇ ପାରେନା ।

ଘୃରିକଡ଼ ଲୁହାର ପାଚେରୀ, ମଝିରେ କଷ୍ଟ ପାଉଛି ଦେବକୀ, ପୌରୁଷହୀନ ନାୟକ କାଠଗଡ଼ାରେ ବନ୍ଦୀ । କଷ୍ଟ ଦ୍ୱିଗୁଣିତ ହେଲା, ଚେତନା ସବୁ ଷଡ଼ଚକ୍ର ଅତିକ୍ରମି ଗଲେ । ଅତିକ୍ରମର ଆକୋଶରୁ ଜନ୍ମନେଲେ କୃଷ୍ଣ । ଦେବକୀ ବେହୋସ । ହସୁଛି ନଟଖଟ ନାୟକ । ପୃଥିବୀ ଅନ୍ଧାରମୟ ପାଲଟିଗଲା । ବସୁଦେବ ଦିବ୍ୟଚକ୍ଷୁ ପାଇଲେ । ଉଗ୍ରସେନ ବାଟ ଛାଡ଼ିଦେଲା । ଯମୁନାର ନୀଳଜଳ ଲୁଚରେ ଲୀନ ପଡ଼ିଗଲା । ବସୁଦେବ ଗ୍ଲଲିଲା, ଏମିତି ବସୁଦେବମାନେ ଗ୍ଲଲନ୍ତି । ଫୁଲ ଫୁଟିବା ପର୍ଯ୍ୟନ୍ତ ଏକାନ୍ତ ଗଛର ହୋଇଥାଏ; କିନ୍ତୁ ଫୁଲ ଫୁଟିଗଲେ ତା'ର ସୌରଭରେ ଚଉଦଗ ମହକିଯାଏ । ସ୍ରଷ୍ଟା ବସୁଦେବ ପରି ଗ୍ଲଲିଥାଏ, ଫୁଲନ୍ତା ପାଣିକୁ କି ଉଡ଼ନ୍ତା ପବନକୁ ତା'ର ଖାତିରି ନ ଥାଏ । ସେ ଜନ୍ମ କରେ, ପାଳେ ପୁଣି ଜନ୍ମ କରେ ପାଳେ । ବସୁଦେବ, ବ୍ୟକ୍ତିତ୍ୱ, ସୃଜନଶୀଳତା ଏକ ଆଉ ଏକୀଭୂତ ହୋଇଯାଆନ୍ତି ଏକ ଚିରନ୍ତନ ବନ୍ଧୁରେ ।

ସଖୀମାନେ ହାତ ଧରାଧରି ହୋଇ ବଣକୁ ଗଲେ । ରାସେଶ୍ୱରୀ ନିଜକୁ ଆଶ୍ଚର୍ଯ୍ୟଜନକ ଭାବରେ ସଜାଇ ଦେଲେ । ଗୋପାଙ୍ଗନାମାନେ ଈର୍ଷା କଲେ । ଗାଈମାନେ ବାଛୁରୀଙ୍କୁ ନାଚ ମାରିଲେ । ଶ୍ରାବଣରେ ସେବର୍ଷ ବର୍ଷା ବନ୍ଦ ହୋଇଗଲା । ମାଳତୀ ଲତାରେ ଫୁଲ ଫୁଟିଲା, ଗୋପାଙ୍ଗନାମାନେ କୃଷ୍ଣଙ୍କ ଆଗରେ ସୌନ୍ଦର୍ଯ୍ୟର ପରୀକ୍ଷା ଦେବାକୁ ଯେମିତି ପ୍ରସ୍ତୁତ ହେଉଥିଲେ । କୃଷ୍ଣ ଆସିଲେ, ବଂଶୀ ବଜାଇଲେ, ମଧୁମଙ୍ଗଳକୁ ପ୍ରଶ୍ନକଲେ, ଶେଷରେ ବୃନ୍ଦାଙ୍କୁ ଡାକ କହିଲେ—

"ସହଚରିରେ
ରାଧା ବୋଲିକେ ବ୍ରଜରେ
ଶୁଣିଲିବେଳୁ ସେ ନାମ
ସୁଧାପାନ ପରି ଲାଗୁଛି ଭ୍ରମ
ସହଚରିରେ
ଫିଟାଇ କହ ମରମ ।"

(ଶ୍ରୀରାଧା—ଗୋପାଳକୃଷ୍ଣ ପଟ୍ଟନାୟକ)

କୃଷ୍ଣ ଗୋଟାଏ ସୃଜନଶୀଳ ବ୍ୟକ୍ତିତ୍ୱ । ସୃଜନଶୀଳ ମଣିଷମାନେ ସୌନ୍ଦର୍ଯ୍ୟର ଉପାସକ । 'A thing of beauty is joy for ever' ବା 'ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଏ ।' ରାଧା ଏକ କବିତା, କୃଷ୍ଣ ଜଣେ କପଟ କବି । ସେ ହୋଇପାରନ୍ତି ଶାରଳା ଦାସ, ବ୍ୟାସ, ମନୁ, କିମ୍ବା ବା ରମାକାନ୍ତ ରଥ; ସବୁ କବି ମାନେ କୃଷ୍ଣ ହେବାକୁ ବାଧ୍ୟ । ସୃଜନଶୀଳ କୃଷ୍ଣ, ଯାହାର ବଂଶୀ ରନ୍ଧ୍ରରୁ ପବନର ସ୍ପର୍ଶରେ ଯମୁନାର ନୀଳରାଶି ଶାନ୍ତ ପଡ଼ୁଥିବ ଓ ସ୍ୱର୍ଗରୁ ଦେବତାଙ୍କ ପୁଷ୍ପବୃଷ୍ଟି ହେଉଥିବ । ଖାଲି ସେତିକି ନୁହେଁ ଅତି ନିର୍ଭୀକ ଭାବରେ ନିଜ ସପକ୍ଷରେ ଯୁକ୍ତି ଦେଇ କହିପାରୁଥିବ—

"ହାଏରେ ବିଧି
ତୁ ଏଡ଼େ ନିର୍ବୁଦ୍ଧିଆ
ସ୍ୱାମୀ ଲେଖିଥିଲୁ ମୋ କପାଳେ
ମୋ ସତୀତ୍ୱର ପ୍ରମାଣ ଖୋଜୁଛୁ
ଉଜବେଳେ ପୁଣି ଦ୍ୱି-ପ୍ରହରେ ।"

(ଶ୍ରୀରାଧା—ରମାକାନ୍ତ ରଥ)

ଏ କ'ଣ କମ୍ ସାହସର କଥା । ଏ ସାହସ କେବଳ କବିର ଥାଏ, କବିତାର ଥାଏ, ଖାଲି ସେତିକି ନୁହେଁ ମରିବା ପୂର୍ବରୁ ସେ ନିଜର ସଖିମାନଙ୍କ ନିକଟରେ ଘୋଷଣା କରୁଥିବ, 'କୃଷ୍ଣ ନାମ ଶୁଭୁଥିବ ଯେଣିକି/କର୍ଣ୍ଣ ମୋର ତେଣି ଦେବ ତେଣିକି' ଏ କ'ଣ କମ୍ ଗର୍ବର କଥା, ଅହଙ୍କାରର କଥା, ସମର୍ପଣର କଥା, ଲେଉଡ଼ିବା ପଣର କଥା । ସବୁ କବି ଗୋଟିଏ ଗୋଟିଏ ନିମୀୟା ବଂଶୀ ସ୍ୱନ; କିନ୍ତୁ ସେହି ବଂଶୀସ୍ୱନର ମାୟାବୀ ମୋହନରେ କିଶୋରୀ, ରାଧା ପାଲଟିଯାଏ, କବିତା ପାଲଟିଯାଏ । କବିତାର ସମ୍ମୋହନ ମନ୍ତ୍ର ତା' ମୃତ୍ୟୁ ପାଠ ଭିତରେ ଜଡ଼ିତ । ସେ ମଲେ ତ କବିକୁ ପାଇବ । ନ ହେଲେ ରାଧା ମରି ପୁଣି ପାଇବାପାଇଁ ଏତେ ବ୍ୟାକୁଳ ହୁଅନ୍ତା । ଏହି ସତ୍ୟ ସିଦ୍ଧାନ୍ତକୁ ଅନୁଭବ କରି ରବୀନ୍ଦ୍ରନାଥ କହିଛନ୍ତି—
"ମୃତ୍ୟୁରେ ତୁ ମମ ଶ୍ୟାମସମ ।"



# କବିତାର ସଂଜ୍ଞା ଓ ସ୍ୱରୂପ

କବିତା ହେଉଛି କବିତା । କବିତାକୁ ବୁଝିବାପାଇଁ ହୃଦୟର ଆବଶ୍ୟକତା ଅଛି । କବିତା ବୁଝି ହୁଏ ବୁଝେଇ ହୁଏନାହିଁ । କବିତା ଲେଖି ହୁଏ ଲେଖେଇ ହୁଏନାହିଁ । କବିତା ରଚନା କରିବାପାଇଁ କୌଣସି ଧରାବନ୍ଧା ନିୟମ ଅନୁସୃତ ହୁଏନାହିଁ । ସେହିପରି କବିତାକୁ ବୁଝିବାପାଇଁ କୌଣସି ଗତାନୁଗତିକ ସଂଜ୍ଞା ଏହାର ପରିବ୍ୟାପ୍ତିକୁ ପ୍ରକାଶ କରିବାରେ ଅସମର୍ଥ ହୁଅନ୍ତି । କବିତା ବିଭିନ୍ନ ରୂପରେ ବିଭିନ୍ନ ନାମରେ ଆତ୍ମପ୍ରକାଶ କରିଥାଏ । କବିତା ଶବ୍ଦ ଓଡ଼ିଆ ସାହିତ୍ୟରେ ପ୍ରୟୋଗ ହେବା ପୂର୍ବରୁ ଅନେକ ଗୀତି କବିତା, ପଦ୍ୟ ଓ କାବ୍ୟ ରଚନାର ପ୍ରଚଳନ ଥିଲା । ଓଡ଼ିଆ ଭାଷାରେ ବିଭିନ୍ନ ନାମରେ ରଚନା କରାଯାଇଥିବା ବିଭିନ୍ନ ଛନ୍ଦବଦ୍ଧ ରଚନାକୁ ପରବର୍ତ୍ତୀ ସମୟରେ କାବ୍ୟକବିତା ଭାବରେ ଗ୍ରହଣ କରାଯାଇଛି । ପୁରାତନ ଓଡ଼ିଆ କାବ୍ୟଗୁଡ଼ିକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଅନୁଭୂତ ହୁଏ ଯେ ଆଜି ଯେଉଁ ସାହିତ୍ୟ ସୃଷ୍ଟି ସମୂହ କାବ୍ୟ ରୂପେ ପରିଚିତ, ସେଗୁଡ଼ିକ ଆଲୋଚ୍ୟ ସମୟରେ କାବ୍ୟକାରମାନଙ୍କ ଦ୍ୱାରା ବିଭିନ୍ନ ନାମରେ ନାମିତ ହେଉଥିଲା । କାବ୍ୟର ପ୍ରତିଶବ୍ଦ ରୂପେ ସେମାନେ ନିମ୍ନଲିଖିତ ଶବ୍ଦ ସବୁ ବ୍ୟବହାର କରୁଥିବାର ଦେଖିବାକୁ ମିଳେ । ଯଥା—ଛାନ୍ଦ, ପ୍ରବନ୍ଧ, ଗୀତ, କାବ୍ୟ, ଛାନ୍ଦ ପ୍ରବନ୍ଧ, ଛାନ୍ଦଗୀତ, ଛାନ୍ଦକାବ୍ୟ, ଭାଷାକାବ୍ୟ, ଗୀତବନ୍ଧ, ଗୀତକ, ଗୀତା, ରସ, ସାହିତ୍ୟ, କବିତ୍ୱ, କଥା ଏବଂ ଚରିତ । (ଓଡ଼ିଆ କାବ୍ୟ କୌଶଳ—ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ପୃ-୧୬୮ ।) କବିତାର ଅତୀତ ବିବିଧ ଦୃଷ୍ଟିରୁ ଐଶ୍ୱର୍ଯ୍ୟମୟ । ଏହାର ପରିସର ବ୍ୟାପକ । କବିତାର ଯେ କୌଣସି ଗୋଟିଏ ଧରାବନ୍ଧା ସଂଜ୍ଞା ପ୍ରଦାନ ନିତାନ୍ତ କଷ୍ଟସାଧ୍ୟ । କବି, କବିତା ଓ ସାହିତ୍ୟର ସବୁଠାରୁ ଉତ୍କୃଷ୍ଟ ସୃଜନଶୀଳ କଳା

ଧର୍ମକୁ ବିସ୍ତାର କରି ଏହାର ଆବେଗିକ ସିଦ୍ଧାନ୍ତ ପ୍ରକାଶ କରାଯାଇପାରେ, ଯାହାକୁ କବିତାର ଏକ ଅସ୍ଥାୟୀ ସଂଜ୍ଞା ଭାବରେ ଗ୍ରହଣ କରାଯାଇ ପାରିବ ।

କବିତା ଓ କବି ଏ ଦୁଇଟି ପରସ୍ପର ପରିପୂରକ ଶବ୍ଦ । ଗୋଟିଏ ଶବ୍ଦକୁ ଅଲଗା କରି ଅନ୍ୟକୁ ବୁଝି ହେବନାହିଁ । କବି ଶବ୍ଦରେ 'ତା' ପ୍ରତ୍ୟୟ ଯୋଗ ହୋଇ 'କବିତା' ଶବ୍ଦର ସୃଷ୍ଟି ହୋଇଛି । କବି ଗୋଟାଏ ସୃଜନଶୀଳ ବ୍ୟକ୍ତିତ୍ୱର ଅଧିକାରୀ, କବିର ସୃଜନଶୀଳତା ହେଉଛି କବିତା । ପ୍ରାଚ୍ୟ କାବ୍ୟ ଦର୍ଶନରେ କାବ୍ୟ କବିତାର ସଂଜ୍ଞା ପ୍ରଦାନ କରିବାପାଇଁ ପ୍ରାଚ୍ୟ ବିଯ୍ୟାକରଣିକମାନେ ବ୍ୟାପକ ଉଦ୍ୟମ କରିଛନ୍ତି । କାବ୍ୟକୁ ବିଭିନ୍ନ ରୀତି ଓ ଅଲଙ୍କାର ମଧ୍ୟରେ ପ୍ରୟୋଗ କରି ସଂଜ୍ଞା ନିରୂପଣ କରିଛନ୍ତି । ପ୍ରାଚ୍ୟ ବିଯ୍ୟାକରଣିକମାନଙ୍କର କାବ୍ୟ ମତକୁ ନିମ୍ନରେ ପ୍ରଦାନ କରାଗଲା ।

(କ) 'ଶବ୍ଦାର୍ଥୌ ସହିତୌ କାବ୍ୟମ୍'—କାବ୍ୟାଲଙ୍କାର, ଭାମହ ।

ଶବ୍ଦ ଓ ଅର୍ଥ ସମ୍ମିଶ୍ରିତ ରଚନାକୁ କାବ୍ୟ ବୋଲି କୁହା ଯାଇଥାଏ । ଭାମହ କାବ୍ୟାଳଂକାର କାବ୍ୟର ଶବ୍ଦ ଓ ଅର୍ଥ ଗୌରବକୁ ଗୁରୁତ୍ୱ ଦେଇଛନ୍ତି ।

(ଖ) 'ଶବ୍ଦାର୍ଥୌ କାବ୍ୟମ୍'—କାବ୍ୟାଳଂକାର, ରୁଦ୍ରଟ ।

ରୁଦ୍ରଟ ମଧ୍ୟ କାବ୍ୟାଳଂକାରିରେ କାବ୍ୟରେ ଶବ୍ଦ ଓ ଅର୍ଥକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି ଓ ଉଭୟଙ୍କର ମିଶ୍ରିତ ରୂପ କାବ୍ୟ ବୋଲି ଗ୍ରହଣ କରିଛନ୍ତି ।

(ଗ) 'ଶବ୍ଦାର୍ଥୌ ସହିତୌ ବକ୍ର କବି ବ୍ୟାପାର ଶାଳିନି
ବନ୍ଧେ ବ୍ୟବସ୍ଥିତୌ କାବ୍ୟଂ ତଦ୍‌ବିଦା ହ୍ଲାଦକାରିଣି ।'
—ବକ୍ରୋକ୍ତିଜୀବିତମ୍, କୁନ୍ତକ ।

କାବ୍ୟ ବିଦଗ୍‌ଧମାନଙ୍କର ମନମୁଗ୍‌ଧକର ବକ୍ରୋକ୍ତି ବିନ୍ୟାସ ସହ ବ୍ୟବସ୍ଥିତ ଶବ୍ଦ ଓ ଅର୍ଥର ହୃଦୟ ମୁଗ୍‌ଧତା ହିଁ କାବ୍ୟ ।

(ଘ) 'ତଦଦୋଷୌଶବ୍ଦାର୍ଥୌ ସଗୁଣାବନଲଂକୃତ ପୁନଃକ୍ୱାପି ।'
—କାବ୍ୟ ପ୍ରକାଶ, ମମ୍ମଟ

ନିର୍ଦ୍ଦୋଷ ଗୁଣଯୁକ୍ତ ଅଲଂକୃତ ଶବ୍ଦମାନଙ୍କର ସମାହାରକୁ କାବ୍ୟ ରୂପେ ଗ୍ରହଣ କରାଯାଏ ବୋଲି ମମ୍ମଟ ତାଙ୍କ କାବ୍ୟ ପ୍ରକାଶରେ ମତ ପ୍ରଦାନ କରିଛନ୍ତି ।

(ଙ) 'ବାକ୍ୟଂ ରସାତ୍ମକଂ କାବ୍ୟମ୍'
—ସାହିତ୍ୟ ଦର୍ପଣ, ବିଶ୍ୱନାଥ କବିରାଜ

ବିଶ୍ୱନାଥ କବିରାଜ ସାହିତ୍ୟ ଦର୍ପଣରେ ରସାତ୍ମକ ବାକ୍ୟକୁ କାବ୍ୟ ଭାବରେ ଗ୍ରହଣ କରିଛନ୍ତି । କାବ୍ୟ କବିତାରେ ଏହି ସିଦ୍ଧାନ୍ତ ଦ୍ୱାରା ସେ କାବ୍ୟ ରସକୁ ଅଧିକ

ଗୁରୁତ୍ୱ ପ୍ରଦାନ କରିଛନ୍ତି । ଯଦି ପାଠକ କୌଣସି କାବ୍ୟ ପାଠକରି ସେଥିରୁ କାବ୍ୟରସ ଆସ୍ୱାଦ କରେ ତାହାହେଲେ ତା'ର ମାନସପଟରେ ଉକ୍ତ କାବ୍ୟ ଦୀର୍ଘଜୀବୀ ହୁଏ ବୋଲି ବିଶ୍ୱନାଥ କବିରାଜ ପ୍ରକାଶ କରିଛନ୍ତି ।

(ଚ) "ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍ ।"

—ପଣ୍ଡିତରାଜ ଜଗନ୍ନାଥ

ଯେଉଁ ଶବ୍ଦ ରମଣୀୟ ଅର୍ଥ ପ୍ରତିପାଦନ କରେ ତାକୁ କାବ୍ୟ ଭାବରେ ଗ୍ରହଣ କରାଯାଏ । ଜଗନ୍ନାଥଙ୍କ ମତରେ କାବ୍ୟ ହେଉଛି କେତେକ ରମଣୀୟ ଶବ୍ଦର ସମାହାର ।

ପ୍ରାଚ୍ୟ ବୈୟାକରଣିକମାନେ କାବ୍ୟର ବିସ୍ତୃତ ବ୍ୟାଖ୍ୟାକୁ ଗୁରୁତ୍ୱ ଦେଇ ଏହାର ବିଭିନ୍ନ ଲକ୍ଷଣ ନିର୍ଦ୍ଦେଶ କରିଛନ୍ତି । କାବ୍ୟରେ ରସ, ଧ୍ୱନି, ରୀତି, ଔଚିତ୍ୟ, ବକ୍ରୋକ୍ତିକୁ ବ୍ୟବହାର କରି ପ୍ରାଚ୍ୟ ପଣ୍ଡିତମାନେ କାବ୍ୟର ବିଭିନ୍ନ ସ୍ୱରୂପ ଉନ୍ମୋଚନ କରିବା ସହ ସେଥିରେ ବିଭିନ୍ନ ପ୍ରାଚ୍ୟ ଅଳଙ୍କାରର ସଫଳ ପ୍ରୟୋଗ କରିଛନ୍ତି । ଆଲୋଚନାର ଏ ପ୍ରସଙ୍ଗରେ ଏସବୁ ସଂଜ୍ଞାକୁ ବିଚାର କରି ଆମେ ସାଂପ୍ରତିକ କବିତାକୁ ଏହି ପ୍ରାଚୀନ ପଦ୍ଧତିରେ ଗ୍ରହଣ କରି ପାରିବା କି ? ବର୍ତ୍ତମାନ ସାହିତ୍ୟର ସ୍ୱରୂପ କ୍ଷଣକୁ କ୍ଷଣ ବଦଳିବାରେ ଲାଗିଛି । ପ୍ରାଚ୍ୟ ସଂସ୍କୃତ ସାହିତ୍ୟର ବିଦଗ୍ଧ ପୃଷ୍ଠଭୂମିରେ ସେ ସମୟରେ କବି ଓ ପଣ୍ଡିତ-ମାନେ କାବ୍ୟର ଯେଉଁ ତତ୍ତ୍ୱଦର୍ଶୀ ସଂଜ୍ଞା ପ୍ରଦାନ କରିଥିଲେ ଆଜି ତାହା ଆଧୁନିକ କବିତା ପାଇଁ ଗ୍ରହଣୀୟ ହେବା ଆଦୌ ସହଜ ନୁହେଁ । ତଥାପି କାବ୍ୟ କଳା ଦୃଷ୍ଟିରୁ ଏସବୁ ସଂଜ୍ଞାର ଗୁରୁତ୍ୱ ଆଜି ବି ଯଥେଷ୍ଟ ରହିଛି । ଆମ କବିତାରୁ ରସ ଚର୍ଚ୍ଚା ଓ ରମଣୀୟ ଶବ୍ଦ ବିନ୍ୟାସକୁ ଅଲଗା କରିପାରିବା କି ? ପ୍ରାଚ୍ୟ ବୈୟାକରଣିକମାନଙ୍କ ଏ ପ୍ରକାରର କାବ୍ୟ ଆଭିମୁଖ୍ୟ ଆଜି ବି ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

କବିତାର ସଂଜ୍ଞା ନିରୂପଣ ପାଇଁ କବିମାନେ ସେମାନଙ୍କର କାବ୍ୟ ଭିତରେ ବ୍ୟାପକ ପ୍ରୟାସ କରିଛନ୍ତି । ନିଜର କାବ୍ୟ ରଚନା ସମୟରେ କାବ୍ୟକଳା ପ୍ରତି ନିଜର ଆଭିମୁଖ୍ୟ ପ୍ରକାଶ କରି କବିତାର ସ୍ୱରୂପ ବିଷୟରେ ଚର୍ଚ୍ଚା କରିଛନ୍ତି । ଭାଗବତକାର ଜଗନ୍ନାଥ ଦାସ ଭାଗବତରେ ନିଜ କାବ୍ୟ ଗଠନ ସମ୍ପର୍କରେ କହିଛନ୍ତି—

"ଭାଷା ପ୍ରବନ୍ଧେ ଭାଗବତ
କହଇ ଦାସ ଜଗନ୍ନାଥ ।"

କବିତାର ଭାଷାକୁ ଯୁକ୍ତିନିଷ୍ଠ ଭାବରେ ଉପସ୍ଥାପନ କରିବାର ଦାୟିତ୍ୱ ଜଗନ୍ନାଥ ଦାସଙ୍କର ଥିଲା । ଯୁକ୍ତିନିଷ୍ଠ ପ୍ରବନ୍ଧ ଭାଷା କହିଲେ କବିତାରେ ଅବାଞ୍ଛିତ ଶବ୍ଦ ପ୍ରେୟଣ ବଦଳରେ ଆବଶ୍ୟକୀୟ ବର୍ଣ୍ଣନା ଓ ପାର୍ଯୋଚିତ ଶବ୍ଦ ଚୟନକୁ କବି ଜଗନ୍ନାଥ ଦାସ ଭାଗବତରେ ଗୁରୁତ୍ୱ ଦେଇଛନ୍ତି । କବି, କବିତା ଓ ପାଠକ ସମ୍ପର୍କରେ କବି ଦୀନକୃଷ୍ଣ ଦାସଙ୍କ ଆଭିମୁଖ୍ୟକୁ ବିଚାର କରାଯାଉ । ଦୀନକୃଷ୍ଣ ରସକଲ୍ଲୋଳରେ କହିଛନ୍ତି—

"କବିତା ବନିତା କବିତା ପିତା
କହିବା ଲୋକ ତା'ର ଉପମାତା
କଲେ ତାକୁ ଭୋଗ ରସିକ ନେତା
କେତେହେଁ ରହିଲ ତା'ର ଯୋଗ୍ୟତା
କୁମତି ଗୁଆଁର
କେବଳ ବଇ ମାତ୍ର ଭାଇ ତା'ର ।"

କବିତା ଆଉ କବିର ସମ୍ପର୍କ ବାପ ଝିଅ ସମ୍ପର୍କ ପରି । ଗୋଟିଏ ସୃଜନଶୀଳ ସମ୍ପର୍କରୁ ହିଁ ତ ଆତ୍ମୀୟତା ଆସିଥାଏ । ବାପା ଆଉ ଝିଅର ସମ୍ପର୍କ ରକ୍ତଗତ । କବି ଆଉ କବିତାର ସମ୍ପର୍କ ଠିକ ସେହିପରି ନୁହେଁ କି ? କବିର ରକ୍ତ ପ୍ରସ୍ରବଣର ମାନସ ନନ୍ଦିନୀ ହିଁ କବିତା । ପର ପଦରେ ରସ ଆଉ ରସିକ ନେତା ବର୍ଣ୍ଣନାରେ କବି ନିଶ୍ଚୟ ପକ୍ଷରେ ବିଶ୍ୱନାଥ କବିରାଜଙ୍କ ବାକ୍ୟ ରସାତ୍ମକଂ କାବ୍ୟକୁ ଗ୍ରହଣ କରିଛନ୍ତି । କବିତାର ସ୍ୱରୂପ ରସମୟ ହେବାକୁ ବାଧ । ମନ୍ଦ ଉଦ୍ଦେଶ୍ୟ ରଖି ଯିଏ କବିତା ଚର୍ଚ୍ଚା କରିବ ସିଏ କାବ୍ୟ ଆନନ୍ଦ ଲାଭ କରି ପାରିବ ନାହିଁ । କବିତା ଓ କବିର ସମ୍ପର୍କ ବ୍ୟାଖ୍ୟା ଦେଲାବେଳେ କବି ଦୀନକୃଷ୍ଣଙ୍କ ଉପରୋକ୍ତ ବିଶ୍ଲେଷଣ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

କବିସମ୍ରାଟଙ୍କ କାବ୍ୟ ଆଭିମୁଖ୍ୟ ଓ କାବ୍ୟ ଗଠନ ପରିପ୍ରେକ୍ଷୀରେ କବିତାର ଗୁଣ ଓ ପରିବର୍ତ୍ତନ କ୍ଷମତାକୁ ବିଶ୍ଳେଷଣ କଲେ ଅର୍ଥ ସୌନ୍ଦର୍ଯ୍ୟ ଓ ଆନନ୍ଦବୋଧର ପରିଚୟ ପାଇହୁଏ । କବି ଲାବଣ୍ୟବତୀ କାବ୍ୟରେ କହିଛନ୍ତି—

"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତରଇ
ଏଣୁ କରିଥିବି ଅଳଙ୍କାରଯୁକ୍ତ ହୋଇ ହେ,
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ ହେ ।"

ରୀତି ଯୁଗର ଅନ୍ୟତମ କବି ହରିବିକ୍ରମ ଭଞ୍ଜଙ୍କ କାବ୍ୟ ଦୃଷ୍ଟିକୁ କନକଲତା କାବ୍ୟରୁ ଗ୍ରହଣ କରାଯାଉ । କବି କହିଛନ୍ତି—

"ଆହେ ସାଧୁଜନ ମନେ ହୁଅ ମୋତେ ତୋଷ
କବିତା ମୋ ହେଉ ବର ବନତା ସଦ୍ଗୁଣ,
ସୁସରଳ ପଦ ଅଲଙ୍କାରରେ ଅଳଂକୃତ
ଘନ ଘଣି ପ୍ରକାଶି ହୁରବ ଜନଚଉ,
ଦୋଷସ୍ୱାନ ଗୁଣଗତ ଯୁତ ହୋଇଥିବ
ବନ୍ଧ ଭଙ୍ଗୀରେ ରସିକମାନଙ୍କୁ ମୋହିବ ।"

ପଦକୁ ଅଳଙ୍କାରରେ ଅଳଂକୃତ କରି କବିମାନେ ଅର୍ଥ ଗୌରବ ବୃଦ୍ଧି କରିବାପାଇଁ ଅତୀତ ସାହିତ୍ୟରେ ଉଦ୍ୟମ ହୋଇଛି । କବିତା ସୁନ୍ଦରୀକୁ ବିଭିନ୍ନ ରାଜକୀୟ ଆଡ଼ମ୍ବରରେ ବାନ୍ଧିରଖି ସେଥିରେ ଦରବାରୀ ତୃଷ୍ଣା ମୋଚନ କରିବା ଏ ସମୟ କବିତାର ଆଭିମୁଖ୍ୟ ହୋଇଛି । ଏ ଯୁଗର ଶକ୍ତିଶାଳୀ କବିମାନେ ପଦ ସରଳ ଧ୍ୱନିରେ ଗୀତମୟ କଳ୍ପନା ବିଳାସ ମଧ୍ୟରେ ସାଧାରଣ ଶ୍ରୋତା ଓ ପାଠକକୁ ଆକୃଷ୍ଟ କରୁଥିଲେହେଁ ଅର୍ଥୀଜନମାନଙ୍କୁ ଆନନ୍ଦ ଦେବାପାଇଁ ଗୁରୁଗମ୍ଭୀର ଅର୍ଥ ବିନ୍ୟାସକୁ ଗୁରୁତ୍ୱ ଦେଉଥିଲେ । କବିତା ଓ କବି ଭିତରେ ସୃଜନଶୀଳ ସମ୍ପର୍କ ଉନ୍ମୋଚନରେ ଏ ସମୟର କବିମାନେ ନିଜ କାବ୍ୟ ଭିତରେ ଆତ୍ମ ପ୍ରକାଶ କରିଛନ୍ତି । କବିତ୍ୱ ଓ କବିତା ଏକ କର୍ମନିମୟ କଳା ଏ ଧାରଣାର ପ୍ରୟୋଗ ଆମ କାବ୍ୟ ଯୁଗରେ ସୃଷ୍ଟି ହୋଇଛି ।

କବିତାର ସଂଜ୍ଞା ସମ୍ପର୍କରେ ଆଲୋଚନା କଲାବେଳେ କୌଣସି ଧରାବନ୍ଧା ଯୁକ୍ତିକୁ ଗୁରୁତ୍ୱ ଦେବା ଅପେକ୍ଷା ବରଂ କବିର ସୃଜନଶୀଳ ପ୍ରାୟୋଗିକ ପରିଭାଷାକୁ ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ । କବିତା କେହି କେବେ ଲେଖେନାହିଁ ବରଂ ଏହା ଲେଖି ହୋଇଯାଏ । କବିତା ବାଧ୍ୟକରେ ଯୋଗୀଟିଏ ପରି ବସିବାକୁ, ବାଧ୍ୟକରେ କଲମ ଧରିବାକୁ ଏବଂ ବାଧ୍ୟକରେ ଏକ ନିର୍ବିକଳ୍ପ ସ୍ତରକୁ ଉଡ଼ି ଯିବାପାଇଁ । ଇଟା କଂକ୍ରିଟର କୋଠା ପରି ମୂଳଧନ ଓ ମୂଲିଆ ବିନିମୟରେ କବିତା କୋଠା ତିଆରି ହୋଇ ପାରିବ ନାହିଁ । ବରଂ ଏହା ହୃଦୟର ଫୁଲ ହୋଇ ଆପଣାଛାଏଁ ଫୁଟି ଉଠିଥାଏ ! ସେଇଥିପାଇଁ ତ ଜୀବନର ଶ୍ରେଷ୍ଠ କବିତା ଲେଖା ହୋଇ ନ ଥାଏ ଏବଂ ଯେଉଁ କବିତା ଲେଖା ହୋଇଥାଏ ତାହା ସ୍ୱତଃ ଝରି ଆସିଥାଏ । କାବ୍ୟ-ଶୀଳାର ଏ ସମ୍ପର୍କିତ ଦୃଷ୍ଟି ଦେଇ କବି ଦୀପକ ମିଶ୍ର କହନ୍ତି—

"କାରଣ ମୁଁ ଜାଣେ ଏତିକି
ଯେ କବିତା ହୁଏନି ଗଢ଼ା
କୋଣାର୍କ ବା ତାଜମହଲ ପରି,

ଆମର ହାତରେ
ଏହା ଫୁଟେ ତା' ଇଚ୍ଛାରେ
ନାମହୀନ ତାଜା ଫୁଲ ପରି ।''

କବିତା ତା' ଇଚ୍ଛାରେ ଆସେ, ସେ ଇଚ୍ଛା ଶବ୍ଦ ହୋଇ ସବୁଦିନ ପାଇଁ ସୁରକ୍ଷିତ ହୋଇଯାଏ । ଏ କବିତାର କାଳସୀ ସମସ୍ତଙ୍କ ଭାଗ୍ୟରେ ଜୁଟେନାହିଁ । ଯାହା ଭାଗ୍ୟରେ ଆସେ ସିଏ କବି ପାଲଟିଯାଏ । କବିତା କେଉଁଠି ଥାଏ ତ ପୁଣି କେଉଁଠି ନ ଥାଏ ? ସବୁ ନ ଥିବା ଭିତରେ କବିତା ଥାଏ ଓ ସବୁ ଥିବା ଭିତରେ କବିତା ନ ଥାଏ । କବିତା ନାଗରିକ ସୌନ୍ଦର୍ଯ୍ୟ ଓ ବସ୍ତୁ ଚେତନା ଊର୍ଦ୍ଧ୍ୱରେ । କବି ସୀତାକାନ୍ତ ମହାପାତ୍ର କବିତାର ରୂପ ରଚନା ସମ୍ପର୍କରେ ନିଜର ମତ ଦେଇ କହନ୍ତି—

''ହେ ମୋର କବିତା
ତୁମେ ନୁହଁ କାଶ୍ମୀରର ଡାଲ ହ୍ରଦ
ପପ୍‌ଲାର ପାଇନ୍ ଜଙ୍ଗଲ
ଉଟି ଅବା ଦୂର ନେନିତାଲ
ତମେ ଗୋଟେ ପରିଚର୍ଯ୍ୟା (ଓ ଆଶ୍ଚର୍ଯ୍ୟ)
ଗାଉଁଲି ସକାଳ ।''

ତାହାଲେ କବିତାର ପରିଚୟ କ'ଣ ? କବିତାର ଠିକଣା କେଉଁଠି ? କବିତାକୁ କେଉଁଠି ପାଇ ହେବ ? ଯାର ଉତ୍ତର ନାଁ କବିଙ୍କୁ ଜଣା ନାଁ କବିତାକୁ । ସିଏତ ରକ୍ତରେ ଥାଏ ପୁଣି ନୀଳ କଇଁ ସାଜି ଆଖି ମିଟିକି ମାରୁଥାଏ । ତାକୁ ବୁଝି ହୁଏ କିନ୍ତୁ ବୁଝେଇ ହୁଏନା, ତାକୁ ପାଇ ହୁଏ, କିନ୍ତୁ ଛୁଇଁ ହୁଏନା, ତାକୁ ଅନୁଭବ କରିହୁଏ କିନ୍ତୁ ଆଲିଙ୍ଗନ କରି ହୁଏନା, ନ ହେଲେ କବି ରମାକାନ୍ତ ରଥ କହିଥାନ୍ତେ—

''ତୁମେ ନୀଳ କଇଁ ରକ୍ତର ଛୁଆ
ମୋତେ ଚରି ଦେଇ ଯାଅ
ସ୍ବୃହିଁଲି ବେଳକୁ ତୁମେ ତ ନ ଥାଅ
ରକ୍ତରେ ବୁଡ଼ି ଥାଅ ।''

କବିତା ଅନୁଭବ ଓ କବି ଅନୁଭବୀ । ପରସ୍ପର ସମ୍ପର୍କ ନିରୂପଣ ପାଇଁ କୌଣସି ସଂଜ୍ଞା ବା ବିଶ୍ଲେଷଣ ସମର୍ଥ ହୁଅନ୍ତି ନାହିଁ । କବି ଓ କବିତାର ସମ୍ପର୍କକୁ ନେଇ କବି ବ୍ରହ୍ମାନନ୍ଦ ଦାସଙ୍କ କବିତାକୁ ବିଚାର କରିଯାଉ ।

## ଜହ୍ନ ତାରା

କବି ଜହ୍ନ ପରି
ତାରା ତା' କବିତା
ପାଖେ ପାଖେ ଥାଏ ।
କହ୍ନୁ ଦଶେନ୍ତି ।
ଜହ୍ନ ବୁଡ଼ିଗଲେ
ଧରା ପଡ଼େ ସେ
ଚକ୍ ଚକ୍
ସଭିଙ୍କ ଆଖିରେ ।

(ଜୀବନ ଯେମିତ / ବ୍ରହ୍ମାନନ୍ଦ ଦାସ)

କବି ଆଉ କବିତା ଏକ ଓ ଅଭିନ୍ନ । ଜଣକୁ ଅନ୍ୟ ଠାରୁ ଅଲଗା କରି ତା'ର ଭାବବୋଧକୁ ବୁଝି ହେବନାହିଁ । କବିତାକୁ କେହି କେହି କଳ୍ପନାର ଫସଲ ବୋଲି କହିଥାନ୍ତି । ତାହାଲେ କବି ସବୁଠାରୁ ଶ୍ରେଷ୍ଠ ସୃଜନଶୀଳ କଳ୍ପନାପ୍ରବଣ ବ୍ୟକ୍ତି । କବିତା କଳ୍ପଲତା କବିତ୍ୱର ମୋହନ ବଂଶୀ ଉଚ୍ଚାରଣରେ ମଙ୍ଗଳମୟ ହୋଇ ଫୁଟିଉଠେ ।

କବିତା ସମ୍ପର୍କରେ ନିଜର ମତ ପ୍ରକାଶ କରି ସମାଲୋଚକ ଲେହଣ୍ଟ କହିଥିଲେ—"The utterance of a passion for truth, beauty and power, embodying and illustrating its Language on the principle of variety in unity." ଏ ଶତକରେ କବିତାର ସଂଜ୍ଞା ସମ୍ପର୍କୀୟ ଯେତେ ଆଲୋଚନା ହେଉଛି, ସେସବୁ ଆଲୋଚନାକୁ ପଛରେ ପକାଇ Words Worthଙ୍କ କବିତାର ପରିଭାଷା ସମସ୍ତଙ୍କୁ ପ୍ରଭାବିତ କରିଛି । ଓ୍ୱାର୍ଡ଼ସ୍ ଓ୍ୱର୍ଥ କବିତାରେ କବିର ଯେଉଁ ସ୍ୱତଃସ୍ଫୁର୍ତ୍ତି ଗୁଣର ବ୍ୟାଖ୍ୟା କରିଛନ୍ତି ତାହା ଯେ କୌଣସି କଳା ସୃଷ୍ଟି ପାଇଁ ଗୁରୁତ୍ୱପୂର୍ଣ୍ଣ ବୋଲି ମନେହୁଏ । ସେ କହିଥିଲେ—"Poetry is the spontaneous overflow of powerful feelings." ଶକ୍ତିଶାଳୀ ଚିନ୍ତାଧାରାର ସ୍ୱତଃସ୍ଫୁର୍ତ୍ତି ପରିପ୍ରକାଶ ହେଉଛି କବିତା । କବିତାର ସ୍ୱତଃସ୍ଫୁର୍ତ୍ତି ଗୁଣ ଆଲୋଚନା ପରିପ୍ରେକ୍ଷୀରେ John Keatsଙ୍କ ଜବିମତ ଗ୍ରହଣୀୟ । କୀଟ୍‌ସ କହିଥିଲେ—"Leaves comes to the tree" ଅର୍ଥାତ୍ ଗଛରେ ଯେମିତ ପତ୍ର ଆସେ କବି ହୃଦୟରୁ କବିତା ସେମିତ ଆସେ । ଯଦି କବିତା ଏମିତ ସ୍ୱତଃସ୍ଫୁର୍ତ୍ତି ଭାବରେ ନ ଆସିବ ତାହାଲେ କବିତା ଆଦୌ

ଆସିବା ଉଚିତ୍ ନୁହେଁ । ପାଶ୍ଚାତ୍ୟ କାବ୍ୟ ଆଲୋଚକମାନେ କବିତାକୁ ବିଭିନ୍ନ ଦୃଷ୍ଟିକୋଣରୁ ମୂଲ୍ୟାୟନ କରିଛନ୍ତି । ପ୍ରତୀକବାଦୀ ଆନ୍ଦୋଳନ, ଚିତ୍ରକଳ୍ପବାଦୀ ଆନ୍ଦୋଳନ ସମୟରେ କବିତାର ସଂଜ୍ଞା ଓ ସ୍ୱରୂପକୁ ବାରମ୍ବାର ବଦଳା ଯାଇଛି । କବିତାର ସଂଜ୍ଞା ସମ୍ପର୍କରେ ମତ ପ୍ରକାଶ ପାଇଛି ଯେ, "ଜୀବନରେ ଅନେକ କବିତା ଲେଖିବା ଅପେକ୍ଷା ଗୋଟିଏ ସାର୍ଥକ ଚିତ୍ରକଳ୍ପ ବା ପ୍ରତୀକ ସୃଷ୍ଟି କରିବା ଅଧିକ ଯୁକ୍ତିଯୁକ୍ତ ।" କିନ୍ତୁ ପ୍ରାଚ୍ୟ ହେଉ ବା ପାଶ୍ଚାତ୍ୟ ସବୁଠି କବିତାରେ ପ୍ରାସଙ୍ଗିକତାକୁ ଗୁରୁତ୍ୱ ଦିଆଯାଇଛି । ଯେଉଁଠି କବି ଜଗନ୍ନାଥ ଦାସ କହିଥିଲେ— 'ଭାଷା ପ୍ରବନ୍ଧେ ଭାଗବତ' ସେଇଠି କବି କଲେରିଜ୍ (coleridge) କବିତା କହିଲେ—"Best words in the best order" ବୋଲି ମତ ପ୍ରକାଶ କରିଛନ୍ତି ।

କବିତା କୌଣସି ଭୂଗୋଳ ଭିତରେ ବନ୍ଦୀ ନୁହେଁ । ଏହା ସାହିତ୍ୟର ସବୁଠାରୁ ସୃଜନଶୀଳ କଳାତ୍ମକ ବିଭାଗ । କବିତାର ରୂପ ବହୁଧା ଓ ପରିସର ବିସ୍ତୃତ ଏବଂ ସର୍ବୋପରି ଏହା ଏକ ଯୁଗୋପଯୋଗୀ ସାହିତ୍ୟ କଳା ଓ ସମ୍ବେଦନର ବିଷୟ ହୋଇଥିବାରୁ କବିତା ସମ୍ପର୍କୀୟ କୌଣସି ସ୍ଥିର ସଂଜ୍ଞା ପ୍ରଦାନ କରିବା କଷ୍ଟସାଧ୍ୟ ଓ ଅପରିପକ୍ୱ ନିଷ୍ପତ୍ତି । ପୁଣି କେତେକଙ୍କର ଧାରଣା ଅଛି ଯେ—

"କବି ଯେ ସତ ମିଛ କରି କହନ୍ତି
କବିତା ଗୁରୁଖିରେ ମନ ମୋହନ୍ତି ।"

କବିତା ଯୁଗେ ଯୁଗେ କବିତା । ଯେଉଁ କବିତାର ଜୀବନ ଶକ୍ତି ଥାଏ ସେ ପାଉଁଶ ଗଦା ଭିତରୁ ଓଁକାର ଧ୍ୱନି ଶୁଣାଏ । 'ସୃଜନଶୀଳ ହୃଦୟର ଭାବାତ୍ମକ ଉଚ୍ଚାରଣ ହିଁ କବିତା' । କବିତାର ବ୍ୟାଖ୍ୟା ଯେପରି କଲେ ମଧ୍ୟ ତାହାକୁ ବୁଝେଇବା ଆଦୌ ସହଜ ନୁହେଁ । କବିତାକୁ କେହି ବୁଝାଇ ନାହିଁ ବୋଲି ତ ଆଜିଯାଏ କବିତା ଚର୍ଚ୍ଚା ଚାଲିଛି । ପରିଶେଷରେ କବିତା ପାଇଁ ଏତିକି କହି ହେବ—"A poem is a poem, is a poem."

କବିତାର ସ୍ୱରୂପ ଅତି ସହଜ ଲବ୍ଧ ସୂକ୍ଷ୍ମ ସ୍ତର । କବିତାରେ ଅନ୍ତରାଳ ସ୍ତରରେ ଅନେକ ଅର୍ଥ ଆଡ଼ମ୍ବର ଥିଲେହେଁ କବିତାରେ କେତୋଟି ନିର୍ଦ୍ଦିଷ୍ଟ ସ୍ୱରୂପ ନିଶ୍ଚିତ ପକ୍ଷରେ ସବୁବେଳେ ଗ୍ରହଣୀୟ ହୋଇଥାଏ । ନିମ୍ନରେ କବିତାର କେତୋଟି ମୁଖ୍ୟ ବୈଶିଷ୍ଟ୍ୟ ଆଲୋଚନା କରାଗଲା ।

## (କ) ସଂକ୍ଷିପ୍ତତା—

ସଂକ୍ଷିପ୍ତ କଳେବର ଭିତରେ କବିତା ଆତ୍ମପ୍ରକାଶ କରିଥାଏ । କବିତା ଗୋଟିଏ ଆବେଗକୁ ନେଇ ଆତ୍ମ ପ୍ରକାଶ କରୁଥିବାରୁ ଏହାର କଳେବର ଅନ୍ୟାନ୍ୟ

ସୃଜନଶୀଳ କୃତି ଅପେକ୍ଷା ଅଧିକ ସଂକ୍ଷିପ୍ତ । କବିତାର ବୃହତ୍ତ ଅଂଶ କାବ୍ୟ ଭିତରେ ଆତ୍ମପ୍ରକାଶ କରିଥାଏ । ପ୍ରାଚୀନ କାବ୍ୟମାନଙ୍କର ପରିସର ଅଧିକ ବ୍ୟାପକ । ଏଥିରେ ଅନେକ ସର୍ଗ ଓ ଉପସର୍ଗମାନ ଦେଖାଯାଏ । ନାୟକ ନାୟିକାର ଜନ୍ମ, ଯୌବନ ଓ ଜୀବନର ବର୍ଣ୍ଣନା ଏଥିରେ ଥିବାରୁ କବି କାବ୍ୟ କଳେବରକୁ ଅଧିକ ହୃଷ୍ଟପୁଷ୍ଟ କରି ଗଢ଼ିଥାଏ । ସମୟ ବଦଳିବା ସହ ପାଠକୀୟ ଆଗ୍ରହ କାବ୍ୟ ପ୍ରତି ବଦଳି ଯାଇଛି । କାବ୍ୟ ବଦଳରେ କ୍ଷୁଦ୍ରକାବ୍ୟ, ଲଘୁକାବ୍ୟ-ମାନ ସୃଷ୍ଟି ହୋଇଛି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଆ ସାହିତ୍ୟରେ ପ୍ରୟୋଗବାଦୀ କାବ୍ୟ ଆନ୍ଦୋଳନ ଆତ୍ମପ୍ରକାଶ କରି ଓଡ଼ିଆ କବିତାକୁ ଆଙ୍ଗିକ ଦୃଷ୍ଟିରୁ ଅନେକ ପରିବର୍ତ୍ତନର ସ୍ୱାଦ ଦେଇଛି । କବିମାନେ ଦୀର୍ଘ କବିତା ଅପେକ୍ଷା କ୍ଷୁଦ୍ର କବିତା ଭିତରେ ନିଜର ଭାବ ପ୍ରକାଶ କରିବାପାଇଁ ବଧିବଦ୍ଧ ପ୍ରୟାସ କରୁଛନ୍ତି । କବିତା କଳେବର ସଂକ୍ଷିପ୍ତ ହୋଇଗଲେ କବିତାର ମୌଳିକତା କ୍ଷୁଣ୍ଣ ହେଉନାହିଁ ବରଂ ଏହା ପାଠକର ନୀରବ ମସ୍ତିଷ୍କକୁ ଭେଦ କରିବାରେ ଅଧିକ ସମର୍ଥ ହେଉଛି । ସାଂପ୍ରତିକ ମଣିଷର ସମୟ ସଙ୍କଟ ପରିସ୍ଥିତିରେ କ୍ଷୁଦ୍ର କବିତା ପାଠକୀୟ ପ୍ରଶଂସା ପାଇବାରେ ସମର୍ଥ ହୋଇଛି । ଯେ କୌଣସି କବିତା ପାଇଁ କ୍ଷୁଦ୍ର କଳେବର ସର୍ବଦା ବାଞ୍ଛନୀୟ ।

## (ଖ) ଜୀବନୀ ଶକ୍ତି—

ଜୀବନୀ ଶକ୍ତି କବିତାର ଆତ୍ମା । କବିତାରେ ସଂଚରଣଶୀଳ କୌଣସି ଭାବ ସୁରକ୍ଷିତ ନ ଥିଲେ କବିତା ଆଦୃତ ହୋଇ ପାରେନାହିଁ । କବିକୁ କବିତା ଲେଖିଲାବେଳେ ନିଜ କବିତାର ଅମରତ୍ୱ ଓ ନିଦା ଅନୁଭବ ପ୍ରତି ଗୁରୁତ୍ୱ ଦେବାକୁ ପଡ଼ିବ । କୌଣସି କବିତାର ପାଠକ ସେ ସମୟରେ ଯେ ଥିବେ ଏକଥା ଆଦୌ ନୁହେଁ । ଆଜି ସୃଷ୍ଟି କରାଯାଇଥିବା ଅନେକ କବିତା ତିରିଶି ବର୍ଷ ପରେ ଗ୍ରହଣୀୟ ହୋଇପାରେ । ଭବିଷ୍ୟତ ସମାଜରେ କବିତା ପାଇଁ ଅନେକ ହୃଦୟବାନ ପାଠକ ସୃଷ୍ଟି ହୋଇ ପାରନ୍ତି ଓ ଏମାନେ କବି ଓ କବିତାକୁ ଅନେକ ଊର୍ଦ୍ଧ୍ୱକୁ ନେଇ ପାରନ୍ତି । କିନ୍ତୁ କବିତାରେ ସେହିପରି ମୋହିନୀ ଶକ୍ତି ଥିଲେ ତାହା ଯେ କୌଣସି ସମୟକୁ ଜୟ କରି ତା' ପାଇଁ ପାଠକ ସୃଷ୍ଟି କରି ପାରିବ । ପାହାଁଶ ଗଦା ତଳୁ, ଭୁସୁଡ଼ି ପଡ଼ିଥିବା ସହର ତଳୁ ଆବଶ୍ୟକ ହେଲେ ପ୍ରତ୍ନତାତ୍ତ୍ୱିକ ବିଭବ ରୂପେ କବିତା ମୁଣ୍ଡ ଟେକିବ । କବିତାକୁ କେବଳ କଳ୍ପନାର ଫସଲ ଓ ଅର୍ଥବୋଧ ଭିତରେ ବାନ୍ଧି ନ ପକାଇ ସେଥିରେ ଜୀବନୀ ଶକ୍ତିର ପ୍ରୟୋଗ କରିବା ନିହାତି ଆବଶ୍ୟକ ।

## (ଗ) ବୋଧଗମ୍ୟତା—

କବିତା ବୋଧଗମ୍ୟ ହେବାକୁ ବାଧ୍ୟ । କବି ଯଦି ନିଜ କବିତାକୁ ଅର୍ଥ ଓ ଶବ୍ଦ ଭିତରେ ବାନ୍ଧିଦିଏ ତାହାଲେ କବିତା ଆପଣାଛାଏଁ ପାଠକ ନିକଟରୁ ଦୂରେଇ ଯାଏ । କବିତା ଗୋଡ଼ ଭିତରେ ଗିରିର ସନ୍ଧାନ ଦିଏ, ବିନ୍ଦୁଏ ପାଣିରେ ସିନ୍ଧୁ ସୃଷ୍ଟି କରିଥାଏ; କିନ୍ତୁ ବ୍ୟକ୍ତିଗତ ଦୁଃଖ, ଅସହାୟତାରେ ସାମଗ୍ରିକତା ବୋଲି ଦେବାପାଇଁ ବ୍ୟର୍ଥ ଉଦ୍ୟମ ଭିତରେ କବିତା ସୁନ୍ଦରୀ ଆତ୍ମହତ୍ୟା କରିଥାଏ ସିନା ଆଲୋକକୁ ଆସି ପାରେନାହିଁ । ଭଞ୍ଜ ସାହିତ୍ୟ ଗୁରୁଭାବ ବହନ କରୁଥିଲେ ମଧ୍ୟ ତା'ର ସାଙ୍ଗୀତିକତା ସମସ୍ତଙ୍କୁ ଆକୃଷ୍ଟ କରିଥିଲା । ଏହି ସହଜ ସୁନ୍ଦର ଭାବ-ବିନ୍ୟାସକୁ ଲକ୍ଷ୍ୟ କରି କବି ଗୋପବନ୍ଧୁ କହିଥିଲେ—

"ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ ପଥପ୍ରାନ୍ତେ ହୃଷ୍ଟମନା
ବଳେ ବୋଲେ ଚଷା ଅନ୍ତଃପୁରେ ଯୋଷା ନୃତ୍ୟରତେ ବାରାଙ୍ଗନା ।"

କବିତା ଯଦି ବୋଧଗମ୍ୟ ହୁଏ ତାହାଲେ ତାହାର ଆୟୁଷ ଅଧିକ ହୁଏ । ଅନେକ ଦୁର୍ବୋଧ କବିତା ରଚନା କରିବା ଅପେକ୍ଷା ଜୀବନରେ ଗୋଟିଏ ସଫଳ ସହଜ ସାବଲୀଳ କବିତା ରଚନା କରିବା ଗୁରୁତ୍ୱପୂର୍ଣ୍ଣ । ବୋଧଗମ୍ୟତା କବିତା ସଫଳତାର ଅନ୍ୟତମ ରହସ୍ୟ ।

## (ଘ) ରହସ୍ୟବୋଧ—

ରହସ୍ୟ ହେଉଛି କବିତାର ଭୂଷଣ । କବିତାରେ ସତକଥା କୁହାଯାଇ ବା କଳ୍ପନାର କଥା କୌଣସି କଥା ସିଧାସଳଖ କୁହାଯାଏ ନାହିଁ । ସିଧାସଳଖ କହିବାରେ ସୌନ୍ଦର୍ଯ୍ୟ ନ ଥାଏ । ଲୁଗା ପିନ୍ଧିଛି ବୋଲି ତ ନାରୀ ସୁନ୍ଦର ଦିଶେ । ନିଜକୁ ବିଭିନ୍ନ ଅଳଙ୍କାର ଓ ପାଟ ପୀତାମ୍ବରୀ ଭିତରେ ଗୁଡ଼େଇ ଦେଇ କଣୋଣୀ ନିଜର ସୌନ୍ଦର୍ଯ୍ୟକୁ ଅଧିକ ବିକଶିତ କରିଥାଏ । କବିତା ସୁନ୍ଦରୀ ଠିକ୍ କଣୋଣୀ ପରି । କବିତା ଏକ ଭାବକୁ ପ୍ରକାଶ କରିବାପାଇଁ ଚିତ୍ରକଳ୍ପ, ପ୍ରତୀକ, ଉପମା ଓ ରୂପକର ସାହାଯ୍ୟ ନେଇଥାଏ । ଜହ୍ନକୁ କେତେବେଳେ କୁମାରୀର ଓଠ, ମୁହଁ ସହ ତୁଳନା କରେ ତ ପୁଣି କେତେବେଳେ ଆକାଶର ଫିକା ଜହ୍ନକୁ ସାବୁନ ଫେଣ ଓ ପୋଡ଼ାରୁଟି ଭିତରେ ଖୋଜେ । କବିତାର ଭାବକୁ ସାଧାରଣତଃ ଆଉ ଗୋଟିଏ ଭାବ ଘୋଡ଼େଇ ହୋଇଥାଏ । ଏହି ଉପରର ଭାବଟି ଯେତେବେଳେ କବିତା ଉପରୁ ମୁକୁଳିଯାଏ ସେତେବେଳେ କବିତା ଅଧିକ ସୁନ୍ଦର ଦିଶିଥାଏ । କବିତା ରହସ୍ୟମୟ ହେବାକୁ ବାଧ୍ୟ; କିନ୍ତୁ ଏହି ରହସ୍ୟମୟତା ଭିତରେ ଦୁର୍ବୋଧତା ପ୍ରବେଶ କଲେ କାବ୍ୟ ଆତ୍ମାର ସଫଳ ପରିପ୍ରକାଶ ହୋଇପାରି ନ ଥାଏ । ସବୁ ରହସ୍ୟ ହେଉଛି ଗୋଟିଏ ଗୋଟିଏ କବିତା ଆଉ ସବୁ କବିତା ହେଉଛି ଗୋଟିଏ ରହସ୍ୟ ।

କବିତାକୁ କେତେ ମାତ୍ରାରେ ଛନ୍ଦୁବେଶୀ ହେବାକୁ ପଡ଼ିବ ଏହା ପ୍ରତିଭାବନ୍ତ କବି ଉପରେ ନିର୍ଭର କରିଥାଏ ।

## (ଙ) ପରିଚ୍ଛନ୍ନତା—

ପରିଚ୍ଛନ୍ନତା କବିତା ପାଇଁ ଏକ ଆବଶ୍ୟକୀୟ ବ୍ୟବସ୍ଥା । କବିତା କାବ୍ୟ ନୁହେଁ କି ଉପନ୍ୟାସ ନୁହେଁ । ଏଥିରେ ଦୀର୍ଘ କଳେବର ଭିତରେ ଅଧିକ ଅପ୍ରାସଙ୍ଗିକ ବର୍ଣ୍ଣନା ବିଳାସର ସୁଯୋଗ ନ ଥାଏ । ପୁଣି କବିତା ମୁଖ୍ୟତଃ ଗୋଟିଏ ଆବେଗକୁ ଆଧାର କରି ଗଢି କରୁଥିବାରୁ ଏଥିରେ ଗୌଣ ବିଷୟବସ୍ତୁ ଉପସ୍ଥାପନର ଆବଶ୍ୟକତା ନ ଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥା ଉପରେ କବି ଆଲୋକପାତ କରି କବିତା ରଚନା କରିଥାଏ । ଏଥିରେ ଏକ ନିରୂପିତ ସମୟ ଓ ସିଧାସଳଖ ପାର୍ଯ୍ୟୋଚିତ ବର୍ଣ୍ଣନା ସ୍ଥାନ ପାଇଥାଏ । କୌଣସି ଅବସ୍ଥାରେ କବିତା ଯଦି ଏହି ଆବଶ୍ୟକୀୟ ଶୃଙ୍ଖଳାରୁ ମୁକୁଳି ଯାଇ ଭାବସନ୍ଧାନ୍ତ ହୁଏ ତାହାଲେ କବିତାର ପରିଚ୍ଛନ୍ନତା ନଷ୍ଟ ହୋଇଥାଏ । ଅନେକ ସମୟରେ କବିତାର ସରଳୀକୃତ ଭାବଟିକୁ ସହଜରେ ପ୍ରକାଶ ନ କରିଯାଇ ତାକୁ ଅଧିକ ଦୁର୍ବୋଧ କରିବା ଲକ୍ଷ୍ୟରେ ଚିତ୍ରକଳ୍ପର ସଂଯୋଜନା କରାଯାଇଥାଏ । ପୁଣି ଅନେକ କବିତାରେ ଚିତ୍ରକଳ୍ପ ଗୋଟାଏ ବ୍ୟକ୍ତି ଚେତନାର ବଳୟ ଭିତରୁ ଆସିଥିବାରୁ ଏହା ଅନେକଙ୍କ ପାଇଁ ଗ୍ରହଣୀୟ ହୋଇ ନ ଥାଏ । କବିତା ରଚନା କରିବା ସମୟରେ କବି ଏସବୁ ଦିଗ ପ୍ରତି ଦୃଷ୍ଟି ଦେବା ବାଞ୍ଛନୀୟ । କବିତାକୁ ପରିଚ୍ଛନ୍ନ ଭାବରେ ପ୍ରୟୋଗ କଲେ ଏହା ସିଧାସଳଖ ପାଠକ ପାଖକୁ ସଂକ୍ରମିତ ହୋଇଥାଏ । ପରିଚ୍ଛନ୍ନତା ଯେ କୌଣସି କବି ଓ କବିତା ପାଇଁ ଆବଶ୍ୟକ ।

## (ଚ) ସଠିକତା –

ସଠିକ୍ ବିନ୍ୟାସ କବିତାର ସୌନ୍ଦର୍ଯ୍ୟ ଫୁଟାଇଥାଏ । କବିତାର ସଂଚରଣ ପ୍ରକ୍ରିୟାରେ କବି ସବୁବେଳେ ଚେଷ୍ଟା କରିବା ଉଚିତ୍ କିପରି ପାର୍ଯ୍ୟୋଚିତ ଓ ଉପଯୁକ୍ତ ଭାବ ପରିବେଷଣ ସେ କବିତା ମାଧ୍ୟମରେ କରି ପାରିବ । ଅନେକ ସମୟରେ କବିତାରେ ପରଂପରାର ବିରୋଧାଭାସ ଦେଖାଯାଏ । ବିରୋଧାଭାସ ଯଦି ଯୁକ୍ତିଯୁକ୍ତ ନ ହୁଏ ତାହାଲେ ତା'ର ପରିବେଷଣ ନିରର୍ଥକ ହୋଇଯାଏ । କବିତା ରଚନା ସମୟରେ କବିର କାଳ ଜ୍ଞାନ ଓ କଳା ଜ୍ଞାନ ରହିବା ନିହାତି ଆବଶ୍ୟକ । କବିତାର ପାତ୍ରପାତ୍ରୀମାନେ ଯେଉଁ ସମୟର ଓ ଅଞ୍ଚଳର ସେମାନଙ୍କ ମୁହଁରେ ସେପରି ଶବ୍ଦ ପରିବେଷଣର ଆବଶ୍ୟକତା ପଡ଼ିଥାଏ । ଆଧୁନିକ ନାୟକ ଯେମିତି ଅପଭ୍ରଂଶ ଭାଷାରେ ନିଜକୁ ପ୍ରକାଶ କରିବ ନାହିଁ କୃଷ୍ଣ ମଧ୍ୟ ସେମିତି ବଂଶୀ ବଦଳରେ ମୃଦଙ୍ଗ ବଜାଇବେ ନାହିଁ । ସଠିକତା କବିତାକୁ ବିଜ୍ଞାନସମ୍ମତ ଓ ଯୁକ୍ତିଯୁକ୍ତ କରିଥାଏ । କାଳଜୟୀ କବିତା ରଚନା କରିବାପାଇଁ କବିତାର ଏହା ଏକ ବିଶିଷ୍ଟ ଗୁଣ ।

## (ଛ) ତନ୍ମୟତା—

କବିତା ଭିତରେ ତନ୍ମୟତା ଭରି ରହିଥାଏ । କବିତା ପାଠକକୁ ଆହ୍ଲାଦିତ କରିବା ସହ ତା'ର ଚେତନା ସ୍ତରକୁ ପ୍ରଭାବିତ କରିଥାଏ । ପାଠକ କବିତାକୁ ପଢ଼ି ସାରିବା ପରେ ସେଥିରୁ ଯେଉଁ ଭାବ ରସ ଟିକକ ପାଇଥାଏ, ସେଥିରେ ସେ ତନ୍ମୟ ହୋଇ ପଡ଼ିଥାଏ । କବିତା ଯଦି କବି ହୃଦୟରୁ ସ୍ୱତଃସ୍ଫୂର୍ତ୍ତି ଭାବରେ ସୃଷ୍ଟି ହୋଇଥାଏ ତାହାଲେ ସେଥିରେ ନିଶ୍ଚିତ ପକ୍ଷରେ ଆବେଗଦୀପ୍ତ ଗୁଣମାନ ଖଞ୍ଜି ହୋଇଯାଏ । ଏହି ଆବେଗିକ କଳାର ପରିପ୍ରକାଶ କବିତାରେ ତନ୍ମୟତା ସୃଷ୍ଟି କରିଥାଏ । କବିତାରେ ତନ୍ମୟତା ରହିଲେ ଏହା ଅଧିକ ସମ୍ବେଦନଶୀଳ ଓ ଭାବବାଦୀ ହୋଇପଡ଼େ । ତନ୍ମୟତଃ କବିତାର୍ ଏକ ବିଶିଷ୍ଟ ଗୁଣ ।

କବିତାର ପରିସର ବ୍ୟାପକ । କବିତାର ସ୍ୱରୂପ ଚର୍ଚ୍ଚାରେ ଏହାର ବିଭିନ୍ନ ଦିଗ ଐଶ୍ୱର୍ଯ୍ୟମୟ ହୋଇ ଉଠିଥାଏ । କବିତା ଏକ ସ୍ୱତଃସ୍ଫୂର୍ତ୍ତ ଆବେଗଦୀପ୍ତ କଳା ହୋଇଥିବାରୁ ଏହାର କଳେବରରେ ବିଭିନ୍ନ ବୈଶିଷ୍ଟ୍ୟ ଫୁଟି ଉଠିଥାଏ ।



୧

# ଓଡ଼ିଆ କାବ୍ୟ ପରିଚୟ

କବିତା ଜୀବନର ବ୍ୟାପକତା ପ୍ରକାଶ କରିବାରେ ଅସମର୍ଥ ହୁଏ । ଜୀବନର ବ୍ୟାପକତା କେବଳ ଛନ୍ଦବଦ୍ଧ ଭାବରେ କାବ୍ୟ ଦ୍ୱାରା ପ୍ରକାଶିତ ହୋଇଥାଏ । ପ୍ରାଚୀନ ସମାଜର ବ୍ୟାପକ ଜୀବନ ଚର୍ଚ୍ଚା କାବ୍ୟ ମାଧ୍ୟମରେ ଆରମ୍ଭ ହୋଇଛି । ମହାନ୍ ଭାରତୀୟ ପରମ୍ପରାରେ ବିଭିନ୍ନ ଆର୍ଯ୍ୟ ଋଷିମାନଙ୍କ ଦ୍ୱାରା ବିଭିନ୍ନ ସମୟରେ ସନାତନୀ କାବ୍ୟମାନ ସୃଷ୍ଟି ହୋଇଛି । କାବ୍ୟରେ ସମାଜ-ଜୀବନ ଓ ସାମୂହିକ ବ୍ୟକ୍ତି ଜୀବନର କଳାତ୍ମକ ପରିବେଷଣ ସମ୍ଭବ ହୋଇଥାଏ । ଗୋଟିଏ କାବ୍ୟ ଭିତରେ ଅନେକ କବିତା ଆତ୍ମପ୍ରକାଶ କରି ପାରିବ; ମାତ୍ର ଗୋଟିଏ କବିତା କେବେ କାବ୍ୟ ହୋଇ ପାରିବ ନାହିଁ । କାବ୍ୟର ପରିବେଷଣ କଳାତ୍ମକ ଶୈଳୀରେ କରାଯାଇଥାଏ । ଏପରି ସୃଜନ କର୍ମରେ ପୂରା କଳା (Total art)ର ପ୍ରୟୋଗ କରାଯାଇଥାଏ । ଘଟଣାର ଆରମ୍ଭରୁ ଉପସଂହାର ପର୍ଯ୍ୟନ୍ତ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଏଥିରେ ସ୍ଥାନ ପାଇଥାଏ । ପ୍ରାଚ୍ୟ କାବ୍ୟ ରଚନା ପାଇଁ ବୈୟାକରଣିକମାନେ କେତେକ ନୀତି ନିର୍ଦ୍ଧାରଣ କରିଛନ୍ତି । ସେହି କାବ୍ୟ ନିୟମ ପରିପ୍ରେକ୍ଷୀରେ ମହାକାବ୍ୟମାନ ରଚନା କରା ଯାଇଥାଏ । ପ୍ରାଚ୍ୟ କାବ୍ୟ ଗଠନ ନିୟମ ପରବର୍ତ୍ତୀ ସମୟରେ ଯେ କୌଣସି ପ୍ରାଦେଶିକ ଭାଷାର କାବ୍ୟ ସୃଜନକୁ ପ୍ରଭାବିତ କରିଛି । ମହାକାବ୍ୟର ସଂଜ୍ଞା ଓ ନିୟମ ନିରୂପଣ ବିଭିନ୍ନ ବ୍ୟାଖ୍ୟାକାରମାନେ ଭିନ୍ନ ଭିନ୍ନ ମତରେ ପରିବେଷଣ କରିଛନ୍ତି । ନିମ୍ନରେ ମହାକାବ୍ୟ ଗଠନ ସମ୍ପର୍କରେ ଆଲୋଚନା କରାଗଲା ।

## ମହାକାବ୍ୟ ଗଠନ ପ୍ରକ୍ରିୟା—

ମହାକାବ୍ୟର ଗଠନ ଓ ଏହାର ପରିପାଟୀ ସମ୍ପର୍କରେ ବିଭିନ୍ନ ବ୍ୟାକରଣିକମାନେ ଭିନ୍ନ ଭିନ୍ନ ମତ ପରିବେଷଣ କରିଥାଆନ୍ତି । ତଥାପି ମହାକାବ୍ୟ ଗଠନରେ କେତେକ ସାଧାରଣ ସ୍ୱୀକୃତ ନିୟମକୁ ଗ୍ରହଣ କରାଯାଇଥାଏ ।

ଆଚାର୍ଯ୍ୟ ଦଣ୍ଡୀ ମହାକାବ୍ୟ ଗଠନ ସମ୍ପର୍କରେ କହିଛନ୍ତି—

"ସର୍ଗବନ୍ଧଂ ମହାକାବ୍ୟମୁଚ୍ୟତେ ତସ୍ୟ ଲକ୍ଷଣଂ
ଆଶୀର୍ନମସ୍କ୍ରିୟା ବସ୍ତୁ ନିର୍ଦ୍ଦେଶୋ ବାପି ତନ୍ମୁଖଂ
ଇତିହାସ କଥୋଦ୍ଭୂତମିତ ରହିବା ସଦାଶ୍ରୟଂ
ଚତୁର୍ବର୍ଗ ଫଲୋପେତଂ ଚତୁରୋଦାତ୍ତ ନାୟକମ୍ ।"

ବିଶ୍ୱନାଥ କବିରାଜ ନିଜର ମତ ଦେଇ କହନ୍ତି—

"ଆଦୌ ନମସ୍କ୍ରିୟାର୍ଶୀର୍ବା ବସ୍ତୁ ନିର୍ଦ୍ଦେଶ ଏବବା
କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଞ୍ଚ ଗୁଣ କୀର୍ତ୍ତିନମ୍
× × ×
ସନ୍ଧ୍ୟା ସୂର୍ଯ୍ୟେନ୍ଦୁ ରଜନୀ ପ୍ରଦୋଷ ଧବାନ୍ତବାସରାଃ
ପ୍ରାତଃ ମଧ୍ୟାହ୍ନେ ମୃଗୟା ଶୈଳର୍ତ୍ତୁବନ ସାଗରାଃ
ସମ୍ଭୋଗ ବିପ୍ରଲମ୍ଭୌ ଚ ମୁନି ସ୍ୱର୍ଗ ପୁରାଧରାଃ
ରଣ ପ୍ରୟାଣେ ପଯ୍ୟମ୍ ମନ୍ତ୍ର ପୁତ୍ରୋଦୟା ଦୟଃ ।"

ଉପରୋକ୍ତ କାବ୍ୟ ରଚନା ପଦ୍ଧତିରୁ ମହାକାବ୍ୟ ରଚନାର କେତେକ ସାଧାରଣ ନିୟମ ଓ ପରମ୍ପରା ଦୃଷ୍ଟିପାତ ହୋଇଥାଏ । ପ୍ରାଚ୍ୟ କାବ୍ୟମାନଙ୍କରେ ଏହି ପରମ୍ପରାର ବ୍ୟବହାର ଦେଖା ଯାଇଥାଏ ।

(୧) କାବ୍ୟ ଆରମ୍ଭରେ କବିତାର ଇଷ୍ଟ ଦେବତାଙ୍କ ସ୍ମରଣ କରିଥାଏ । କାବ୍ୟ ଆରମ୍ଭରୁ ଶେଷଯାଏ ତା'ର କାବ୍ୟକୁ ସୁରୁଖୁରୁରେ ଶେଷ କରିବାପାଇଁ ଭଗବାନଙ୍କ ନିକଟରେ ଗୁହାରି କରିଥାଏ ।

"କର ସାଧୁଜନେ ମନକୁ ଏକ
କର ଧୀରେ ଧ୍ୟାନ ନୀଳାଚଳ ନାୟକ ।"
(ରସକଲ୍ଲୋଳ—ଦୀନକୃଷ୍ଣ ଦାସ)

"ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।"
(ବିଦଗ୍ଧ ଚିନ୍ତାମଣି—ଅଭିମନ୍ୟୁ ସାମନ୍ତସିଂହାର)

ଭଗବାନଙ୍କର ସ୍ତୁତି ଏବଂ ତାଙ୍କର ଲୀଳା ବର୍ଣ୍ଣନାକୁ ଆଭିମୁଖ୍ୟ ରଖି କବି କାବ୍ୟ ଆରମ୍ଭରେ ଭଗବାନଙ୍କୁ ସ୍ମରଣ କରିଥାଏ ।

(୨) ବସ୍ତୁ ନିର୍ଦ୍ଦେଶ କରି କବି କ'ଣ ତା' କାବ୍ୟ ଭିତରେ ପ୍ରକାଶ କରିବାକୁ ଯାଉଛି ସେ ସମ୍ପର୍କରେ ପାଠକକୁ ଅବଗତ କରାଇଥାଏ ।

(୩) କବି ବର୍ଣ୍ଣନା କରୁଥିବା ଘଟଣା ଇତିହାସ ସମ୍ମତ କିମ୍ବା ପୁରାଣର କୌଣସି କାହାଣୀ ଉପରେ ଆଧାରିତ ହେବା ଆବଶ୍ୟକ । ସାଧାରଣ ଘଟଣାକୁ ନେଇ ମହାକାବ୍ୟର ପରିକଳ୍ପନା କରାଯାଇ ପାରିବ ନାହିଁ ।

(୪) ମହାକାବ୍ୟରେ ନବ ରସର ଚର୍ଚ୍ଚା କରାଯିବ । ଏଥିରେ ଶୃଙ୍ଗାର ରସ, ସମ୍ଭୋଗ ଓ ବିପ୍ରଲମ୍ଭ ଅବସ୍ଥା ଦେଇ ପ୍ରକାଶିତ ହେବ ।

(୫) ମହାକାବ୍ୟର ନାୟକ ଜଣେ ଉତ୍ତମ ପୁରୁଷ ହେବା ଆବଶ୍ୟକ । ଏଥିପାଇଁ ରାଜା, ରାଜାପୁଅ, ଈଶ୍ୱରଙ୍କୁ ଗ୍ରହଣ କରାଯାଇଥାଏ । ଉଚ୍ଚ ବଂଶର କ୍ଷତ୍ରିୟ ପୁରୁଷ, ଧୀର ଦାନ୍ତ, ବିନୟୀ, ବୀର ମହାକାବ୍ୟର ନାୟକ ପାଇଁ ଯୋଗ୍ୟ ।

(୬) ମହାକାବ୍ୟର ନାୟିକା ଉଚ୍ଚ ବଂଶଜ, ସୁନ୍ଦରୀ, ମିଷ୍ଟଭାଷୀ ହେବା ଆବଶ୍ୟକ । ଏଥିପାଇଁ ରାଜକୁମାରୀ ଓ ଈଶ୍ୱରୀମାନଙ୍କୁ ଗ୍ରହଣ କରା ଯାଇଥାଏ ।

(୭) ମହାକାବ୍ୟରେ ସକାଳ, ସନ୍ଧ୍ୟା, ରାତ୍ରୀ, ମୃଗୟା, ଜଳକ୍ରୀଡ଼ା, ବନ, ଯୁଦ୍ଧ, ରମଣର ବର୍ଣ୍ଣନା ରହିବ ।

(୮) ମହାକାବ୍ୟର ସର୍ଗ ଆଠରୁ (ସର୍ଗ ଅଷ୍ଟାଧିକାଇହ) କମ୍ ହେବନାହିଁ । ଆବଶ୍ୟକ ହେଲେ ବିଭିନ୍ନ ସର୍ଗର ଭିନ୍ନ ଭିନ୍ନ ନାମକରଣ କରାଯାଇ ପାରିବ ।

(୯) ମହାକାବ୍ୟ ପାଠକଲେ ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁଃବର୍ଗ ଫଳ ପ୍ରାପ୍ତି ହୋଇଥାଏ ।

(୧୦) ମହାକାବ୍ୟର ନାମକରଣ ନାୟକ, ନାୟିକା ବା ମୁଖ୍ୟ ଘଟଣା ଉପରେ ଆଧାରିତ ହେବା ଆବଶ୍ୟକ ।

ଉପରୋକ୍ତ ଲକ୍ଷଣଗୁଡ଼ିକ ଯେ କୌଣସି ମହାକାବ୍ୟ ରଚନା ପାଇଁ ଆବଶ୍ୟକ । ଓଡ଼ିଆ ମହାକାବ୍ୟ ଓ କାବ୍ୟ ରଚନା ମୂଳରେ ଏହି ପ୍ରାଚ୍ୟ ମହାକାବ୍ୟର ଲକ୍ଷଣ-ମାନ ଦେଖା ଯାଇଥାଏ । ଆମ ଓଡ଼ିଆ କବିମାନେ ସଂସ୍କୃତ କାବ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ ସେହି ନିୟମରେ କାବ୍ୟ ସୃଷ୍ଟି କରିଛନ୍ତି । ଆମ କାବ୍ୟ ଯୁଗ (୧୬୦୦-୧୮୫୦) ଏହି କାବ୍ୟ କଳାରେ ବୁଦ୍ଧିମନ୍ତ ହୋଇଛି ।

ପାଶ୍ଚାତ୍ୟ ସାହିତ୍ୟରେ ମହାକାବ୍ୟ ପ୍ରାଚ୍ୟ ମହାକାବ୍ୟ ପରି ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁ ଓ ଆଦର୍ଶ ଚରିତ୍ର ଉପରେ ନିର୍ଭର କରିଥାଏ । ପାଶ୍ଚାତ୍ୟ କାବ୍ୟ

ବସ୍ତୋଗାନ୍ତକ । ସେଥିପାଇଁ ଏହି କାବ୍ୟ ମଧ୍ୟରେ ଯୁଦ୍ଧ, ସଂଘର୍ଷ, ରକ୍ତପାତର ବର୍ଣ୍ଣନା ଅଧିକ ମାତ୍ରାରେ ଦେଖାଯାଏ । ପାଶ୍ଚାତ୍ୟ ମହାକାବ୍ୟ ଇତିହାସ ଓ ପୁରାଣର ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀକୁ କାହାଣୀ ରୂପେ ଗ୍ରହଣ କରି ପରିପୁଷ୍ଟ ହୋଇଥାଏ । ପାଶ୍ଚାତ୍ୟ କାବ୍ୟ ସଂପର୍କରେ ସମାଲୋଚକମାନେ କହିଛନ୍ତି—"**Epic, a long narrative poem in which the characters and the action are of heroic proportions.**" ମହାକାବ୍ୟକୁ ଏକ ଦୀର୍ଘ ବର୍ଣ୍ଣନାଧର୍ମୀ କବିତା ଭାବରେ ଗ୍ରହଣ କରି ବୀରତ୍ୱପୂର୍ଣ୍ଣ ଚରିତମାନଙ୍କର ଅଂଶ ଗ୍ରହଣକୁ ପାଶ୍ଚାତ୍ୟ କବିମାନେ ମହାକାବ୍ୟର ପରିଧି ଭିତରେ ଗ୍ରହଣ କରି ଥାଆନ୍ତି । ଅନେକ ବୀର ଓ ବ୍ୟକ୍ତିତ୍ୱବନ୍ତ ଚରିତ୍ର ଦ୍ୱାରା ପାଶ୍ଚାତ୍ୟ ମହାକାବ୍ୟ ରୂଢ଼ିମନ୍ତ ହୋଇଛି । ହୋମରଙ୍କ 'ଇଲିୟାଡ଼' ଓ 'ଅଡ଼େସୀ' ଭର୍ଜିଲଙ୍କ 'ଏନୀଡ଼' ଆଦି ମହାକାବ୍ୟ ଏ ଧାରଣାରେ ପରିପୁଷ୍ଟ ହୋଇଛନ୍ତି । ପାଶ୍ଚାତ୍ୟ ମହାକାବ୍ୟମାନଙ୍କରେ ପ୍ରାଚ୍ୟ କାବ୍ୟର ଧାରଣାକୁ କେତେକାଂଶରେ ଗ୍ରହଣ କରି ନିଆ ହୋଇଥାଏ । ଭାରତୀୟ ପ୍ରାଦେଶିକ ଭାଷାର କାବ୍ୟ ସାହିତ୍ୟକୁ ପ୍ରାଚ୍ୟ କାବ୍ୟ ତତ୍ତ୍ୱର ଅବଦାନ ଅଧିକ ପ୍ରଣିଧାନଯୋଗ୍ୟ ।

ଓଡ଼ିଆ କାବ୍ୟ ରଚନାରେ କବିମାନେ ସଂସ୍କୃତ କାବ୍ୟ ଚର୍ଚ୍ଚାର ଆଭିମୁଖ୍ୟକୁ ସମ୍ପୂର୍ଣ୍ଣ ରୂପେ ଗ୍ରହଣ କରିଛନ୍ତି । କାବ୍ୟରେ ଅର୍ଥ ସୌନ୍ଦର୍ଯ୍ୟ ପ୍ରକାଶ କରି କବିମାନେ ନିଜର ବିପୁଳ ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । ଇଷ୍ଟ ସ୍ମରଣ, ସାଧୁ ସ୍ତୁତି, ଖଳନିନ୍ଦା ଦେଇ କବିମାନେ ବିଷୟ ପ୍ରକାଶ କରିଛନ୍ତି । ରସାତ୍ମକ ବାକ୍ୟ ବିନ୍ୟାସ ଓ ବାକ୍ୟର ଏକାଧିକ ଅର୍ଥାନ୍ତରକୁ କବିମାନେ ଗ୍ରହଣ କରିଛନ୍ତି । 'ଲଳିତ ଲୋଚନା' କାବ୍ୟରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତାଙ୍କ କାବ୍ୟ କଳାର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇ କହିଛନ୍ତି—

"ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ
ଅଳଂକାରେ ଯୁକ୍ତ ବନ୍ଧ ଭକ୍ତି ଯେଣୁ ଥିବ ।
ରସରୀତି କିମ୍ବା ଗୁପ୍ତି ଉପମା ନିଧିବ
ଆଶୟରେ କେଉଁଠାରେ ଧ୍ୱନି ପ୍ରକାଶିବ ।
ଦର୍ଶନେ ଶ୍ରବଣେ ନେହ କର୍ଷି ମାନସରେ
ସାରସ ପରାୟେ ବାସ କରିବ ସତ୍ୱରେ ।"

ଓଡ଼ିଆ କାବ୍ୟ ପ୍ରାଚ୍ୟ କାବ୍ୟ ଅନୁବନ୍ଧରେ ସୃଷ୍ଟି ହେଲେହେଁ ଏଥିରେ କେତେକ ମୌଳିକତା ଦେଖା ଦେଇଥାଏ । ନାୟକ ନାୟିକାର ପ୍ରେମ-ହୃଦୟ ବିନିମୟ, ଚିତ୍ରପଟ ଦର୍ଶନ, ନାମ ଶ୍ରବଣ, ମାନ, ବିରହ, ପୂର୍ବ ରାଗ, ପ୍ରବାସ ଭିତରେ

ଅନେକ ସମୟରେ ଓଡ଼ିଆ କାବ୍ୟ ରଚନାଶୈଳୀ ଏକ ସ୍ୱତନ୍ତ୍ର କାବ୍ୟ ନିୟମ ସୃଷ୍ଟି କରିଥାଏ । ନାୟକ ନାୟିକାର ପୂର୍ବଜନ୍ମ ବର୍ଣ୍ଣନା, ଅନେକ ଲୋକଗପ ଓ ଲୋକ ବିଶ୍ୱାସର ସଂଯୋଜନା ଓଡ଼ିଆ କାବ୍ୟକୁ ଗୁରୁତ୍ୱପୂର୍ଣ୍ଣ ଭାବରେ ଉପସ୍ଥାପିତ କରିଛି । ଶୃଙ୍ଗାର, କରୁଣ, ବୀର ଓ ଭକ୍ତି ରସର ପ୍ରୟୋଗରେ ଓଡ଼ିଆ କାବ୍ୟଗୁଡ଼ିକ ଐଶ୍ୱର୍ଯ୍ୟମଣ୍ଡିତ ହୋଇ ଫୁଟି ଉଠିଛନ୍ତି । ପ୍ରାଚ୍ୟ କାବ୍ୟ ପଦ୍ଧତିକୁ ପରିତ୍ୟାଗ କରି ମଧ୍ୟ ଓଡ଼ିଆ କାବ୍ୟର ସ୍ୱତନ୍ତ୍ର ପରିଚୟ ରହିଛି । ଅନେକ ପ୍ରତିଭାଧର ଓ ପାଣ୍ଡିତ୍ୟପୂର୍ଣ୍ଣ ସ୍ରଷ୍ଟାଙ୍କ ମୌଳିକ ସୃଜନରେ ଓଡ଼ିଆ କାବ୍ୟଯୁଗ ବୃଦ୍ଧିମନ୍ତ ହୋଇଛି ।

## ମହାକାବ୍ୟର ପ୍ରକାରଭେଦ—

ମହାକାବ୍ୟ ପରିସର ଓ ପ୍ରବୃତ୍ତି ଦୃଷ୍ଟିରୁ ବିଭିନ୍ନ ଭାବରେ ସୃଷ୍ଟି ହୋଇଥାଏ । ମହାକାବ୍ୟ ଜୀବନର ମହାଭାଷ୍ୟ । ଜୀବନର ବିବିଧ ଦିଗକୁ ଏଥିରେ ଛୁଇଁବାପାଇଁ ବିବିଧ ପ୍ରୟାସ କରାଯାଇଥାଏ । ବିଭିନ୍ନ ସମାଲୋଚକମାନେ ମହାକାବ୍ୟକୁ ବିଭିନ୍ନ ଭାବରେ ବର୍ଣ୍ଣନା କରିଛନ୍ତି । ଭର୍ଜିଲ୍ ଓ ହୋମୋର୍‌ଙ୍କ ସମୟରେ ମହାକାବ୍ୟର ଯେଉଁ କଳାପାଟବତା ଥିଲା ପରବର୍ତ୍ତୀ ସମୟରେ ତାହା ପରିବର୍ତ୍ତିତ ହୋଇଛି । ମହାକାବ୍ୟମାନଙ୍କରେ ସଙ୍ଗୀତ, କଳ୍ପନା, ଇତିହାସ, ପୁରାଣ, ଈଶ୍ୱର, ହାସ୍ୟ ରସର ସମନ୍ୱୟ ଘଟିଛି । ପାଶ୍ଚାତ୍ୟ ମହାକାବ୍ୟ ବିୟୋଗାନ୍ତକ ହେଉଥିବାବେଳେ ପ୍ରାଚ୍ୟ ମହାକାବ୍ୟ ମିଳନାନ୍ତକ ବର୍ଣ୍ଣନାରେ ସମାପ୍ତ ହେଉଛି । ମହାକାବ୍ୟ ବିଷୟବସ୍ତୁ ଦୃଷ୍ଟିରୁ ଅଧିକ ପରିପୁଷ୍ଟ ହେବା ସହ ଏଥିରେ ବିବିଧତା ପ୍ରକାଶ ପାଇଛି । ଗବେଷକ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ମହାକାବ୍ୟ (ଓଡ଼ିଆ)କୁ ବିଭିନ୍ନ ଭାଗରେ ବିଭକ୍ତ କରିଛନ୍ତି * । ଏହି ବିଭାଗୀକରଣ ଭିତରେ ଓଡ଼ିଆ କାବ୍ୟ ଯୁଗର ବିଶିଷ୍ଟ ପୌରାଣିକ କାବ୍ୟ, କାଳ୍ପନିକ କାବ୍ୟ ଓ ଚରିତ ପ୍ରଧାନ କାବ୍ୟଗୁଡ଼ିକୁ ଆଲୋଚନା କରିଛନ୍ତି । ଓଡ଼ିଆ ଭାଷାରେ ଯେତେ କାବ୍ୟ ରଚନା କରାଯାଇଛି ସେହିବୁ ପ୍ରାୟ ରୀତି ଯୁଗରେ । ରୀତି ଯୁଗରେ କବିର ଶବ୍ଦ ପାଣ୍ଡିତ୍ୟ ସହ ସମନ୍ୱୟ ରକ୍ଷି ଶବ୍ଦ ଓ ଅର୍ଥ ଗୌରବରେ ମଣ୍ଡିତ ଅନେକ କାବ୍ୟ ସୃଷ୍ଟି ହୋଇଯାଇଛି । ପୁରାଣକୁ ନେଇ କାଂଚିଟ୍ କାବ୍ୟ ରଚନା କରିବାର ପରଂପରା ବଦଳରେ କାଳ୍ପନିକ ବିଷୟକୁ ଗ୍ରହଣ କରି ଆବେଗପୂର୍ଣ୍ଣ କାବ୍ୟ ରଚନା କଳା ଏ ସମୟରେ ପ୍ରକାଶ ପାଇଛି । ସଂସ୍କୃତ କାବ୍ୟ ମହାକାବ୍ୟ ଆଦର୍ଶରେ କାବ୍ୟ ରଚନା ପ୍ରତି ଓଡ଼ିଶାର ପ୍ରାଚୀନ ଓ ମଧ୍ୟ-କାଳୀନ କବିଗଣ ଅଧିକ ଅନୁରକ୍ତ ଥିଲେ । ଓଡ଼ିଆ କାବ୍ୟ ସମୀକ୍ଷାରୁ ଜଣାଯାଏ ଷୋଡ଼ଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ମଧ୍ୟରେ ୧୬୯ଟି କାବ୍ୟ ରଚିତ ହୋଇଅଛି ।"

(ଓଡ଼ିଆ କାବ୍ୟ କୌଶଳ—ସୁଦର୍ଶନ ଆଚାର୍ଯ୍ୟ)

# ଓଡ଼ିଆ କାବ୍ୟର ବର୍ଗୀକରଣ

ସୁଦର୍ଶନ ଆଚାର୍ଯ୍ୟଙ୍କ 'ଓଡ଼ିଆ କାବ୍ୟ କୌଶଳ' ପୁସ୍ତକ, ପୃ-୧୪୦ ସୌଜନ୍ୟରୁ

(କ) ଓଡ଼ିଆ କାବ୍ୟ (ଆଙ୍ଗିକ ଦୃଷ୍ଟିରୁ)

- ପୌରାଣିକ
  - ପୁରାଣ
  - ପୁରାଣଭିତ୍ତିକ
    - ରାମ କାବ୍ୟ
      - ସମ୍ପୂର୍ଣ୍ଣ ରାମାୟଣଭିତ୍ତିକ
      - ରାମାୟଣର ଏକାଂଶଭିତ୍ତିକ
    - କୃଷ୍ଣ କାବ୍ୟ
      - ବ୍ରଜଲୀଳାମୂଳକ
        - ଗୁରୁ
        - ଲଘୁ
      - ମଥୁରାଲୀଳାମୂଳକ
      - ଦ୍ୱାରକାଲୀଳାମୂଳକ
    - ଆଖ୍ୟାନ କାବ୍ୟ
      - ଗୁରୁ
      - ଲଘୁ
- କାଳ୍ପନିକ
  - ରାଜକୁମାର ରାଜକୁମାରୀ ପ୍ରଧାନ
    - ଗୁରୁ
    - ଲଘୁ
  - ସାଧାରଣ ନାୟକ ନାୟିକା ପ୍ରଧାନ
- ଐତିହାସିକ
  - ଇତିହାସ ଭିତ୍ତିକ
  - କିମ୍ବଦନ୍ତୀ ମୂଳକ
- ଅନୂଦିତ
  - ଅନୁସରଣ
  - ଅନୁବାଦ

(ଖ) ଓଡ଼ିଆ କାବ୍ୟ (ଆଙ୍ଗିକ ଦୃଷ୍ଟିରୁ)




ଏହି ଯୁଗରେ ଯେଉଁସବୁ କାବ୍ୟ ପ୍ରକାଶ ପାଇଥିଲା ତାହାକୁ ଦୃଷ୍ଟିରେ ରଖି ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ଏପରି ବର୍ଗୀକରଣ କରିଛନ୍ତି । କାବ୍ୟର ଆଙ୍ଗିକ ଓ ଆତ୍ମିକ ତତ୍ତ୍ୱକୁ ଗ୍ରହଣ କରି ଏହା ସର୍ବୋତ୍କୃଷ୍ଟ ପ୍ରୟୋଜନୀୟ ପରିଭାଷା ରୂପେ ଗୃହୀତ ହୁଏ । କାବ୍ୟ ଯୁଗରେ ଅନେକ ରାଧାକୃଷ୍ଣ, ରାମସୀତା, କୃଷ୍ଣଗୋପୀ ଏବଂ କାଳ୍ପନିକ କାବ୍ୟମାନ ସୃଷ୍ଟି କରାଯାଇଛି । କାବ୍ୟ କଳାର ପ୍ରୟୋଗ କରି କବି ଉପେନ୍ଦ୍ର ଚଉକାବ୍ୟ ପରି ଅଲଙ୍କାରିକ କାବ୍ୟ ମଧ୍ୟ ସୃଷ୍ଟି କରିଛନ୍ତି । ସଂସ୍କୃତ କାବ୍ୟର ଶୈଳୀ, ରସଚର୍ଯ୍ୟା ଓ କଳା ପ୍ରକରଣକୁ ଗ୍ରହଣ କରି ଓଡ଼ିଆ କାବ୍ୟକଳା ଋଦ୍ଧିମନ୍ତ ହୋଇଛି । *



* ବର୍ଗୀକରଣ କରାଯାଇଥିବା ବିଭିନ୍ନ କାବ୍ୟ ସମ୍ପର୍କରେ କାବ୍ୟ କବିତାର ବିକାଶ ଧାରା ପରିଚ୍ଛେଦରେ ଆଲୋଚନା କରାଯାଇଛି ।

୨

# ଗୀତିକାବ୍ୟ କ'ଣ ଓ କାହିଁକି :

ସଙ୍ଗୀତ କାବ୍ୟର ଆତ୍ମା । ଯେଉଁ କାବ୍ୟାଂଶରେ ସଙ୍ଗୀତ ଓ ଛନ୍ଦ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଆନ୍ତି ସେପରି କବିତା ଗୀତିମୟ ହୋଇଥାଏ । ଏପରି ଗୀତିମୟତାକୁ ହୃଦୟରେ ବହନ କରୁଥିବା କାବ୍ୟ କବିତାକୁ ଗୀତି କବିତା କୁହାଯାଏ । ଗୀତି କବିତା ପାଶ୍ଚାତ୍ୟ କବିତାର ଆଧୁନିକତମ ଆବିଷ୍କାର । ଗୀତିକାବ୍ୟ ପାଇଁ ଇଂରାଜୀ ଲିରିକ୍ Lyric ଶବ୍ଦ ବ୍ୟବହାର କରାଯାଏ । ଏହି ଲିରିକ୍ ଶବ୍ଦ ଲାଟିନ୍ 'Lyre' ଶବ୍ଦରୁ ଆସିଅଛି । Lyre ହେଉଛି ଏପରି ଏକ ବାଦ୍ୟଯନ୍ତ୍ର ଯାହା ବାଦନ କରି ଗ୍ରୀକ୍ ଦେଶରେ କବିମାନେ ଗୀତ ଗାନ କରୁଥିଲେ । ଏହି ଯନ୍ତ୍ରକୁ Lyre କୁହାଯାଉଥିବାରୁ ଏହି ଯନ୍ତ୍ରରୁ ଉତ୍ପନ୍ନ ସଙ୍ଗୀତକୁ Lyric କୁହାଗଲା । ଯନ୍ତ୍ର ସଙ୍ଗୀତ ପରିବେଷଣ ମାଧ୍ୟମରେ ଯେଉଁ ଗୀତ ଗାନ କରାଯାଉଥିଲା ସେସବୁକୁ ପାଶ୍ଚାତ୍ୟ ଦେଶରେ ଗୀତିକବିତା ଆଖ୍ୟା ଦିଆଯାଉଥିଲା । ଏହି ଗୀତି କବିତା ବିଭିନ୍ନ ସମୟରେ ବିଭିନ୍ନ ଉଦ୍ଦେଶ୍ୟ ରଖି କବିମାନଙ୍କ ଦ୍ୱାରା ସୃଷ୍ଟି କରାଯାଉଥିଲା । ଗୀତି କବିତାର ସୃଷ୍ଟିକର୍ତ୍ତା ନିଜେ ଗାୟକ ଥିଲେ । ନିଜେ ନିଜ ଗୀତକୁ ଗାଇ ପାରୁଥିବାରୁ ଏଥିରେ ସ୍ୱତଃସ୍ଫୂର୍ତ୍ତିତା ଓ ଗୀତିମୟତା ଅଧିକ ଭାବରେ ଆତ୍ମପ୍ରକାଶ କରୁଥିଲା । ବିଶେଷ ଉତ୍ସବମାନଙ୍କରେ ମଧ୍ୟ ଚାରଣ କବିମାନେ ଗୀତ ଗାନ କରୁଥିଲେ । ବସ୍ତୁତଃ ବିଭିନ୍ନ ଉଦ୍ଦେଶ୍ୟ ରଖି ଗୀତ ଗାନ କରାଯାଉଥିବାରୁ ଗୀତି କବିତାରେ ବିଭିନ୍ନ ବିଭାଗ କାଳକ୍ରମେ ସୃଷ୍ଟି ହୋଇଛି । ଯେଉଁ କବିତା ବା ପଦ୍ୟାଂଶ ଗାନଧର୍ମୀ ତାକୁ ଗୀତି କବିତା ଆଖ୍ୟା ଦିଆଯାଇଛି । ଗୀତି କବିତା କବି ହୃଦୟର ସଙ୍ଗୀତ । ସ୍ୱତଃସ୍ଫୂର୍ତ୍ତି ଉଚ୍ଚାରଣ ମାଧ୍ୟମରେ ଗୀତି କବିତା ଗାନ କରାଯାଉ ଥିବାରୁ ଏହାର ଆବେଦନ ଅଧିକ ।

R.J. Ressଙ୍କ 'English Literature' ଗ୍ରନ୍ଥରେ ଗୀତି କବିତା ସମ୍ପର୍କରେ କୁହାଯାଉଛି—"In ordinary language the word often means a Lyrics the sort of song which was sung in encient Greece to the music of Lyre and which is sung in the modern world to the music of Guitar." ଗୀତି-କବିତା ଆଜି ସଂକ୍ଷିପ୍ତ ପରିଧି ଭିତରେ ବନ୍ଦୀ ନୁହେଁ । କେବଳ ବୀଣା ବା ଗୀଟାର ନୁହେଁ ଆଜି ବିଭିନ୍ନ ପ୍ରକାର ବାଦ୍ୟ ବଜାଇ ସଙ୍ଗୀତ ସୃଷ୍ଟି କରିହେଉଛି । ଗୀତି-କବିତା ପାଇଁ ଏହି ବ୍ୟାପକ ପରିସର ଉନ୍ମୁକ୍ତ ହୋଇଯାଇଛି । ଗୀତିକବିତାର ସଂକ୍ରମଣ ଶ୍ରୋତା ବା ପାଠକ ହୃଦୟକୁ ସଙ୍ଗୀତ ମାଧ୍ୟମରେ ସମ୍ଭବ ହୋଇଥାଏ । ଯେଉଁ କବିତାରେ ସଙ୍ଗୀତ ନ ଥାଏ ତାହା ଗୀତିକବିତାର ମାନ୍ୟତା ପାଏନାହିଁ । ଗୀତିକବିତାକୁ ଗାନ କରାଯାଇଥାଏ । ବୋଧହୁଏ ଗାନ ମଧ୍ୟରେ ଗୀତିକବିତାର ଗୌରବ ଫୁଟି ଉଠିଥାଏ । କେତେକ ସମାଲୋଚକ ପରୀକ୍ଷାଧର୍ମୀ କବିତାକୁ ଗୀତି-କବିତାର ମାନ୍ୟତା ଦେଇଥାଆନ୍ତି । ପରୀକ୍ଷାଧର୍ମୀ କବିତା କୌଣସି ଦୃଷ୍ଟିରୁ ଗାନ-ଧର୍ମୀ ନୁହେଁ । ଆଧୁନିକ କବିତାରେ କେତୋଟି ସନେଟ୍ ବା ସ୍ୱାଭଗଣତି କବିତାକୁ ଛାଡ଼ିଦେଲେ ଅନ୍ୟ କୌଣସି କବିତା ଗାନ ପାଇଁ ଯୋଗ୍ୟ ହେବେନାହିଁ । ପରୀକ୍ଷାଧର୍ମୀ କବିତାରେ ଆବୃତ୍ତିଧର୍ମୀତା ଥାଏ । କବିତା ଆବୃତ୍ତି ଭାବ ସୃଷ୍ଟି କରିଥାଏ, ସଙ୍ଗୀତ ସୃଷ୍ଟି କରେନାହିଁ । କୌଣସି ବାଦ୍ୟଯନ୍ତ୍ର ସାହାଯ୍ୟରେ ଆଧୁନିକ କବିତାକୁ ଆବୃତ୍ତି କରି ଯାଏନାହିଁ । ଆଧୁନିକ କବିତାକୁ ଗୀତିକବିତା କହିବା କେତେକ ପରୀକ୍ଷାଧର୍ମୀ କବିତାରେ ଗୀତିକବିତାର ବିଭିନ୍ନ ବିଭାଗ ପରିଦୃଷ୍ଟ ହୋଇ-ଥାଆନ୍ତି ।

ଗୀତି କବିତାରେ ବିଭିନ୍ନ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ଅନ୍ୟାନ୍ୟ କବିତାଠାରୁ ଗୀତିକବିତା ସ୍ୱତନ୍ତ୍ର । ଏହି କବିତାରେ ହୃଦୟ ଆବେଦନ ଓ ସୃଜନ-ଶୀଳତାର ସମନ୍ୱୟ ଅଧିକ ଭାବରେ ଦେଖାଯାଉ ଥିବାରୁ ଗୀତିକବିତା ଅନ୍ୟ କବିତାରୁ ଅଧିକ ଐଶ୍ୱର୍ଯ୍ୟମୟ । ନିମ୍ନରେ ଗୀତିକବିତାର କେତୋଟି ବିଶିଷ୍ଟ ଗୁଣ ଆଲୋଚନା କରାଗଲା ।

## (କ) ଗୀତିମୟତା—

ଗୀତ ଗୀତିକବିତାର ଆତ୍ମା । ଗୀତିକବିତା ଅନ୍ୟ କବିତାଠାରୁ ସ୍ୱତନ୍ତ୍ର ହେବାର କାରଣ ହେଲା ଏହାର ଗୀତିଭାଗ । ଅନ୍ୟ ଯେ କୌଣସି କବିତା ଲେଖିଲାବେଳେ କବିକୁ ସତର୍କ ହେବାକୁ ପଡ଼େନାହିଁ । କିନ୍ତୁ ସେ ଯେତେବେଳେ ଗୀତିକବିତା ରଚନା କରେ ସେତେବେଳେ ନିଜକୁ ଦୁର୍ବଳ ଶବ୍ଦ ପ୍ରୟୋଗ ଓ

ଅବାଞ୍ଛିତ ଶବ୍ଦ ପ୍ରୟୋଗଠାରୁ ଦୂରରେ ରଖେ । ସେ କବିତାର ଶବ୍ଦ ଓ ନରମ ଶବ୍ଦ ବ୍ୟବହାର କରିଥାଏ । ଯେ କୌଣସି କଥାକୁ ସଙ୍ଗୀତ ମାଧ୍ୟମରେ ପରିବେଷଣ କଲେ ତାହା ଅଧିକ ଫଳବତୀ ହୋଇଥାଏ । ପ୍ରାଚୀନ ଗୀତି କବିତାକୁ ବୀଣା ସାହାଯ୍ୟରେ ଗାନ କରାଯାଉଥିଲା । ଯେତେବେଳେ କବିତା ଗୀତ ହୋଇଯାଏ ତାହା ଯୁଗ ଯୁଗକୁ ଅମର ହୋଇଯାଏ । ଏହି ଅମରତ୍ୱ ଭାବ ଗୀତି କବିତାରେ ଯେଉଁ ବିଶେଷତ୍ୱ ଆଣିଥାଏ ତାହା କେବଳ ଏହାର ସଙ୍ଗୀତମୟ ଶରୀର ଯୋଗୁଁ ସମ୍ଭବ ହୋଇଥାଏ । ଗୀତିମୟତାକୁ ପରିତ୍ୟାଗ କରି ଗୀତିକବିତା କଳ୍ପନା କରାଯାଇ ପାରିବ ନାହିଁ । ଗୀତିକବିତା ପାଇଁ ଗୀତ ଓ ସଙ୍ଗୀତମୟ ଶରୀର ନିହାତି ଆବଶ୍ୟକ ।

## (ଖ) ସଂକ୍ଷିପ୍ତତା—

ଗୀତିକବିତା କାବ୍ୟ ନୁହେଁ । ଏହା ସବୁବେଳେ ସଂକ୍ଷିପ୍ତ କଳେବର ଭିତରେ ଆତ୍ମପ୍ରକାଶ କରିଥାଏ । ଭଜନ, ଜଣାଣଠାରୁ ଆରମ୍ଭ କରି ଏକପଦୀ ଗୀତ ମଧ୍ୟ ଗୀତିକବିତା ପରିସରଭୁକ୍ତ ହୋଇଥାଏ । ଗୀତିକବିତାର ଗାୟକ ସାମୟିକ ଭାବରେ ଏହାକୁ ପରିବେଷଣ କରୁଥିବାରୁ ଏହାର ପରିସର ଅପେକ୍ଷାକୃତ ସଂକ୍ଷିପ୍ତ ।

ପ୍ରାଚୀନ ଗୀତିକବିତା ବିଶେଷ ଉତ୍ସବମାନଙ୍କରେ ଗାନ କରାଯାଉଥିଲା । ଗୀତିକବିତା ସେହିମାନଙ୍କ ମୁହଁରେ ବଞ୍ଚିଥିଲା ଯେଉଁମାନେ ଗୀତ ଗାଇ ଭିକ୍ଷାବୃତ୍ତି ମାଧ୍ୟମରେ ଜୀବିକା ନିର୍ବାହ କରୁଥିଲେ । ଗୋଟିଏ ଘରେ ଭିକ୍ଷା ଦେବା ପର୍ଯ୍ୟନ୍ତ ଯେତେ ସମୟ ଦରକାର ସେତିକି ସମୟ ଭିତରେ ଗୀତ ପରିବେଷଣ କରିବା ଗାୟକର ଧର୍ମ ଥିଲା । ଏହାର ସଂକ୍ଷିପ୍ତ କଳେବର ଯୋଗୁଁ ଏହା ଅଧିକ ଗ୍ରହଣୀୟ ହୋଇ ପାରିଛି । ପାଶ୍ଚାତ୍ୟ ଓ ପ୍ରାଚ୍ୟ ଭୂମିରେ ଅନେକ ମହାନ୍ କାବ୍ୟମାନ ରଚନା କରାଯାଇଥିଲେ ମଧ୍ୟ ସେଗୁଡ଼ିକ ଗୀତିକାବ୍ୟର ମାନ୍ୟତା ପାଆନ୍ତି ନାହିଁ । ଶ୍ରେଷ୍ଠ ପରିଧି ଭିତରେ ସଙ୍ଗୀତକୁ ସାଥିକରି ଗୀତିକବିତା ଆତ୍ମପ୍ରକାଶ କରିଥାଏ ।

## (ଗ) ସ୍ୱତଃସ୍ଫୂର୍ତ୍ତିତା—

ସଙ୍ଗୀତକୁ କେହି କେବେ ସୃଷ୍ଟି କରେନାହିଁ । ଏହା ଆପଣାଛାଏଁ ସୃଷ୍ଟି-ହୁଏ । ଗୀତିକବିତାକୁ କେହି ଜାବିଚିନ୍ତି ସୃଷ୍ଟି କରେନାହିଁ, ଏହା ଆବେଗିକ ଅବସ୍ଥାରେ ଆତ୍ମପ୍ରକାଶ କରିଥାଏ । ନିଜେ କବି ଅନେକ ସ୍ଥାନରେ କବିତାର ଗାୟକ ହୋଇଥିବାରୁ ତା' ହୃଦୟର ଅନୁଭୂତି ଏଥିରେ ସ୍ଥାନ ପାଇଥାଏ । ବୀଣାଯନ୍ତ୍ର ବଜାଇ ହେଉ ବା ଅନ୍ୟ କୌଣସି ଯନ୍ତ୍ର ସାହାଯ୍ୟରେ ହେଉ ଗୀତିକବିତା ସ୍ୱତଃସ୍ଫୂର୍ତ୍ତି ଭାବରେ ଉଚ୍ଚାରିତ ହୋଇଥାଏ ।

## (ଘ) ଆତ୍ମଅନୁଭୂତି—

ଗୀତି କବିତାରେ କବି ଆପଣାଗ୍ରୁ ଏଁ ଆତ୍ମପ୍ରକାଶ କରିଥାଏ । ଯେତେବେଳେ କୌଣସି ବିଷୟକୁ ସେ ବ୍ୟାଖ୍ୟା କରେ ସେତେବେଳେ ସେ ବିଷୟ ଭିତରେ ଯେଉଁ ଦାର୍ଶନିକ ଚିନ୍ତନ ପ୍ରକାଶ ପାଇଥାଏ, ସେହି ଚିନ୍ତାଧାରାର ବିଶ୍ଳେଷଣ କବି ନିଜ ଅନୁଭୂତିରୁ କରିଥାଏ । ଅନେକ କବିତାରେ ନିଜେ ଆତ୍ମପ୍ରକାଶ କରିଥାଏ, ବ୍ୟକ୍ତିନିଷ୍ଠ ଗୀତି କବିତାରେ ଏହା ଅଧିକ । ଶୋକ କବିତା ଓ ପ୍ରେମ କବିତାରେ ବ୍ୟକ୍ତିର ଅନୁଭୂତି ଅଧିକ ପ୍ରକାଶ ପାଇଥାଏ ।

ଗୀତି କବିତା ସମ୍ପର୍କରେ ନିଜ ମତ ପ୍ରକାଶ କରି ଆଲୋଚକ ଜାନକୀ ବଲ୍ଲଭ ମହାନ୍ତି କହନ୍ତି—"ଗୀତି କବିତା ମନୁଷ୍ୟର ଏକ ସୁକୁମାର କଳାକୃତି । ଏହାର ସୃଷ୍ଟି ପାଇଁ ଅନ୍ତର୍ମୁଖୀ ଅନୁକୂଳ ପରିବେଶର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଯେଉଁ ଯୁଗରେ ମନୁଷ୍ୟ ମନରେ ଭାବପ୍ରବଣତାର ତୀବ୍ରତା ସୃଷ୍ଟି ହୁଏ, ଜାତୀୟ ଚେତନା ଗଭୀର ଭାବରେ ସ୍ପନ୍ଦିତ ହୁଏ, ସେହି ଯୁଗରେ ହିଁ ଗୀତି କାବ୍ୟର ଯଥାର୍ଥ ବିକାଶ ଘଟିଥାଏ ।" (କବିତାର ମାନଦଣ୍ଡ—ପୃ: ୧୬) ଗୀତି କବିତାକୁ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଏହାର ଗୋଟିଏ ବିଭାଗକୁ ମନ୍ମୟ କବିତା ବା ବ୍ୟକ୍ତିନିଷ୍ଠ କବିତା Subjective poetry କୁହାଗଲାବେଳେ ଅନ୍ୟ ବିଭାଗକୁ ବସ୍ତୁନିଷ୍ଠ କବିତା ବା ତନ୍ମୟ କବିତା objective poetry କୁହାଯାଏ । ଏହି କବିତାମାନଙ୍କ ଭିତରେ ଦେଖାଯାଉଥିବା ବିଭିନ୍ନ ବିଭାଗ ଗୁଡ଼ିକୁ ଅନ୍ୟତ୍ର ଆଲୋଚନା କରାଯାଇ ଅଛି ।

## ଗାଥା କବିତା (Ballad)—

ଗାଥା କବିତା କବିତାର ଆଧୁନିକ କାବ୍ୟରୂପ । ଗାଥା କବିତାର ରୂପ ଆଧୁନିକ ହେଲେହେଁ ଏହାର ପ୍ରାଚୀନତାକୁ ଲକ୍ଷ୍ୟ କରାଯାଇ ପାରିବ । ଆମ ମୌଖିକ ସାହିତ୍ୟରେ ଗଣି ଗଣି ଗାଥା କବିତା ଲୋକ ମୁଖରେ ସୃଷ୍ଟି ହୋଇଛି । ପଲ୍ଲୀରେ ବାସ କରୁଥିବା ଅନେକ ଅପାଠୁଆ ମଣିଷମାନେ ଲୋକନୃତ୍ୟ ଓ ଲୋକନାଟ ମଧ୍ୟରେ ଯାହା ଉଚ୍ଚାରଣ କରିଥାଆନ୍ତି ତାହା ଗାଥା କବିତାର ପ୍ରାଚୀନ ରୂପ ଭାବରେ ଗ୍ରହଣୀୟ ହେବ । କୌଣସି ବିଶେଷ ଅନୁଷ୍ଠାନରେ ଅନେକ ଲୋକ ଏକାଠି ହୋଇ ହାତ ଧରାଧରି ହୋଇ ନାଚିବା ସହ ଗୀତ ଗାଇ ଥାଆନ୍ତି । ଆଦିବାସୀ ସମ୍ପ୍ରଦାୟର କରମା ପୂଜା ଓ ସମ୍ବଲପୁର ଅଞ୍ଚଳର ଡାଲଖାଇ ନୃତ୍ୟରେ ଏକ ବିଶେଷ ଉଦ୍ଦେଶ୍ୟରେ ଗୀତ ଗାନ କରାଯାଇଥାଏ । ଅନେକ ଆଦିବାସୀ ସଙ୍ଗୀତ ଉଦ୍ଦେଶ୍ୟ ପ୍ରଧାନ । ଏଥିରୁ ସୃଷ୍ଟି ହେଉଥିବା ଗୀତ ପରବର୍ତ୍ତୀ ସମୟରେ ଗାଥା କବିତା ଭାବରେ ସମ୍ମାନିତ ହୋଇଛି । ଗାଥା କବିତାର ପ୍ରାଚୀନ ଉତ୍ପତ୍ତି ଉତ୍ସ

ଆବିଷ୍କାର କରିବା ପରେ ଆମ ବିଭିରଧାରା ଓ ପରମ୍ପରାରେ ଗଢ଼ି ଆସୁଥିବା କର୍ମିଷ୍ଠ ଧର୍ମ ଅନୁଷ୍ଠାନ, ଯଜ୍ଞ ଏବଂ ମନ୍ତ୍ରପାଠକୁ ମଧ୍ୟ ଗ୍ରହଣ କରାଯାଇ ପାରିବ । ପୂଜା ପାର୍ବଣରେ ଏକ ନିର୍ଦ୍ଦିଷ୍ଟ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆମେ ସ୍ତୁତିପାଠ କରିଥାଉ । ଯାହାକୁ ଆମେ ଗଣେଶ ବନ୍ଦନା, ସରସ୍ୱତୀ ବନ୍ଦନା, ଖୁଦୁରୁକୁଣୀ ଓଷାବନ୍ଧ, ବାଟଓଷା ବ୍ରତକଥା, ସନ୍ତୋଷୀ ବ୍ରତକଥା ଭିତରେ ପାଇ ପାରିବା । ଗୋଟିଏ ଉଦ୍ଦେଶ୍ୟ ରଖି ଏକ ନିର୍ଦ୍ଦିଷ୍ଟ ଈଶ୍ୱରଙ୍କ ପାଇଁ ଯେଉଁ ମହିମାଗାନ ସୃଷ୍ଟି କରାଗଲା ତାହା କ'ଣ ଗାଥା କବିତା ନୁହେଁ କି ? ଓଡ଼ିଶାର ପୁରପଲ୍ଲୀରେ ଏହିପରି ଅନେକ ଗାଥା କବିତା ଯୋଗୀମାନଙ୍କ କେନ୍ଦରା ଧ୍ୱନି ଭିତରେ ଶୁଣିବାକୁ ମିଳେ । ଗାଥା କବିତାର ପ୍ରାଚୀନ ରୂପ ଆମ ସାଂସ୍କୃତିକ ଜୀବନବୋଧ ଭିତରେ ସୁରକ୍ଷିତ ରହିଛି ।

ଗାଥା କବିତାର ଇଂରାଜୀ ପ୍ରତିଶବ୍ଦ ଭାବରେ Balladକୁ ଗ୍ରହଣ କରାଯାଇଥାଏ । ଏହି Ballad ପ୍ରାଚୀନ ଫରାସୀ ଶବ୍ଦ Baller କିମ୍ବା ଲାଟିନ୍ ଶବ୍ଦ Balloreରୁ ଉତ୍ପତ୍ତି ହୋଇଥିବା ଗ୍ରହଣ କରାଯାଏ । ଉପରୋକ୍ତ ଶବ୍ଦକୁ ନୃତ୍ୟଗୀତ ସହ ବିଚାର କରାଯାଇ ଥାଏ । ଫ୍ରାନ୍ସରେ ନୃତ୍ୟ ସହ ଯେଉଁ ଗୀତ ଗାନ କରାଯାଏ ତାହାକୁ Baller କୁହାଯାଇ ଥାଏ । ନୃତ୍ୟରେ ଯେଉଁ ଗୀତ ଗାନ କରାଯାଏ ତାହା ଏକ ବିଶେଷ ଉତ୍ସବରେ ଓ ଗୋଟିଏ ବିଶେଷ ଘଟଣାକୁ ନେଇ ହିଁ ରଚନା କରାଯାଇ ଥାଏ । ଗାଥା କବିତାର ପ୍ରାଚୀନ ରୂପ ଲୋକନୃତ୍ୟ ଓ ଲୋକଗୀତ ଭିତରେ ହିଁ ନିହିତ । ଗାଥା କବିତା ନୃତ୍ୟ ଓ ଗୀତର ଏକ ମିଶ୍ରିତ କଳାରୂପ । ଆଲୋଚକ ଶ୍ରୀଶଚନ୍ଦ୍ର ଗାଥା କବିତା ସମ୍ପର୍କରେ କହିଛନ୍ତି—"ଗଳ୍ପର କାହାଣୀକୁ ସହଜ, ସରଳ ଓ ଅନାଡ଼ମ୍ବର ଭାଷାରେ ପ୍ରକାଶ କରିବା ହିଁ ଗାଥା କବିର ପ୍ରଧାନ କାର୍ଯ୍ୟ । ଗଳ୍ପାଂଶ ବର୍ଣ୍ଣନାରେ ନାଟକୀୟ ସଂସ୍ଥାନ ସୃଷ୍ଟି ବିଶେଷ ପ୍ରୟୋଜନୀୟ । ଗାଥା କବିତା ବସ୍ତୁନିଷ୍ଠ ହେବା ଯୋଗୁ ଏଥିରେ ଲେଖକର ଆତ୍ମଗତ ଭାବ କଳ୍ପନା ଅପେକ୍ଷା ଜନଗଣ ନିଷ୍ଠଭାବ କଳ୍ପନାର ପ୍ରାଧାନ୍ୟ ଅଧିକ । ସୁତରାଂ ଏହାକୁ ଗୀତି କବିତା ଧର୍ମୀ ମନେ କରାଯାଇ ନ ପାରେ । ଅନେକ ସମୟରେ ଗାଥାରେ ହାସ୍ୟୋଦ୍ଦୀପକ କାହାଣୀ ସଂସ୍ଥାନ ବା ଅତି ପ୍ରାକୃତ ସମାବେଶ ରହିପାରେ; କିନ୍ତୁ ଏଥିରେ କୌଣସି ଉପଦେଶ ବାଣୀ ବା ରୂପ ସଜ୍ଜାର ପ୍ରୟୋଜନ ନାହିଁ । ସ୍ୱକୀୟ ନିରାଭରଣ-ଆଭରଣ-ଗୌରବରେ ଓ ସର୍ବାଙ୍ଗୀନ ସ୍ୱଚ୍ଛ ସହଜତା ଯୋଗୁ ଏହା ଆମ୍ଭମାନଙ୍କୁ ମୁଗ୍ଧ କରେ । କୌଣସି କୌଣସି ଗାଥା କବିତାରେ ଦୁଇ ଚାରିଗୋଟି ଛନ୍ଦର ପୁନରାବୃତ୍ତି ଦ୍ୱାରା ଯେଉଁ ଦୁଆ (Burden ବା erfrain) ସୃଷ୍ଟି କରାଯାଏ ତାହା କବିତାର ଆଖ୍ୟାନ ଭାଗଟିକୁ ଆମ୍ଭମାନଙ୍କ ଦୃଷ୍ଟି ସମ୍ମୁଖରେ ଅନଳସ ଭାବରେ ଜାଗ୍ରତ କରେ ।" (ସାହିତ୍ୟ ସନ୍ଦର୍ଶନ—ଶ୍ରୀଶଚନ୍ଦ୍ର ଦାସ, ପୃ-୭୫) ଗାଥା କବିତାରେ

ଗଳ୍ପ ଧର୍ମୀ ବଶେଷ୍ଟ କାହାଣୀ ଭାଗ ଥାଏ । ଏହି କାହାଣୀକୁ ଗୀତ ମାଧ୍ୟମରେ ଗାନ କରାଯାଇ ଥାଏ । ଗାଥା କହିଲେ କାହାଣୀକୁ ବୁଝାଏ । ଗାଥା କବିତା କାହାଣୀ ପ୍ରଧାନ କବିତା ଯାହାକୁ ଗାନ କରାଯାଇ ଥାଏ ।

ଗାଥା କବିତାର ସ୍ୱରୂପ ସମ୍ପର୍କରେ କୁହାଯାଇଛି—"Ballad is a narrative song—poem, usually relating a single incident, ina form suitable for singing or rhythmical chanting." ଗାଥା କବିତାରେ ବର୍ଣ୍ଣନାଧର୍ମୀ ଗୁଣ ସୁରକ୍ଷିତ ଥାଏ । ଗୋଟିଏ କାହାଣୀକୁ ଏହାର କଳେବର ଭିତରେ ଗ୍ରହଣ କରାଯାଉ ଏହି କାହାଣୀକୁ ଏକ ଦୀର୍ଘ କବିତା ମାଧ୍ୟମରେ ବ୍ୟାଖ୍ୟା କରାଯାଇ ଥାଏ । ଗାଥା କବିତାର ଗଳ୍ପାଂଶ ଗୋଟିଏ ଘଟଣା ଉପରେ ନିର୍ଭର କରିଥାଏ । ଗଳ୍ପର ଏକ ମୁଖ୍ୟ ଘଟଣାକୁ ଗାଥା କବିତାରେ ଆଲୋକିତ କରାଯାଇ ଥାଏ । ଗାଥା କବିତା ଗାନ ଧର୍ମୀ, କବି ଏହାକୁ ରଚନା କଲାବେଳେ ଏହାର ସାଙ୍ଗୀତିକତା, ଛନ୍ଦବଦ୍ଧତା ଓ ଗୀତିମୟତାକୁ ଗୁରୁତ୍ୱ ଦେଇଥାଏ । ପ୍ରାଚୀନ ଗାଥା କବିତା ନୃତ୍ୟ ଗୀତ ଭିତରୁ ଉତ୍ପତ୍ତି ହୋଇଥିଲା, ସଙ୍ଗୀତ ସହ ନୃତ୍ୟ ପରିବେଷଣ ଆମ ସଂସ୍କୃତିର ପରିଚୟ । ଯେଉଁଠି ଗାଥା କବିତା ଗାନ କରାଯାଏ ସେଠାରେ ଏକୁଟିଆ ବା ଦଳବଦ୍ଧ ଭାବରେ ନୃତ୍ୟ ପରିବେଷଣ କରାଯାଇଥାଏ । କବି ଏହାକୁ ରଚନା କଲାବେଳେ ଗୁରୁ ଶବ୍ଦ ବଦଳରେ ସାଙ୍ଗୀତିକ ଶବ୍ଦ ପ୍ରୟୋଗ କରିଥାଏ । ଗାଥା କବିତା ରଚନା ପାଇଁ କବିକୁ ସଙ୍ଗୀତ ସହ ଏକାତ୍ମ ହେବାକୁ ପଡ଼ିଥାଏ । ଗପ ଶୁଣିବାକୁ ସମସ୍ତେ ଭଲ ପାଆନ୍ତି । ଏହି ଗପକୁ ଯଦି କଳାତ୍ମକ ଶୈଳୀରେ ଭାବ ଓ ରାଗ ସହ ପରିବେଷଣ କରାଯାଏ, ଏହା ଆହୁରି ଶ୍ରୁତିମଧୁର ହୋଇଥାଏ । ଓଡ଼ିଶାର ପୁରପଲ୍ଲୀରେ ଗୀତି କବିତା ଗାନରେ ଆଖିରୁ ଦୁଇଠୋପା ଲୁହ ବୋହିଆସେ । ଯୋଗୀ କଣ୍ଠରେ ସଂସାର ବିରାଗୀ ଗୋବିନ୍ଦଚନ୍ଦ୍ର ଗାନ ଶୁଣି ସାଧାରଣ ମଣିଷ ଦ୍ରବୀଭୂତ ହୋଇ ଯାଆନ୍ତି । ଗାନ ଧର୍ମୀତା ଓ ସାଙ୍ଗୀତିକତା ଯୋଗୁ ଗାଥା କବିତା ଅଧିକ ଲୋକପ୍ରିୟ ହୋଇ ପାରିଛି । କବିତାର ଏହା ଏକ ଆଧୁନିକ ବିଭାଗ ହେଲେ ମଧ୍ୟ ଓଡ଼ିଶାର ଜନମାନସରେ ଗାଥା କବିତାର ଇତିହାସ ବହୁ ପୁରୁଣା ।

ଓଡ଼ିଆ ଗାଥା କବିତାର ବିକାଶକ୍ରମ ଆଲୋଚନା ଅବସରରେ ଆମକୁ ଓଡ଼ିଶାର ପୁରପଲ୍ଲୀରେ ଲୋକମୁଖରେ ବଞ୍ଚିଥିବା ଅନେକ ଗାଥା କବିତାମାନଙ୍କୁ ସ୍ମରଣ କରିବାକୁ ପଡ଼ିବ । ଓଡ଼ିଶାରେ ମୌଖିକ ସାହିତ୍ୟ ଭିତରେ ଶକ୍ତିଶାଳୀ ଲୋକ ଗୀତ ଓ ଲୋକ କାହାଣୀ ଦେଖାଯାଏ । ଏହି ଲୋକ ଗୀତ ଓ କାହାଣୀ ଭିତରେ ଅନେକ ଗାଥା ଚରିତ ଏବେ ବି ବଞ୍ଚିରହିଛି । ଗାଥା ସାହିତ୍ୟ ଆମ ପ୍ରାଚୀନ

ପରମ୍ପରା ସହ ଜଡ଼ିତ ଥିବାରୁ ଏହାର ମୌଳିକ ରୂପ ଏବେ ବି ଗାଁ ଗହଳରେ ସୁରକ୍ଷିତ ରହିଛି । ପ୍ରାଚୀନ ଓଡ଼ିଶାରେ ଗୋଟିଏ ଗୋଷ୍ଠୀ ଥିଲେ ଯେଉଁମାନେ ଗୀତ-ଗାନ ମାଧ୍ୟମରେ ଜୀବିକା ନିର୍ବାହ କରୁଥିଲେ । ଓଡ଼ିଶାର ଯୋଗୀ ସମ୍ପ୍ରଦାୟ ସେଥି ମଧ୍ୟରୁ ଅନ୍ୟତମ । ଏବେ ବି ଓଡ଼ିଶାରେ ଯୋଗୀମାନେ କେନ୍ଦରା ସାହାଯ୍ୟରେ କରୁଣ ରାଗିଣୀ ସୃଷ୍ଟି କରି କୌଣସି ଚରିତ ଗାନ କରି ଥାଆନ୍ତି । ଆମର ଲୋକ ନାଟକରେ ଗାଥା କାବ୍ୟର ପରମ୍ପରା ପରିଦୃଷ୍ଟ ହୁଏ । ଦାସକାଠିଆ, ପାଲା, ରାମଲୀଳା, ଭାରତଲୀଳା ମାନଙ୍କରେ ଯେଉଁ ଗୀତଧର୍ମୀ ବିଶ୍ଳେଷଣ କରାଯାଏ ତାହା ଗାଥା କବିତା ସହ ସମ୍ପୃକ୍ତ ଓଡ଼ିଶାରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର କଣ୍ଢେଇ ନାଚ ଦେଖାଯାଏ । କଣ୍ଢେଇଙ୍କୁ ସୂତା ସାହାଯ୍ୟରେ ନଚାଇବା ସହ କାହାଣୀକୁ ପ୍ରକାଶ କରିବା ପାଇଁ ଗୀତ ଗାନ କରାଯାଇ ଥାଏ । ସଖୀ କଣ୍ଢେଇକୁ ଗୋଟିଏ ହାତରେ ଧରି ନଚାଇ, ନାଚ ସହ କଥାଭିତ୍ତିକ ଗୀତ ଗାଇ କେତେଜଣ ଜୀବିକା ନିର୍ବାହ କରି ଥାଆନ୍ତି । ଏହି ନୃତ୍ୟ, ଗୀତ, ସଙ୍ଗୀତ ଭିତରେ ଗାଥା କବିତା ଆତ୍ମପ୍ରକାଶ କରିଥାଏ । ମୌଖିକ ସାହିତ୍ୟ ଭିତରେ ଗାଥା କବିତାର ବିପୁଳତା ଲକ୍ଷ୍ୟ କରାଯାଇ ପାରିବ । ଗାଥା କବିତା ପ୍ରଥମେ କେହି ସୃଷ୍ଟି କରି ନ ଥିବ, ଏପରି ହୋଇଥିବ ଏହା ସ୍ୱତଃସ୍ଫୂର୍ତ୍ତ ଭାବରେ ସୃଷ୍ଟି ହୋଇ ପରେ ପରେ ବିକଶିତ ହୋଇଥିବ । ଓଡ଼ିଆ ଗାଥା କବିତାର ବିକାଶକ୍ରମ ଆଲୋଚନା କାଳରେ ଆମର ଲୋକ ସାହିତ୍ୟକୁ ଗୁରୁତ୍ୱ ସହ ବିଚାର କରିବାକୁ ପଡ଼ିବ ।

ସାରଳା ଦାସଙ୍କ ସମୟରେ ଅନେକ ଗୌଣ ଅଥଚ ଶକ୍ତିଶାଳୀ କବିମାନେ ଶ୍ରେଷ୍ଠ ଶ୍ରେଷ୍ଠ କାବ୍ୟ, କବିତାମାନ ରଚନା କରି ନିଜ ନିଜ ଶକ୍ତିମତ୍ତାର ପରିଚୟ ଦେଇଛନ୍ତି । ସାରଳାଯୁଗର ଅନ୍ୟତମ କବି ବତ୍ସା ଦାସଙ୍କ 'କଳସା ଚଉତିଶା' ଗାଥା କବିତା ଗୁଣରେ ପରିପୂର୍ଣ୍ଣ । ବତ୍ସା ଦାସ ଶିବ ପାର୍ବତୀଙ୍କ ବିବାହକୁ ରସାତ୍ମକ ଭାବରେ ପରିବେଷଣ କରିଛନ୍ତି । 'କଳସା ଚଉତିଶା' କାହାଣୀପ୍ରଧାନ ଗୀତି କାବ୍ୟ । ଗାଥା କବିତାର ଲିଖିତ ମୂଲ୍ୟାୟନରେ 'କଳସା ଚଉତିଶା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । କବି ସାରଳା ଦାସ ମହାଭାରତର ଅନେକ ପର୍ବରେ କାହାଣୀ ବର୍ଣ୍ଣନା ସମୟରେ ସ୍ୱକୀୟ ପ୍ରତିଭାର ପରିଚୟ ଦେଇ ଅନେକ କାହାଣୀ ପରିକଳ୍ପନା କରିଛନ୍ତି । ଏସବୁ କାହାଣୀ ମୂଳକାବ୍ୟ ସହ ମିଶିଗଲେ ମଧ୍ୟ ବର୍ଣ୍ଣିତ ପର୍ବରେ ଗାଥା ଧର୍ମୀତାକୁ ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି ।

ପଞ୍ଚସଖା ସାହିତ୍ୟରେ କେତୋଟି ଗାଥା କବିତା ରଚନା କରାଯାଇଛି । ଏ ସମୟରେ ଅନେକ ପଟଳ, ପଦଆ, ଗୀତା, ସ୍ତବମାନ ରଚନା କରାଯାଇଛି ।

ଆତ୍ମା-ପରମାତ୍ମା ତତ୍ତ୍ୱ ବ୍ୟାଖ୍ୟା କରି ଏସବୁ ଜୀବନ ଦର୍ଶନ ଭାବରେ ଉତ୍କଳର ପୁରପଲ୍ଲୀରେ ଖ୍ୟାତ ହୋଇଛୁ । ଯଶୋବନ୍ତ ଦାସଙ୍କ 'ଗୋବିନ୍ଦଚନ୍ଦ୍ର' ବଳରାମ ଦାସଙ୍କ 'ବଢ଼ୁଲା ଗାଈ' 'ଭାବସମୁଦ୍ର' 'ଲକ୍ଷ୍ମୀପୁରାଣ' 'କାନ୍ତକୋଇଲି' ଜଗନ୍ନାଥ ଦାସଙ୍କ ରଚିତ 'ମୃଗୁଣୀ ସ୍ତୁତି' 'ଗଜନିସ୍ତାରଣ' 'କାଳୀୟ ଦଳନ' ଅଚ୍ୟୁତାନନ୍ଦ ଦାସଙ୍କ 'ହରିଦସ୍ୟ କାହାଣୀ'ରେ ଗାଥା କବିତା ବିଦ୍ୟମାନ । ଏସବୁ ପ୍ରାଚୀନ ରଚନାକୁ ଗାଥା କବିତା ଭାବରେ ଗ୍ରହଣ କରିନେବାରେ କୌଣସି ଅସୁବିଧା ନାହିଁ । ଏସବୁ ଗାଥା କାବ୍ୟମାନଙ୍କ ଭିତରୁ 'ଗୋବିନ୍ଦଚନ୍ଦ୍ର' ଲକ୍ଷ୍ମୀପୁରାଣ' 'କାନ୍ତକୋଇଲି' ଓଡ଼ିଶାର ଜନମାନସରେ ଅତି ପ୍ରିୟ, ଗୋବିନ୍ଦଚନ୍ଦ୍ରର ଜୀବନ ଦର୍ଶନ ଓଡ଼ିଶାର ଅଗଣିତ ହୃଦୟକୁ ଆଜି ବି ଛୁଇଁଯାଏ । 'ତଅପୋଇ' ଓ 'କାନ୍ତକୋଇଲି'ର କରୁଣରସ ଏହାକୁ ଅମର କରିଛି । ଏହି පୁରାତନ ସାର୍ଥକ ଗାଥା କବିତା ଗୁଡ଼ିକ ଆଜି ଯେ କୌଣସି ଆଧୁନିକ ଗାଥା କବିତାଠାରୁ ଅଧିକ ଜନପ୍ରିୟ ଏକଥା ସ୍ୱୀକାର୍ଯ୍ୟ । *

ଓଡ଼ିଆ କାବ୍ୟ ଯୁଗରେ ଗାଥା କବିତା ରଚନା ମ୍ଳାନ ପଡ଼ି ଯାଇଥିବା ଲକ୍ଷ୍ୟ କରାଯିବ । ଏ ଯୁଗ କାବ୍ୟର ଯୁଗ । କବିମାନେ ବିରାଟ ଶରୀର ବିଶିଷ୍ଟ କାବ୍ୟ ରଚନା କରିଛନ୍ତି । ତଥାପି କେତେକ କବି ଚଉତିଶା, ଜଣାଣ, ପଦଆମାନ ରଚନା କରି ପରୋକ୍ଷରେ ଗାଥା କବିତା ସୃଷ୍ଟି କରିଛନ୍ତି । 'ମନବୋଧ ଚଉତିଶା' 'କଳା କଉତୁକ' ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବାଘଗୀତ' ଗାଥା କବିତାର ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇଥାଏ । ଗୀତିକାବ୍ୟମାନଙ୍କରେ କାହାଣୀ ଅଛି, ବର୍ଣ୍ଣନା ଅଛି, ସଙ୍ଗୀତ ଅଛି କିନ୍ତୁ ଘଟଣାର (କାହାଣୀର) ଏକମୁଖୀନତା ନ ଥିବାରୁ ଓ ଆକାରରେ ଦୀର୍ଘ ହୋଇଥିବାରୁ ଅନେକ କାବ୍ୟ, କବିତା ଗାଥା କବିତା ପଦବାଚ୍ୟ ହୋଇନ୍ତି ନାହିଁ ।

ଗାଥା କବିତା ରଚନାର ନୂତନ ଯୁଗ ଆରମ୍ଭ ହୁଏ ଆଧୁନିକ କାବ୍ୟଚର୍ଚ୍ଚାରୁ । ଓଡ଼ିଶାରେ ଶିକ୍ଷା ବିସ୍ତାର ସନ ୧୮୮୦ ମସିହାରୁ ଯେଉଁ ଆତ୍ମଜାଗୃତି ଆମ ଜାତୀୟ ଜୀବନରେ ପରିଲକ୍ଷିତ ହେଲା, ସେହି ଚେତନାର କଳାରୂପ ଗାଥା କବିତାମାନଙ୍କରେ ଆତ୍ମପ୍ରକାଶ କଲା । ରାଧାନାଥ ରାୟ ଆଧୁନିକ କାବ୍ୟ ରଚନା କରି କାବ୍ୟ ରଚନାର ଆଙ୍ଗିକ ଓ ଆତ୍ମିକରେ ଯେଉଁ ନୂତନତା

---

* ସେହି କାଳଯମ ବଡ଼ ଦାରୁଣରେ
ନଜାଣଇ ଦୁଃଖ ସୁଖ
ବାଛୁନେବ କିଆଁ ରଖିବ ପାଶରି
ଦେବଟି ଦାରୁଣ ଦୁଃଖ---ଗୋବିନ୍ଦଚନ୍ଦ୍ର,

* ଆହେ ବନଗିରି
ଆହେ ଲତାଗିରି
ମୋ କାନ୍ତ ଗଲେ ମୃଗ ମାରି
—କାନ୍ତ କୋଇଲି ।

ଆଣିଲେ, ସେହି ନୂତନ ନିର୍ଯ୍ୟାସ ଗାଥା କବିତାମାନଙ୍କରେ ଦେଖାଗଲା । ସାମାଜିକ, ଇତିହାସ ଓ ପୁରାଣର କଥାବସ୍ତୁକୁ ନେଇ ଗାଥା କବିତା ରଚନା କରିବାପାଇଁ ଫକୀର ମୋହନ ସେନାପତିଙ୍କ ଦୀର୍ଘଦିନ ପ୍ରୟାସରୁ ଅନେକ ସଫଳ ଗାଥା କବିତା ସୃଷ୍ଟି ହେଲା । ଫକୀରମୋହନ ଡାଗ୍‌ବାଇ, ଯୋଷେଫାଇନ, ବେଣୀ ସହାର, 'କ୍ଲିଓପେଟ୍ରା', 'ଜଗାଇମାଧୋଇ', 'ସତୀ ଲୁକ୍ରେସିଆ', 'ଶର୍ଙ୍କି ବିଗିଡ଼ି', 'ଗର୍ଦ୍ଦଭର ସୂକ୍ଷ୍ମ ବୁଦ୍ଧି', 'ବଣି ଚଢ଼େଇ', 'ସାଧୁ ସଂସର୍ଗ', 'ରାମରଥ ଗାଥା', 'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ' ଆଦି ଗାଥା କବିତା ରଚନା କରିଛନ୍ତି । ଫକୀରମୋହନଙ୍କ ଗାଥା କବିତାରେ ତୈସେ ସମୟର ସମାଜ ଜୀବନ ଓ ବ୍ୟକ୍ତି ଜୀବନ ପ୍ରତିଫଳିତ ହୋଇଥାଏ । ରାଧାନାଥ ରାୟଙ୍କ 'ଚନ୍ଦ୍ରଭାଗ' 'ପ୍ରତାପରୁଦ୍ରଦେବ' ନନ୍ଦକିଶୋର ବଳଙ୍କ 'ଗୌତମ' 'କପାଗୌତମୀ' 'ତଅପୋଇ' ଗଙ୍ଗାଧର ମେହେରଙ୍କ 'ବଳରାମ ସିଂହ' ଗୋବିନ୍ଦ ରଥଙ୍କ 'ଘୋଡ଼ାଡ଼ିମ୍ବ' 'ହରିଆ ତନ୍ତୀ' 'ମଧୁ ସାହୁ' ଆଦି ଗାଥା କବିତାକୁ ଗ୍ରହଣ କରାଯାଇ ପାରିବ । କବି ଚିନ୍ତାମଣି ମହାନ୍ତିଙ୍କ 'ପ୍ରୀତିଲେଖ' ଏକ ସଫଳ ଗାଥା କାବ୍ୟ ସଙ୍କଳନ । ଆଧୁନିକ ଯୁଗରେ ଅନେକ କବି ସଫଳ ଗାଥା କବିତା ରଚନା କରିଛନ୍ତି ।

ସତ୍ୟବାଦୀ କବିତାରେ ଗାଥା ଧର୍ମ ଆଲୋଚନା ଅବସରରେ ଗୋପବନ୍ଧୁଙ୍କ 'ଧର୍ମପଦ' କାବ୍ୟ ସ୍ମରଣକୁ ଆସିଥାଏ । ବୋଧହୁଏ ବୌଦ୍ଧିକ ସାହିତ୍ୟ ଭିତରେ ଯେଉଁ ଭାବପ୍ରବଣତାର ଆବଶ୍ୟକତା ଅଛି ତାହାକୁ ପ୍ରକାଶ କରି କବି ଗୋପବନ୍ଧୁ ସୁନ୍ଦର ସାର୍ଥକ ଗାଥା କାବ୍ୟ ଧର୍ମପଦ ରଚନା କରିଛନ୍ତି । ଗୋଦାବରୀଶ ମିଶ୍ରଙ୍କ 'ଆଲେଖିକା' ଏକ ସଫଳ ଗାଥା କାବ୍ୟ । ସେହିପରି 'କାଳିଜାଇ' ଗାଥା କବିତା ମାଧ୍ୟମରେ କବି ଓଡ଼ିଶାର ଜନମାନସରେ ଆଜି ମଧ୍ୟ ଲୋକପ୍ରିୟ କବି ଭାବରେ ଗଣା ହେଉଛନ୍ତି ।

ସବୁଜ ଓ ସବୁଜୋତ୍ତର ସାହିତ୍ୟରେ ଅନେକ ଗାଥା କବିତା ସୃଷ୍ଟି ହୋଇଛି । ଗାଥା କବିତାରେ କବି ହୃଦୟର ଆବେଦନ ଅଧିକ ସଫଳ ଭାବରେ ଆତ୍ମପ୍ରକାଶ କରୁଥିବାରୁ ଅନେକ କବି ଗାଥା କବିତା ରଚନାର ପ୍ରୟାସ କରିଛନ୍ତି । ପଦ୍ମଚରଣ ପଟ୍ଟନାୟକଙ୍କ 'ବୁଦ୍ଧଦେବଙ୍କ ଉପଦେଶ' କାଳନ୍ଦୀ ପାଣିଗ୍ରାହୀଙ୍କ 'ଗାନ୍ଧାରୀର ଆଶୀର୍ବାଦ' କୁଞ୍ଜ ବିହାରୀ ଦାଶଙ୍କ 'ଖାରଣୀ' 'ନବମାଳିକା' ନିତ୍ୟାନନ୍ଦ ମହାପାତ୍ରଙ୍କ

'ପାଞ୍ଚଜନ୍ୟ' କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଆଲୁଅ' ମାୟାଧର ମାନସିଂହଙ୍କ 'କଣ୍ଢେକାଚ' 'ଘରପଶା' 'ତୀର୍ଥଯାତ୍ରୀ' ଗୋଦାବରୀଶ ମହାପାତ୍ରଙ୍କ 'ଆମ ଗାଁ ସଦା' ଆଦି ଗୋଟିଏ ଗୋଟିଏ ଉଲ୍ଲେଖନୀୟ ଗାଥା କାବ୍ୟ ସଂକଳନ ଓ ସୃଷ୍ଟି । ବିବିଧ ଦୃଷ୍ଟି-କୋଣରୁ ଉକ୍ତ କାବ୍ୟଗୁଡ଼ିକ ପରିପୁଷ୍ଟ ହୋଇ ଓଡ଼ିଆ ଗାଥା କାବ୍ୟର ଗୌରବ ବୃଦ୍ଧି କରିଛନ୍ତି ।

ଓଡ଼ିଆ ଗାଥା କବିତାକୁ ସଫଳତାର ସହ ଆଙ୍କିବାରେ ଯଦି କାହାର ଅଧିକ ଦାୟିତ୍ୱ ଥାଏ ସେ ହେଉଛନ୍ତି କବି ରାଧାମୋହନ ଗଡ଼ନାୟକ । କବି ରାଶି ରାଶି ଗାଥା କବିତା ରଚନା କରି ଓଡ଼ିଆ ବାଣୀଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି । ଓଡ଼ିଶାର ଅତୀତ, ସଂସ୍କୃତି ଓ ସଭ୍ୟତାକୁ ପାଥେୟ କରି ସେ ତାଙ୍କ କାବ୍ୟଗୁଡ଼ିକୁ ସୃଷ୍ଟି କରିଛନ୍ତି । କବିଙ୍କ 'ଉତ୍କଳିକା' 'ସୁରଣିକା' 'ପଶୁପକ୍ଷୀର କାବ୍ୟ' 'ଶାମୁକାର ସ୍ୱପ୍ନ' 'ବନରାଜି ନୀଳା' ଆଦି ସଙ୍କଳନମାନଙ୍କରେ ତାଙ୍କ କବିତ୍ୱ ଓ ପାଣ୍ଡିତ୍ୟର ପରିଚୟ ମିଳେ । ଓଡ଼ିଶାର ଇତିହାସ, ପୁରାଣ ଓ କମ୍ବଦନ୍ତୀକୁ ପାଥେୟ କରି କବି ରାଶି ରାଶି ଗାଥା କବିତା ସୃଷ୍ଟି କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଶାରେ ଗାଥା କବିତା ରଚନା ଶିଥିଳ ହୋଇ ପଡ଼ିଛି । ପ୍ରୟୋଗବାଦୀ ଓଡ଼ିଆ କବିତା ରଚନା ହେବାଠାରୁ ଗାଥା କବିତାର ବିଶେଷ ପ୍ରଚଳନ ଦେଖିବାକୁ ମିଳେନାହିଁ । ଅନେକ ପ୍ରୟୋଗବାଦୀ କବିତାରେ ଗାଥା ଧର୍ମ ପରିଦୃଷ୍ଟ ହୋଇଥାଏ । କିନ୍ତୁ ଗାଥା କବିତାର ପ୍ରଧାନ ଗୁଣ ସାଙ୍ଗୀତି-କତା ଓ ଆବୃତ୍ତି ଧର୍ମ ହରାଇ ଏସବୁ କବିତା ଗାଥା କବିତାର ମାନ୍ୟତା ପାଇବାରୁ ବଞ୍ଚିତ ହୁଅନ୍ତି । ଆଧୁନିକ କବିତାରେ ଗୋଟିଏ ଚରିତ୍ର ଓ ତାହାକୁ କେନ୍ଦ୍ର କରି ଏକ ଅନୁରୂପ କାହାଣୀ ଅନେକ କବିତାରେ ଆତ୍ମପ୍ରକାଶ କରିଛି; କିନ୍ତୁ ପ୍ରାୟ କବିତାରେ ଗାଥା କବିତାର ଗୀତି ଧର୍ମ ବ୍ୟାହତ ହୋଇଛି ।

ସଚ୍ଚିଦାନନ୍ଦ ରାଉତରାୟଙ୍କ 'ବାଜି ରାଉତ' 'ଭାନୁମତୀର ଦେଶ' ଦୁଇଟି ଗାଥାଧର୍ମୀ କାବ୍ୟ ସଂକଳନ । ବାଜି ରାଉତକୁ ଗାଥା କାବ୍ୟ କହିବା ଅଧିକ ଯୁକ୍ତିଯୁକ୍ତ । 'ପାଣ୍ଡୁଲିପି' କବିତା ସଙ୍କଳନର 'ଅଲକା ସାନ୍ୟାଲ' 'ପ୍ରଥମା ନାୟିକ' ସେହିପରି ଗାଥା କବିତାର ନିକଟବର୍ତ୍ତୀ ହେଲେହେଁ ଗାଥା କବିତା ହୋଇ ପାରି ନାହାନ୍ତି । କବି ଗୁରୁପ୍ରସାଦ ମହାନ୍ତିଙ୍କ 'ଅଲକା ସାନ୍ୟାଲ' 'ହରେକୃଷ୍ଣ ଦାସ'

ରମାକାନ୍ତ ରଥଙ୍କ 'ମାଷ୍ଟାଣୀ' 'ଶ୍ରୀରାଧା' 'ଚନ୍ଦ୍ରମାର ଚୂଡ଼' କବି ବେଣୁଧର ରାଉତଙ୍କ 'ପିଙ୍ଗଳାର ଅଭିସାର' କବି କୃଷ୍ଣ ଚରଣ ବେହେରାଙ୍କ 'ଖଲୁବାଇ ଲେନ୍' କବି ସୌଭାଗ୍ୟ ମିଶ୍ରଙ୍କ 'ଶୁକଦେବ ଜେନା' କବି ପ୍ରତିଭା ଶତପଥୀଙ୍କ 'ସାହାଡ଼ା ସୁନ୍ଦରୀ' 'ଶବରୀ' 'ସାବିତ୍ରୀ' କବି ଶରତ ଚନ୍ଦ୍ର ପ୍ରଧାନଙ୍କ 'ଯଯାତି' କବି ସୀତାକାନ୍ତ ମହାପାତ୍ରଙ୍କ 'ମହାମାୟା ଦେବୀ' ଫନୀ ମହାନ୍ତିଙ୍କ 'ଅହଲ୍ୟା' ପ୍ରସନ୍ନ କୁମାର ମିଶ୍ରଙ୍କ 'ମନ୍ଦିକା' ଗାଥା କବିତାର ନିକଟବର୍ତ୍ତୀ ହେଲେହେଁ ଗାଥା କବିତାର ପୂର୍ଣ୍ଣ ମର୍ଯ୍ୟାଦା ପାଇବାରୁ ବଞ୍ଚିତ ହୁଅନ୍ତି ।

ସାଂପ୍ରତିକ ସମୟ ଚେତନା ମଣିଷ ମନରୁ ସମସ୍ତ ସୌନ୍ଦର୍ଯ୍ୟବୋଧ ଓ ସରସତାକୁ ହରଣ କରି ସାରିବାପରେ ଗାଥା କବିତା ପରି କବିତାର ଏକ କୋମଳ ବିଭାଗ ଅପେକ୍ଷାକୃତ ନୀରବ ହୋଇଯାଇଛି । ସମୟ ଆସିବ, ପୁଣି ଗାଥା କବିତାର ଗୁରୁତ୍ୱ ସମସ୍ତେ ହୃଦୟଙ୍ଗମ କରିବେ ।

●

# ଶୋକ କବିତା (Elegy)

ଶୋକ କବିତା ରଚନା କରିବା ସବୁ କବିଙ୍କ ପକ୍ଷରେ ସମ୍ଭବ ହୋଇ ନ ଥାଏ । କାହାର ବିୟୋଗରେ ବା ଦୁଃଖରେ ଦରଦୀ ହୃଦୟରୁ ଯାହା ଉତୁରିଆସେ ତାହା ଶୋକ କବିତାରେ ରୂପାନ୍ତରିତ ହୋଇଯାଏ । ଶୋକ କବିତା ରଚନା କରିବା ପୂର୍ବରୁ କବି ନିଜକୁ ମାନସିକ ସ୍ତରରେ ପ୍ରସ୍ତୁତ କରିଥାଏ । ଯେଉଁ ବ୍ୟକ୍ତି ପାଇଁ ସେ ଶୋକ କବିତା ରଚନା କରିବ ସେହି ବ୍ୟକ୍ତିର ଅତୀତର କାର୍ଯ୍ୟକଳାପ, ସେହି ବ୍ୟକ୍ତି ସହ ତା'ର ସମ୍ପର୍କ ଓ ସ୍ମୃତିକୁ ଏକ କଳ୍ପନାତ୍ମକ ରୂପ ଦେଇ ଶୋକ କବିତା ରଚନାର ଏକ ନକ୍‌ସା ପ୍ରସ୍ତୁତ କରାଯାଇଥାଏ । କିନ୍ତୁ ବାସ୍ତବ ପକ୍ଷରେ ଶୋକ କବିତା ରଚନା ପାଇଁ କୌଣସି ନୀତିନିୟମ ଅନୁସୃତ ହୁଏନାହିଁ । କବି ହୃଦୟର ସ୍ୱତଃସ୍ଫୂର୍ତ୍ତି ଆବେଗ ଶୋକ କବିତା ଭାବରେ ଆତ୍ମପ୍ରକାଶ କରିଥାଏ । ଗ୍ରୀକ୍ ଶବ୍ଦ Elegosରୁ Elegy ଶବ୍ଦ ଉତ୍ପନ୍ନ ହୋଇଛି । ପ୍ରାଚୀନ ଗ୍ରୀକ୍‌ରେ କୌଣସି ମହାନ୍ ବ୍ୟକ୍ତିର ଗୁଣ ସ୍ମରଣ କରି ଯେଉଁ ଗୀତ ରଚନା କରାଯାଉଥିଲା ତାହାକୁ Elegos କୁହାଯାଉଥିଲା; କିନ୍ତୁ ଗ୍ରେଟ୍ ବ୍ରିଟେନ୍‌ରେ ଏଲିଜାବେଥଙ୍କ ମୃତ୍ୟୁରେ ଏଲିଜ୍ ରଚନାର ଆରମ୍ଭ ହୋଇଛି ବୋଲି ଅନୁମାନ କରାଯାଇଥାଏ । ଆମ ସମାଜରେ ପାଶ୍ଚାତ୍ୟ କବିତାର ଏହି ଆଧୁନିକତମ ବିଭାଗ ଆଲୋଚନା ହେବା ପୂର୍ବରୁ ଏହାର ଏକ ପାରମ୍ପରିକ ଧାରଣା ପ୍ରଚଳିତ ଥିଲା । ବିବାହ ପରେ କନ୍ୟାକୁ ବାପଘରୁ ବିଦାୟ ଦେବା ଆମର ପାରମ୍ପରିକ ଅଶ୍ରୁଳ ଚିତ୍ର ଉପସ୍ଥାପନ କରିଥାଏ । ଝିଅକୁ ବାପଘରୁ ବିଦାୟ ଦେବାବେଳେ କେବଳ ଝିଅର ରକ୍ତ ସମ୍ପର୍କ ନୁହଁନ୍ତି, ପଡ଼ୋଶୀମାନେ ମଧ୍ୟ କାନ୍ଦି ଉଠନ୍ତି । ଶୋକ କବିତାର ପ୍ରାଚୀନ ଉତ୍ସ କାନ୍ଦଣା ଗୀତ ମଧ୍ୟରେ ସୁରକ୍ଷିତ ଥିଲେହେଁ ଏହା ଶୋକ କବିତାର ବ୍ୟାପକତା ପ୍ରକାଶ କରିବାରେ ସହାୟକ ହୁଏନାହିଁ । ଶୋକ କବିତା ନିର୍ଦ୍ଦିଷ୍ଟ । ଶୋକ କବିତା ସାର୍ବଜନୀନ ହୋଇଗଲେ ଏହାର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଏ । ମୃତବ୍ୟକ୍ତି ଉଦ୍ଦେଶ୍ୟରେ ହିଁ ବାସ୍ତବ ଶୋକ କବିତା ସୃଷ୍ଟି ହୋଇଥାଏ । ମଣିଷ ଜୀବନରେ

ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଶୋକାନୁଭୂତି ଆସିଥାଏ; କିନ୍ତୁ ସେଥିରୁ ଏକ ବୃହତ୍ତ ଅଂଶକୁ ଧରିରଖି ଶୋକ କବିତା ଆତ୍ମପ୍ରକାଶ କରେ ।

ପିଲାଟି ଚକ୍‌ଲେଟ୍‌ ନ ପାଇ କାନ୍ଦିବା ବା ପ୍ରିୟା ବିରହରେ ଶୋକ କରି କବିତା ଲେଖି ତାକୁ ଶୋକ କବିତା ରୂପେ ଗ୍ରହଣ କରାଯିବ ନାହିଁ । ସେଇଥିପାଇଁ କାଳିଦାସଙ୍କ 'ମେଘଦୂତ' ଶୋକ କବିତା ଭାବରେ ନୁହେଁ ବରଂ ବିରହ କାବ୍ୟ ଭାବରେ ପ୍ରିୟ ହୋଇ ପାରିଛି । ଶୋକ କବିତା ବିଗତ ମଣିଷର ବାସ୍ନା ବୁଣିଦିଏ । ଆମ ପାଖରେ ନ ଥିବା ମଣିଷର ଛବି ଗ୍ରହଣ କରି ଶୋକ କବିତା ସୌନ୍ଦର୍ଯ୍ୟଶାଳୀ ହୋଇଥାଏ । ବ୍ୟକ୍ତି ଜୀବନର ବୃହତ୍ତର ଦୁଃଖକୁ ଶୋକ କବିତା ଧରି ରଖିଥାଏ । ଓଡ଼ିଆ ସାହିତ୍ୟରେ ଶୋକ କବିତା ସୃଜନର ଏକ ସୁନ୍ଦର ଅତୀତ ଓ ସମୃଦ୍ଧିଶାଳୀ ବର୍ତ୍ତମାନ ଦେଖାଯାଏ ।

ଶୋକ କବିତା ପ୍ରଥମତଃ ମଣିଷକୁ ମୃତ୍ୟୁ ବିଷୟରେ ସଚେତନ କରାଇଥାଏ । ଯେତେ ପ୍ରତିପତ୍ତିଶାଳୀ, ସଂଭ୍ରାନ୍ତ ମଣିଷ ହେଲେ ମଧ୍ୟ ମୃତ୍ୟୁ କବଳରେ ଯଶଧାରୀ ଓ ଅପଯଶ ଅର୍ଜନ କରିଥିବା ମଣିଷ ଶେଷ ହୋଇଯିବ ଏକଥା ବୁଝିଥାଏ । ଶୋକ କବିତାରେ ମୃତ୍ୟୁର ଭୟଙ୍କର ପ୍ରତିରୂପ ସହିତ ଗତ ବ୍ୟକ୍ତିର ସ୍ମରଣୀୟ କାର୍ଯ୍ୟକଳାପ ବ୍ୟାଖ୍ୟା କରାଯାଇଥାଏ । ଏହି-ଉଭୟ ସଂବେଦନାକୁ ଶୋକ କବିତା ସୁନ୍ଦର ଭାବରେ ପରିବେଷଣ କରିପାରୁ ଥିବାରୁ ଏହା ପାଠକୀୟ ଗ୍ରହଣ ଖୁବ୍ ଶୀଘ୍ର ଓ ସହଜରେ ଆଦାୟ କରି ପାରିଥାଏ ।

ଲୋକ ସାହିତ୍ୟରେ ସାମାଜିକ କାନ୍ଦଣା ମଧ୍ୟ ଦେଇ ଶୋକ କବିତାର ପ୍ରାଚୀନ ପ୍ରୟୋଗକୁ ଗ୍ରହଣ କରିହୁଏ । ଅନେକ ସମୃଦ୍ଧ ଓ କରୁଣ ରସଯୁକ୍ତ କାନ୍ଦଣା ଆମ ଲୋକ ଜୀବନର ଶୋକ କବିତା ପାଇଁ ଯୋଗ୍ୟ ଦାୟାଦ ରୂପେ ଗଣା ହୁଅନ୍ତି ।

"ଏତେ ଶରଧାରେ ବଢ଼ାଇ ଥିଲୁ
ମୋ ବୋଉ
ଆଜି ମୋତେ ବୁଡ଼ାଇ ଦେଉଛୁ
ମୋ ବୋଉ
ପର କରି ମୋତେ ମାରି ଦେଉଚ ଲୋ
ମୋ ବାପା ।"

କାନ୍ଦଣା ଭିତରେ ଶୋକ କବିତାର ଆତ୍ମା ଛପି ରହିଛି । ଏସବୁକୁ ଶୋକ କବିତା ନ କହି ଶୋକଗୀତ କହିଲେ ଠିକ୍ ହେବ ।

ସାରଳା ଦାସ କୃତ ମହାଭାରତ ଯାହାର ସର୍ବଶେଷ ପରିଣତି ସୁଦର୍ଶନ ଚକ୍ର ତଳେ ତାକୁ କ'ଣ ମୃତ୍ୟୁ ବିଷୟକ ଏକ ମହାକାବ୍ୟ କୁହାଯିବ କି ? ସାରଳା ଦାସ ମୃତ୍ୟୁକୁ ଗମ୍ଭୀର ଭାବରେ ହୃଦୟଙ୍ଗମ କରିଥିଲେ । ତା'ର ଭୟାବହତାକୁ ପରୀକ୍ଷଣ କରି ମହାଭାରତ ସୃଷ୍ଟି କରିଥିଲେ । ମହାନ୍ ମହାଭାରତ ଅଠର ଦିନର ଯୁଦ୍ଧ ଭିତରେ ଓ ପରେ ପରେ ଗୋଟିଏ ଅବକ୍ଷୟଗାମୀ ସମାଜକୁ ଶେଷ କରି ଦେଇଛି । ମହାଭାରତର ସମସ୍ତ ଚରିତ୍ର ମୃତ୍ୟୁ ପାଖରେ ଦାସଟିଏରେ ପରିଣତ ହୋଇ ଜୀବନ ପାଇଁ ବ୍ୟାକୁଳ କାମନା କରିଛନ୍ତି । ଦୁର୍ଯୋଧନର ରକ୍ତନଦୀ ସନ୍ତରଣ ପ୍ରସଙ୍ଗରେ କବି ନିଷ୍ଠାପର ଭାବରେ ମୃତ୍ୟୁର ଭୟାବହତା ପ୍ରକାଶ କରିଛନ୍ତି । ଦୁର୍ଯୋଧନ ପାଇଁ ଦାଉ ସାଜିଥିବା ରକ୍ତ ନଦୀକୁ ଚମତ୍କାର ବିଶ୍ଳେଷଣ ମାଧ୍ୟମରେ କବି ବର୍ଣ୍ଣନା କରିଛନ୍ତି । ମହାଭାରତରେ ଅଭିମନ୍ୟୁ ବଧ, ଦ୍ରୌପଦୀଙ୍କ ପାଞ୍ଚ ପୁତ୍ର ବଧ, ପଣ୍ଡୁ ମୃତ୍ୟୁ ବିଷୟକୁ ସାରଳା ଦାସ ଅତି ସୁନ୍ଦର ଭାବରେ ବ୍ୟାଖ୍ୟା କରିଛନ୍ତି । ଏପରି ମୃତ୍ୟୁ ଚେତନା ସମ୍ବଳିତ ମହାକାବ୍ୟକୁ ଏକ ଶୋକ କାବ୍ୟ ଭାବରେ ଗ୍ରହଣ କରି-ଯିବାରେ ଅସୁବିଧା ନାହିଁ ।

ପଞ୍ଚଦଶ ଷୋଡ଼ଶ ଶତକର ସାହିତ୍ୟରେ କୋଇଲି ଓ ପଦଆ କବିତା ମାଧ୍ୟମରେ ଶୋକ ସୃଷ୍ଟି କରାଯାଇଛି । 'କାନ୍ତ କୋଇଲି'ରେ ନାରୀ ମନସ୍ତତ୍ତ୍ୱର ଅସହାୟ ବ୍ୟାକୁଳତା, 'କେଶବ କୋଇଲି'ରେ ମାତୃ ହୃଦୟର ବିଳାପ ସ୍ଥାନ ପାଇଛି । ଅନେକ ପଦଆମାନଙ୍କରେ ବିରହ ଓ ବୈରାଗ୍ୟକୁ ନେଇ ଶୋକ ସୃଷ୍ଟି କରାଯାଇଛି । କିନ୍ତୁ ଏସବୁ ଶୋକଗୀତମାନଙ୍କରେ ଏକ ଚିରସ୍ଥାୟୀ ଶୋକ ପ୍ରକାଶ କରିବାରେ ଏମାନେ ଅସମର୍ଥ ହୁଅନ୍ତି । ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି'ରେ କେଶବ ଗୋଠରୁ ଫେରିବା ପରେ ଯଶୋଦା ନିଜର ଶୋକକୁ ପଣତ କାନିରେ ପୋଛି ଦିଅନ୍ତି । କାଳ୍ପନିକ (ଅନୁଭବ ଶୋକ) ଶୋକ କ୍ଷଣସ୍ଥାୟୀ । ଏହା ସ୍ଥାୟୀ ଭାବ ସୃଷ୍ଟି କରିପାରେ ନାହିଁ । ଏସବୁ ଶୋକ ଗୀତରେ ହୃଦୟ ଆବେଦନ ଥିଲେ ମଧ୍ୟ ଶୋକ କବିତାର କାରିଗରୀ ଦୃଷ୍ଟିରୁ ଆଧୁନିକ ଶୋକ କବିତାକୁ ପ୍ରଭାବିତ କରି ପାରେନାହିଁ । ତଥାପି କେଶବ କୋଇଲିର ଆବେଦନ ଅନ୍ୟ ଯେ କୌଣସି ଶୋକ କବିତାଠାରୁ ଯଥେଷ୍ଟ ତୀବ୍ର ଓ ସୁନ୍ଦର ।

ରୀତି ସାହିତ୍ୟରେ ଶୋକ କବିତା ରୋମାଣ୍ଟିକ୍ ରୂପାୟନ ମଧ୍ୟରେ ଆତ୍ମ-ପ୍ରକାଶ କରିଛି । ଜହ୍ନ, ତାରା, ପ୍ରେମିକ, ପ୍ରେମ, ବସନ୍ତର ଫୁଲ ପାଇଁ ନାୟିକା କାନ୍ଦି ପକାଇଛି । ତା' ପୁରକୁ ପ୍ରେମିକ ରାତିରେ ପ୍ରବେଶ ନ କରିବାର ଦୁଃଖରେ ସେ ଅଧିର ହୋଇ ପଡ଼ିଛି । ରୀତି ସାହିତ୍ୟରେ ଶୋକ ବିରହରେ ବଦଳି ଯାଇଛି । ବିରହର ବିଲତା ଜାଲି ଏକ ରୋମାଣ୍ଟିକ ଶୋକ ଭିତରେ ଅଧିର ହୋଇ ଉଠୁଥିବା ନାୟକ ନାୟିକା ରୀତି କବିତାରେ କବିକୁ ଶୋକ କବିତା ସୃଷ୍ଟି ପାଇଁ ଅବସର

ଦେଇ ନାହାଁନ୍ତି । ବୈଦେଶିକ କଳାସବୁ ସୀତା ଓ ବଦ୍‌ରାଧ ଚନ୍ଦ୍ରାମଣିରୁ ରାଧା ହୃଦୟର ନ ପାଇବା ପଣ ଓ ଲେଉଟିବା ପଣର ଶୋକ ସହ ପାଠକ କେତେ-କାଂଶରେ ପରିଚିତ ହୁଏ ।

ଆଧୁନିକ ଯୁଗରେ ଶୋକ କବିତା ରଚନା କରିବାର ପ୍ରକ୍ରିୟା ଆରମ୍ଭ ହୋଇଛି । ସମାଜ ଜୀବନ ଓ ମଣିଷ ସମାଜର ସାମୂହିକ ଉନ୍ନତି ଓ କଲ୍ୟାଣ ପାଇଁ ଶ୍ରମ ଦେଇ ପ୍ରକାଶ କରିଥିଲେ—

"ପ୍ରାଣୀର ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କିବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

କବି ଜୀବନର ସାମୂହିକ ଶୋକ ପ୍ରକାଶର ଅବକାଶ ସମୟକ୍ରମେ ବଦଳି ଯାଇଛି । କବି କୌଣସି ବ୍ୟକ୍ତିଙ୍କର ସାମୂହିକ ଦାର୍ଶନିକ ଦୃଷ୍ଟିରେ ନ ରଖି ବରଂ ଆତ୍ମୀୟର ମୃତ୍ୟୁରେ ବା ଉଚ୍ଚପଦସ୍ଥ ଅଧିକାରୀ ବିୟୋଗରେ ତା'ର ଗୁଣାବଳୀକୁ ସ୍ମରଣ କରି ଶୋକ କବିତା ସୃଷ୍ଟି କରିଛି । ଆଧୁନିକ ଓଡ଼ିଆ ସାହିତ୍ୟ(୧୮୮୦)ରେ ଏ ପ୍ରକାର ଶୋକ କବିତା ପରିଚ୍ଛିନ୍ନ ଭାବରେ ଆତ୍ମପ୍ରକାଶ କରିଛି ।

ମଧୁସୂଦନ ବ୍ୟକ୍ତିବାଦୀ ଶୋକ କବିତା ରଚନା କରି ବିଶିଷ୍ଟ ବ୍ୟକ୍ତିମାନଙ୍କର ମୂଲ୍ୟବାନ ଜୀବନର ଅପଚୟକୁ କବିତାରେ ପ୍ରକାଶ କରିଛନ୍ତି । କବିଙ୍କ ବିଭିନ୍ନ ସମୟରେ ରଚିତ 'ପରଲୋକଗତା ସୁଲକ୍ଷଣା ଦେବୀ' 'ରାଧାନାଥ ବିୟୋଗେ' 'ଶୋକଲହରୀ' 'ଦେବାତ୍ମା ପ୍ୟାରିମୋହନ ଅର୍ଘ୍ୟ', 'ଶୋକ ଶ୍ଳୋକ' ଆଦି ଗୋଟିଏ ଗୋଟିଏ ସାର୍ଥକ ଶ୍ଳୋକ କବିତା, ଫକୀର ମୋହନ ସେନାପତି ନିଜ ପତ୍ନୀ କୃଷ୍ଣା-କୁମାରୀ ଓ ପୁତ୍ର ମନମୋହନ ବିୟୋଗରେ 'ମୃତ ଶିଶୁପୁତ୍ର ମନମୋହନ' 'ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ' 'ମୋ କ୍ଷୁଦ୍ର ଭ୍ରାତାର' ଆଦି ଶୋକ କବିତା ସୃଷ୍ଟି କରିଛନ୍ତି । ନନ୍ଦକିଶୋର ବଳ ସେ ସମୟର ବିଶିଷ୍ଟ ବ୍ୟକ୍ତିମାନଙ୍କ ମୃତ୍ୟୁରେ ଅନେକ ଶୋକ କବିତା ରଚନା କରିଛନ୍ତି । ଗୋଦାବରୀଶ ମିଶ୍ର ସତ୍ୟବାଦୀର ଜନୈକ ଛାତ୍ରର ମୃତ୍ୟୁରେ 'ହୋଇଥାନ୍ତି' 'ଆଅବାରୁ' ଆଦି ଶ୍ଳୋକ କବିତା ରଚନା କରିଛନ୍ତି । ମାୟାଧର ମାନସିଂହଙ୍କ 'ଗୋପ ପ୍ରୟାଣ' 'ପ୍ରାଣର ବାପୁଜୀ' ଦୁଇଟି ସାର୍ଥକ ଶୋକ କବିତା, ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଉତ୍କଳ ପୁରୁଷ' 'ହେ ବନ୍ଧୁ ବିଦାୟ' ଆଦି ସାର୍ଥକ ଶୋକ କବିତା ଭାବରେ ଆଦୃତ ହୋଇଛି । କୁଞ୍ଜ ବିହାରୀ ଦାଶଙ୍କ 'ବୋଉ', 'ରମା', 'ଭଉନା' ଆଦି କବିତାଗୁଡ଼ିକ ଶୋକ ଚେତନା ପ୍ରକାଶ କରନ୍ତି । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'କଲ୍ଲୋଳ' ସଂକଳନରେ ଅନେକ ଶୋକ କବିତା ପ୍ରକାଶ ପାଇଛି । ସାଂପ୍ରତିକ ସମୟରେ ବିଶିଷ୍ଟ ଲୋକ-

ମାନଙ୍କ ମୃତ୍ୟୁରେ ସ୍ମରଣିକାମାନ ପ୍ରକାଶ କରାଯାଇ ଅନେକ ଶୋକ କବିତା ସୃଷ୍ଟି କରାଯାଉଅଛି । ଶୋକ କବିତାର ଶେଷ ନାହିଁ । ଯେଉଁ ପର୍ଯ୍ୟନ୍ତ ଜୀବନ ଅଛି, ମୃତ୍ୟୁ ଅଛି ସେ ପର୍ଯ୍ୟନ୍ତ ଆଖିରେ ଲୁହ ଅଛି ଓ କବି ହୃଦୟରୁ ଶୋକ କବିତା ସୃଷ୍ଟି ହେବାର ଯଥେଷ୍ଟ ସମ୍ଭାବନା ରହିଛି ।

## ଶୋକ କବିତାର ସାଂପ୍ରତିକ ସ୍ୱରୂପ ମୃତ୍ୟୁ ଚେତନା :

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ କିଂଚିତ୍ କବିତା ସୃଷ୍ଟି କରିବାର ଯେଉଁ କାବ୍ୟିକ ପ୍ରୟାସ କରାଯାଇଛି ତାହାଦ୍ୱାରା କବିତାର ଅନେକ ପାରମ୍ପରିକ ବିଭାଗ ଯେ ଅବହେଳିତ ଓ ଅସୁରକ୍ଷିତ ହୋଇଗଲେ ଏମିତି ଭାବିବା ଦାୟିତ୍ୱ-ହୀନତାର ପରିଚୟ ଦିଏ । ପ୍ରୟୋଗବାଦୀ କବିତାରେ ପାରଂପରିକ କାବ୍ୟର ସମସ୍ତ ସାମଗ୍ରୀ ସହ ପରୀକ୍ଷାମୂଳକ କାବ୍ୟ ସୃଷ୍ଟି କରିବା ଆରମ୍ଭ ହୋଇଛି । ଶୋକ କବିତାର ଯେଉଁ ପ୍ରାଚୀନ କଳାରୂପ କାନ୍ଦଣା ପାଖରୁ ଆମ ସମାଜରେ ଗଢ଼ି ଆସୁଥିଲା ତାହା ସମ୍ପ୍ରତି ସାଂପ୍ରତିକ କବିତାରେ ମୃତ୍ୟୁ ଚେତନାରେ ବଦଳି ଯାଇଛି । ଶୋକ କବିତାମାନଙ୍କରେ ମୃତ୍ୟୁ ପ୍ରତି ଭୟାବହତା, ଅସୁରକ୍ଷିତ ଜୀବନର ଅସହାୟତା ଥାଏ ଏବଂ ବ୍ୟକ୍ତି ଦୈହିକ ସମ୍ପୂର୍ଣ୍ଣ ଭାବରେ ଲୋପ ହୋଇଗଲା ପରେ ଅନ୍ୟ ଜଣେ ସେହି ଆତ୍ମୀୟର ଗୁଣ ଗାନ କରି ଶୋକ କବିତା ସୃଷ୍ଟି କରିଥାଏ । ସାଂପ୍ରତିକ କବିତାରେ କବି ମରିବା ଆଗରୁ ଅନେକ ଥର ଅର୍ଦ୍ଧିତ ଭାବରେ ସହସ୍ର ଆତ୍ମହତ୍ୟା କରିଥିବା ମଣିଷର ବ୍ୟଥାକୁ କବିତାରେ ଉତାରି ଥାଏ । ସେ ମୃତ୍ୟୁକୁ ଭୟ କରେ, ମୃତ୍ୟୁ ଯେ କୌଣସି ସମୟରେ ଆକସ୍ମିକ ଭାବରେ ଆସିଯାଇ ପାରେ, ସେଥିପାଇଁ ନିଜ ସମ୍ପର୍କରେ ସେ ଏକ ଶୀତଳ ମୃତ୍ୟୁର କାମନା କରିଥାଏ । ସେ କେମିତି ମରିବ, ତା'ର ଶେଷତମ ଇଚ୍ଛା କ'ଣ, ଏସବୁ କଥା କବି ଅନେକ ଆଗରୁ (ଘଟାଇଥିବା ମୃତ୍ୟୁ ପୂର୍ବରୁ) ଚିନ୍ତା କରି ନିଜ ବିଷୟରେ ନିଜେ ଶୋକ କବିତା ରଚନା କରିଯାଏ, ବସ୍ତୁତଃ ଏହା ହିଁ ମୃତ୍ୟୁ ଚେତନା ଯାହାକୁ ଆମେ ପାରଂପରିକ ଶୋକଗୀତ ବା ଶୋକ କବିତାର ଅବବୋଧ ଭିତରେ ପାଉଁଛି ପାରିବା ।

ମୃତ୍ୟୁ ଚେତନାର ପରିସର ଓଡ଼ିଆ କବିତାର ବହୁ ପ୍ରାଚୀନ । ସାଧକ କବିମାନଙ୍କ ଦ୍ୱାରା ମୃତ୍ୟୁ ଓ ଜଗତ ବିଷୟରେ ଅନେକ କବିତା ରଚନା କରାଯାଇ ଆମକୁ ଅନେକ ଆଗରୁ ସଚେତନ କରାଇ ଦିଆଯାଇଛି । ଆମ ପ୍ରାଚୀନ କବିତାରେ କୁହାଯାଇଛି—

—"ବୋହୂ ଭୁଲି ନ ଜାଣଇ ଲୋ
ପାଦ ପଡ଼ୁଥାଇ ବଙ୍କା

ଯେଉଁ ଦିନ ବୋହୂ ସଳଖି ଶୁଇବ
ଘରେ ପଡ଼ିଯିବ ଡକା ।"

ଏ ପ୍ରକାର କାବ୍ୟକ ଚେତନା ଓଡ଼ିଆ ସାହିତ୍ୟରେ ଦୁଇ ଧାରରେ ପ୍ରସ୍ଫୁଟିତ ହୋଇଛି । ପ୍ରଗତିବାଦ ଓ ପ୍ରୟୋଗବାଦ ଦୁଇ ଧାର ଦେଇ ମୃତ୍ୟୁ ଚେତନା (ଶୋକ ଚେତନା) ଆମ କବିକୁ ବ୍ୟଥିତ କରିଛି । ଯେଉଁଠି ପ୍ରଗତିବାଦୀ କବି କୁହେ—

"ମୃତ୍ୟୁର କଳେ ପହଁରି ପହଁରି
ତୋଳେ ଯେ ତୋ ପାଇଁ ରକ୍ତ କଇଁ
କୃଷ୍ଣ ନାଗର ଦଂଶନେ ସେ କି
ପଡ଼ିବ ନଇଁରେ ପଡ଼ିବ ନଇଁ ।"

(ଅନନ୍ତ ପଟ୍ଟନାୟକ)

ସେଇଠି ପ୍ରୟୋଗବାଦୀ କବି କୁହେ—

"ସମସ୍ତ କୃପଣ କେଡ଼େ
ମନା କରିଦେଲି ଆଉ ଏକଚନ୍ଦ୍ର ପକ୍ଷ
ଗଢ଼ ମୋ ଦେହକୁ
କୋଇଲିର ଚଞ୍ଚି ଚପିଦେଲି
ତା' ମଡରେ ଗୋଟିଏ ଗୀତ ବି ଖୁବ୍ ।"

(ରମାକାନ୍ତ ରଥ)

ସାଂପ୍ରତିକ କବିତାରେ ମରିବାକୁ ସହଜରେ ଗ୍ରହଣ କରିନେବା ଭାବ ପ୍ରକାଶ ପାଇଛି । ସେଥିପାଇଁ ମରିବା ବେଳର ଚିତ୍ର ଆମ କବିତାରେ ପ୍ରାଞ୍ଜଳ ଭାବରେ ଆତ୍ମ ପ୍ରକାଶ କରିଛି ।

"ଶୁଖିଲି ପତ୍ରରେ
ସଜେଇ ଦେବ ମୋର କୋକେଇ
ପ୍ରତ୍ୟେକ ପକ୍ଷୀଙ୍କୁ ଖବର କରିଦେବ
ଶୋଭାଯାତ୍ରାରେ ଯୋଗ ଦେବାପାଇଁ
ବର୍ଷାକୁ କହିବ ଅଳ୍ପ ଅଳ୍ପ ଝରିବାକୁ
ଦୂର ପାହାଡ଼କୁ କହିବ ସ୍ପଷ୍ଟ ଦିଶିବ ଆଗ ଅପେକ୍ଷା
ଓ ଉଦାସ ନ ହେବାପାଇଁ ନଈକୁ କହିବ
ଚୁମିବାକୁ ମୋର ଦୁଇ ଓଠ
ଟିକେ ସୁଯୋଗ ଦେବ ମୋ ପ୍ରିୟାକୁ

ଜାଣିଚ
ଆଜି ତୁମେ ନେବ ମୋତେ
ଶୂଳରେ ବସାଇବାକୁ ।''

(ପ୍ରସନ୍ନ ପାଟ୍ଟଶାଣୀ)

ସାଂପ୍ରତିକ ମଣିଷ ଜାଣିଚ ମୃତ୍ୟୁ ସତ୍ୟ ଏବଂ ସିଏ କେବେ ତା' କବଳରୁ ବର୍ତ୍ତି ପାରିବ ନାହିଁ । ପୁଣି କେତେବେଳେ ଅଚାନକ ତାକୁ ମରିବାକୁ ହେବ ସେଥିପାଇଁ ମଧ୍ୟ ସେ ପ୍ରସ୍ତୁତ ହୋଇ ରହୁଛି । ଏହି ଆବେଗଦୀପ୍ତ ସ୍ପଷ୍ଟ ସଣ କବି ଗୁରୁପ୍ରସାଦଙ୍କ କବିତାରେ ପ୍ରକାଶ ପାଇଛି—

''ଏ ମୃତ୍ୟୁ
ସହରର ସବୁ ଫ୍ୟୁଜ ଅକସ୍ମାତ୍ ଜଳିଗଲା ପରି
ଏ ମୃତ୍ୟୁ କାହାପାଇଁ
ଷ୍ଟକରୁ ଅକସ୍ମାତ୍ ଅବସର ନେଲା ପରି ।''

(ଗୁରୁପ୍ରସାଦ ମହାନ୍ତି)

ସାଂପ୍ରତିକ କବିତାର ପ୍ରଭାବଶାଳୀ କବିମାନେ ସମସ୍ତେ ନିଜ ନିଜର ମୃତ୍ୟୁ ଦର୍ଶନ ପ୍ରକାଶ କରିଛନ୍ତି । ଏହି ବ୍ୟକ୍ତିଗତ ମୃତ୍ୟୁବୋଧକୁ ନିଜ ସପକ୍ଷରେ ଶୋକ ସଙ୍ଗୀତ ଭାବରେ ଗ୍ରହଣ କରି ନିଆଯିବ । ଶୋକ କବିତାକୁ ସୀମାବଦ୍ଧତା ଭିତରେ ମାପି ବସିଲେ ଏହାର ବ୍ୟାପକତା ହ୍ରାସ ହୋଇଯିବ । ଆଧୁନିକ ଜୀବନର ବିବିଧ ଦିଗ ପରି ଶୋକ କବିତାକୁ ଆଜିର କଂକ୍ରିଟ୍ କବିତା ଭିତରୁ ଗ୍ରହଣ କରିହେବ ।

# ବ୍ୟଙ୍ଗ କବିତା (Satire)

ସମାଜ ବ୍ୟବସ୍ଥା ଓ ବ୍ୟକ୍ତି ଜୀବନକୁ ଉପଲକ୍ଷ୍ୟ କରି ବ୍ୟଙ୍ଗ କବିତା ରଚନା କରାଯାଇଥାଏ । ବ୍ୟଙ୍ଗ କବିତା ହାସ୍ୟରସ ସୃଷ୍ଟି କରିଥାଏ । ସମାଜ ବ୍ୟବସ୍ଥାକୁ ବିଦ୍ରୂପ କରିବା ସହ ବ୍ୟକ୍ତି ଜୀବନର ବିବିଧ ଦିଗ ଉପରେ ବ୍ୟଙ୍ଗ କବିତା ଆଲୋକପାତ କରିଥାଏ । ବ୍ୟଙ୍ଗ କବିତା ହାସ୍ୟରସ ସୃଷ୍ଟି ପାଇଁ ଉଦ୍ଦିଷ୍ଟ ନୁହେଁ ବରଂ ହାସ୍ୟରସ ମାଧ୍ୟମରେ ସମାଜରେ ଘଟୁଥିବା ବିଭିନ୍ନ ଘଟଣାର ରସାତ୍ମକ ପରିବେଷଣ ବ୍ୟଙ୍ଗ କବିତା ମାଧ୍ୟମରେ ସମ୍ଭବ ହୋଇଥାଏ । ବ୍ୟଙ୍ଗ କବିତା ସ୍ୱାଭାବିକ ଜନ୍ମ ନିଏନାହିଁ । କବି ଗୋଟିଏ ବିଶେଷ ବ୍ୟବସ୍ଥା ଦ୍ୱାରା ପ୍ରଭାବିତ ହୋଇ ନିଜ ମାନସ ମନ୍ଥନରେ ଘଟଣାକୁ ଉପଲବ୍‌ଧି କରି ବ୍ୟଙ୍ଗ କବିତା ସୃଷ୍ଟି କରିବାର ପ୍ରୟାସ କରିଥାଏ । ବ୍ୟଙ୍ଗ କବିତା ସୃଷ୍ଟି ପାଇଁ କବିକୁ ସେହିପରି ଏକ ଘଟଣା ବା ସମ୍ଭାବନାକୁ ଅପେକ୍ଷା କରିବାକୁ ହୋଇଥାଏ । ସାମାଜିକ ଜୀବନ ଧାରଣ, ସାଂସ୍କୃତିକ ଅବକ୍ଷୟ, କ୍ଷମତା ରାଜନୀତି, ଜାତିଗତ ସଂଘର୍ଷ, ଧର୍ମଗତ କୁସଂସ୍କାର ଓ ଅନ୍ଧବିଶ୍ୱାସ, ମଣିଷର ବୃଥା ଅହଙ୍କାର ଏବଂ ବିଭିନ୍ନ ସ୍ତରର ବିବାଦକୁ ଆୟୁଧ କରି ବ୍ୟଙ୍ଗ କବିତା ସୃଷ୍ଟି ହୋଇଥାଏ ।

ପ୍ରାଚ୍ୟ କାବ୍ୟ ରଚନାରେ ବକ୍ରୋକ୍ତିକୁ ଗୁରୁତ୍ୱପୂର୍ଣ୍ଣ ଭାବରେ ଗ୍ରହଣ କରାଯାଇଛି । କୁନ୍ତକ କହିଥିଲେ—'ବକ୍ରୋକ୍ତି କାବ୍ୟ ଜୀବିତମ୍' ବକ୍ରୋକ୍ତି ବିନ୍ୟାସ କାବ୍ୟରେ ଜୀବନ ସଞ୍ଚାର କରେ । ଏହି ବକ୍ରୋକ୍ତିର ସଫଳ ପ୍ରୟୋଗ ହେତୁ ରୀତି କାବ୍ୟମାନଙ୍କରେ ଅନେକ ଅଳଙ୍କାରର ପ୍ରୟୋଗ ସହ ଅନେକ ଅର୍ଥ ଓ ଅର୍ଥାନ୍ତର ସୃଷ୍ଟି ହୋଇ ପାରିଛି । କେଉଁଠି ରସ ସୃଷ୍ଟି ହୋଇଛି ତ କେଉଁଠି ରସାଭାସ ଦେଖା ଦେଇଛି । ଇଂରାଜୀ କାବ୍ୟ ରୂପ Satire ଆଲୋଚନା କଲାବେଳେ ପ୍ରାଚ୍ୟ କାବ୍ୟର ବକ୍ରୋକ୍ତି ପ୍ରୟୋଗକୁ ବ୍ୟଙ୍ଗ କବିତାର ପ୍ରାଚୀନ ପ୍ରୟୋଗ ଭାବରେ ଗ୍ରହଣ କରାଯିବ । ପାଶ୍ଚାତ୍ୟ ସାହିତ୍ୟରେ ପୋପ୍, ବାଇରନ୍, ଡ୍ରାଇଡେନ୍ ପ୍ରମୁଖ ଏହି ଆଧୁନିକ କାବ୍ୟ ବିଭବ ମଧ୍ୟରେ ବ୍ୟକ୍ତି ଜୀବନ ଓ

ସମାଜ ଜୀବନକୁ ବ୍ୟାଖ୍ୟା କରିବାର ଯଥେଷ୍ଟ ଅବକାଶ ସୃଷ୍ଟି କରିଥିଲେ । ବର୍ତ୍ତମାନ ଆମ କାବ୍ୟ ପରମ୍ପରାରେ ବ୍ୟଙ୍ଗ ଓ ବିଦ୍ରୂପକୁ କଳାତ୍ମକ ଶୈଳୀରେ ପରିବେଷଣ କରିଛୁ ।

ଓଡ଼ିଆ ବ୍ୟଙ୍ଗ କବିତା ହାସ୍ୟରସ ମାଧ୍ୟମରେ ପ୍ରଥମ ପର୍ଯ୍ୟାୟରେ ଆତ୍ମପ୍ରକାଶ କରିଥିଲା । ସାରଳା ଦାସ 'ମହାଭାରତ'ରେ ଏପରି ହାସ୍ୟରସାତ୍ମକ ଅନେକ ଦୃଶ୍ୟର ବର୍ଣ୍ଣନା ଦେଇଛନ୍ତି । ଅଛି ତାମଧ୍ୟ ଭିତରେ କେତେକ ପର୍ବରେ କବି ବ୍ୟଙ୍ଗ ବର୍ଣ୍ଣନା ପ୍ରଦାନ କରିଛନ୍ତି । ବଳ୍ପା ଦାସଙ୍କ 'କଳସା ଚଉତିଶା'ରେ ଶିବ ପାର୍ବତୀଙ୍କୁ ବାହା ହେବାକୁ ବୃଦ୍ଧ ବେଶରେ ଯିବା ଓ ପାର୍ବତୀଙ୍କୁ ତାଙ୍କର ସଖୀମାନେ ଶିବଙ୍କ ବୃଦ୍ଧ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ଓ ପାର୍ବତୀ ବାହା ହେବାପାଇଁ ଅମଙ୍ଗ ହେବା ଏବଂ ଶେଷରେ ଶିବ ନିଜର ପରିଚୟ ପ୍ରଦାନ କରି ସମଗ୍ର କବିତାରେ ହାସ୍ୟ ଏବଂ କୌତୁକ ଭାବ ସୃଷ୍ଟି କରିଛନ୍ତି ! କିନ୍ତୁ ଏଗୁଡ଼ିକୁ ବ୍ୟଙ୍ଗ କବିତା କୁହାଯିବ ନାହିଁ । ମଧ୍ୟ ସାହିତ୍ୟରେ କବିସୂର୍ଯ୍ୟ ବଳଦେବ ରଥ 'ହାସ୍ୟ କଲ୍ଲୋଳ' ରଚନା କରିଛନ୍ତି । ଏଥିରେ ଅନେକ ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ ସତକଥାର ଉନ୍ମୋଚନ ଘଟିଛି । ବ୍ୟଙ୍ଗ କବିତା ଆଲୋଚନା ପରିପ୍ରେକ୍ଷୀରେ ହାସ୍ୟ କଲ୍ଲୋଳକୁ ଗୁରୁତ୍ୱ ଦେଇ ଗ୍ରହଣ କରାଯାଇ ପାରିବ ।

କବିତାର ଏହି ଆଧୁନିକ ବିଭାଗଟି ଆଧୁନିକ ଯୁଗରେ ସୃଷ୍ଟି ହୋଇଛି । ଏହି ବ୍ୟଙ୍ଗକୁ ଫକୀରମୋହନ ତାଙ୍କ ଉପନ୍ୟାସରେ ପ୍ରୟୋଗ କରିଛନ୍ତି । 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଚମ୍ପାର ବର୍ଣ୍ଣନା ଦେଇ କହିଛନ୍ତି—

"କଜ୍ଜ୍ୱଳ ପୂରିତ ଲୋଚନ ଭାଲେ
ଗୁଣ୍ଡି ମିଶା ଖିଲି ଗୁଞ୍ଜିତ ଗାଲେ
ତୈଳ ହରିଦ୍ରା ବୋଳିତ ଦେହେ
କୁକ୍କୁରୀବ ଶୀଘ୍ରଂ ଧାବତି ଗେହେ ।"

ଫକୀର ମୋହନ ସାମାଜିକ ବିଷୟବସ୍ତୁକୁ ତାଙ୍କ କାବ୍ୟର ମୂଳପୁଞ୍ଜି କରି ମଣିଷର ଚରିତ୍ରକୁ ବ୍ୟଙ୍ଗ ମାଧ୍ୟମରେ ଉନ୍ମୋଚନ କରିଥିଲେ । ବ୍ୟଙ୍ଗ କାବ୍ୟ ରଚନା କବି ଗୋଧାନାଥଙ୍କ ଲେଖାରେ ସୁସ୍ପଷ୍ଟ ହୋଇଛି । ଓଡ଼ିଆ ଭାଷାରେ ସାର୍ଥକ ବ୍ୟଙ୍ଗ କାବ୍ୟ 'ଦରବାର' ୧୮୯୬ ରଚନା କରି ଓଡ଼ିଆ ବ୍ୟଙ୍ଗ କାବ୍ୟକୁ କବି ନୂତନ ପରିଚୟ ପ୍ରଦାନ କରିଛନ୍ତି । ଦରବାର କାବ୍ୟରେ କବି ଉତ୍କଳର ରାଜା ଓ ଆଧୁନିକ ଜୀବନଧାରାକୁ ବିଦ୍ରୂପ କରିଛନ୍ତି ।

କବି ରାଧାନାଥ ଦରବାର କାବ୍ୟରେ ଓଡ଼ିଶାର ଦେଶୀୟ ରାଜାମାନଙ୍କର ଅଯଥା ବ୍ୟାକୁଳତା, ଶାସନ ବ୍ୟବସ୍ଥା, ଉତ୍କଳର ଦୁର୍ଦ୍ଦଶା, ଇଂରେଜ ଶିକ୍ଷାପ୍ରାପ୍ତ ଯୁବକମାନଙ୍କର ଅଧୋଗତିକୁ ଅତି ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି । କବି କହିଛନ୍ତି—

"ସାହେବୀ ପୋଷାକ କେତେ ଅବା ପିନ୍ଧି
ହସି ହସି କହୁଇ ବଙ୍କା ବଙ୍କା ହିନ୍ଦୀ ।
ଥରେ ଥରେ କାଶି ସାହେବୀ ଠାଣିରେ
ପୋଛଇ ବଦନ ରୁମାଲ କାନ୍ଧରେ ।
ପ୍ରକଟାଇ ପୂରା ସାହେବୀ ପଣିଆ
ଫରକଟା ଗୋଡ଼େ ହୁଏ ପୁଣି ଠିଆ ।"

ରାଧାନାଥଙ୍କ ସମୟରେ ଗୋବିନ୍ଦ ରଥ 'ଫିଟିଚର ସାହେବ' ନାମକ ଏକ ବ୍ୟଙ୍ଗ କବିତା ମାଧ୍ୟମରେ ଶାସନତନ୍ତ୍ରକୁ ବିଦ୍ରୂପ କରିବାକୁ ପଛାଇ ନ ଥିଲେ । ହାସ୍ୟ କବିତା ରଚନାରେ ଯଦିଓ ମଧୁସୂଦନ ରାଓ କୌଣସି ରୁଚି ରଖି ନ ଥିଲେ ତଥାପି ରାଧାନାଥ ଓ ଭଞ୍ଜ ବିବାଦ ପରିପ୍ରେକ୍ଷୀରେ ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକାର ସଂଘର୍ଷକୁ ଲକ୍ଷ୍ୟକରି ଶ୍ରୀଯୁକ୍ତ ରାଓ କେତୋଟି କବିତା ରଚନା କରିଥିଲେ । ଏହି କବିତା 'ଭଣ୍ଡ ରସାୟନ କାବ୍ୟ' ଭାବରେ ପରିଚିତ ହୋଇଛି । ବ୍ୟଙ୍ଗ କବିତା ରଚନାର ପରିମାଣ ଓଡ଼ିଆ ସାହିତ୍ୟରେ ସୀମିତ । ଅନ୍ୟାନ୍ୟ କାବ୍ୟ ବିଭବ ପରି ଏହାର ଏତେ ବ୍ୟାପ୍ତି ନୁହେଁ । ସଚ୍ଚିଦାନନ୍ଦ ରାଉତରାୟଙ୍କ 'ବସନ୍ତ' କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ଯାଦୁଘର' ଗୋଦାବରୀଶ ମହାପାତ୍ରଙ୍କ 'କଣ୍ଟା ଓ ଫୁଲ' ଫତୁରାନନ୍ଦଙ୍କ 'କବି ଲଢ଼େଇ' ବ୍ରଜନାଥ ରଥଙ୍କ 'ଲଘୁ ଶତକ' ଆଦି ବିଶେଷ ଉଲ୍ଲେଖଯୋଗ୍ୟ । କବି ରବି ସିଂ ବାସ୍ତବବାଦୀ ବ୍ୟଙ୍ଗ କବିତା ରଚନା କରି ଓଡ଼ିଆ ବ୍ୟଙ୍ଗ କବିତାକୁ ଭୁଙ୍ଗିମନ୍ତ କରିଛନ୍ତି । କବି କହନ୍ତି—

"ସାଧୁଆ ବିକୁଛି ଯାଦୁର ମଲମ ଦେଖ
ମଦୁଆ ଧରିଛି ନିଶା ନିବାରଣ ବାନା
ଗଣିକା ସାଜିଛି ବେଶ୍ୟା ବିରୋଧୀ ମାତା
ଉତ୍କଟ ଗଢ଼ନ୍ତି ଏ ଅନାରେ ଅନା ।"

ଓଡ଼ିଆ ସାହିତ୍ୟରେ ଡଗର, ନିଆଁଖୁଣ୍ଟା ଆଦି ପତ୍ରିକା ବ୍ୟଙ୍ଗ କବିତା ରଚନା କରିବାରେ ସହାୟକ ହୋଇଛନ୍ତି । ସାଂପ୍ରତିକ ସମୟରେ ସମାଜ ବ୍ୟବସ୍ଥା ଓ ବ୍ୟକ୍ତିର ଜୀବନବୋଧକୁ ବିଦ୍ରୂପ କରି ଅନେକ ବ୍ୟଙ୍ଗ କବିତା ସୃଷ୍ଟି ହେଉଥିବା ଲକ୍ଷ୍ୟ କରାଯିବ ।

## ଚତୁର୍ଦ୍ଦଶପାଦୀ କବିତା (Sonnet) —

ଇଂରାଜୀ ସନେଟ୍‌କୁ ଓଡ଼ିଆରେ ଚତୁର୍ଦ୍ଦଶପାଦୀ କବିତା ଭାବରେ ଗ୍ରହଣ କରାଯାଇଥାଏ । ଏହି ସନେଟ୍ ଶବ୍ଦଟି ପ୍ରାଚୀନ ଇଟାଲୀୟ ସନଟୋ Sonetto ଶବ୍ଦରୁ ଆସିଅଛି । ସନଟୋ କହିଲେ କ୍ଷୁଦ୍ର ଗୀତଧର୍ମୀ କବିତାକୁ ବୁଝାଏ । ସନେଟ୍ ଏକ ପରିମିତ ପରିଧି ଭିତରେ ଆତ୍ମପ୍ରକାଶ କରିଥାଏ । କବିତାର ଅନ୍ୟାନ୍ୟ ବିଭାଗ ପାଇଁ କୌଣସି ନିୟମ ଅନୁସୃତ ହେଉ ନ ଥିବାବେଳେ ସନେଟ୍ ପାଇଁ କେତୋଟି ରଚନାଗତ ନିୟମ ଥାଏ । ସନେଟ୍‌ର ପ୍ରଥମ ଆଠ ଧାଡ଼ିକୁ ଅଷ୍ଟକ (Octave) ଏବଂ ଶେଷ ଛଅ ଧାଡ଼ିକୁ ଷଷ୍ଟକ (sestet) ବୋଲି କୁହାଯାଇଥାଏ । ସନେଟ୍‌ରେ ସବୁ ମିଶି ଚଉଦ ଗୋଟି ଧାଡ଼ି ଥାଏ । ପ୍ରଥମ ଆଠ ଧାଡ଼ି ଭିତରେ ଚାରି ଧାଡ଼ି ବିଶିଷ୍ଟ ଦୁଇଟି ପାଦ ଥାଏ ଏବଂ ପ୍ରଥମ ଧାଡ଼ି ସହ ଚତୁର୍ଥ ଧାଡ଼ିର ଦ୍ୱିତୀୟ ଧାଡ଼ି ସହ ତୃତୀୟ ଧାଡ଼ିର ମିଳନ ହୋଇଥାଏ । ଅନେକ ସମୟରେ ଏହି ନିୟମରେ ବିଘ୍ନ ଦେଖାଗଲେ ହେଁ ବସ୍ତୁତଃ ସନେଟ୍‌ରେ ଏହି ନିୟମ ଅନୁସୃତ ହୋଇଥାଏ ।

'ଇଟାଲୀୟ ଏହି କାବ୍ୟ ରୂପଟି ଇଂରାଜୀ ସାହିତ୍ୟରେ ଅନୁସୃତ ହେବା ଫଳରେ ଏହାର ଛନ୍ଦବିଧାନ ଓ ପଦ ମିଳନରେ କେତେକ ପରିବର୍ତ୍ତନ ସଂଘଟିତ ହୋଇଥିଲା । ସେକସପିଅରଙ୍କ ଇଂରାଜୀ ସାହିତ୍ୟର ସର୍ବଶ୍ରେଷ୍ଠ ସନେଟ୍ ରଚୟିତା ଭାବରେ ଗ୍ରହଣ କରାଯାଏ । ସେକ୍‌ସପିଅର ଚାରିପାଦ ବିଶିଷ୍ଟ ତିନିଗୋଟି ସ୍ତବକ (Quartrain) ଓ ଗୋଟିଏ ଦ୍ୱିପାଦ ବିଶିଷ୍ଟ (Couplet) ସ୍ତବକର ସଂଯୋଗରେ ଚତୁର୍ଦ୍ଦଶପାଦୀ କବିତା ରଚନା କରି ଏ କ୍ଷେତ୍ରରେ ଅଭିନବତ୍ୱ ସମ୍ପାଦନ କଲେ ।' (କବିତାର ମାନଦଣ୍ଡ—ଜାନକୀ ବଲ୍ଲଭ ମହାନ୍ତି—ପୃ-୧୧୭) । ଇଟାଲୀୟ କବି ପେଟ୍ରାର୍କ Petrach ସନେଟ୍ ରଚନା ଶୈଳୀର ପ୍ରଚଳନ କଲେ, ପରେ ପରେ ଏହା ଇଂରେଜ କବି ମିଲ୍‌ଟନ, ସେକ୍‌ସପିଅରଙ୍କ ଦ୍ୱାରା ପରିବର୍ତ୍ତିତ ହୋଇ ନୂତନ ଭାବରେ ଆତ୍ମପ୍ରକାଶ କଲା । ସନେଟ୍ ଯେତେ ପରିବର୍ତ୍ତନ ହେଲେ ମଧ୍ୟ ତା'ର ମୂଳ କଳା ଧର୍ମ ହରାଇ ନାହିଁ । ମାତ୍ର ଚଉଦ ଗୋଟି ଧାଡ଼ି ଭିତରେ ଚମତ୍କାର ଆବେଗ ଓ ଭାବ ପ୍ରକାଶ କରିବାରେ ଏହା ସମର୍ଥ ହୋଇଛି ।

ଓଡ଼ିଆ ଭାଷା ସାହିତ୍ୟରେ ଚତୁର୍ଦ୍ଦଶପାଦୀ କବିତାର ପ୍ରାଚୀନ ରୂପ ବିଭିନ୍ନ ପଦଆ ସାହିତ୍ୟ ମଧ୍ୟରେ ଦେଖିବାକୁ ମିଳେ । ପ୍ରାଚୀନ ସାହିତ୍ୟରେ ବିଭିନ୍ନ କବିମାନଙ୍କ ଦ୍ୱାରା ପଦଆ ଓ ପୋଇ ସାହିତ୍ୟ ସୃଷ୍ଟି ହୋଇଥିଲା । ଏଥିମଧ୍ୟରୁ ଏକପଦ, ଚଉପଦ, ଷୋଳପଦ, ଶତେପଦ, ଷୋଳ ପୋଇ, ଛପନ ପଦଆ ଆଦି ଅଧିକ ଲୋକପ୍ରିୟ । ଓଡ଼ିଶାରେ ବିଧିବଦ୍ଧ ଏହି ପାଶ୍ଚାତ୍ୟ କାବ୍ୟ ଧାରାର ପ୍ରୟୋଗ

ହେବା ପୂର୍ବରୁ ପଦ୍ୟ ନିର୍ଣ୍ଣିସ୍ଥ ସାହିତ୍ୟ ଥିଲା । ଚତୁର୍ଦ୍ଦଶପଦୀ କବିତାର ଏକ ଦେଶୀୟ ରୂପ ଏହି ପଦିଆ ଓ ପୋଇ ସାହିତ୍ୟ ମାଧ୍ୟମରେ ସଂଗ୍ରହ କରିଯାଇ ପାରିବ ।

'ବସନ୍ତ ଗାଥା' ସନେଟ୍ ରଚନା କରି କବି ମଧୁସୂଦନ ରାଓ ଓଡ଼ିଆ ସାହିତ୍ୟରେ ଚତୁର୍ଦ୍ଦଶପଦୀ କବିତା ରଚନାର ମାର୍ଗ ଉନ୍ମୋଚନ କରିଛନ୍ତି । ବସନ୍ତ ଗାଥାରେ 'ପରସ ପ୍ରମାଣ' 'ଯୌବନର ସ୍ୱପ୍ନ' 'ଶ୍ରୀପଞ୍ଚମୀ' 'ପତିତାରମଣୀ' ଆଦି ଯୌବନ ଓ ଜୀବନଧର୍ମୀ ସନେଟ ପ୍ରକାଶ ପାଇଛି । ଫକୀରମୋହନ ସେନାପତିଙ୍କ 'ଶେଷଦିନ' ନାମକ ସନେଟ ରଚନା କରିଛନ୍ତି । ଗଙ୍ଗାଧର ମେହେରଙ୍କ 'ଅର୍ଘ୍ୟଥାଳୀ' ନନ୍ଦକିଶୋର ବଳଙ୍କ 'ନିର୍ଝରିଣୀ'ରେ ସନେଟ୍ କଳା ଆତ୍ମପ୍ରକାଶ କରିଛି । ସନେଟ୍ ରଚନା କରିବାରେ ମାୟାଧର ମାନସିଂହ ନିଜର ପାରଦର୍ଶିତା ପ୍ରକାଶ କରିଛନ୍ତି । କବି 'ହେମଶସ୍ୟ' 'ଅକ୍ଷତ' 'ହେମପୁଷ୍ପ' ଆଦି ସାର୍ଥକ ସନେଟ୍‌ମାନ ରଚନା କରିଛନ୍ତି । ମାନସିଂଙ୍କ ସନେଟ୍ ଗୋଟିଏ ନିବିଡ଼ ଭାବକୁ ପ୍ରକାଶ କରିଥାଏ ଓ ବ୍ୟକ୍ତି ଚେତନା ସହ କ୍ଷଣକରେ ଏକାକାର ହୋଇଯାଏ । କବିଙ୍କ 'ଛୋଟି ସନେଟ୍'ର ଏ ବର୍ଣ୍ଣନା ପରିଲକ୍ଷିତ—

"ଜାଣିନି କି ଚେଷ୍ଟା କି କରୁଣ ଲୋଡକ,
କେତେ ବନ୍ଧୁ, ସଖାସଖୀ, ପରିଜନ ପାଇଁ ?
ନିଃସଙ୍ଗ ଜୀବନ, ମଣେ ଏକାନ୍ତ ଅରକ୍ଷ,
କେହି ହେଲେ ଜଣକର ପ୍ରଣୟ ନ ପାଇ ।"

ମାୟାଧର ମାନସିଂହଙ୍କ ପରେ ସନେଟ୍ ରଚନା କରିବାରେ କବି ଗୁରୁ ପ୍ରସାଦ ମହାନ୍ତି ନିଜ ସିଦ୍ଧ ହସ୍ତତାର ପରିଚୟ ପ୍ରଦାନ କରିଛନ୍ତି । କବି 'ସମୁଦ୍ର ସ୍ନାନ' ସଙ୍କଳନରେ ଅନେକ ସାର୍ଥକ ସନେଟ୍ ସୃଷ୍ଟି କରିଛନ୍ତି । କବି ଗୁରୁପ୍ରସାଦଙ୍କ ସନେଟ୍‌ର ବିଶେଷତ୍ୱ ହେଉଛି, ଏହା ସଙ୍ଗୀତମୟ ଓ ଗୀତି କବିତାର ସମସ୍ତ ଆବେଦନ ବହନ କରିବାରେ ସମର୍ଥ । କବିଙ୍କ 'ଚମ୍ପାଫୁଲ' ସନେଟ୍‌କୁ ଉଦାହରଣ ଭାବରେ ନିଆଯାଇପାରେ—

"ଚମ୍ପା ଫୁଲ ମହକରେ ବାଟ ଭୁଲି ସମୁଦ୍ରର ଢେଉ
ଅସିଥିଲା କୂଳ ଲଙ୍ଘି ଶୁଖିଥିଲା ଭରା ନଦୀ ସ୍ରୋତ
ଶ୍ମଶାନର ପଥର ତରଳି ଥିଲେ ଭୂତ ପ୍ରେତ ଗୁଡ଼ି
ରାଜବଣ୍ଣ କନ୍ୟା ଲାଗି ଯୋଗୀ ଥିଲେ ମଦନରେ ମାତି ।"

କୃଷ୍ଣ ବିହାରୀ ଦାଶଙ୍କ 'ପ୍ରଶ୍ନୋତ୍ତର' କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଆତ୍ମଲିପି' ରାଧାମୋହନ ଗଡ଼ନାୟକଙ୍କ 'ଜୟଦେବ' 'ସଜନୀ ଗୋ' 'ଘାସଫୁଲ' 'ଛନ୍ଦନାଚ' ଆଦି ଗୋଟିଏ ଗୋଟିଏ ସାର୍ଥକ ସନେଟ୍। ରାଧାମୋହନଙ୍କ ସନେଟ୍‌ରେ ବ୍ୟକ୍ତିବାଦୀ ଚେତନା ଅପେକ୍ଷା ସାଂସ୍କୃତିକ ଚେତନା ଓ ଚିନ୍ତାଧାରାର ବିଶ୍ଳେଷଣ ଅଧିକ ଭାବରେ ଦେଖାଯାଏ ।

ସାଂପ୍ରତିକ କବିତାରେ ଖୁବ୍ କମ୍ କବି ସନେଟ୍ କବିତା ରଚନା କରୁଥିବା ଜଣାଯାଏ । କବି ବିଭୂତି ମିଶ୍ରଙ୍କ 'ଶହେଟି ସନେଟ୍' ସୌଭାଗ୍ୟ ମିଶ୍ରଙ୍କ କେତୋଟି ସନେଟ୍, ଗୁରୁ ପ୍ରସାଦ ମହାନ୍ତିଙ୍କ କେତୋଟି ସନେଟ୍ ଛଡ଼ା ବଳିଷ୍ଠ ସନେଟ୍ ରଚନାର ଅଭାବ ଆମ କାବ୍ୟ ସାହିତ୍ୟରେ ଦେଖାଯାଏ । ଦେବବିହାରୀ ପଣ୍ଡା ଙ୍କପ୍ରତି କେତୋଟି ସଫଳ ସନେଟ୍ ପତ୍ର ପତ୍ରିକାରେ ପ୍ରକାଶ କରି ପାଠକୀୟ ପ୍ରଶଂସା ପାଇ ପାରିଛନ୍ତି । ସନେଟ୍ ଗୀତି କବିତାର ଏକ ସୂକ୍ଷ୍ମ କଳା କର୍ମ, ଏକ ସୁନିର୍ଦ୍ଧାରିତ ନିୟମ ଓ ଶୃଙ୍ଖଳିତ କଳନା ବିଳାସ ଭିତରେ ଏହା ଆତ୍ମପ୍ରକାଶ କରୁଥିବାରୁ କବିତାର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଏହା ଅଧିକ ଆଦୃତ ହୋଇଥାଏ ।

୨



# ପ୍ରେମ କବିତା

ପ୍ରେମ ହୃଦୟର କୋମଳତମ ଭାବ । ଏହି ସୂକ୍ଷ୍ମଭାବ ମଣିଷ ଜୀବନରେ ବଞ୍ଚିବାର ଉନ୍ମାଦନା ଜୁଟାଇ ଥାଏ । ପ୍ରେମ ନାହିଁ ତ ପୃଥିବୀ ନାହିଁ । ପ୍ରକୃତି ଓ ପୁରୁଷର ପ୍ରେମରୁ ପୃଥିବୀର ସୃଷ୍ଟି । ଆକାଶରୁ ଝରି ପଡ଼ୁଥିବା ଚନ୍ଦ୍ର କିରଣ, ପଥର କୋଳରେ କେଶ ଫିଟାଇ ମୁଣ୍ଡ ବାଡ଼ୋଉଥିବା ଝରଣା, ସବୁ ତ ପ୍ରେମରୁ ସୃଷ୍ଟି । ପ୍ରେମ ମଣିଷକୁ ମହାପୁରୁଷରେ ପରିଣତ କରେ ପୁଣି ପ୍ରେମ ସମାଜହିରୁ ଦାର୍ଶନିକଟିଏ ସଜେଇ ଦିଏ । ପ୍ରେମ ଏକ ତପସ୍ୟା, ଯାହାକୁ ସାଧନା ମାଧ୍ୟମରେ ପାଇହୁଏ । ଯୁବାବସ୍ଥାରୁ ବୃଦ୍ଧାବସ୍ଥା ଯାଏ ପ୍ରେମ ପୃଥିବୀରେ ହୃଦୟ ଯୋଡ଼ି ଚାଲିଥାଏ । ସ୍ୱାମୀକୁ ସିନ୍ଦୂରଠାରୁ ପ୍ରେମିକକୁ ପାଉଁଞ୍ଜ ଠାରୁ ପ୍ରେମ ଅଲଗା କରିଦିଏ । କେତେବେଳେ ସ୍ୱାମୀ ସିନ୍ଦୂର ହୋଇ ଶୋଭି ଯାଏ ତ ପ୍ରେମିକ ଗୀତ ଭିତରେ ରକ୍ତ ହୋଇ ଝରୁଥାଏ । ପ୍ରେମିକଟିଏ ଖାସ୍ ପ୍ରେମିକ ହୋଇ ରହିଯାଏ । ପ୍ରେମ ବହୁତ କଷ୍ଟ ଦିଏ, ତଥାପି ସେ ପ୍ରେମ କରେ, ପ୍ରେମକୁ ପାଉଁଣ ତଳୁ ସାଉଁଟି ପ୍ରେୟସୀ ପାଇଁ କବିତା ଲେଖେ, ସେ ଜାଣିଛି—

> "Loving is a painful thing
> Not to love more painful
> To love and not to be loved again
> Surely is the worst pain."
>
> —Long Fellow

ତଥାପି ପ୍ରେମ ଚିରନ୍ତନ, ପ୍ରେମ ଶାଶ୍ୱତ । ସିଏ ଅଛି ବୋଲି ତ କବିତା ଅଛି, ଜୀବନ ଅଛି । ଇନ୍ଦ୍ରଧନୁରେ ରଙ୍ଗ ଅଛି, ପ୍ରିୟା ଓଠରେ ହସ ଅଛି । ଯିଏ ପ୍ରେମ କରିଛି ସେ ନିଆଁରେ ଜଳିଛି ସିଏ ତା'ର ତାତି ମାପିଛି । ପୃଥିବୀର ପ୍ରଥମ କବିତା ପ୍ରେମକୁ ନେଇ ହିଁ ଲେଖା ଯାଇଛି । ପ୍ରେମ ମଣିଷ ଜୀବନକୁ ନିସ୍ୱଭଣ କରେ ଓ ତାକୁ ନବ ସଜାଇଦିଏ ।

ପ୍ରେମ କରିବା ବଡ଼କଥା ନୁହେଁ । ପ୍ରେମକୁ ପାଳିବା ବଡ଼କଥା, ପ୍ରେମକୁ ନେଇ ଗର୍ବ କରିବା ବଡ଼କଥା । ଯିଏ ନିଜ ପ୍ରେମକୁ ନେଇ ମହିମାନ୍ୱିତ ହୁଏ ସିଏ ତ ସ୍ୱପ୍ନସେଶ୍ୱୟ ପାଲଟିଯାଏ । କବି ଅଭିମନ୍ୟୁ କହିଛନ୍ତି—

"ବଡ଼ କଠିନ ସେ ପ୍ରୀତି ପାଳିବା
ତୀକ୍ଷ୍ଣ ଅସି ଧାରେ ପଥ ଚାଲିବା
ଶୂନ୍ୟ ଆରୋହଣଠାରୁ କଠିନ
ମଦନ ଫାନ୍ଦେ ଧରିବା ଲକ୍ଷଣ
ପ୍ରୀତି ରକ୍ଷା ଠାରେ
ଯଥା ପାରଦ ରଖିବା ମୁଠାରେ ।"

ପ୍ରେମର ବୟସ ବଢ଼େନାହିଁ । ପ୍ରେମ ବୁଢ଼ା ହୁଏନାହିଁ । ମଣିଷର ମନ ଓ ମସ୍ତିଷ୍କକୁ ସ୍ୱପ୍ନାବିଷ୍ଟ କରି ଜୀବନରେ ସବୁଜ ବନ ସୃଷ୍ଟି କରେ ।

"But love is durable fire
in the mind of ever burning
Never sick, never old, never dead
From it self never turning."

—Walter Pailush

କବି ମାନେ ହିଁ ରୋମାଣ୍ଟିକ୍ । ଏହି ରୋମାଣ୍ଟିକ୍ ଭାବ ପ୍ରତ୍ୟେକ ପ୍ରେମ କବିତାର ପ୍ରଧାନ ଆକର୍ଷଣ । ପ୍ରେମ କବିତାର ଆବେଦନ ହୃଦୟର ଏକାନ୍ତ ଅନୁଗତ ସୂକ୍ଷ୍ମ ସ୍ତରରୁ ଆସିଥାଏ । କବି ଏକରସ ଚେତନାରେ (ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର) ପ୍ରେମ କବିତା ମାଧ୍ୟମରେ ସିଧାସଳଖ ହୃଦୟ ଓ ମସ୍ତିଷ୍କକୁ ଆକ୍ରମଣ କରିଥାଏ । ପ୍ରେମ କବିତା କବିତାର ସବୁଠାରୁ ସୂକ୍ଷ୍ମ ସ୍ତର । ମଣିଷର ବିବିଧ ପ୍ରବୃତ୍ତି ଓ ବ୍ୟକ୍ତି ଜୀବନର ବିଭିନ୍ନ ଲକ୍ଷଣ ଏହା ମଧ୍ୟରେ ଆତ୍ମପ୍ରକାଶ କରିଥାଏ ।

ଯେ କୌଣସି ଭାଷା ସାହିତ୍ୟରେ ପ୍ରେମ କବିତା ରଚନା କରିବା ଏକ ପ୍ରାଚୀନ ପରମ୍ପରା । ଓଡ଼ିଆ ସାହିତ୍ୟରେ ଚର୍ଯ୍ୟାପଦ ମାଧ୍ୟମରେ ପ୍ରଥମେ ପ୍ରେମ କବିତା ସୃଷ୍ଟି କରାଯାଇଛି । କାହ୍ନୁପାଦ, ଶବରୀପାଦ ଆଦି ଚର୍ଯ୍ୟାକାରମାନେ ଡୋମ୍ବୀ, ଶବରୀ ଦେଇ ଯେଉଁ ଶରୀର ଚର୍ଚ୍ଚା କରିଛନ୍ତି ବାହ୍ୟ ଦୃଷ୍ଟିକୋଣରୁ ଶୃଙ୍ଗାର ରସ ସୃଷ୍ଟି କରି ଏସବୁ ହୃଦୟରେ ଆକର୍ଷଣ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି । ସାରଳା ଦାସ ତାଙ୍କ କାବ୍ୟ ଭିତରେ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ରସ ସୃଷ୍ଟି କରି ପାତ୍ରପାତ୍ରୀମାନଙ୍କ ମଧ୍ୟରେ ପ୍ରେମଭାବ ସୃଷ୍ଟି କରିଛନ୍ତି । ପଞ୍ଚସଖା

ସାହିତ୍ୟରେ ଶାରୀରିକ ପ୍ରେମ ବିରୁଦ୍ଧରେ ନୀରବ ପ୍ରତିକ୍ରିୟା ପ୍ରକାଶ କରାଯାଇ ଭଗବତ୍ ପ୍ରେମର ମହତ୍ତ୍ୱ ପ୍ରଚାର କରାଯାଇଛି ।

ଓଡ଼ିଆ କାବ୍ୟ ଯୁଗ ପ୍ରେମ କବିତାର ଯୁଗ ଭାବରେ ପରିଚିତ । ଏ ଯୁଗର କବିମାନେ ବୈଷ୍ଣବୀୟ ପରକୀୟା ପ୍ରେମାନୁଭୂତିରେ ପ୍ରଭାବିତ ହୋଇ ପରମ ପ୍ରେମମୟ ପୁରୁଷ ଶ୍ରୀକୃଷ୍ଣଙ୍କୁ କାବ୍ୟର ନାୟକ ଓ ରାଧାଙ୍କୁ କବିତାର ନାୟିକା କରି ଅନେକ ପ୍ରେମରସର କାବ୍ୟ ସୃଷ୍ଟି କରିଛନ୍ତି । ଏସବୁ କାବ୍ୟରେ ହୃଦୟ ବିନିମୟ, କାମ ଦଶଦଶା, ମିଳନ ମନବାଞ୍ଛାକୁ କବି ଉତ୍କଣ୍ଠାର ସହ ପ୍ରକାଶ କରିଛନ୍ତି । ଅନେକ କାଳ୍ପନିକ କାବ୍ୟକୁ ଆଶ୍ରୟ କରି ଏ ସମୟରେ କାବ୍ୟ କବିତାରେ ପ୍ରେମରସର ପ୍ଲାବନ ଘଟିଛି । 'ପ୍ରେମ ତରଙ୍ଗିଣୀ' 'ବିଦଗ୍ଧ ଚିନ୍ତାମଣି' 'କଳାବତୀ' 'ସୁଲକ୍ଷଣା' 'ପ୍ରେମତରୀ' 'ପ୍ରେମପଞ୍ଚାମୃତ' 'ଲାବଣ୍ୟବତୀ' 'ରସକଲ୍ଲୋଳ' 'କଳ୍ପଲତା' ଆଦି କାବ୍ୟକୁ ସୁନ୍ଦର ପ୍ରେମକାବ୍ୟ ଭାବରେ ଗ୍ରହଣ କରାଯାଇ ପାରିବ । ଏ ଯୁଗର ପ୍ରେମ ଆଭିମୁଖ୍ୟ କବି ଉପେନ୍ଦ୍ରଭଞ୍ଜଙ୍କ ଦ୍ୱାରା ସ୍ପଷ୍ଟ ହୋଇଛି । କବି କହିଛନ୍ତି—

"କେତେ ଦୂରେ ଚନ୍ଦ୍ର
କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ୍ୟ ତାଙ୍କର
ଯେତେ ଦୂରେ ଥିଲେ
ଯେ ଯାର ସେ ତାହାର ।"

ପ୍ରେମ କବିତା ରଚନାର ବିବିଧତା କବି ରାଧାନାଥଙ୍କଠାରୁ ଆରମ୍ଭ ହୋଇଛି । ପୌରାଣିକ ସାମାଜିକ ଆଙ୍ଗିକ ଭିତରେ ପ୍ରେମକୁ ନୂତନ ଦୃଷ୍ଟିକୋଣରୁ ଚିତ୍ରଣ କରି କବି ପାରମ୍ପରିକ ପ୍ରେମ କବିତା ରଚନାର ପୂର୍ଣ୍ଣଚ୍ଛେଦ ପକାଇଲେ । 'କେଦାରଗୌରୀ'ର ହୃଦୟ ଓ ଆତ୍ମବିସର୍ଜନ 'ଚନ୍ଦ୍ରଭାଗା'ରେ ପ୍ରେମର ଶୁଦ୍ଧତା ଓ ଜୀବନ ବିପର୍ଯ୍ୟୟ 'ପାର୍ବତୀ'ରେ ପରକୀୟା ଓ ଅପପ୍ରେମର ପରିଣତି 'ଉଷା'ରେ ପ୍ରେମରେ ବୀରତ୍ୱ 'ନନ୍ଦିକେଶ୍ୱରୀ'ରେ ପ୍ରେମ ପାଖରେ ପିତା ଓ ପ୍ରେମିକର ସଂଘର୍ଷକୁ କବି ନୂତନ ରୂପରେ ଆମ ନିକଟରେ ପହଞ୍ଚାଇଛନ୍ତି । କବି ଗଙ୍ଗାଧର ମେହେରଙ୍କ କାବ୍ୟମାନଙ୍କରେ ପାରିବାରିକ ଓ ଶାରୀରିକ ପ୍ରେମର ଶୁଦ୍ଧତା (ତପସ୍ୱିନୀ, କୀଚକ ବଧ, ପ୍ରଣୟ ବଲ୍ଲରୀ, ଇନ୍ଦୁମତୀ) ପ୍ରକାଶ ପାଇଛି । ନନ୍ଦକିଶୋର ବଳଙ୍କ କବିତାରେ ଗ୍ରାମ୍ୟପ୍ରେମ ଓ ହୃଦୟ ବିନିମୟ (ଶର୍ମିଷ୍ଠା, ନିର୍ଝରିଣୀ)ର ଚିରନ୍ତନ କାହାଣୀ ପ୍ରକାଶ ପାଇଛି ।

ସବୁଜ ଯୁଗ (୧୯୨୦-୩୫)ର କବିମାନେ ସବୁଜ ସ୍ୱପ୍ନରେ ଆଚ୍ଛନ୍ନ ହୋଇ ତରୁଣ ହୃଦୟର ଅନେକ ପ୍ରେମ କବିତା ରଚନା କରିଛନ୍ତି । ଏ ମାଟିର ଧୂସରତାକୁ

ପରିହାର କରି ଆଉ ଏକ ଗୀତ ରଚନା କରିବାର ଓ ପ୍ରିୟାର ଯାମୁଲରେ ମୁଣ୍ଡଗୁଞ୍ଜି ଯୌବନର ବୈତରଣୀ କୂଳରେ ମଉଅଁଳା ହେବାର ନିଶା ଏଯୁଗର କବିମାନଙ୍କ କବିତାରେ ଦେଖାଯାଇଛି । ଅନ୍ନଦାଶଙ୍କର, କାଳିନ୍ଦୀଚରଣ ଓ ବୈକୁଣ୍ଠନାଥ ପ୍ରମୁଖ ଏହି ଭାବଧାରାକୁ ନେଇ ଅନେକ ପ୍ରେମ କବିତା ସୃଷ୍ଟି କରିଛନ୍ତି ।

ପ୍ରେମ କବିତା ରଚନା କରିବାରେ ପ୍ରେମିକ କବି ମାୟାଧର ମାନସିଂହ ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଛନ୍ତି । କବିଙ୍କ 'ଧୂପ' 'ହେମଶସ୍ୟ' 'ପୂଜାରିଣୀ' 'ସାଧବ ଝିଅ' 'ଇସ୍ତାମୀ କଣୋଗ୍ରୀ' ସେହି ପ୍ରେମବିମୂର୍ତ୍ତ ଗୋଟିଏ ଗୋଟିଏ ସାର୍ଥକ ଉଦାହରଣ । କବି ପ୍ରେମର ପବିତ୍ରତା ଓ ମହାନତା ସମ୍ପର୍କରେ କହନ୍ତି—

"ଶୁଣିବ ଯେବେ ପ୍ରିୟା ଗୋ ମୋର
ପ୍ରଣୟୀ ତବ ଜଗତେ ନାହିଁ
ଆସିବ ମୋର ଭସ୍ମ ପାଶେ
ଦେବ ହେ ତା'ରେ ଦେହର ଛାଇ ।
ପାରିବ ଯଦି ଭସ୍ମ ପରେ
ପଦ୍ମ ପାଦ ଗୁଳିବ ଧୀରେ ।
ଜୀବନ ପୁଣି ଲଭିବି ସଖୀ,
ନିଶ୍ଚୟ ମୁଁ ମରଣ-ତୀରେ ।"

(ଧୂପ)

ପ୍ରୟୋଗବାଦୀ ଓଡ଼ିଆ କବିତାରେ ପ୍ରେମ ଏକ ଚେତନା ଭାବରେ ବ୍ୟବହୃତ ହୋଇଛି । ପ୍ରେମ ପ୍ରତି କବିର ପାରମ୍ପରିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଛି । ସାମ୍ପ୍ରତିକ ସମସ୍ୟା ମଣିଷ ମନରୁ ସବୁ ସବୁଜିମା, ସ୍ନେହକୁ ପୋଛି ଦେବାରେ ସମର୍ଥ ହୋଇଛି । ଆଧୁନିକ ମଣିଷ ପାଲଟି ଯାଇଛି ଏକ ଫୋକା ମଣିଷ, ପାଲଭୂତର ମଣିଷ । ଏପରି ସ୍ଥଳେ ପ୍ରେମ ଆଉ ହୃଦୟର ଭାବ ନ ହୋଇ ସାମୟିକ ଫୁର୍ତ୍ତି ପାଇଁ ସହଯୋଗ ବ୍ୟବସ୍ଥା ଭାବରେ ବ୍ୟବହୃତ ହେଉଛି । ଯେଉଁଠି ବାପା ପାଲଟି ଯାଉଛି ଏକ ଅଫିମ ଚଲମ, ମାଆ ଗୁରୁବାର ଚଟା, ସେଠି ପ୍ରେମିକା ଗୋଟାଏ ବଙ୍କାପନ ଓ ପ୍ରେମସବୁ ରାସ୍ତାରେ ଦୌଡ଼ୁଥିବା ନଂପୁସକ ବଳଦରେ ବଦଳି ଯାଇଛନ୍ତି । ଆଧୁନିକ କବିତାରେ ଏହି ନୂତନ ପ୍ରେମରେ ଆଣ୍ଟି ରୋମାଣ୍ଟିକ୍ ଆଭିମୁଖ୍ୟ ପ୍ରକାଶ ପାଇଛି । ଆଧୁନିକ ପ୍ରେମର ଶସ୍ତା ପରିଚୟ ଓ ସୁଲଭତାକୁ ବ୍ୟଙ୍ଗ କରି କବି ଭାନୁଜୀ ରାଓ କହନ୍ତି—

"ଆଜିକାଲି ପ୍ରେମ ଭାରି ଶସ୍ତା
ଦାମ୍ ତା'ର ସୁକରଣା ପଇସା ।"

କବି ଗୁରୁପ୍ରସାଦଙ୍କ କବିତାରେ ସାମ୍ପ୍ରତିକ ପ୍ରେମର ସହଜ ଓ କାମଚଳା ଅନୁଭବ ଅତି ଶାଣିତ ଭାବରେ ପ୍ରକାଶ ପାଇଛି । କବି କହନ୍ତି—

"ମୁଁ ତୁମକୁ ଦେଖେ ଆଜି
ତୁମେ ବସିଥ ବ୍ଲାଉଜର ବୋତାମ
ସ୍ନ'ଙ୍ଗ ଦାଗ ତୁମେ ଧୁଅ ଦେମିକ୍‌ରୁ ଗରମ ପାଣିରେ
ତୁମେ ପୁଣି ଉଠିଆସି ଆସ୍ତେ ବସ ପାଖ ଚଉକିରେ

× × ×

ପବନ ତୁମକୁ ଯେବେ ନଏ ବାଳରୁ ସାଉଁଟି ସାଉଁଟି
ମୁଁ ତୁମକୁ ସ୍ୱପ୍ନ ଦେଖେ
ଢିଲା ପାଇଜାମା କାମିଜ୍‌ର ଅମରାବତୀରେ ।"

ଆଜିର ଜୀବନରେ ଯେପରି କୌଣସି ଗୁରୁତ୍ୱ ନାହିଁ, ସେହିପରି ପ୍ରେମରେ ମଧ୍ୟ କୌଣସି ପବିତ୍ରତା ନାହିଁ । ପତିବ୍ରତା, ପତ୍ନୀବ୍ରତା, ପବିତ୍ରତା ଏହିସବୁ ପାରମ୍ପରିକ ଶବ୍ଦ ସାମ୍ପ୍ରତିକ ଯୁଗରେ ଅଯୋଗ୍ୟ ବୋଲି ସାବ୍ୟସ୍ତ ହୋଇଛନ୍ତି । ଫଳତଃ ସାମ୍ପ୍ରତିକ ସମୟରେ ପ୍ରେମ'କବିତା ରଚନାର ପରିସର ସଙ୍କୁଚିତ ହୋଇ ଯାଇଛି । ତଥାପି ସେହି କଂକ୍ରିଟ୍ ଖୋଳପାରୁ ଖସିଯାଇ କବି ପ୍ରସନ୍ନ ପାଟ୍ଟଶାଣୀ ଚିରନ୍ତନ ପ୍ରେମର ବାଣୀ ଗାଇ ଉଠନ୍ତି—

"ରକ୍ତ ମୋ ତୋ ମଥାରେ ସିନ୍ଦୂର ନ ହୋଇପାରେ
ତୋ ପାଦେ କରିଦେ ତାକୁ ଅଲତାର ଗାର
ବେଦନା ତୋର ସବୁ କଣ୍ଟା ହୋଇ ଫୁଟୁ ମୋ ପାଦରେ
ନିଃଶ୍ୱାସ ତୋ ପାଲଟିଯାଉ ବଂଶୀର ସ୍ୱର ।"



# ସମ୍ବୋଧନମୂଳକ କବିତା (Ode)

ସମ୍ବୋଧନ କବିତା ପାଶ୍ଚାତ୍ୟ କାବ୍ୟ ସାହିତ୍ୟର ଏକ ବିଳାଷ୍ଟ ବିଭାଗ । ଆମ ସାହିତ୍ୟରେ ସମ୍ବୋଧନ କବିତା ରଚନାର ପରମ୍ପରା ପରିଦୃଷ୍ଟ ହେଉଥିଲେ ମଧ୍ୟ ପାଶ୍ଚାତ୍ୟ ସମ୍ବୋଧନ କବିତାର ଧାରଣା ସହ ଏହା ଏକାତ୍ମ ନୁହେ । ସମ୍ବୋଧନ କବିତା ସମ୍ପର୍କରେ ବିଭୂତି ପଟ୍ଟନାୟକ କହନ୍ତି—"ପ୍ରାଚୀନ କାଳରେ ଗ୍ରୀକ୍ ସାହିତ୍ୟରେ ସମ୍ମିଳିତ କଣ୍ଠରେ ରଙ୍ଗମଞ୍ଚ ଉପରେ ବିଭିନ୍ନ ସ୍ୱର ଓ ଭଙ୍ଗୀର ନୃତ୍ୟ ସହିତ ଯେଉଁ ଗୀତ ଗାନ କରାଯାଉଥିଲା, ତାକୁ କୁହାଯାଉଥିଲା 'Ode' ସମ୍ବୋଧନ ଗୀତିକା । ପରବର୍ତ୍ତୀ କାଳରେ ଇଂରେଜୀ ସାହିତ୍ୟରେ ଏହି 'Ode'ର ପ୍ରବୃତ୍ତି ପରିବର୍ତ୍ତିତ ହୋଇଗଲା । ସମ୍ମିଳିତ କଣ୍ଠ (Chorus) ସ୍ୱର ବଦଳରେ କୌଣସି ବ୍ୟକ୍ତି ବା ବସ୍ତୁକୁ ସମ୍ବୋଧନ କରି ଗାମ୍ଭୀର୍ଯ୍ୟପୂର୍ଣ୍ଣ କୌଣସି ଭାବକୁ କବି ଯେତେବେଳେ ନିଜ ଆତ୍ମାନୁଭୂତି ମାଧ୍ୟମରେ କବିତାରେ ପ୍ରକାଶ କଲା, ତାକୁ କୁହାଗଲା 'Ode' ବା ସମ୍ବୋଧନ ଗୀତିକା । P.B. Shellyଙ୍କ "Ode to the west wind" Keatsଙ୍କ "Ode to a Nightingale" ଏହି ଶ୍ରେଣୀର Ode ବା ସମ୍ବୋଧନମୂଳକ ଗୀତି କବିତା ।" (ସାହିତ୍ୟର ସୂଚୀପତ୍ର— ବିଭୂତି ପଟ୍ଟନାୟକ, ପୃ-୮୯) । ଗ୍ରୀକ୍ (Ode) ଓଡ଼ ଶବ୍ଦକୁ ସଙ୍ଗୀତ ଅର୍ଥରେ ଗ୍ରହଣ କରାଯାଏ । ମଞ୍ଚରେ ସମ୍ବୋଧନ କରି ଗାୟକମାନେ ଏହି ଗୀତ ପରିବେଷଣ କରୁଥିଲେ । ଏଥିରେ ବୃନ୍ଦଗାନ ଓ ଏକକ ସଙ୍ଗୀତ ସ୍ଥାନ ପାଉଥିଲା । ଏହାର ଛନ୍ଦ ଓ ପରିବେଷଣ ଶୈଳୀ ସ୍ୱତନ୍ତ୍ର । କୌଣସି ବିଶେଷ ଉତ୍ସବ ଓ ଅନୁଷ୍ଠାନମାନଙ୍କରେ ନିର୍ଦ୍ଦିଷ୍ଟ ରୀତିରେ ଏହି ଗୀତ ପରିବେଷଣ କରାଯାଏ । ରାଜ ଅଭିଷେକ, ବିଜୟ ଉତ୍ସବ, କୌଣସି ବିଶେଷ ବ୍ୟକ୍ତିର ଜନ୍ମ ଓ ମୃତ୍ୟୁରେ ସେମାନଙ୍କୁ ଲକ୍ଷ୍ୟକରି ସମ୍ବୋଧନ ଗୀତି ସୃଷ୍ଟି ହୋଇଛି । ସେହିପରି ପ୍ରକୃତିର ବିଭିନ୍ନ ଋତୁ, ପଦପଦାର୍ଥ ଓ ଈଶ୍ୱର ବିଶ୍ୱାସ ଓ ବନ୍ଦାପନାରୁ ସମ୍ବୋଧନ ଗୀତି ସୃଷ୍ଟି ହୋଇଥିବା ବିଶ୍ୱାସ କରାଯାଏ । ମଣିଷ ବିଭିନ୍ନ ଈଶ୍ୱରଙ୍କ ପାଇଁ ଭିନ୍ନ ଭିନ୍ନ ଗୀତ ସେମାନଙ୍କୁ ସମ୍ବୋଧନ କରି ରଚନା କରିଥିବ ଏବଂ ଗାୟନରେ ସେହି ସମ୍ବୋଧନ ଭାବ ପ୍ରକାଶ କରିଥିବ ।

ଆମ ମୌଖିକ ସାହିତ୍ୟରେ ଏପରି ଅନେକ ସମ୍ବୋଧନ ଗୀତ ଦେଖାଯାଏ । ନାହୁରିଆ, ଶଗଡ଼ିଆ, କାଠୁରିଆ, ରଜନେମା, ଗେଣ୍ଡାଳିଆଙ୍କୁ ନେଇ ଅନେକ ଗୀତ ସୃଷ୍ଟି ହୋଇଛି । ଏସବୁ ଲୋକଗୀତ ସମ୍ବୋଧନ ଗୀତିକା ରୂପେ ମାନ୍ୟତା ପାଇଛି । ପାଶ୍ଚାତ୍ୟ ସମ୍ବୋଧନ କବିତାର ସମସ୍ତ କଳାଗତ ବୈଶିଷ୍ଟ୍ୟ ଏସବୁ ଗୀତିକାରେ ପ୍ରକାଶ ପାଇ ନ ଥିଲେ ମଧ୍ୟ ଏହା ସମ୍ବୋଧନ କବିତାର ପ୍ରାଚୀନ ପାରମ୍ପରିକ ରୂପ ରୂପେ ମାନ୍ୟତା ପାଇ ପାରିବ ।

ପ୍ରାଚୀନ ଓଡ଼ିଆ ରଚନାରେ ସମ୍ବୋଧନ ଗୀତି ଦେଖାଯାଏ । ପଞ୍ଚସଖା ସାହିତ୍ୟରେ ଦେହକୁ, ମନକୁ, ହଂସକୁ, ପକ୍ଷୀକୁ ସମ୍ବୋଧନ କରି ଅନେକ କ୍ଷୁଦ୍ର ଗୀତିକା ରଚନା କରାଯାଇଛି । ଅଚ୍ୟୁତାନନ୍ଦ ଦାସଙ୍କ—

"ବାଇମନ ହୋ
ବସି ହଂସକୁ ଖେଳା
ଏଇ ମନ ସିନା ମୂଢ଼ମତି -ରେ
ବାଇମନ ହୋ ବସି ଅବନାବନ ।"

ପଞ୍ଚସଖା ସାହିତ୍ୟରେ ସାଧକମାନେ ମଣିଷର ନିର୍ବାଣ କାମନା କରି ତାକୁ ଓ ତା'ର ଜୀବନ ବ୍ୟବସ୍ଥାକୁ ବିଭିନ୍ନ ପ୍ରତୀକ ମାଧ୍ୟମରେ ଉନ୍ମୋଚନ କରିଛନ୍ତି । ଆମ ପ୍ରାଚୁର୍ଯ୍ୟପୂର୍ଣ୍ଣ କୋଇଲି ସାହିତ୍ୟରେ ସମ୍ବୋଧନ ଗୀତିକାର ସ୍ୱର ବଳିଷ୍ଠ । ଆଧୁନିକ ସମ୍ବୋଧନ କବିତାର ଏହା ଖୁବ୍ ନିକଟବର୍ତ୍ତୀ । ପାଶ୍ଚାତ୍ୟ କବିମାନେ ଯେପରି ନାଇଟ୍ ଅଙ୍ଗେଲକୁ ସମ୍ବୋଧନ କରି କବିତା ରଚନା କରିଛନ୍ତି, ଆମ କବିମାନେ ସେହିପରି କୋଇଲିକୁ ସମ୍ବୋଧନ କରି କବିତା ଲେଖିଛନ୍ତି । କୋଇଲିକୁ ସମ୍ବୋଧନ କରି ହୃଦୟର ଦୁଃଖ ପ୍ରକାଶ କରିବାର ଆକୂତିକୁ ଅତି ସୁନ୍ଦର ଭାବରେ ଚିତ୍ରଣ କରାଯାଇଛି ।

"କୋଇଲି ଲୋ
କେଶବ ଯେ ମଥୁରାକୁ ଗଲା
କାହା ବୋଲେ ଗଲା ପୁଣ ବାହୁଡ଼ି ନଇଲା
ଲୋ କୋଇଲି ।"

ପ୍ରାଚୀନ କୋଇଲି କବିତାମାନଙ୍କରେ ସମ୍ବୋଧନ କବିତାର ପ୍ରାକ୍ କଳା ପରିଲକ୍ଷିତ ହେଉଥିଲେହେଁ ଓଡ଼ିଆ ଭାଷାରେ ପାଶ୍ଚାତ୍ୟ ରୀତିରେ ସଂବୋଧନ କବିତା ରଚନା କରିବା ପରମ୍ପରା ଆଧୁନିକ ଯୁଗରୁ ଆରମ୍ଭ ହୁଏ । ଭକ୍ତକବି ମଧୁସୂଦନ ରାଓ 'ପୃଥିବୀ ପ୍ରତି' 'ପଦ୍ମ' 'ଆକାଶ ପ୍ରତି' 'ନଦୀ ପ୍ରତି' 'ବନ୍ଧୁ ପ୍ରତି'

ଆଦି କବିତା ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ସଂବୋଧନ କବିତା ରଚନା ଆରମ୍ଭ କଲେ । ସଂବୋଧନାତ୍ମକ କବିତା ରଚନା କରିବାରେ ନନ୍ଦକିଶୋର ବଳଙ୍କ 'କାକ ବାରତା' ଗୋପବନ୍ଧୁ ଦାଶଙ୍କ 'ସ୍ୱର୍ଗବୀ ପ୍ରତି' ପଦ୍ମଚରଣ ପଟ୍ଟନାୟକଙ୍କ 'ଧଉଳି ପାହାଡ଼' ମାୟାଧର ମାନସିଂହଙ୍କ 'ଦକ୍ଷିଣା ପ୍ରତି' 'ଇରାମୀ କିଶୋରୀ' କୁନ୍ତଳା କୁମାରୀ ସାବତଙ୍କ 'ଶେଫାଳୀ ପ୍ରତି' 'ଚନ୍ଦ୍ର ପ୍ରତି' 'ତାରା ପ୍ରତି' 'ସହକାର ପ୍ରତି' ଗୋଟିଏ ଗୋଟିଏ ସାର୍ଥକ ସଂବୋଧନ କବିତା । ଓଡ଼ିଆ ସାହିତ୍ୟରେ ସଂବୋଧନ କବିତା ମାଧ୍ୟମରେ ଜୀବନ ଦର୍ଶନ ଓ ଉତ୍କଳର ଅତୀତ ଐତିହ୍ୟକୁ ଉନ୍ମୋଚନ କରାଯାଇଛି । ଏ ସମୟରେ ମଧୁସୂଦନ ଓ କୁନ୍ତଳା କୁମାରୀ ଅନେକ ଉଚ୍ଚକୋଟୀର ଦାର୍ଶନିକ ଚିନ୍ତା ସଂବଳିତ ସଂବୋଧନାତ୍ମକ କବିତା ସୃଷ୍ଟି କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁକୁ ବିଶ୍ଳେଷଣ କରି କବିତା ରଚନା କରିବାରେ ସୌକ୍ ଦେଖାଯାଏ । ଏ ସବୁକୁ ସଂବୋଧନ କବିତା କୁହାଯାଇ ପାରିବ କି ? କବିତାରେ ପ୍ରତୀକ, ଚିତ୍ରକଳ୍ପ ବିରୋଧାଭାସର ବହୁଳ ପ୍ରୟୋଗ ହେଉଥିବାରୁ ଏହାର ଅର୍ଥ ଅର୍ଥାନ୍ତରକୁ ଗ୍ରହଣ କରି ଏହାକୁ ସଂବୋଧନ କବିତା କହିବା ଏକ ବିତର୍କ, ବେଣୁଧର ରାଉତଙ୍କ 'ପିଙ୍ଗଳାର ଅଭିସାର' ସଙ୍କଳନସ୍ଥ 'ମଳୟର ଆତ୍ମହତ୍ୟା'କୁ ବିଗ୍ଚାର କରାଯାଉ—

"ଆହେ ଆଗୋ ମୋ ଦେଶର ବସ୍ତିର କିଶୋରୀ
ନୟନରେ ନାହିଁ ଶିର
ନାହିଁ ପୁଣି ସୁବର୍ଣ୍ଣ ସପନ
ମନର ମଣିଷ ନାହିଁ
ନାହିଁ କାନେ କୋକିଳ ବା ଚକ୍ରବାକ ଧ୍ୱନି ।"

ସଚ୍ଚିଦାନନ୍ଦ ରାଉତରାୟଙ୍କ 'ବାଜି ରାଉତ' କାବ୍ୟ ସଙ୍କଳନର ଏକ ଅଂଶକୁ ପାଠ କରାଯାଉ—

"ଆହେ କବି ବାରେ ତୁଅ ଠିଆ
ନେଇଯାଅ ତା'ର ମାଳା
ଫୁଲ ନୁହେଁ ସେ ଯେ ପାପୁଲିଆଁ ।"

ଏସବୁ କବିତାର କାବ୍ୟଗୁଣ ଯାହାହେଉ ନା କାହିଁକି ବସ୍ତିର କିଶୋରୀ ପ୍ରତି ମାର୍ମିକ ଆବେଦନ ଓ କବିଙ୍କ ଲକ୍ଷ୍ୟକରି ବକ୍ତବ୍ୟ ବ୍ୟାଖ୍ୟା କରିବା ସାର୍ଥକ ସଂବୋଧନ କବିତାର ଲକ୍ଷଣ । ପ୍ରୟୋଗବାଦୀ କବିତାରେ ଅନେକ ସାର୍ଥକ

ସଂବୋଧନାତ୍ମକ କବିତା ସୃଷ୍ଟି ହୋଇଛି । ବିଭୂତି ମିଶ୍ରଙ୍କ 'ମୁଖ ହେ ମମ' ପ୍ରତିଭା ଶତପଥୀଙ୍କ 'ସାହାଡ଼ା ସୁନ୍ଦରୀ' ସୀତାକାନ୍ତ ମହାପାତ୍ରଙ୍କ 'ଅକାଶ ପିଲର ମୁଖ' ଏହାର ସାର୍ଥକ ନମୁନା । ଓଡ଼ିଆ କାବ୍ୟ ସାହିତ୍ୟରେ ସମ୍ପ୍ରତି ସଂବୋଧନ କବିତା ବିଭିନ୍ନ ଭାବ ଓ ଶୈଳୀରେ ଆତ୍ମପ୍ରକାଶ କରୁଛି ।

## ପ୍ରକୃତି କବିତା —

ପ୍ରକୃତିକୁ ନେଇ କବିତା ରଚନା କରିବାର ପ୍ରାଚୀନତା ସବୁ ସାହିତ୍ୟରେ ପରିଲକ୍ଷିତ ହୁଏ । ପ୍ରକୃତି ହେଉଛି ନିଜେ ଅପୂର୍ବ ଶୋଭା ଓ ସମ୍ଭାବନାର କବିତା । ଭଗବାନଙ୍କୁ ଯଦି ପୃଥିବୀର ପ୍ରଥମ କବିର ମାନ୍ୟତା ଦିଆଯାଏ, ତାହାଲେ ତାଙ୍କ ସୃଷ୍ଟିରେ ତାଙ୍କଦ୍ୱାରା ସର୍ଜନା କରାଯାଇଥିବା ସବୁ ସୃଷ୍ଟି ଗୋଟିଏ ଗୋଟିଏ କବିତା । ପ୍ରାଚ୍ୟ ସାହିତ୍ୟରେ ବେଦ ଓ ଉପନିଷଦମାନଙ୍କରେ ପ୍ରକୃତି ଓ ମଣିଷ ଭିତରେ ଅଭେଦତ୍ୱ ପରିକଳ୍ପନା କରାଯାଇଛି । ପ୍ରାଚୀନ ମଣିଷ ପ୍ରକୃତି କୋଳରେ ବାସ କରୁଥିଲା । ଏହି ଯାଯାବର ଜୀବନ ଭିତରେ ପ୍ରକୃତି ତା' ପାଇଁ ଖାଦ୍ୟ, ବସ୍ତ୍ର, ବାସଗୃହ ଯୋଗାଇ ଦେଉଥିଲା । ପରେ ମଣିଷ ଗୋଷ୍ଠୀବଦ୍ଧ ଜୀବନଯାପନ କଲାପରେ ପ୍ରକୃତିକୁ ଉପାସନା କରି ନିଜ ଜୀବନର ସୁଖ ସମୃଦ୍ଧି କାମନା କଲା । ପ୍ରକୃତି ସହ ଏକାତ୍ମ ହୋଇ ମଣିଷ ସମାଜର କ୍ରମୋନ୍ନତି ବିକାଶ ସାଧିତ ହେଲା । ପ୍ରକୃତିପାଗଳ ମଣିଷ ସହ କବିତା ଏକାତ୍ମ ହୋଇ ସୃଷ୍ଟି ହେଲା ।

କବିତାରେ ପ୍ରକୃତି ଚର୍ଚ୍ଚା ଚର୍ଯ୍ୟା ପଦମାନଙ୍କରେ ଦେଖାଯାଏ । ନଗର ବାହାରେ କୁଡ଼ିଆ କରି ରହୁଥିବା ଡୋମ୍ବୀକୁ କବି କାହ୍ନୁପାଦ କହୁଛନ୍ତି—

"ନଗର ବାହିରେ ଡୋମ୍ବୀ ତୋହରି କୁଡ଼ିଆ
ଛୋଇ ଛୋଇ ଯାଏ ସେ ତ ବାଦ୍ ହ୍ମଣ ନଡ଼ିଆ ।"

ସାରଳା ଦାସ ମହାଭାରତର 'ବନପର୍ବ' 'ସଭାପର୍ବ'ରେ ପ୍ରକୃତି ଚିତ୍ର ପ୍ରଦାନ କରିଛନ୍ତି । କିନ୍ତୁ ପ୍ରକୃତିକୁ ନେଇ କବିତା ରଚନା କରିବା ଓ କବିତାରେ ପ୍ରକୃତି ଚିତ୍ର ପ୍ରଦାନ କରିବା ଦୁଇଟି ଭିନ୍ନ କଥା । ଏହି ଦୃଷ୍ଟିରେ ରୀତି ଯୁଗର ଅନେକ କାବ୍ୟରେ ପ୍ରକୃତି ଚିତ୍ରଣ ଅଛି; କିନ୍ତୁ ପ୍ରକୃତିକୁ ନେଇ କାବ୍ୟ ରଚନା କରାଯାଇ ନାହିଁ । ଉପେନ୍ଦ୍ରଭଞ୍ଜଙ୍କ ବୈଦେହୀଶ ବିଳାସ, ଲାବଣ୍ୟବତୀ ଦୀନକୃଷ୍ଣଙ୍କ ରସକଲ୍ଲୋଳ କାବ୍ୟରେ ପ୍ରକୃତି ଚିତ୍ର ପ୍ରକାଶ ପାଇଛି । ବର୍ଷା, ବସନ୍ତ, ବୈଶାଖ ଭିତରେ ନାୟକ ନାୟିକା ହୃଦୟରେ ଶୃଙ୍ଗାର ଭାବ ସୃଷ୍ଟି କରିବା ଓ ବିରହ ଭାବକୁ ବ୍ୟାଖ୍ୟା କରିବା ରୀତି ଯୁଗର ପ୍ରକୃତିକୁ ବିନିଯୋଗ କରାଯାଇଛି ।

ପ୍ରକୃତିକୁ ମାନ୍ୟତା ଦେଇ କାବ୍ୟ ରଚନା କରିବାର ପ୍ରୟାସ ପ୍ରଥମ କରି ରାଧାନାଥ ତାଙ୍କ 'ଚିଲିକା' କାବ୍ୟରେ ପ୍ରଦର୍ଶନ କଲେ । 'Lady of the lake'ର ଗୌରବ ଚିଲିକା ବହନ କରେ, ସଙ୍ଗୀରଙ୍ଗୀଙ୍କ ପ୍ରକୃତିକୁ ତୁଳନାତ୍ମକ କରି କବି ରାଧାନାଥ ଉତ୍କଳର ପ୍ରକୃତି ବିଶେଷ କରି 'ଚିଲିକା'କୁ ଗୁରୁତ୍ୱ ଦେଇ ଚିତ୍ରଣ କରିଛନ୍ତି । ପଲ୍ଲୀକବି ନନ୍ଦକିଶୋର ବଳ ପଲ୍ଲୀର ପ୍ରକୃତିକୁ ନେଇ ସ୍ୱାଭାବିକ କବିତା ରଚନା କରିଛନ୍ତି । କବିଙ୍କ 'ନିର୍ଝରିଣୀ' କାବ୍ୟରେ ଏହି ପ୍ରକୃତିର ମହିମାମୟ ଉଚ୍ଚାରିତ ହୋଇଛି । ପ୍ରକୃତି କାବ୍ୟ ଆଲୋଚନା ସମୟରେ ଗଙ୍ଗାଧରଙ୍କ ମାନବୀୟ ପ୍ରକୃତି ଆଧାରିତ କାବ୍ୟର ଗୁରୁତ୍ୱ ଅଧିକ । ତପସ୍ୱିନୀ କାବ୍ୟରେ ଗଙ୍ଗାଧରଙ୍କ ପ୍ରଭାତ ବନ୍ଦନାକୁ ଲକ୍ଷ୍ୟ କରିଯାଉ—

"ମଙ୍ଗଳେ ଅଇଲେ ଉଷା ବିକଚ ରାଜୀବ ଦୃଶା
ଜାନକୀ ଦର୍ଶନ- ତୃଷା ହୃଦୟେ ବହି
କରପଲ୍ଲବେ ନୀହାର ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାରେ ପ୍ରାଙ୍ଗଣେ ରହି ।
କଳକଣ୍ଠ କଣ୍ଠେ କହିଲି
ଦରଶନ ଦିଅ ସତୀ, ଖେଦି ପାହିଲି ।"

ଗଙ୍ଗାଧର 'ପ୍ରଣୟ ବଲ୍ଲରୀ' କାବ୍ୟରେ ମଧ୍ୟ ପ୍ରକୃତିର ଅଭିନବ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଏ ସମୟରେ ମଧୁସୂଦନଙ୍କ କବିତାରେ ପ୍ରକୃତିର ଅମୃତମୟ ଧାରଣା ରାଧାନାଥଙ୍କ ପ୍ରକୃତିରେ ସୌନ୍ଦର୍ଯ୍ୟ, ଗଙ୍ଗାଧରଙ୍କ ପ୍ରକୃତିରେ ମାନବତ୍ୱ ଓ ନନ୍ଦକିଶୋରଙ୍କ ପ୍ରକୃତିରେ ଜୀବନବୋଧ ପ୍ରକାଶ ପାଇଛି ।

କବି ମାୟାଧର ମାନସିଂହ ପ୍ରକୃତିକୁ ନେଇ ଅନେକ କବିତା ସୃଷ୍ଟି କରିଛନ୍ତି । ରୋମାଣ୍ଟିକ୍ କବି ପାଖରେ ପ୍ରକୃତି ବିଭିନ୍ନ ରୂପରେ ଦେଖା ଦେଇଥାଏ । ମାନସିଂହଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ପ୍ରକୃତି ଚିତ୍ରଣରେ ଏକ ଦୃଷ୍ଟପୁଷ୍ଟ କବିତା । କବି ଲେଖିଛନ୍ତି—

"ରଜତ ଝୁମ୍କା ସମାନ ଫେନଚୂଡ଼ ଊର୍ମିମାନ
ଝୁଙ୍କି ଦେଲା କରୁଥାନ୍ତି କୁସୁମମୟ
ଉଠି ଊର୍ଦ୍ଧ୍ୱେ ବିହଗ ଗଣ
ନୀଳବ୍ୟୋମେ କରୁଥାନ୍ତି ମାଳାରଚନ ।"

ସଚ୍ଚିଦାନନ୍ଦ ରାଉତରାୟଙ୍କ କାବ୍ୟ 'ଭାନୁମତୀର ଦେଶ' ପ୍ରକାଶ ପାଇବା ପରେ ସହର ଜୀବନ ଓ ପଲ୍ଲୀ ଜୀବନ ଭିତରେ (ବଗୀଚା, ତରଙ୍ଗ) ଯେଉଁ ସଂଘର୍ଷ

ଦେଖାଯାଇଛି ବସ୍ତୁତଃ ସ୍ୱାଧୀନୋତ୍ତର ସମୟରେ ପଲ୍ଲୀ ଓ ପ୍ରକୃତି ପ୍ରତି ମଣିଷର ବୈମାତୃକ ମନୋଭାବ ଉକ୍ତ କାବ୍ୟରେ ପ୍ରତିଫଳିତ ହୋଇଛି । ନାୟିକାର ନାୟକ ଗାଁକୁ ଭଲ ପାଇବାର ଭଙ୍ଗୀ କବିତାରେ ଏହିପରି—

"ଭଲପାଏ

ଖୁବ୍ ଭଲପାଏ,

ଭ୍ରାମ୍ୟମାଣ ମୁସାଫିର ଯେମିତି

ଭଲପାଏ / ତା' ତମ୍ବୁର ଚତୁର୍ଦ୍ଦିଗ / ପରିମଣ୍ଡଳକୁ

କିନ୍ତୁ ସେ କ'ଣ ବନ୍ଦୀ ହେବାକୁ ଚାହେଁ ସେଇଠି ?"

ନଗରର କୃତ୍ରିମ ଜୀବନ ଆଧୁନିକ ମଣିଷ ମନରୁ ପ୍ରକୃତିର ସମସ୍ତ ସ୍ୱତଃସ୍ଫୂର୍ତ୍ତତାକୁ ହରଣ କରିଛି । ପ୍ରକୃତିକୁ ଭଲ ପାଇବା ଓ ଝୁରିବା ଆଜିର ମଣିଷରେ ସୌଖିନ୍‌ରେ ବଦଳି ଯାଇଛି । ତେଣୁ ଆଜି କବିତାରେ ପ୍ରକୃତିକୁ ନେଇ କବିତାର ଲେଖିବାର ଦୃଷ୍ଟିଭଙ୍ଗୀ ବଦଳି ଯାଇଛି । ପ୍ରକୃତି ପିକ୍‌ନିକ୍‌ରେ ଅଛି । ଯନ୍ତ୍ର ଜୀବନରୁ ସାମୟିକ ବିରତି ପାଇଁ ମଣିଷ ପ୍ରକୃତିକୁ ଚାହୁଁଛି । କବିର ଏପରି ଅନୁଭବ ଆଜିର କବିତାରେ ପ୍ରକୃତି କବିତା ରୂପେ ଆତ୍ମପ୍ରକାଶ କରିଛି । କବି ଗୁରୁପ୍ରସାଦଙ୍କ 'ପିକ୍‌ନିକ୍' କବିତାକୁ ପାଠ କରାଯାଉ—

"ଆମେ ସବୁବେଳେ ରୋମାଣ୍ଟିକ ମନ ନେଇ

ଗପସପ କରି

ସାହିତ୍ୟ ଓ ରାଜନୀତି ଗୁଡ଼ାଇଦେଇ ଚଟାଣରୁ ଯିବାକୁ ସେଠିକି

ଟିଣ ଦୁଧ, ଚା', ଷ୍ଟୋଭ

ସିଗାରେଟ୍ ଦିଆସିଲି ଯଥେଷ୍ଟ ଯଥେଷ୍ଟ

କ୍ୟାମେରା ଓ ଗ୍ରାମଫୋନ୍ ।"

ପ୍ରକୃତିକୁ ନେଇ କବିତା ରଚନା କରିବା ସାଂପ୍ରତିକ କବିତାରେ ପ୍ରାୟତଃ ଦେଖାଯାଏ ନାହିଁ । ବରଂ କବିମାନଙ୍କ କବିତାରେ ନିଃସଙ୍ଗ ନପୁଂସକ ପ୍ରକୃତି ଚିତ୍ର ପ୍ରକାଶ ପାଇଛି । ଯେଉଁଠି ବସନ୍ତ କୁକୁଡ଼ାର ଦେହରେ ଧକ୍କା ଖାଇ ଆସେ, ମଣିଷର ଦାବ ନେଇ ମଳୟ ଆତ୍ମହତ୍ୟା କରେ ସେଠି ପ୍ରକୃତି ନୁହେଁ ବରଂ ପଲ୍ଲୀ ଚେତନା ଭିତରେ ପ୍ରକୃତି ଆତ୍ମପ୍ରକାଶ କରିଛି । ସାଂପ୍ରତିକ କବିତାରେ ପ୍ରକୃତି କବିତା କହିଲେ ପଲ୍ଲୀ ଚେତନାକୁ ବୁଝାଯିବ । କିନ୍ତୁ ତାହିଁ ସେ ପଲ୍ଲୀ ସେ କବିତା । ଯେଉଁଠି କବି ଗାଇ ଉଠିଥିଲେ—

ଦଲ୍ଲୀପ କୁମାର ସ୍ୱାଇଁ

"ଗୋଠରୁ ବାହୁଡ଼ି ଅଇଲେଣି ଧେନୁ
ଶୁଣାଯାଏ ଘଣ୍ଟି ଘାଗୁଡ଼ି
ଧୂଡ଼ୁକା ବଜାଇ ପଛେ ଗୋପ ଶିଶୁ
ଆସେ କାଖେ ଜାକ ଲଗୁଡ଼ି
ଭଦ ଭଦଳିଆ ଛତାରେ
କହ୍ନି ଫୁଲ ଫୁଟି ହସେ ଠୋ ଠାଃ
ନୂଆଣିଆ ଗୁଳ ବତାରେ
ଭାଗବତ ଘରେ ଖଞ୍ଜଣି
ଶୁଣାଯାଏ ଦୂରୁ ଶୁଭଇ ଭଜନ
ଭୀମ ଭୋଇ ଗୀତେ କ ଭଣୀ ।"

ପଲ୍ଲୀମଞ୍ଚ-ପଲ୍ଲୀଶ୍ରୀ—ସଚ୍ଚି ରାଉତରାୟ



# ଓଡ଼ିଆ କାବ୍ୟ କବିତାର ବିକାଶଧାରା

୨

ଓଡ଼ିଆ ସାହିତ୍ୟରେ କାବ୍ୟ କବିତାର ବିକାଶଧାରା ଆଲୋଚନା କରିବା ଅବସରରେ ଆମର ଲୋକ ସାହିତ୍ୟର ବଳିଷ୍ଠ ବିଭାଗ ଲୋକଗୀତ ଭିତରେ କବିତା ସୃଷ୍ଟିର ଐତିହ୍ୟକୁ ଆଲୋଚନା କରାଯିବା ଆବଶ୍ୟକ ହୁଏ । ଆମ ଭାଷା ସାହିତ୍ୟରେ ବିଧିବଦ୍ଧ ଭାବରେ କବିତା ରଚନା ହେବା ପୂର୍ବରୁ ଅଗଣିତ ନିରକ୍ଷର ମଣିଷମାନଙ୍କ ମୁହଁରେ ଅନେକ ଗୀତ କବିତାର ପ୍ରଚଳନ ଥିଲା । ଶଗଡ଼ ଗଡ଼ାଇଲାବେଳେ ଶଗଡ଼ିଆ, ଘାଟ ବାହିଲାବେଳେ ନାଉରିଆ, ସବାରି କାନ୍ଧରେ ବୋହି ଗଲାବେଳେ ଗହଡ଼ ମୁହଁରୁ ଯେଉଁ ସଙ୍ଗୀତର ସ୍ରୋତ ଭାସି ଆସୁଥିଲା ତାହା ଆଜିପର୍ଯ୍ୟନ୍ତ ମଣିଷ ହୃଦୟକୁ ଥରାଇ ଦେବାରେ ସକ୍ଷମ ହୋଇ ପାରିଛି । ଝିଅ ବାହାହୋଇ ବାପଘରୁ ଶାଶୁଘରକୁ ବିଦା ହୋଇଗଲା ବେଳର ଅଭିନବ କାନ୍ଦଣା, ରଜଦୋଳିରେ ସାଙ୍ଗସାଥୀଙ୍କ ସହ ଦୋଳିଗୀତ, ପୁଚିଗୀତ, ମୀତଗୀତ, କୁମାର ପୂନେଇ ଗୀତ ଆଜି ମଧ୍ୟ ଗ୍ରାମ୍ୟ ଜୀବନର ସଙ୍ଗୀତମୟ ଜୀବନଧାରାର ପରିଚୟ ଦେଇଥାଆନ୍ତି । ଏହି ଗୀତମାନଙ୍କରେ କବିତ୍ୱ ଓ ଆବେଗର ଅପୂର୍ବ ସମନ୍ୱୟ ଦେଖାଯାଇ ଥାଏ । ପ୍ରାଚୀନ ଉତ୍କଳର କାନ୍ଦଣା ଗୀତକୁ ଲକ୍ଷ୍ୟ କରାଯାଉ—

"ହେକଲା ପେଟମୋ ଦେଖି ନ ଥିଲୁ, ଲୋ ମୋ ବୋଉ
ଶୁଖିଲା ମୁହଁ ମୋ ଚାହୁଁ ନ ଥିଲୁ, ଲୋ ମୋ ବୋଉ ।

ଦିବସ ରଜନୀ ମୋ ଲାଗି କରୁଥିଲୁ ଚିନ୍ତା, ଲୋ ମୋ ବୋଉ
ଏବେ ପରୁଧନଲାଗି ହେବୁ ଅଚିନ୍ତା, ଲୋ ମୋ ବୋଉ ।

ଦାରୁସିନା ସହେ କରତ ଧାର, ଲୋ ମୋ ବୋଉ
ହୃଦ କି ସହିବ କରତ ଭାର, ଲୋ ମୋ ବୋଉ ।

ପାଳଧୂଆ କାଠେ କରତ ଘାଆ, ଲୋ ମୋ ବୋଉ
ଝର ଝର ଝରି ପଡ଼ଇ ତାହା, ଲୋ ମୋ ବୋଉ ।"

ଲୋକ ଗୀତର ଆବେଦନ ଅତି ପ୍ରଖର । ଓଡ଼ିଶାର ସାମାଜିକ ସାଂସ୍କୃତିକ ଜୀବନର ପରିଚୟ ପ୍ରଦାନ କରିବାରେ ଲୋକ ସାହିତ୍ୟର ଭୂମିକା ଅନନ୍ୟ । ଗ୍ରାମ୍ୟ-ଗୀତ ଭିତରେ ପ୍ରାଚୀନ ଓଡ଼ିଆ କବିତାର ଅରୁଣାରାଗ ଦେଖିବାକୁ ମିଳେ । ଲୋକଗୀତ ଭିତରେ ଅନେକ ଢଗଢମାଳି, କାହାଣୀ, ପ୍ରବାଦ ପ୍ରବଚନର ପ୍ରୟୋଗ ହୋଇଥାଏ । କ୍ରମଶଃ ଲୋକ ମୁଖରେ ପ୍ରଚଳିତ ଏହି ଶକ୍ତିଶାଳୀ ଗ୍ରାମ୍ୟଗୀତ କବିତାରେ ରୂପାନ୍ତରିତ ହୋଇ ଯାଇଛି । ଏ ସମ୍ପର୍କରେ ନିଜର ମତଦେଇ ଲୋକଗୀତର ଗବେଷକ ଓ ସଂଗ୍ରାହକ ଚକ୍ରଧର ମହାପାତ୍ର କହନ୍ତି, "ଯେଉଁ କବିତାମାନ ଏବେ ମୁଖେ ମୁଖେ ରହି ଆସିଛି, କେବେହେଲେ ଗ୍ରନ୍ଥ ଭାବରେ ପରିଚିତ ହେବାର ସୁଯୋଗ ଲାଭ କରିନାହିଁ ବା କୌଣସି ବ୍ୟକ୍ତିଦ୍ୱାରା କେଉଁ ଅଜ୍ଞାତ କୋଣରେ ସୃଷ୍ଟିଲାଭ କରି ତା'ର ବିଚକ୍ଷଣ ମହତ୍ତ୍ୱରେ ସେ ଜନସମାଜର କୋଣେ କୋଣେ ପ୍ରସ୍ତୁରିତ ହୋଇ ସାର୍ବଜନୀନ ହୋଇ ପାରିଛି, ସେହିମାନଙ୍କୁ ହିଁ ଗ୍ରାମ୍ୟଗୀତ ବୋଲି ଅଭିହିତ କରିବା ସମୀଚୀନ । ୧ ।" ଗ୍ରାମ୍ୟଗୀତରେ ଯେ କବିତ୍ୱ ଶକ୍ତି ଅଛି ଏବଂ ଏଗୁଡ଼ିକ ଗୋଟିଏ ଗୋଟିଏ ପ୍ରାଚୀନ ଗୀତ କବିତା ଏକଥା ଅସ୍ୱୀକାର କରି ହେବନାହିଁ । ଗୋଟିଏ ଚକୁଳିଆ ପଣ୍ଡା ଗୀତର କବିତ୍ୱ ଓ କାବ୍ୟ କଳାଗୁଣ ବିଚାର କରାଯାଉ— ୭

"ଦେଇଥିଲେ ପାଇ
ବୁଣିଥିଲେ ବାଇ
ପଡ଼ିଆ ବାଡ଼ିରେ ଗୋଧନ ଚରାଇ
ଆହେ ଆପଣେ ।"

ସମ୍ବୋଧନ ଭିତରେ ଗୃହଧାଡ଼ି ଭିତରେ ଯେଉଁ ସୁନ୍ଦର ସଙ୍ଗୀତମୟ ଭାବଟି ପ୍ରକାଶ ପାଇଛି ତାହା କବିତାଠାରୁ ଆଦୌ କମ୍ ନୁହେଁ । ଆମ ସାହିତ୍ୟରେ ବିଧିବଦ୍ଧ କାବ୍ୟଚର୍ଚ୍ଚା ହେବା ଆଗରୁ ଅନେକ ଲୋକଗୀତ ମାଧ୍ୟମରେ କାବ୍ୟ ରଚନାର ପରମ୍ପରା ଓ ପରିବେଶ ସୃଷ୍ଟି ହୋଇ ସାରିଥିଲା ।

ଓଡ଼ିଆ ଭାଷାରେ ବିଧିବଦ୍ଧ କବିତା ରଚନା ହେବା ପୂର୍ବରୁ ଯେଉଁ କାବ୍ୟ ପରମ୍ପରା ଗଢ଼ି ଆସୁଥିଲା, ସେଥିରେ ଆଉ ଗୋଟିଏ ପାଦରୂପେ ଆମର ପ୍ରାଚୀନଚର୍ଯ୍ୟା ସାହିତ୍ୟକୁ ଗ୍ରହଣ କରାଯିବ । ଚର୍ଯ୍ୟାପଦ ଗୁଡ଼ିକୁ ପ୍ରାଚୀନ ଓ ପ୍ରଥମ ଓଡ଼ିଆ କବିତା ଭାବରେ ଗ୍ରହଣ କରାଯାଇ ଥାଏ । ୧୯୦୭ ମସିହାରେ ନେପାଳରାଜ ଦରବାରରୁ ହରପ୍ରସାଦ ଶାସ୍ତ୍ରୀ ପ୍ରାଚୀନ ପୋଥି ସଂଗ୍ରହ କରିବେଳେ ଏକ ପୋଥି ପାଇଥିଲେ ଯାହାର ନାମ ଥିଲା 'ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ ।' ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା 'ହଜାର୍ ବଛରେର ପୁରାନୋ ବାଙ୍ଗାଲା ଭାଷାୟ ବୌଦ୍ଧଗାନ ଓ ଦୋହା

ନାମରେ ଏହା ପ୍ରକାଶିତ ହେଲା । ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ ପରବର୍ତ୍ତିତ ନାମ 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚର୍ଯ୍ୟ' ନାମରେ ପ୍ରକାଶ ପାଇବାରେ ବିଭିନ୍ନ ଭାଷାର ଗବେଷକ ଓ ଆଲୋଚକ ମାନେ ଏହାକୁ ନିଜ ଭାଷାର ପ୍ରାଚୀନ ପୋଥି ଓ କବିତା ବୋଲି ଯୁକ୍ତି ଉପସ୍ଥାପନ କରିଛନ୍ତି । ଓଡ଼ିଆ ଭାଷାର ବିଶିଷ୍ଟ ଗବେଷକ କରୁଣାକର କର, ବିନାୟକ ମିଶ୍ର, ପୂର୍ଣ୍ଣଚନ୍ଦ୍ର ... ଦାଶ, ସୁରେନ୍ଦ୍ର ମହାନ୍ତି ଚର୍ଯ୍ୟାଚର୍ଯ୍ୟର ଚର୍ଯ୍ୟାକୁ ଓଡ଼ିଆ ବୋଲି ପ୍ରମାଣିତ କରିବା ପରେ ଓଡ଼ିଆ ଭାଷା ସାହିତ୍ୟର ପ୍ରାଚୀନତା ଓ ପରିସୀମା ଉନ୍ମୁକ୍ତ ହୋଇ ପାରିଛି । ଅଷ୍ଟମ ଚର୍ଯ୍ୟାଚୟରେ ୮୪ ଜଣ ସିଦ୍ଧାଚାର୍ଯ୍ୟଙ୍କର ରଚନା ଗ୍ରହଣ କରାଯାଇଥିଲେହେଁ ୨୩ ଜଣ ସିଦ୍ଧାଚାର୍ଯ୍ୟ ମାନଙ୍କର ଚର୍ଯ୍ୟା ସ୍ଥାନ ପାଇଛି । ନାମଗତ ଓ ଧର୍ମଗତ ଦୃଷ୍ଟିକୋଣରୁ ଏହି ସିଦ୍ଧାଚାର୍ଯ୍ୟମାନେ ଓଡ଼ିଶାର ବୋଲି ଧାରଣା ଦୃଢ଼ ହୁଏ । ସରହପା, କାହ୍ନୁ ପାଦ, ଲୁଇ ପାଦ, ସବରି ପାଦ, ଭୁସୁକୁପା, ହାଡ଼ିପା, ଦାରିକପା, ତାଡ଼କପା, କୁକ୍କୁରିପା, ବିରୁପପା, ବୀଣାପା, ଗୁଣ୍ଡରିପା, କମ୍ବଳପା, କଙ୍କଣପା, ଜୟନନ୍ଦୀପା, ଏଚିଣ୍ଡଣପା, ଡୋମ୍ବୀପା, ଧାମପା, ଭାଦେପା, ମହୀଧରପା ଆଦି ସିଦ୍ଧାଚାର୍ଯ୍ୟମାନେ ଓଡ଼ିଶାର ବୋଲି ପ୍ରମାଣିତ ହୋଇଛି ।

ଚର୍ଯ୍ୟାପଦ ମାନଙ୍କରେ ଓଡ଼ିଆ ଭାଷାର ପ୍ରାଚୀନତା ଏବଂ ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ଜୀବନର ପରିଚୟ ମିଳିଥାଏ । କବି କାହ୍ନୁ ପାଦଙ୍କ କବିତାକୁ ଏଠାରେ ଗ୍ରହଣ କରାଯାଉ—

ଡୋମ୍ବୀ—ଚର୍ଯ୍ୟା

ରାଗ—ଦେଶାଖ

"ନଗର ବାହିରେ ରେ ଡୋମ୍ବି ତୋହୋରି କୁଡ଼ିଆ
ଛୋଇ ଛୋଇ ଜାହ ସୋ ବ୍ରାହ୍ମଣ ନାଡ଼ିଆ ।୧।
ଆଲୋ ଡୋମ୍ବି ତୋଏ ସମ କରିବୋ ମୋ ସାଙ୍ଗ
ନିଘିନ କାହ୍ନ କାପାଲି ଜୋଇଲାଙ୍ଗ ।
ଏକସୋ ପଦୁମା ଚୌଷଠୀ ପାଖୁଡ଼ୀ
ତହିଁ ଚଢ଼ି ନାଚଅ ଡୋମ୍ବୀ ବାପୁଡ଼ୀ । ୨ ।"

ଲୁଇପାଙ୍କ କାୟାତରୁ ଚର୍ଯ୍ୟାରେ ପ୍ରାଚୀନ ଓଡ଼ିଆ ଶବ୍ଦର ଯଥେଷ୍ଟ ପ୍ରୟୋଗ କରାଯାଇଛି ।

କାୟା—ତରୁଚର୍ଯ୍ୟା

ରାଗ—ପଟମଞ୍ଜରି

"କାଆ ତରୁବର ପଞ୍ଚ ବିଡାଲ
ଚଞ୍ଚଳ ଚୀଏ ପଇଠା କାଲ । ୧ ।

---

।୧। ଓଡ଼ିଆ ଗ୍ରାମ୍ୟ ଗୀତ—ଚକ୍ରଧର ମହାପାତ୍ର, ପୃ-୨,

ଭତ କରଅ ମହାସୁହ ପରମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ
ସଅଲ ସମାହିଅ କାହି କାରଅଇ
ସୁଖ ଦୁଃଖତେଁ ନିଚତ ମରଅଇ । ୨ ।''

ଚର୍ଯ୍ୟା ପଦର କବିତ୍ୱ ଓ ଭାଷା ଗୌରବ ଓଡ଼ିଆ କବିତାର ପ୍ରାଚୀନ ଆସ୍ୱାଦ ହେବାପାଇଁ ଉପଯୁକ୍ତ । ଅପଭ୍ରଂଶ ଭାଷାର ଏ ସାହିତ୍ୟ କୃତରେ ବିଭିନ୍ନ ପ୍ରାଦେଶିକ ଭାଷାର ବିଭବ ଆତ୍ମଗୋପନ କରିଥିଲେହେଁ ଓଡ଼ିଆ ଭାଷାର ମୌଳିକ ପରିଚୟ ଓ କବିତ୍ୱକୁ ଏଥିରେ ଗ୍ରହଣ କରାଯାଇ ପାରିବ ।

ସାରଳା ସାହିତ୍ୟର ପ୍ରାକ୍ କାଳରେ କୌଣସି ଉଲ୍ଲେଖନୀୟ ସାହିତ୍ୟ ସୃଷ୍ଟି ଦେଖାଯାଉ ନ ଥିଲାବେଳେ ବତ୍ସା ଦାସଙ୍କ ରଚିତ 'କଳସା ଚଉତିଶା' ଏକ ଆଦର୍ଶ ଶୈବ କାବ୍ୟ ଭାବରେ ପ୍ରତିଷ୍ଠା ପାଇ ପାରିଛି । ପ୍ରାକ୍ ସାରଳା ସାହିତ୍ୟ ଭିତରେ କଳସା ଚଉତିଶାର ସ୍ଥାନ ସ୍ୱତନ୍ତ୍ର । କଳସା ଚଉତିଶା ଓ ଏହାର ରଚୟିତାଙ୍କ ସମ୍ପର୍କରେ ସୂଚନା ଦେଇ ସଂଗ୍ରାହକ ଆର୍ତ୍ତିବଲ୍ଲଭ ମହାନ୍ତି କହନ୍ତି—''ସାରଳା ମହାଭାରତରେ କଳସା ଚଉତିଶାର ନାମ ଉଲ୍ଲେଖ କରାଯାଇଛି । ଏଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ ସାରଳା ଦାସଙ୍କ ସମୟକୁ କଳସା ଚଉତିଶା ଓଡ଼ିଶାରେ ଲୋକପ୍ରିୟ ହୋଇ ସାରିଛି । ଏ ପ୍ରକାର ଲୋକପ୍ରିୟତା ଲାଭ କରିବା ନିମିତ୍ତ ପ୍ରାୟ ଏକଶତ ବର୍ଷ ଲାଗିଥିବ । ତେଣୁ ଆମେ ବତ୍ସା ଦାସଙ୍କୁ ସହଜରେ ଚତୁର୍ଦ୍ଦଶ ଶତାବ୍ଦୀରେ ଅବସ୍ଥାପିତ କରି ପାରିବା ।'' ।୨। କଳସା ଚଉତିଶା ଶୈବ ଧର୍ମର ସମ୍ପତ୍ତି ଭାବରେ ପ୍ରାକ୍ ସାରଳା ସାହିତ୍ୟର ଏକ ଉଲ୍ଲେଖନୀୟ ଅବଦାନ । ଶିବ-ପାର୍ବତୀଙ୍କ ବିବାହ ପ୍ରସଙ୍ଗକୁ ଗ୍ରହଣ କରି ଏହା ଗଢ଼ି ଉଠିଛି । ଶିବ ହିମବନ୍ତଙ୍କ ଗୃହକୁ ବରହୋଇ ଆସିବା ଓ ଯୋଗୀ ବେଶରେ ବାଳକକୁ ବାହନ କରି ଶ୍ୱାସବେଗରେ ଆନନ୍ଦ ଏହି ବରକୁ ପାର୍ବତୀଙ୍କ ଆଗରେ ବର୍ଣ୍ଣନା କରି ପାର୍ବତୀଙ୍କ ମନସ୍ତାପ ଏବଂ ଶେଷରେ ଶିବଙ୍କ ପ୍ରକୃତ ରୂପ ଦର୍ଶନ ମାଧ୍ୟମରେ ଚଉତିଶା ଶେଷ ହୋଇଛି । ବତ୍ସା ଦାସ ଅତି ସୁନ୍ଦର ଭାବରେ ପାର୍ବତୀଙ୍କ ମନସ୍ତତ୍ତ୍ୱକୁ ଆଙ୍କିବା ସହ ଶିବ ମହିମା ବର୍ଣ୍ଣନା କରିବାରେ ସମର୍ଥ ହୋଇଛନ୍ତି । ଓଡ଼ିଆ କାବ୍ୟ ରଚନା ପ୍ରାରମ୍ଭରେ ବତ୍ସା ଦାସଙ୍କ 'କଳସା ଚଉତିଶା'ର ଅବଦାନ ଅନନ୍ୟ ।

---

।୨। ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ—ସଂ-ଆର୍ତ୍ତିବଲ୍ଲଭ ମହାନ୍ତି, ପୃ-୯୦ ।

ସାରଳା ସାହିତ୍ୟର ସମସାମୟିକ ସୃଷ୍ଟି ଭାବରେ କୌଣସି କାବ୍ୟ ଐଶ୍ୱର୍ଯ୍ୟ ସମାଲୋଚକ ମାନଙ୍କ ପ୍ରଭାବିତ କରିପାରି ନାହିଁ । ଯଦିଓ 'ସୋମନାଥ ବ୍ରତକଥା' ଏ ସମୟର ଏକ ସଫଳ ସୃଷ୍ଟି, ଏହା ଗଦ୍ୟ ସାହିତ୍ୟ ସପକ୍ଷରେ ଏକ ଅଭିନବ ପଦକ୍ଷେପରେ ପରିଗୃହିତ ହୋଇଛି । ନାରାୟଣ ନନ୍ଦ ଅବଧୂତ ସ୍ୱାମୀଙ୍କ 'ରୁଦ୍ର-ସୁଧାନିଧି' ଏ ସମୟର ଏକ ସଫଳ ଗଦ୍ୟସୃଷ୍ଟି । କବିତା ପରମ୍ପରା ଆଲୋଚନାରେ ଏ ଦୁଇଟି ସୃଷ୍ଟିରେ ପ୍ରତିଫଳିତ କବିତ୍ୱ ଓ ନିହିଳ ଶବ୍ଦ ପ୍ରୟୋଗ ଲକ୍ଷ୍ୟ କରିବାର କଥା । ରୁଦ୍ରସୁଧାନିଧି ଗଦ୍ୟ ହେଲେ ମଧ୍ୟ ଏହାର ଅଧିକାଂଶ କବିତା ଓ ପଦ୍ୟ ଆକାରରେ ବର୍ଣ୍ଣିତ କରାଯାଇଛି । ଯାହାହେଲେ ମଧ୍ୟ ରୁଦ୍ରସୁଧାନିଧି କାବ୍ୟ ନୁହେଁ ବରଂ କାବ୍ୟକଳାର ନରମ ଲକ୍ଷଣ ଏଥିରେ ପ୍ରକାଶ ପାଇଛି । ସାରଳା ଦାସଙ୍କ ମହାନ ସୃଷ୍ଟି ପରିପ୍ରେକ୍ଷୀରେ ଏ ଦୁଇ ଗ୍ରନ୍ଥର କବିତ୍ୱମୟ ଭାଷା ଏକ ମହାକାବ୍ୟ ରଚନା ପାଇଁ ପ୍ରେରଣା ପ୍ରଦାନ କରିଥିବ ନିଶ୍ଚୟ ।

ଓଡ଼ିଆ ଭାଷାରେ ବିଧିବଦ୍ଧ କବିତା ଚର୍ଚ୍ଚା ଆରମ୍ଭ ହେବା ପୂର୍ବରୁ ଓଡ଼ିଶାର ନାଥମାନଙ୍କ ଦ୍ୱାରା ଅନେକ ସ୍ତୁତି, ଗୀତିମାନ ରଚନା କରାଯାଉଥିଲା । ଓଡ଼ିଶାରେ ନାଥ ଧର୍ମର ବ୍ୟାପକ ବ୍ୟବହାର ଥିଲା । ନାଥ ଯୋଗୀମାନେ ନିଜ ଧର୍ମର ଆଦର୍ଶ ଓ ମହତ୍ତ୍ୱକୁ ବିଭିନ୍ନ ଶ୍ଳୋକ ମାଧ୍ୟମରେ ବର୍ଣ୍ଣିତ କରିଥିଲେ । ଏ ସବୁକୁ କବିତା ନ କହି ମଧ୍ୟ ସାହିତ୍ୟ ଭାବରେ ଗ୍ରହଣ କରାଯାଇ ପାରିବ । ଶିଶୁବେଦ, ସପ୍ତାଙ୍ଗ ଯୋଗ, ଗୋରେଖ ସଂହିତା, ଅମରକୋଷ ଗୀତା ଆଦି ନାଥ ଧର୍ମ ସମ୍ପର୍କରେ ଗୋଟିଏ ଗୋଟିଏ ସାର୍ଥକ ରଚନା । ଓଡ଼ିଶାରେ କବିତା କାବ୍ୟ ରଚନା ହେବା ପୂର୍ବରୁ ପଦ୍ୟ ସାହିତ୍ୟର ବିକାଶ ଏହି ଧର୍ମ ଧାରଣା ଓ ସ୍ତୁତି ପଦମାନଙ୍କ ଭିତରେ ବିକଶିତ ହୋଇଥିଲା ।

ସାରଳା ଦାସଙ୍କ କବିତ୍ୱ ଓ ଅନୁଭବକୁ ପାଥେୟ କରି ଓଡ଼ିଆ ଭାଷାରେ ପ୍ରଥମ ମହାକ୍ରମ ମହାକାବ୍ୟ ମହାଭାରତ ରଚନା ଆରମ୍ଭ ହେଲା । ଓଡ଼ିଆ ମାଟିର ଚୁଳିଆଦିକାର ସାରଳା ଦାସ ପ୍ରଥମ କରି ଓଡ଼ିଶାର ପାଣିପାଗ, ସମାଜ ସଂସ୍କୃତିକୁ ନୂତନ ରୂପରେ ଚିତ୍ରଣ କଲେ । ସଂସ୍କୃତ ମହାଭାରତକୁ ଅନୁବାଦ ନ କରି ଏକ ମୌଳିକ ସୃଜନ ପାଇଁ କବି ବିଧିବଦ୍ଧ ପ୍ରୟାସ କରିଛନ୍ତି । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ଜନ ଜୀବନ ଓ ଜୀବନବୋଧର ପ୍ରତୀକ ଭାବରେ ମହାଭାରତର ବହୁମୂଲ୍ୟ ସବୁ ସମୟ ପାଇଁ ସମାଜରେ ଓ ସାହିତ୍ୟରେ ସୁରକ୍ଷିତ ରହିଛି । କବି 'ବିଚିତ୍ର ରାମାୟଣ' (ବିଲଙ୍କା ରାମାୟଣ) 'ଚଣ୍ଡୀ ପୁରାଣ' 'ଲକ୍ଷ୍ମୀନାରାୟଣ ବଚନିକା' ମଧ୍ୟ ରଚନା କରିଛନ୍ତି । କିନ୍ତୁ ମହାଭାରତ ରଚନା କରି ଓଡ଼ିଆ ଭାଷା ସାହିତ୍ୟରେ ଯୁଗ ନିର୍ମାଣର ଗୌରବରେ ଭୂଷିତ ହୋଇଛନ୍ତି । ସାରଳା ଦାସଙ୍କ ସମୟରେ ଅନ୍ୟ

କୌଣସି ଉଲ୍ଲେଖନୀୟ କୃତ ଦେଖାଯାଏ ନାହିଁ । ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ଏ ସମୟର ଏକ ଅନନ୍ୟ ସୃଷ୍ଟି । ବଭିନ୍ନ ସିଦ୍ଧାନ୍ତର୍ଯ୍ୟ ଓ ଧର୍ମର ଭଜନ, ଜଣାଣ ଓ ସ୍ତୋତ୍ର ରଚନା ଦେଖାଯାଇ ଥାଏ ।

ପଞ୍ଚସଖା ଯୁଗରେ ଶରୀର ସାଧନା ଓ ଅଧ୍ୟାତ୍ମ ତତ୍ତ୍ୱକୁ ନେଇ କବିତା ରଚନା କରିବାର ନୂତନ ପ୍ରକ୍ରିୟା ଆରମ୍ଭ ହୋଇଛି । ଅନେକ ଗୀତମୟ ଭଜନ, ଜଣାଣ ସହ ଏ ଯୁଗର ଆରମ୍ଭ ହୋଇଥିଲେହେଁ ପ୍ରକୃତ ପକ୍ଷରେ ପାଞ୍ଚଜଣ ସାଧକ କବିମାନଙ୍କ ହୃଷ୍ଟପୁଷ୍ଟ ରଚନାରେ ଏ ଯୁଗ ବଳିଷ୍ଠ ହୋଇଛି । କବି ବଳରାମ ଦାସଙ୍କ କବିତ୍ୱ ଏ ଯୁଗରେ ଅନେକ ସଫଳତା ଆଣି ଦେଇଛି । କବି 'ଜଗମୋହନ ରାମାୟଣ' ପରି ମହାନ୍ କାବ୍ୟ ରଚନା କରିବା ସହ 'ମୃଗୁଣୀ ସ୍ତୁତି' 'ଶ୍ରୀମଦ୍ ଭଗବଦ୍ ଗୀତା' 'ଗୁପ୍ତ ଗୀତା' 'ଜ୍ଞାନ ଚୂଡ଼ାମଣି' 'ବଟ ଅବକାଶ' 'ଭାବ ସମୁଦ୍ର' 'ବେଦାନ୍ତସାର ଗୁପ୍ତ ଗୀତା' 'ବିରାଟ ଗୀତା' 'ବଉଳା ଅଧ୍ୟାୟ' 'ଲକ୍ଷ୍ମୀ ପୁରାଣ' 'ଅମରକୋଷ ଗୀତା' 'ମାଳଶ୍ରୀ' 'କାନ୍ତ କୋଇଲି' 'ଦୀର୍ଘସାର ଗୀତା' ଆଦି ରଚନା କରିଛନ୍ତି । ବଳରାମ ଦାସଙ୍କ ଅଜସ୍ର ଲେଖନୀରେ ପଞ୍ଚସଖା ଯୁଗର ସାହିତ୍ୟ (କବିତା) ଋଦ୍ଧିମନ୍ତ ହୋଇଛି । କବି ଜଗନ୍ନାଥ ଦାସ 'ଶ୍ରୀମଦ୍ ଭାଗବତ' ରଚନା କରି ଓଡ଼ିଶାର ଅଗଣିତ ମଣିଷମାନଙ୍କରେ ଭକ୍ତିରସ ଓ ଜ୍ଞାନତୃଷ୍ଣା ମେଣ୍ଟାଇ ପାରିଛନ୍ତି । ଯଦି ଆଜି କୌଣସି ସାହିତ୍ୟ କୃତିର ଜନପ୍ରିୟତା ସମ୍ପର୍କରେ ମୂଲ୍ୟାୟନ କରାଯାଏ ତାହାଲେ ଜଗନ୍ନାଥ ଦାସଙ୍କ ଭାଗବତ ତା'ର ମହିମା ସମ୍ପର୍କରେ ସମସ୍ତଙ୍କୁ ସଚେତନ କରାଇ ଦେବ । ଓଡ଼ିଶାର ପୁରପଲ୍ଲୀରେ ପ୍ରତିଷ୍ଠା କରାଯାଇଥିବା ଅଗଣିତ ଭାଗବତ ଟୁଙ୍ଗୀ ଭାଗବତ ଜନପ୍ରିୟତାର ସାର୍ଥକ ଉଦାହରଣ । ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଭାଗବତ ଆମ ଜୀବନର ଏକ ବୃହତ୍ତର ଅଂଶ ଭାବରେ ଆମକୁ ପ୍ରଭାବିତ କରି ଆସୁଛି । ଜଗନ୍ନାଥ ଦାସ ଭାଗବତ ଛଡ଼ା ତାଙ୍କ କବିତ୍ୱର ପରିଚୟ 'ମନଶିକ୍ଷା' 'ଗଜ ନିସ୍ତାରଣ' 'ପାଷାଣ୍ଡ ଦଳନ' 'ଶୈବାଗମ ଭାଗବତ' 'ଟୀକା ଭାଗବତ' 'ରତ୍ନ ପାଦୁକା' 'ଦାରୁବ୍ରହ୍ମ ଗୀତା' 'ପଦ୍ମପାଦ ସୁଧାନିଧି' 'ବ୍ରହ୍ମଗୀତା' 'ତୁଳାଭିଣା' ଆଦିରେ ମିଳିଥାଏ । ଜଗନ୍ନାଥ ଦାସଙ୍କ କବିତ୍ୱ ଓ ପାଣ୍ଡିତ୍ୟ ଦ୍ୱାରା ଓଡ଼ିଆ କାବ୍ୟକବିତା ଋଦ୍ଧିମନ୍ତ ହୋଇଛି । 'ହରିବଂଶ'ର କବି ଅଚ୍ୟୁତାନନ୍ଦ ଦାସ ପଞ୍ଚସଖା ଯୁଗର ଜଣେ ଖ୍ୟାତିସମ୍ପନ୍ନ କବି ଭାବରେ ପ୍ରତିଷ୍ଠିତ ହୋଇଛନ୍ତି । କବିଙ୍କ ଅନନ୍ୟ ପ୍ରତିଭାର ପରିଚୟ 'ହରିବଂଶ'ରେ ମିଳିଥାଏ । କବି ଅଚ୍ୟୁତାନନ୍ଦ ଗଣି ଗଣି ଭଜନର ଜନକ । ଅଚ୍ୟୁତ ଭଜନ ଭିତରେ ଯେଉଁ ଜୀବନଦର୍ଶନ ଅଛି ତାହା ସାଧାରଣ ମଣିଷକୁ ଖୁବ୍ ଆକୃଷ୍ଟ କରିଥାଏ । ହରିବଂଶର କବି 'ଶୂନ୍ୟସଂହିତା' 'ଶୂନ୍ୟ ଗୀତା' 'କବିକଳ୍ପ ଗୀତା' 'କଳିଯୁଗ ଗୀତା' 'ଶିଶୁବେଦ'

'ଘଟସାଗର' 'ଗରୁଡ଼ ଗୀତା' 'କୈବର୍ତ୍ତ ଗୀତା' 'ଆଦିବ୍ରହ୍ମ ଗୀତା' 'ବଟ ସଂହିତା' 'ରାଧାରସ' 'ଗୋପାଳଙ୍କ ଓଗାଳ' 'ମହା ନୃତ୍ୟରାସ' 'ଚବିଶ ପଟଳ' 'ହରିବଂଶ କାହାଣୀ' 'ଅନାହତ ସଂହିତା' 'ଇନ୍ଦ୍ରକଳ୍ପ' ଇତ୍ୟାଦି ରଚନା କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ରଚନା ଗୀତିମୟ ଓ ଆବେଦନ ଇଙ୍ଗିତମୟ । ଅଚ୍ୟୁତାନନ୍ଦ ପଞ୍ଚସଖା ଯୁଗର ଜଣେ ଶ୍ରେଷ୍ଠ କବି ଏହା ତାଙ୍କ ରଚନାରୁ ପ୍ରମାଣିତ ହୋଇଥାଏ ।

କବି ଯଶୋବନ୍ତ ଦାସ ପଞ୍ଚସଖା ଯୁଗରେ ଜଣେ ଶକ୍ତିଶାଳୀ ପ୍ରତିଭା ଭାବରେ ଆବିର୍ଭାବ ହୋଇ ମଣିଷର ମୋହ ମୁକ୍ତି ପାଇଁ ଅନେକ ଭଜନ ରଚନା କରିଛନ୍ତି । କିନ୍ତୁ ଯଶୋବନ୍ତ ଦାସଙ୍କ ଲୋକପ୍ରିୟତା 'ଗୋବିନ୍ଦଚନ୍ଦ୍ର'ରୁ ମିଳିଥାଏ । ଯୋଗୀ କଣ୍ଠରେ ଗୋବିନ୍ଦଚନ୍ଦ୍ର ଗାନ ଶୁଣି ଅଗଣିତ ଓଡ଼ିଆ ଅଭିଭୂତ ହୋଇ ଯାଆନ୍ତି । କବି ଏତଦ୍‌ବ୍ୟତୀତ 'ବ୍ରହ୍ମ ଏକାକ୍ଷର ଗୀତା' 'ମନ୍ତ୍ରବୋଲି' 'ବଣଭୋଜି ବୋଲି' 'କ୍ଷିତିସୁଧା' 'ଶିବ ସ୍ୱରୋଦୟ' 'ପ୍ରେମଭକ୍ତି ବ୍ରହ୍ମଗୀତା' ଆଦି ରଚନା କରିଛନ୍ତି । 'ହେତୁ ଉଦୟ ଭାଗବତ' ରଚନା କରି କବି ଶିଶୁ ଅନନ୍ତ ଦାସ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ଓଡ଼ିଆ ଧାର୍ମିକ କାବ୍ୟ ପରମ୍ପରାରେ 'ହେତୁ ଉଦୟ ଭାଗବତ'ର ସ୍ୱତନ୍ତ୍ର ସ୍ଥାନ ରହିଛି । କବି 'ଗୁପ୍ତଟୀକା' 'ଧାମଛନ୍ଦ' 'ବ୍ରହ୍ମ ଏକାକ୍ଷର ଗୀତା' 'ରାସ' ଆଦି ରଚନା କରିଛନ୍ତି । ପଞ୍ଚସଖା ଯୁଗରେ ପାଞ୍ଚଜଣ ସିଦ୍ଧ କବିମାନଙ୍କ ଦ୍ୱାରା ଓଡ଼ିଆ କାବ୍ୟ କବିତାର ବହୁଳ ବିକାଶ ହୋଇଛି । କବିତା ମାଧ୍ୟମରେ ଧର୍ମର ବାର୍ତ୍ତା ପ୍ରଚାର କରି ଈଶ୍ୱରଙ୍କୁ ଘରେ ଘରେ ପହଞ୍ଚାଇ ଦେବାର ପ୍ରୟାସ ପଞ୍ଚସଖା ଯୁଗର କବିମାନଙ୍କଠାରୁ ଆରମ୍ଭ ହୋଇଛି । ଏ ଯୁଗର କବିତା ମନ୍ତ୍ରପାଠ ମାଧ୍ୟମରେ ମଣିଷ ପାଇଁ କାମନାମୁକ୍ତ ପୃଥିବୀର କାମନା କରିଛି ।

ଓଡ଼ିଆ ଭାଷା ସାହିତ୍ୟରେ କାବ୍ୟ ଚର୍ଚ୍ଚାର ଯୁଗ ଆରମ୍ଭ ହୁଏ ରୀତି ଯୁଗରୁ । ଦରବାରୀ ଶାସନ ଏବଂ ସାହିତ୍ୟରେ ରସ ପ୍ରବାହକୁ ଆଳକରି ଏ ଯୁଗରେ ଶୃଙ୍ଗାର ରସ ସମ୍ବଳିତ ଅନେକ କାବ୍ୟ କବିତା ସୃଷ୍ଟି ହୋଇଛି । ସଂସ୍କୃତ କାବ୍ୟ ରଚନା ଶୈଳୀରେ ଆମ କବିମାନେ ବିଭିନ୍ନ ରସର ସମାବେଶ କରି କାବ୍ୟ ଗଠନ କରିଛନ୍ତି । ଏପରି ଏକ ସୌନ୍ଦର୍ଯ୍ୟ ବିଳାସ ପଛରେ ଉତ୍କଳର ମନ୍ଦିର କଳା ମୋଗଲ ଶାସନର ଦରବାରୀ ବିଳାସ—ଓଡ଼ିଶାର ସାମନ୍ତ ରାଜା ମାନଙ୍କର ବିଳାସପୂର୍ଣ୍ଣ ଜୀବନ ଚର୍ଚ୍ଚା ଏବଂ ସଂସ୍କୃତ କାବ୍ୟର ପ୍ରଭାବ ଏ ଯୁଗର କବିମାନଙ୍କୁ ଶୃଙ୍ଗାର ଜଡ଼ିତ କାବ୍ୟ ରଚନା ପାଇଁ ଉତ୍ସାହିତ କରିଥିଲା । ଓଡ଼ିଶାରେ ଏ ସମୟରେ ବୈଷ୍ଣବ ଧର୍ମ ରାଜକୀୟ ପୃଷ୍ଠପୋଷକତା ଲାଭ କରିଥିଲା । ଏହି ବୈଷ୍ଣବ ଧର୍ମର ପରକୀୟା ପ୍ରେମତତ୍ତ୍ୱ (ଗୌଡ଼ୀୟ ବୈଷ୍ଣବ)କୁ ପାଥେୟ କରି ରାଧାକୃଷ୍ଣଙ୍କ ପ୍ରେମଛନ୍ଦ ଦେବା ଆଳରେ କବି ଶୃଙ୍ଗାରପୂର୍ଣ୍ଣ କାବ୍ୟ ରଚନା କରିଛି । ପୌରାଣିକ କାବ୍ୟ

ସହ କାଳ୍ପନିକ କାବ୍ୟମାନ ବିପୁଳ ପରିମାଣରେ ରଚିତ ହୋଇ କାବ୍ୟ ଯୁଗର ମହିମା ବୃଦ୍ଧି କରିଛନ୍ତି ।

ରୀତିଯୁଗର କାବ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇ ଥାଏ । ପ୍ରାକ୍ ରୀତି ଓ ରୀତି ଯୁଗ, ପ୍ରାକ୍ ରୀତି ଯୁଗରେ ପଞ୍ଚସଖା ଧର୍ମ ଦର୍ଶନ ସହ ମିଶ୍ରିତ ଭାବରେ କୃଷ୍ଣ କାବ୍ୟ ରଚିତ ହୋଇଛି । ଏ ଯୁଗରେ ରୀତି ଯୁଗର ସମସ୍ତ ଲକ୍ଷଣର ଅରୁଣ ଆଭାସ ସୃଷ୍ଟି ହୋଇଛି । ପ୍ରାକ୍ ରୀତି କାଳରେ କବି ଅର୍ଜୁନ ଦାସଙ୍କ 'କଳ୍ପଲତା' 'ରାମବିଭା', ନରସିଂହ ସେଣଙ୍କ 'ପରିମଳା' 'ଗୋପକେଳି', ଦାମୋଦର ଦାସଙ୍କ 'ରସକୁଲ୍ୟା ଚଉତିଶା', ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ', କପିଳେଶ୍ୱର ଦାସ 'କପଟ-କେଳି', ଶିଶୁଶଙ୍କର ଦାସଙ୍କ 'ଉଷା ଭିଳାସ', ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା' 'କଳାବତୀ' 'ସାବିତ୍ରୀ ଚରିତ' 'ଲୀଳାବତୀ' ବନମାଳୀ ଦାସଙ୍କ 'ଗୁପ୍ତ ଇଚ୍ଛାବତୀ', କାର୍ତ୍ତିକ ଦାସଙ୍କ 'ରୁକ୍ମଣୀବିଭା' 'ନବାନୁରାଗ' 'ରାମରାବଣ ଯୁଦ୍ଧ', ବୃନ୍ଦାଦାସଙ୍କ 'ଗୋପୀଚନ୍ଦନ', ହରିହର ନରେନ୍ଦ୍ରଙ୍କ 'ମଦାଳସା', ଦେବଦୁର୍ଲ୍ଲଭ ଦାସଙ୍କ ରହସ୍ୟମଞ୍ଜରୀ', ପ୍ରତାପରାୟଙ୍କ 'ଶଶିସେଣା' ଆଦି ଉଲ୍ଲେଖଯୋଗ୍ୟ କୃତି, ଏ ଯୁଗରେ ପୌରାଣିକ କାବ୍ୟ ସହ କାଳ୍ପନିକ କାବ୍ୟ ସୃଷ୍ଟି ସହ ସମୃଦ୍ଧ କରିଥିଲେ । ଏପରି ଏକ ସମୃଦ୍ଧ କାବ୍ୟ ପରମ୍ପରା ଉପରେ ରୀତିଯୁଗ ଗଢ଼ି ଉଠିଲା ।

ରୀତିଯୁଗ ବହୁ ବୈଶିଷ୍ଟ୍ୟ ମଣ୍ଡିତ ହୋଇ ସୃଷ୍ଟି ହୋଇଛି । ନାୟକ ନାୟିକାର ପ୍ରେମଚିତ୍ର ବ୍ୟାଖ୍ୟା କରି ଏ ଯୁଗର କବି ଓ କାବ୍ୟ ସ୍ୱତନ୍ତ୍ର ରସିକ ପାଠକ ସୃଷ୍ଟି କରିଛି । ରୀତି ଯୁଗର କବିତା ହୃଦୟର କବିତା । ଏ ଯୁଗର ସମସ୍ତ କବି ପ୍ରେମ-ବିରହ-ଭଗବାନକୁ କାବ୍ୟ କଳେବରରେ ଗ୍ରହଣ କରି କାବ୍ୟ ରଚନା କରିଛନ୍ତି । ଧନଞ୍ଜୟ ଭଞ୍ଜ ରଚନା କରିଛନ୍ତି 'ରଘୁନାଥ ବିଳାସ' 'ଇଚ୍ଛାବତୀ' 'ଅନଙ୍ଗ ରେଖା' 'ମଦନ ମଞ୍ଜରୀ' 'ତ୍ରିପୁର ମୋହିନୀ' ଆଦିକାବ୍ୟ ଏସବୁ କାବ୍ୟରେ ଉତ୍କୃଷ୍ଟ ପ୍ରେମଚିତ୍ର ଓ ସାବଲୀଳ ଅଳଙ୍କାର ପ୍ରୟୋଗ ହୋଇଥିବାର ଲକ୍ଷ୍ୟ କରାଯାଏ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟିକ ଅବଦାନ ରୀତି ଯୁଗର ସାହିତ୍ୟକୁ ସବୁଠାରୁ ବଳିଷ୍ଠ ଅବଦାନ । କବି ଏକ ପକ୍ଷରେ ରାମ ସୀତାଙ୍କୁ ନେଇ କାବ୍ୟରଚନା କରିଥିବାବେଳେ ଅନ୍ୟ ପକ୍ଷରେ କଳ୍ପନାର ଲଳନାମାନଙ୍କୁ ନେଇ ସୁନ୍ଦର କାବ୍ୟ ସୃଷ୍ଟି କରିଛନ୍ତି । ଉପେନ୍ଦ୍ର ରାଜପୁତ୍ର ଓ ରାଜା ଥିଲେ । ତାଙ୍କ କାବ୍ୟରେ ଏହି ଆଭିଜାତ୍ୟପୂର୍ଣ୍ଣ ବର୍ଣ୍ଣନାର ପରିଚୟ ଦେଖାଯାଏ । କାଳ୍ପନିକ କାବ୍ୟମାନଙ୍କରେ ଉପେନ୍ଦ୍ରଙ୍କ କାବ୍ୟପ୍ରତିଭାର ପାରଦର୍ଶିପୂର୍ଣ୍ଣ ସନ୍ଧାନ ମିଳିଥାଏ । କବିଙ୍କ କ୍ଳାସିକ୍ କାବ୍ୟ

ଭାବରେ 'ବୈଦେହିଶ ବିଳାସ'କୁ ଗ୍ରହଣ କରାଯାଇ ଥାଏ । କିନ୍ତୁ କବି ଅନେକ କାଳ୍ପନିକ କାବ୍ୟମାନଙ୍କରେ ଶବ୍ଦ ଓ ଅର୍ଥଗୌରବ ହିହ ସୌନ୍ଦର୍ଯ୍ୟବୋଧର ସ୍ୱର୍ଗ ଆଙ୍କିବାରେ ସମର୍ଥ ହୋଇଛନ୍ତି । କବି ଉପେନ୍ଦ୍ର 'ଲାବଣ୍ୟବତୀ', 'ଛାନ୍ଦଭୂଷଣ', କଳା-କଉତୁକ', 'ସୁଭଦ୍ରା ପରିଣୟ', 'ଅବନାର ତରଙ୍ଗ', 'ରାମଲୀଳାମୃତ', 'ପ୍ରେମ-ସୁଧାନିଧି', 'ରସିକହାରାବଳୀ', 'ସୁବର୍ଣ୍ଣରେଖା', 'ରସପଞ୍ଚକ', 'ଗୀତାଭିଧାନ', 'କଳାବତୀ', 'ଚିତ୍ରକାବ୍ୟ ବନ୍ଧୋଦୟ', 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ରସଲେଖା' ଆଦି କାବ୍ୟ ରଚନା କରିଛନ୍ତି । କବି ଉପେନ୍ଦ୍ର ରୀତି ଯୁଗର ଶ୍ରେଷ୍ଠ କବି ଭାବରେ ତାଙ୍କ କାବ୍ୟ ବିଭବ ପାଇଁ ମର୍ଯ୍ୟାଦା ପାଇଛନ୍ତି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରୀତି ଯୁଗର ଅନ୍ୟତମ ପ୍ରତିଭା । କବି କଳ୍ପନା ଓ ପ୍ରେମକୁ ପାଥେୟ କରି ଅନେକ କାବ୍ୟ ସୃଷ୍ଟି କରିଛନ୍ତି । 'ଲଳିତ ଲୋଚନା' 'ମୋହନ କଳ୍ପଲତା' 'ଯୁଗଳ ରସାମୃତଲହରୀ' 'ପ୍ରେମ କଳ୍ପଲତା' 'ପ୍ରେମ-ତରଙ୍ଗିଣୀ' 'ନିଷ୍ଠା ନୀଳମଣି' 'ଗୌର ଚନ୍ଦ୍ରମଣି' ଆଦି କାବ୍ୟ କବିଙ୍କ ଉଲ୍ଲେଖନୀୟ ସୃଷ୍ଟି ସାଫଲ୍ୟର ପରିଚୟ ବହନ କରେ । ଲୋକନାଥ ବିଦ୍ୟାଧର 'ଚିତ୍ରକଳା' 'ପଦ୍ମାବତୀ ପରିଣୟ' 'ସର୍ବାଙ୍ଗ ସୁନ୍ଦରୀ' 'ରସକଳା' 'ବୃନ୍ଦାବନ ବିହାରୀ' 'ନୀଳାଦ୍ରି ମହୋତ୍ସବ' 'ଚିତ୍ତୋତ୍ପଳା' ଆଦି କାବ୍ୟ ରଚନା କରିଛନ୍ତି । ରୀତି ଯୁଗର ଅନ୍ୟତମ କବି ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ' କବି ରଘୁନାଥ ଭଞ୍ଜଙ୍କ 'ରସ ଲହରୀ' କବି ବୃନ୍ଦାବନ ଦାସଙ୍କ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' କବି ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' କାବ୍ୟ ଏ ସମୟର ଉଲ୍ଲେଖନୀୟ ସୃଷ୍ଟି । କବି ଭକ୍ତଚରଣ ଦାସଙ୍କ କାବ୍ୟ ପ୍ରତିଭା କେତୋଟି ସାର୍ଥକ କାବ୍ୟକୁ ଜନ୍ମ ଦେଇଛି । କବିଙ୍କ 'ମନବୋଧ ଚଉତିଶା' 'ମଥୁରାମଙ୍ଗଳ' 'ଗୋପମଙ୍ଗଳ' 'ମନଶିକ୍ଷା' ଓ 'କଳାକଳେବର ଚଉତିଶା' ଗୋଟିଏ ଗୋଟିଏ ଅନନ୍ୟ ସୃଷ୍ଟି ।

ରୀତି ଯୁଗର କାବ୍ୟ ଆଲୋଚନା ପରିପ୍ରେକ୍ଷୀରେ କବି ଅଭିମନ୍ୟୁ ସାମନ୍ତ ସିଂହାର ଜଣେ ଯଶସ୍ୱୀ ସ୍ରଷ୍ଟା ଆସନର ଅଧିକାରୀ । କବି ରାଧାକୃଷ୍ଣ କାହାଣୀକୁ ନେଇ ରୀତି ଯୁଗୀୟ କଳା କାବ୍ୟର କ୍ଲାଇମାକ୍ସ 'ବିଦଗ୍ଧ ଚିନ୍ତାମଣି' ରଚନା କରିଛନ୍ତି । ଏତଦ୍ ବ୍ୟତୀତ କବି 'ପ୍ରେମ ଚିନ୍ତାମଣି' 'ରସବତୀ' 'ପ୍ରେମକଳା' 'ସୁଲକ୍ଷଣା' ଆଦି କାବ୍ୟ ରଚନା କରିଛନ୍ତି । କବି ଦୀନକୃଷ୍ଣ ଦାସ 'ରସକଲ୍ଲୋଳ' କାବ୍ୟରେ ରାଧାକୃଷ୍ଣ ମହିମା ଓ କୁଞ୍ଜଲୀଳା ବର୍ଣ୍ଣନା କରିଛନ୍ତି । 'ଆର୍ତ୍ତତ୍ରାଣ ଚଉତିଶା' ଓ 'ରସବିନୋଦ' କବିଙ୍କ ଅନ୍ୟ ଦୁଇଟି ଉଲ୍ଲେଖନୀୟ ସୃଷ୍ଟି ।

ଯଦୁମଣି ମହାପାତ୍ର 'ରାଘବ ବିଳାସ' ଓ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' କାବ୍ୟ ରଚନା କରି ନିଜ କବି ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । କବିସୂର୍ଯ୍ୟ ବଳଦେବ ରଥଙ୍କ

'ହାସ୍ୟ କଲ୍ଲୋଳ' 'କଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଦୁଇଟି ଉପଯୋଗୀ କାବ୍ୟ ସୃଷ୍ଟି । ବ୍ରଜନାଥ ବଡ଼ଜେନାଙ୍କ 'ସମର ତରଙ୍ଗ' ମଧ୍ୟ ଏକ ଉଚ୍ଚକୋଟୀର କାବ୍ୟ ଭାବରେ ସ୍ୱୀକୃତ ହୋଇଛି । ରୀତ ଯୁଗର ବସ୍ତୃତ ସୀମା (୧୫୦୦-୧୮୫୦) ମଧ୍ୟରେ ଅନେକ କବ ଆତ୍ମପ୍ରକାଶ କର ସୁନ୍ଦର କାବ୍ୟ, କବତା, ଚଉପଦୀ, ଚଉତଶା, ଚମ୍ପୂ, ଲ୍ଲଳକାମାନ ରଚନା କର ଓଡ଼ିଆ କାବ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

ରୀତ ଯୁଗର ଶେଷ ସୋପାନରେ ପଦାବଳୀ ମାଧ୍ୟମରେ କବତା ରଚନାର ଏକ ଅଭିନବ ଶୈଳୀ ଉନ୍ମୋଚିତ ହୋଇଥିଲା । ସୁନ୍ଦର ସରସ ତରଳ ପଦାବଳୀ ମାଧ୍ୟମରେ ରାଧାକୃଷ୍ଣ ଓ ଭଗବାନଙ୍କର ଗୁଣଗାନ କର ଶରଣ ଯିବା ଏହି ପଦାବଳୀର ପ୍ରମୁଖ ଉଦ୍ଦେଶ୍ୟ ଥିଲା । କବ ଗୋପାଳକୃଷ୍ଣ, ବନମାଳୀ ଆଦ ଏକାଧିକ ପଦାବଳୀ ରଚନା କର ରୀତ ଯୁଗର ଶେଷ କାବ୍ୟ ଶିଖାକୁ ଆହୁରି ପ୍ରଜ୍ୱଳିତ କରିଛନ୍ତି ।

ରୀତ ଯୁଗ କାବ୍ୟ କବତାର ଯୁଗ । ଏ ଯୁଗରେ ଓଡ଼ିଆ ଭାଷାରେ କାବ୍ୟ ରଚନା କରିବାର ସୁବର୍ଣ୍ଣ ସମୟ ଆସିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଓଡ଼ିଆ ଭାଷାକୁ ସଙ୍ଗୀତମୟ ରୂପ ଦେଇ ଏ ଯୁଗର ଅନେକ କବିମାନେ ନଜ କାବ୍ୟ କବତାରେ ପାରଙ୍ଗମତା ପ୍ରଦର୍ଶନ କରିବାକୁ ଯାଇ ସୁନ୍ଦର ଓ ସୁଦୃଶ୍ୟ କାବ୍ୟ ସୃଷ୍ଟି କରିଛନ୍ତି । ରୀତ ଯୁଗ କଳାର ଯୁଗ ? ଓଡ଼ିଆ କାବ୍ୟ କବତାକୁ ସମୃଦ୍ଧ କରିବାରେ ଏ ଯୁଗର ଅବଦାନ ଅବିସ୍ମରଣୀୟ ।

## କବତାର ଆଧୁନକ ଯୁଗ : କବି ଓ କାବ୍ୟ—

ଓଡ଼ିଆ ଆଧୁନକ କବତା ରଚନାର ପ୍ରକ୍ରିୟାକୁ ୧୮୦୩ ମସିହାରେ ଇଂରେଜମାନଙ୍କ ଓଡ଼ିଶା ଆଗମନ ସହ ଗ୍ରହଣ କରିହେବ । ଇଂରେଜମାନେ ଓଡ଼ିଶା ଆସି ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନରେ ଯେଉଁ ବ୍ୟାପକ ପରିବର୍ତ୍ତନ ଆଣିଲେ ତା'ର ଫଳଶ୍ରୁତି ସ୍ୱରୂପ କବତାରେ ଆଧୁନକ ଯୁଗର ସୂତ୍ରପାତ ହେଲା । ଇଂରେଜ କର୍ତ୍ତୃତ୍ୱାଧୀନ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ୧୮୨୨ ମସିହାରୁ ମିଶନାରୀମାନଙ୍କ ଆଗମନ ଏ ଜାତୀୟ ଜୀବନରେ ନୂତନ ସାଂସ୍କୃତିକ ପ୍ରାଣଚେତନା ସୃଷ୍ଟି କରିଥିଲା । ଖ୍ରୀଷ୍ଟିୟାନ ପାଦ୍ରୀମାନେ ଓଡ଼ିଶାର ଗାଁମାନଙ୍କୁ ଯାଇ ପରମ୍ପରା କ୍ରମେ ମଣିଷ ଭିତରେ ବସା ବାନ୍ଧିଥିବା ଅନ୍ଧବିଶ୍ୱାସ ଓ ବିଶ୍ୱାସ ବୋଧକୁ ବଦଳାଇବା ପାଇଁ ବିଧିବଦ୍ଧ ପ୍ରୟାସ ଆରମ୍ଭ କଲେ । ଓଡ଼ିଶାରେ ଶିକ୍ଷା ପ୍ରସାର ପାଇଁ ମଧ୍ୟ ଏମାନେ ଉଦ୍ୟମ ଆରମ୍ଭ କଲେ । ୧୮୩୫ ମସିହାରେ ମାକେଲଙ୍କ ଶିକ୍ଷାନୀତି ପ୍ରଣୟନ ଦ୍ୱାରା ଓଡ଼ିଶାରେ 'କେତୋଟି ହାତଗଣତି ସ୍କୁଲ୍ ସ୍ଥାପନ ହେଲା । ୧୮୬୯ ମସିହାର ରେଭେନ୍ସା ମହାବିଦ୍ୟାଳୟ ଓଡ଼ିଶାର ଶିକ୍ଷା ବ୍ୟବସ୍ଥାରେ ନବଜାଗରଣ

ଆଣିଦେଲା । ଓଡ଼ିଶାର ଏ ସମସ୍ୟାକୁ ଆତ୍ମଜାଗୃତିର ସମସ୍ୟା ରୂପେ ଗ୍ରହଣ କରିହେବ, ଉତ୍କଳ ଦୀପିକାର ପ୍ରକାଶନ ପରେ ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷକୁ ମୁକାବିଲା କରାଯାଇ ପାରିଲା । ପତ୍ର ପତ୍ରିକା ଓ ସଂସ୍କୃତି ଯନ୍ତ୍ରର ଉନ୍ନତ ସହ ପରିବହନ ଓ ଯୋଗାଯୋଗ ବ୍ୟବସ୍ଥାର ଉନ୍ନତି ମଣିଷକୁ ଆନ୍ତରିକ ପ୍ରଗତିଶୀଳ ଓ ଯତ୍ନବାନ କରି ଗଢ଼ି ଉଠିଲା । ଆଧୁନିକ ଶିକ୍ଷା ତାଲିମ୍‌ପ୍ରାପ୍ତ ଦଳେ ଯୁବକଙ୍କୁ ପ୍ରଥମ କରି ଓଡ଼ିଆ ଜାତି ପାଇଲା । ଓଡ଼ିଶାରେ ଆଧୁନିକତାର ପାଣିପାଗ ଆଲୋଚନା ଅବସରରେ 'ଭାଷା ବିଲୋପ ଆନ୍ଦୋଳନ' ସମ୍ପର୍କରେ ଆଲୋଚନା କରିବା ଆବଶ୍ୟକ ହୁଏ । ବଙ୍ଗୀୟ ଆଲୋଚକ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଯୁକ୍ତିକଲେ ଓଡ଼ିଆ ଏକ୍ଟା ସ୍ୱତନ୍ତ୍ର ଭାଷା ନୁହେଁ, ଓଡ଼ିଶାରେ ଓଡ଼ିଆ ଭାଷାକୁ ଲୋପକରି ବଙ୍ଗାଳୀ ଭାଷାକୁ ନଦଦେବା ପାଇଁ ଯେଉଁ ପ୍ରୟାସ ଆରମ୍ଭ ହୋଇଥିଲା, ଏହି ଆନ୍ଦୋଳନ ବିପକ୍ଷରେ ଓଡ଼ିଶାର ବରପୁତ୍ରମାନେ ସଂଗ୍ରାମ କରି ଓଡ଼ିଆ ଭାଷାର ମହତ୍ତ୍ୱ ପ୍ରତିଷ୍ଠା ପାଇଁ ଉଦ୍ୟମ ଆରମ୍ଭ କଲେ । ଏହି ଉଦ୍ୟମର ପ୍ରାଥମିକ ଫଳସ୍ୱରୂପ ସ୍କୁଲ ଶିକ୍ଷାମାନଙ୍କରେ ଓଡ଼ିଆ ଭାଷାରେ ପୁସ୍ତକ ପ୍ରଚଳନ କରିବା ପାଇଁ ଓ ରଚନା କରିବା ପାଇଁ ପ୍ରୟାସ ଆରମ୍ଭ ହେଲା । ଫକୀର ମୋହନ ସେନାପତି, ମଧୁସୂଦନ ରାଓ ପ୍ରମୁଖ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ରଚନା କଲେ । ଅନ୍ୟ ପକ୍ଷରେ ଉତ୍କଳ ସାହିତ୍ୟ, ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳ ପୁତ୍ର, ନବସମ୍ବାଦ, କୃଷକ, ବକୁଳ, ଇନ୍ଦ୍ରଧନୁ, ଉତ୍କଳପ୍ରଭା ଆଦି ପତ୍ରିକା ପ୍ରକାଶ ପାଇବା ଫଳରେ ଆଧୁନିକ ସାହିତ୍ୟ ଚର୍ଚ୍ଚାର ନୂତନ ଯୁଗ ଆରମ୍ଭ ହେଲା । ୧୮୮୦ ମସିହାର ଓଡ଼ିଆ ସମାଜ ରାଧାକୃଷ୍ଣ, ରାମ ସୀତାଙ୍କ ଶୃଙ୍ଗାର ରସକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନ ଥିଲା । କବିତାରେ ମାନବୀୟ ଆବେଦନ ପ୍ରକାଶ କରି ସେଥିରେ ଜ୍ଞାନ ଓ କଳାର ପ୍ରୟୋଗ କରିବା ପାଇଁ କବିମାନେ ପ୍ରୟାସ କଲେ । ଏହି ମର୍ମରେ ଆଧୁନିକ କାବ୍ୟ ରଚନା କରିବାର ସମୟ ଓ ପାଣିପାଗ ଓଡ଼ିଶା ମାଟିରେ ପ୍ରସ୍ତୁତ ହେଲା ।

ଆଧୁନିକ କାବ୍ୟଯୁଗ ଆରମ୍ଭରେ ମାନବୀୟ ଆବେଦନର ଆର୍ତ୍ତି ଶୁଣିବାକୁ ମିଳେ । ଗତ ଯୁଗର ଈଶ୍ୱରଙ୍କଠାରୁ ମୋକ୍ଷ ଛଡ଼ାଇ ଦରଦୀ କବି ନିଜକୁ ଜାତି ପାଇଁ ଉତ୍ସର୍ଗ କରିବାର ସାହସପଣ ପ୍ରକାଶ କରିଛି । ଏହିପରି ଏକ ବୃହତ୍ ଚେତନାର ରୂପକାର ହେଉଛନ୍ତି କବି ଭୀମଭୋଇ, କବି 'ସ୍ତୁତି ଚିନ୍ତାମଣି' 'ଶ୍ରୁତିନିଷେଧ ଗୀତା' 'ନିର୍ବେଦ ସାଧନ' 'ଆଦିଅନ୍ତ ଗୀତା' 'ଅଷ୍ଟକବିହାରୀ ଗୀତା' 'ବ୍ରହ୍ମନିରୂପଣ ଗୀତା' ଆଦି ରଚନା କରିଛନ୍ତି । ଭୀମ ଭୋଇଙ୍କ ସୃଷ୍ଟି ଭିତରେ ମାନବୀୟ ଆବେଦନ ପରିଦୃଷ୍ଟ ହୋଇଥାଏ ।

ଆଧୁନିକ ଯୁଗର ନିର୍ମାତା ଭାବରେ କବି ରାଧାନାଥ ରାୟଙ୍କ ବିପୁଳ କାବ୍ୟ ସୃଷ୍ଟି ଏ ଯୁଗକୁ ହୃଷ୍ଟପୁଷ୍ଟ ଭାବରେ ଗଢ଼ି ତୋଳିଛି । କବି 'ନନ୍ଦିକେଶରୀ' 'ଉଷା'

'କେଦାର ଗୌରୀ' 'ଚନ୍ଦ୍ରଭାଗା' 'ପାର୍ବତୀ' ଆଦି ପଞ୍ଚ ମହାକାବ୍ୟ ରଚନା କରି-ଛନ୍ତି । ଏହାଛଡ଼ା 'ଉର୍ବଶୀ' 'ଯଯାତିକେଶରୀ' 'ଚିଲିକା' 'ଦରବାର' 'ମହାଯାତ୍ରା' କବିଙ୍କର ଉଲ୍ଲେଖନୀୟ ସୃଷ୍ଟି । କବିଙ୍କ ପଞ୍ଚ ମହାକାବ୍ୟର ବିଷୟ ପ୍ରକରଣ ପାଶ୍ଚାତ୍ୟ କାବ୍ୟ ଅବଲମ୍ବନରେ ହୋଇଥିଲେହେଁ ଏଥିରେ କବି ଓଡ଼ିଶାର ପାରିପାର୍ଶ୍ୱ ଓ ଭୂଗୋଳକୁ ଆରୋପ କରିଛନ୍ତି । 'ମହାଯାତ୍ରା' କବି ସୃଷ୍ଟିର କ୍ଲାସିକ ଭାବରେ ଗଣ୍ୟ ହୋଇଛି । ଦରବାର କାବ୍ୟରେ କବି ବ୍ୟଙ୍ଗ ବିଦ୍ରୁପ ମାଧ୍ୟମରେ ତତ୍କାଳୀନ ଓଡ଼ିଶାର ରାଜକୀୟ ଓ ସାମାଜିକ ପାରିପାର୍ଶ୍ୱର ବର୍ଣ୍ଣନା ପ୍ରଦାନ କରିଛନ୍ତି । କବି ରାଧାନାଥଙ୍କ ସଫଳ ଉଦ୍ୟମ ଯୋଗୁ ରୀତି ଯୁଗୀୟ କାବ୍ୟ ଚର୍ଚ୍ଚାର ଅବସାନ ହୋଇ ନୂତନ କାବ୍ୟ ସୃଷ୍ଟି ହୋଇଛି । ଏହି ବିପୁଳ ସମ୍ଭାବନା ଦୃଷ୍ଟିରୁ କବି ରାଧାନାଥଙ୍କୁ ଯୁଗସ୍ରଷ୍ଟାର ସମ୍ମାନରେ ଭୂଷିତ କରାଯାଇ ଥାଏ ।

କବି ଫକୀର ମୋହନ ସେନାପତି କବି ଭାବରେ କେତୋଟି କାବ୍ୟ ରଚନା କରିଛନ୍ତି । କବି ରାମାୟଣ ଓ ମହାଭାରତର ଅନୁବାଦ କରିଛନ୍ତି । 'ଉତ୍କଳ ଭ୍ରମଣ' ଓ 'ବୌଦ୍ଧାବତାର' କାବ୍ୟ ଦୁଇଟି ତାଙ୍କ କାବ୍ୟ ଚେତନାର ପରିଚୟ ବହନ କରିଥାଏ । ଏତଦ୍ ବ୍ୟତୀତ କବି ଅନେକ ଗୀତିଧର୍ମୀ କବିତା ରଚନା କରିଛନ୍ତି । ବ୍ରହ୍ମବାଦୀ କବି ମଧୁସୂଦନ ରାଓ 'କୁସୁମାଞ୍ଜଳି' 'ଛନ୍ଦମାଳା' 'ସଙ୍ଗୀତମାଳା' 'ବସନ୍ତଗାଥା' ଆଦି ରଚନା କରିଛନ୍ତି । କବି ନନ୍ଦକିଶୋର ବଳ 'ଶର୍ମିଷ୍ଠା' 'ସୀତାବନବାସ' 'କୃଷ୍ଣକୁମାରୀ' 'ନିର୍ଝରିଣୀ' 'ବସନ୍ତକୋକିଳ' 'ନାନାବାୟା ଗୀତ' ଆଦି କାବ୍ୟମାନ ରଚନା କରି ନିଜକୁ ପଲ୍ଲୀକବି ଭାବରେ ପ୍ରତିଷ୍ଠିତ କରି ଯାଇଛନ୍ତି ।

କବି ଗଙ୍ଗାଧର ମେହେର ଆଧୁନିକ ଯୁଗରେ ଅନ୍ୟତମ ସଫଳ କାବ୍ୟ-ସ୍ରଷ୍ଟା । ପ୍ରାଚୀ କାବ୍ୟରୁ କାହାଣୀ ସଂଗ୍ରହ କରି ଆଦର୍ଶ କାବ୍ୟ ରଚନା କରିବାରେ କବି ଗଙ୍ଗାଧରଙ୍କ କାବ୍ୟ ପ୍ରତିଭା ଅନନ୍ୟ । କବି 'ତପସ୍ୱିନୀ' 'ରସରତ୍ନାକର' 'କୀଚକବଧ' 'ଅଯୋଧ୍ୟା ଦୃଶ୍ୟ' 'ଇନ୍ଦୁମତୀ' ପ୍ରଣୟବଲ୍ଲରୀ' 'କବିତାମାଳା' 'ଅର୍ଘ୍ୟ-ଥାଳି' 'କବିତାକଲ୍ଲୋଳ' ଆଦି ରଚନା କରିଛନ୍ତି । କବି ତାଙ୍କ କାବ୍ୟ ଭିତରେ ସର୍ବଦା ଏକ ଆଦର୍ଶର ପ୍ରତିଷ୍ଠା କରିବାକୁ ଯାଇ ଚରିତ୍ରମାନଙ୍କୁ ତିଆରି କରିଛନ୍ତି । ପ୍ରକୃତି ଚିତ୍ରଣରେ କବିଙ୍କ କବି ପ୍ରତିଭାର ବାସ୍ତବିକ୍ ପରିଚୟ ମିଳିଥାଏ । କବି ଗଙ୍ଗାଧର ଆଧୁନିକ କାବ୍ୟ ଯୁଗରେ ଜଣେ ପ୍ରତିଭାସମ୍ପନ୍ନ ଶକ୍ତିଶାଳୀ କବି ଭାବରେ ଆତ୍ମପ୍ରକାଶ କରିଛନ୍ତି ।

ଆଧୁନିକ ଯୁଗରେ କବି ଚନ୍ଦ୍ରମଣି ମହାନ୍ତି ଅନେକ କାବ୍ୟ ରଚନା କରି ନିଜକୁ ପ୍ରତିଷ୍ଠିତ କରି ଯାଇଛନ୍ତି । କବିଙ୍କ 'ପ୍ରଣୟ ଚିଠାଉ' 'ମେଘାସନ' 'ସାଳନ୍ଦୀ'

'ବିଜୟମାଦିତ୍ୟ' 'ଶିଶୁପାଳ ବଧ' 'ମହୋଦଧି' 'ଘୁମୁସର କାବ୍ୟ' ଆଦି ତାଙ୍କ ପ୍ରତିଭାର ପରିଚୟ ବହନ କରିଥାଏ । କବି ବାସୁଦେବ ସୁଡ଼ଳଦେବ 'ଚନ୍ଦ୍ରୋତ୍ପଳା' 'ବାରବାମା' ନାମକ ଦୁଇଖଣ୍ଡ କାବ୍ୟ ରଚନା କରି ନିଜ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ରାଧାନାଥ ଯୁଗରେ ଅନେକ କବି କବିତା ରଚନା କରିଛନ୍ତି । ଏ ସମୟର କାବ୍ୟ କବିତାରେ ରୀତି ଯୁଗର ଆଭି ସମ୍ପୂର୍ଣ୍ଣ ମଳିନ ନୁହେଁ । କେତେକ କବି ନିଜ କାବ୍ୟରେ ଯମକ, ଅନୁପ୍ରାସ ଆଦି ଅଳଙ୍କାରର ବହୁଳ ବ୍ୟବହାର କରିଛନ୍ତି । ରାଧାନାଥ ତାଙ୍କ କବିତାରେ ଅମିତ୍ରାକ୍ଷର ଛନ୍ଦର ବ୍ୟବହାର କରିଛନ୍ତି । ରୀତି ଯୁଗ ଓ ଆଧୁନିକ ଯୁଗର ସଂଯୋଗ ସେତୁ ରୂପେ କବି ଗଙ୍ଗାଧର କାବ୍ୟ ସୃଷ୍ଟି କରିଛନ୍ତି । ବିବିଧ ଦୃଷ୍ଟିକୋଣରୁ ରାଧାନାଥ ଯୁଗରେ ଅନେକ କାବ୍ୟ କବିତା ସୃଷ୍ଟି ହୋଇ ଓଡ଼ିଆ ବାଣୀ ଭଣ୍ଡାରକୁ ପରିପୁଷ୍ଟ କରିଛି ।

ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗ ଗୋଟିଏ ନୂତନ ସମ୍ଭାବନାର ସୃଷ୍ଟି । ୧୮୦୩ ମସିହାରୁ ଇଂରେଜମାନେ ଓଡ଼ିଶା ଆସିବା ପରେ ପ୍ରଥମ କୋଡ଼ିଏ ବର୍ଷର ଅପଶାସନ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ କରି ୧୮୧୭ ମସିହାରେ ପାଇକ ବିଦ୍ରୋହ ମାଧ୍ୟମରେ ଓଡ଼ିଆ ଜାତି ଇଂରେଜ ସରକାରକୁ ସଚେତନ କରାଇ ଦେଇଥିଲା । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ସମସ୍ୟା, ଭାଷା ସମସ୍ୟା ଏତେ ଉତ୍କଟ ରୂପ ଧାରଣ କଲା ଯେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାପାଇଁ ଆମର ନିଜସ୍ୱ କିଛି ରହିଲା ନାହିଁ । ଏହିପରି ଏକ ପ୍ରତିକ୍ରିୟାରୁ ସତ୍ୟବାଦୀ ଯୁଗ (୧୯୦୦-୧୯୨୫)ର ଉତ୍ପତ୍ତି କହିଲେ ଭୁଲ୍ ହେବନାହିଁ । ମଧୁସୂଦନ ଦାସଙ୍କ ନେତୃତ୍ୱରେ ଗଞ୍ଜାମ ଜିଲାରେ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ'ର ଅଧିବେଶନ ଡକାଗଲା । ଏଥିରେ ସବୁ ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଆହ୍ୱାନ ଦିଆଗଲା । ଏହିପରି ଏକ ଫଳପ୍ରଦ ଆହ୍ୱାନ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଭାବରେ ସୃଷ୍ଟି ହେଲା । ସତ୍ୟବାଦୀ ଯୁଗରେ ସାଧକମାନଙ୍କର ସାହିତ୍ୟ ରଚନା କରିବା ଅଭିମୁଖ୍ୟ ନୁହେଁ ବରଂ ନିଜର କର୍ମବାଦ ଓ ପ୍ରେରଣାକୁ ସାଧାରଣ ଜନତା ପାଖରେ ପହଞ୍ଚାଇବାପାଇଁ ସାହିତ୍ୟକୁ ଏକ ମାଧ୍ୟମ ଭାବରେ ବ୍ୟବହାର କରିଛନ୍ତି । ସତ୍ୟବାଦୀ ସାହିତ୍ୟ ଦୁଇଟି ଆଭିମୁଖ୍ୟକୁ ନେଇ ସୃଷ୍ଟି ହୋଇଛି ।

ପ୍ରଥମତଃ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନ ସମସ୍ୟା ଏବଂ ଗଡ଼ଜାତ ସମସ୍ୟା । ଦ୍ୱିତୀୟତଃ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଯୋଗଦାନ ପାଇଁ ପ୍ରେରଣା, ଏହି ଦୁଇଟି ଆଭିମୁଖ୍ୟକୁ ଆଖିରେ ରଖି ଏ ଯୁଗର କବି କାବ୍ୟ ସୃଷ୍ଟି କରିଛି । ସତ୍ୟବାଦୀ ସାହିତ୍ୟ ଜାତୀୟ ଚେତନା ଓ ଦେଶାତ୍ମବୋଧର ସାହିତ୍ୟ ରୂପେ ସମସ୍ତଙ୍କୁ ଆକୃଷ୍ଟ କରି ପାରିଛି ।

ସତ୍ୟବାଦୀର କର୍ଣ୍ଣଧାର ଭାବରେ ପରିଚିତ କବି ଗୋପବନ୍ଧୁ ଦାଶ ଅନେକ ଦେଶାତ୍ମବୋଧକ କାବ୍ୟ ରଚନା କରି ନିଜ କାବ୍ୟ ପ୍ରତିଭାର ପରିଚୟ ପ୍ରଦାନ କରି-ଛନ୍ତି । ଗୋପବନ୍ଧୁଙ୍କ ଜୀବନ ସେବା ଓ ତ୍ୟାଗର ଜୀବନ । ତାଙ୍କ କବିତାରେ ଜୀବନ ସମର୍ପଣର ସେହି ଭାବଟି ଦେଖିବାକୁ ମିଳିଥାଏ । 'ବନ୍ଦୀର ଆତ୍ମକଥା' 'ଧର୍ମପଦ' 'କାରା କବିତା' 'ଗୋ-ମହାତ୍ମ୍ୟ' 'ଅବକାଶ ଚିନ୍ତା' 'ନଚିକେତା' ଆଦି କାବ୍ୟମାନ ରଚନା କରି କବି ଅଗଣିତ ଉତ୍କଳୀୟ ପ୍ରାଣରେ ଜାତି ପ୍ରେମ ଜାଗ୍ରତ କରିଛନ୍ତି । କବି ମଧୁସୂଦନ ଦାସ ମାତ୍ର କେତୋଟି ହାତଗଣତି କବିତା ରଚନା କରିଥିଲେ ମଧ୍ୟ ଦେଶ ପ୍ରେମର ବାର୍ତ୍ତା ପ୍ରଚାର କରି ତାଙ୍କ କବିତାକୁ ଆଜିଯାଏ ଅବିସ୍ମରଣୀୟ କରି ପାରିଛନ୍ତି । କବିଙ୍କ 'ଉତ୍କଳ ସନ୍ତାନ' ଆଦି କେତୋଟି ସାବକ କବିତା । ସଂସ୍କୃତି ସଚେତନ କାବ୍ୟ ରଚନା କରି ନୀଳକଣ୍ଠ ଦାସ ଉତ୍କଳର ଅତୀତ ସଂସ୍କୃତିକୁ ପୁନଃଉଜ୍ଜୀବିତ କରିଛନ୍ତି । କବିଙ୍କର 'କୋଣାର୍କେ' 'ଖାରବେଳ' ନାମକ ଦୁଇଟି ପ୍ରସିଦ୍ଧ କାବ୍ୟ ତାଙ୍କୁ ପ୍ରତିଷ୍ଠା ଦେଇଛି । ଗୋଦାବରୀଶ ମିଶ୍ର ସେ ସମୟରେ 'କଳିକା' 'କିଶଳୟ' 'ଚୟନିକା' 'ଅଲେଖିକା' 'କୁସୁମ' 'କବିତା ଚୟନ' ଆଦି କାବ୍ୟ ରଚନା କରିଛନ୍ତି । ଓଡ଼ିଶାର ସାଧାରଣ ଜନତାଙ୍କୁ ସ୍ପର୍ଶ କରିଭଳି ଗୀତିମୟ କାବ୍ୟ ରଚନା କରି କବି ଅଗଣିତ ଉତ୍କଳୀୟଙ୍କ ମନ ଜୟ କରି ପାରିଛନ୍ତି । କୁନ୍ତଳା କୁମାରୀ ସାବତ୍ 'ଅଞ୍ଜଳି' 'ଉଚ୍ଛ୍ୱାସ' 'ଅର୍ଚ୍ଚନା' 'ପ୍ରେମ ଚିନ୍ତାମଣି' 'ମଣି କାଞ୍ଚନ' 'ଓଡ଼ିଆଙ୍କ କାନ୍ଦଣା' ଆଦି କାବ୍ୟ କବିତା ରଚନା କରିଛନ୍ତି । ସତ୍ୟବାଦୀ ଯୁଗରେ ଗୋଦାବରୀଶ ମହାପାତ୍ର, ଲକ୍ଷ୍ମୀକାନ୍ତ ମହାପାତ୍ର, ବୀରକିଶୋର ଦାସ ଆଦି କବିମାନେ ଅନେକ କାବ୍ୟ କବିତା ରଚନା କରିଛନ୍ତି ।

ସବୁଜ ଯୁଗ (୧୯୨୫-୩୫) କେତୋଟି ତରୁଣମାନଙ୍କର ସ୍ୱପ୍ନାବିଷ୍ଟ ଅନୁଷ୍ଠାନ ଭାବରେ ଆତ୍ମପ୍ରକାଶ କରି କେତୋଟି ରୋମାଣ୍ଟିକ କବିତା ମାଧ୍ୟମରେ ନିଜର ଉପସ୍ଥିତି ଜାହିର କରିଛି । ପ୍ରଥମ ବିଶ୍ୱ ସମରର ଧ୍ୱଂସଗ୍ରସ୍ତ ପୃଥିବୀ, ୧୯୧୭ ମସିହାର ସୋଭିଏତ୍ ରୁଷର ବଲସେଭିକ୍ ବିପ୍ଳବ, ୧୯୧୯ ମସିହାର ଜାଲିଆନାୱାଲବାଗ୍ ହତ୍ୟାକାଣ୍ଡ, ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ, ୧୯୨୨ ମସିହାର T.S. Eliotଙ୍କ 'Waste Land' କାବ୍ୟ ଗ୍ରନ୍ଥର ପ୍ରକାଶନ ଏବଂ ସର୍ବୋପରି ଫ୍ରାନ୍ସରୁ ଲୁଇ ଆରଗାଁଙ୍କ ଘୋଷଣା 'The Red Train start no body can stop it' ଆମ ମାଟି ପାଣି ପବନକୁ ଯେ ପ୍ରଭାବିତ କରିନାହିଁ, ଏମିତ କହିହେବ ନାହିଁ । ଏପରି ଏକ ପୋଡ଼ା ପୃଥିବୀ ଉପରେ ନୂଆ କବିତା ରଚନା କରିବାପାଇଁ ସବୁଜ ଯୁଗର କବିମାନେ

ଇଚ୍ଛା ପୋଷଣ କରିନାହାନ୍ତି । ବଙ୍ଗଳା ସାହିତ୍ୟରେ କଲ୍ଲୋଲ ଯୁଗ ପରି ଓଡ଼ିଆ ସାହିତ୍ୟରେ ସବୁଜ ଯୁଗ ସୃଷ୍ଟି ହୋଇଛି । କଲ୍‌ଭେନ୍‌ସ କ୍ଲବରୁ ସବୁଜ ସାହିତ୍ୟ ସମିତି ଓ ତା'ର ଆନୁକୂଲ୍ୟରେ 'ଯୁଗବାଣୀ' ପତ୍ରିକା ପ୍ରକାଶ କରି ଏ ଯୁଗର କବିମାନେ ନିଜ ନିଜର କାବ୍ୟ ପରିଚୟ ଦେବାପାଇଁ ପ୍ରସ୍ତୁତ ହୋଇଛନ୍ତି । କବି କାଳନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକଙ୍କର କେତୋଟି କବିତାକୁ ନେଇ ଏ ଯୁଗର କାବ୍ୟ ଅଭିମୁଖ୍ୟ 'ସବୁଜ କବିତା' ସଙ୍କଳନରେ ପ୍ରକାଶ ପାଇଛି । କବି ବୈକୁଣ୍ଠନାଥ 'କାବ୍ୟ ସଞ୍ଚୟନ' ଓ 'ଉତ୍ତରାୟଣ' କାବ୍ୟ ରଚନା କରିଛନ୍ତି । ସବୁଜ ଯୁଗର କବିମାନଙ୍କ ଅଭିମୁଖ୍ୟ ପରବର୍ତ୍ତୀ ସମୟରେ ବଦଳି ଯାଇଥିବାରୁ ଏ ଯୁଗର କବିତା ଅଧିକ ସୃଷ୍ଟି ହୋଇ ପାରିନାହିଁ ।

ମାଟି ଆଉ ମଣିଷର ଦାବିକୁ ଉସ୍ତାହାର କରି ଓଡ଼ିଶାରେ ପ୍ରଗତିବାଦୀ ସାହିତ୍ୟ ଯୁଗର ଆରମ୍ଭ ହୋଇଛି । ୧୯୩୫ରୁ ୧୯୪୭ ମସିହା ପର୍ଯ୍ୟନ୍ତ ବାର ବର୍ଷର ସାହିତ୍ୟକୁ ପ୍ରଗତିବାଦ ନାମରେ ନାମିତ କରାଯାଇଛି । ପ୍ରଗତିବାଦୀମାନେ ମାର୍କସ୍‌ଙ୍କ ଶ୍ରମ ଓ ମଜୁରି ନିର୍ଦ୍ଧାରଣକୁ ଗ୍ରହଣ କରିଥାଆନ୍ତି । ମଣିଷ ନିଜର ଦକ୍ଷତା ଅନୁସାରେ କାମ କରିବ ଏବଂ ଆବଶ୍ୟକତା ଅନୁସାରେ ପାଇବା ଉପରେ ମାର୍କସ୍ ଦୃଢ଼ୋକ୍ତି ପ୍ରକାଶ କରିଥିଲେ । ବିଶ୍ୱରେ ଏହି ମାନବ ମୁକ୍ତିକୁ ପାଥେୟ କରି ଅନେକ ଆନ୍ଦୋଳନ ଓ ସାହିତ୍ୟିକ ରଚନାମାନ ସୃଷ୍ଟି ହୋଇ ଯାଇଛି । ୧୯୩୫ ମସିହାରେ ଭଗବତୀ ଚରଣ ପାଣିଗ୍ରାହୀ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା କଲେ । ୧୯୩୬ ମସିହାରେ ଏହି ସଂସଦର ମୁଖପତ୍ର 'ଆଧୁନିକ' ପତ୍ରିକା ଆତ୍ମପ୍ରକାଶ କଲା । ଏହି ପତ୍ରିକା ମାଧ୍ୟମରେ ନବ ଯୁଗର କବି ଓ କବିତାର ଦାୟିତ୍ୱବୋଧ ବିଷୟରେ ବ୍ୟାପକ ଆଲୋଚନା କରାଗଲା । ଯେଉଁ ଅଭିମୁଖ୍ୟକୁ ପ୍ରକାଶ କରି କବି ସଚ୍ଚିଦାନନ୍ଦ ରାଉତରାୟ 'ବାଜି ରାଉତ' କାବ୍ୟ ସଙ୍କଳନରେ କହିଥିଲେ—

"ଆରେ ଆରେ ପଳାୟନପନ୍ଥୀ
ପଳାଇବୁ କାହିଁ ଛିନ୍ନ କରି ଧରଣୀର ଗ୍ରନ୍ଥି
ମୃତ୍ତିକାର ଏତେ ଦାବି
ଆଜକି ତୁ ପାରିବୁ କଟାଇ
କାହିଁ ଭୀରୁ ନେବୁରେ ଆଶ୍ରୟ
ତୋର ସେହି କୁଞ୍ଜ ବନ ଦେଇ କି ସେ ପାରିବ ଅଭୟ ।"

ସବୁଜ ଯୁଗର ପଳାୟନପନ୍ଥୀ କବି ପ୍ରତି କ୍ଷୋଭ ଓ ପ୍ରତିକ୍ରିୟା ପ୍ରକାଶ କରି ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଯୁଗର ଆରମ୍ଭ ହେଲା । ମଣିଷର ଜୀବନ ସଂଗ୍ରାମ ଏ ସମୟରେ କବିତାର ମୂଳମନ୍ତ୍ର ଭାବରେ ପ୍ରକାଶ ପାଇଛି ।

ପ୍ରଗତିବାଦୀ କବିତା ରଚନା କରିବାରେ କେତେଜଣ ପ୍ରତିଭାବନ୍ତ ସ୍ରଷ୍ଟାଙ୍କର ପରିଚୟ ମିଳିଥାଏ । କବି ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଅଭିଯାନ' 'ବାଜି ରାଉତ' କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ଜୀବନର ସ୍ପର୍ଶ' 'ଯାଦୁଘର' 'ବାଜି ରାଉତ' 'ଛୁରୀଟିଏ ଲୋଡ଼ା' 'ଜୟ ଭଗବାନ' 'ଆଗାମୀ' କବି ଅନନ୍ତ ପଟ୍ଟନାୟକଙ୍କ 'ରକ୍ତଶିଖା' 'ଶାନ୍ତିଶିଖା' ଆଦି କବିତା ସଙ୍କଳନରେ ପ୍ରଗତିବାଦୀ କବିତାର ଆମ୍ନିକ ପଦଧ୍ୱନି ଅତି ସ୍ପଷ୍ଟ ଭାବରେ ପ୍ରକାଶିତ ହୋଇଛି । ପ୍ରଗତିବାଦୀ କବିତା ରଚନା କ୍ଷେତ୍ରରେ କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚକ୍ରଧର ରାଉତ, ଗୋଦାବରୀଶ ମହାପାତ୍ର, କୁଞ୍ଜବିହାରୀ ଦାଶ, ମନମୋହନ ମିଶ୍ର, ରଘୁନାଥ ଦାସ ପ୍ରମୁଖ କବିମାନେ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ।

ସବୁଜତ୍ତର ଯୁଗର ଏକକ କବି ଭାବରେ କବି ରାଧାମୋହନ ଗଡ଼ନାଏକଙ୍କ ଅବଦାନ ଓଡ଼ିଆ ବାଣୀଭଣ୍ଡାରକୁ ଅନନ୍ୟ । କବି ଗଡ଼ନାଏକ ଓଡ଼ିଶାର ପୁରାଣ ଓ ସଂସ୍କୃତିକୁ ଗୀତି କବିତା ମାଧ୍ୟମରେ ଉପସ୍ଥାପନ କରିଛନ୍ତି । ଆଧୁନିକ ପ୍ରୟୋଗ-ବାଦୀ କବିତାଠାରୁ ଯଥେଷ୍ଟ ଦୂରତା ରକ୍ଷାକରି କବି ପାରମ୍ପରିକ ଗୀତି କବିତା ରଚନା କରି ନିଜ ପ୍ରତିଭା ପରିଚୟ ଦେଇଛନ୍ତି । କବିଙ୍କ 'ଉତ୍କଳିକା' 'ସ୍ମରଣିକା' 'ପଶୁପକ୍ଷୀର କାବ୍ୟ' 'ଧୂସର ଭୂମିକା' 'ଶାମୁକାର ସ୍ୱପ୍ନ' 'ବନରାଜି ନୀଳା' ଆଦି କାବ୍ୟ ସଙ୍କଳନକୁ ତାଙ୍କ କାବ୍ୟିକ ସୃଜନର ପରିଚୟ ଭାବରେ ଗ୍ରହଣ କରାଯାଇ ଥାଏ । କବି ଗଡ଼ନାଏକ ଆଧୁନିକ ଯୁଗରେ ଗୀତି କବିତା ରଚନା କରୁଥିବା ଜଣେ ଶକ୍ତିଶାଳୀ କବି । ଗଡ଼ନାଏକଙ୍କ କବିତାରେ ଦେଶପ୍ରେମ ଓ ସାଂସ୍କୃତିକ ଚିନ୍ତା ଦେଖିବାକୁ ମିଳେ ।

କବି ମାୟାଧର ମାନସିଂହ ପ୍ରେମିକ କବି ଭାବରେ ଆତ୍ମପ୍ରକାଶ କରି ଓଡ଼ିଆ କାବ୍ୟ ଜଗତକୁ ସମୃଦ୍ଧ କରିଛନ୍ତି । ପ୍ରଣୟ ଉଚ୍ଛଳ ପ୍ରେମ କବିତାର ସ୍ରଷ୍ଟା ଭାବରେ ମାନସିଂ ସମସ୍ତଙ୍କ ନିକଟରେ ଖୁବ୍ ପରିଚୟ ସୃଷ୍ଟି କରିଛନ୍ତି । କବି 'ଧୂପ' 'ହେମଶସ୍ୟ' 'ହେମପୁଷ୍ପ' 'ସାଧବଝିଅ' 'ଜେମା' 'କମଳାୟନ' 'ଉପେକ୍ଷିତା' 'କିଙ୍କଣ' 'ଶୁଭଦୃଷ୍ଟି' ଆଦି କବିତା ଓ କାବ୍ୟ ରଚନା କରିଛନ୍ତି । ଶ୍ରୀଯୁକ୍ତ ମାନସିଂ ରୋମାଣ୍ଟିକ୍ କବିତା ରଚନା କରିବାରେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବରେ ନିଜକୁ

ସାବ୍ୟସ୍ତ କରିଛନ୍ତି । କୁଞ୍ଜବିହାରୀ ଦାଶ 'ଛିନ୍ନବିସ୍ତା' 'ପ୍ରଭାତୀ' 'ଶାରଣ୍ଣୀ' 'କଙ୍କାଳର ଲୁହ' 'ମାଟି ଓ ଲାଠି' ଆଦି କାବ୍ୟ ରଚନା କରିଛନ୍ତି । ରାମକୃଷ୍ଣ ନନ୍ଦ ଜଣେ ଶିଶୁ ସାହିତ୍ୟିକ ଭାବରେ ଆତ୍ମପ୍ରକାଶ କରି 'ଝୁମୁକା' ସଙ୍କଳନରେ ତାଙ୍କ କବିତାଗୁଡ଼ିକୁ ପ୍ରକାଶ କରିଛନ୍ତି ।

ସ୍ୱାଧୀନତା ପ୍ରାକ୍ କାଳରେ ଓ ପର କାଳରେ କବି ସଚ୍ଚିଦାନନ୍ଦ ରାଉତରାୟ ପରିମାଣ ଦୃଷ୍ଟିରୁ ଓ ଗୁଣାତ୍ମକ ଦୃଷ୍ଟିରୁ ଅନେକ କାବ୍ୟ କବିତା ରଚନା କରିଛନ୍ତି । କବିଙ୍କ କାବ୍ୟ ଚେତନା ଗ୍ରାମ୍ୟ ଆଭିମୁଖ୍ୟରୁ ଆରମ୍ଭ ହୋଇ ନଗର ଭିତରେ ଉତ୍ତରଣ ଅଭିମୁଖୀ ହୋଇଛି । 'ହସନ୍ତ' 'ପଲ୍ଲୀଶ୍ରୀ' 'ପାଥେୟ' 'ପୂର୍ଣ୍ଣିମା' 'ଅଭିଯାନ' 'ପାଣ୍ଡୁଲିପି' 'ଭାନୁମତୀର ଦେଶ' 'ବାଜି ରାଉତ' 'କବିତା ୧୯୬୨' 'କବିତା ୧୯୬୯' 'କବିତା ୧୯୮୩' ଆଦି କବିତା ସଙ୍କଳନରେ କବିଙ୍କ କାବ୍ୟ ପ୍ରତିଭାର ପରିଚୟ ମିଳିଥାଏ । ଚିତ୍ରକଳ୍ପ, ପ୍ରତୀକ, ରୂପକଳ୍ପ ପ୍ରୟୋଗ କରି କବି ପ୍ରୟୋଗବାଦୀ କାବ୍ୟ ରଚନା କରିଛନ୍ତି । ଆଧୁନିକ ଓଡ଼ିଆ କବିତାରେ ସଚ୍ଚି ରାଉତରାୟ ଗୋଟିଏ ଅନୁଷ୍ଠାନ ।

କବିତା ଭଳି ସବଂଧା ଗତିଶୀଳ ଓ ଚେତନା ପ୍ରବାହ ଭାବପ୍ରବଣ ବୁଦ୍ଧିଦୀପ୍ତ ସାହିତ୍ୟକୁ କେତୋଟି ବର୍ଷ ମଧ୍ୟରେ ସୀମିତ କରି ମାପଚୁପ୍ କରିବା ନିଶ୍ଚୟ କଷ୍ଟସାଧ୍ୟ । ଏଥିରେ ମାନସିକ କଷ୍ଟ ଅଧିକ, ଉତ୍ତେଜନା ଅଧିକ, ଅଭାବ ଅଧିକ ନିଶ୍ଚୟ । ତଥାପି କାବ୍ୟ ସାଧନା ଓ ବିପୁଳ ସମ୍ଭାବନା ଦୃଷ୍ଟିରୁ ଏକ ସମୟର ସୃଷ୍ଟି ସାଧନା ଅନ୍ୟ ସମୟଠାରୁ ବାରି ହୋଇ ପଡ଼ିଲେ ଓ ଗଢ଼ି ଆସୁଥିବା କାବ୍ୟ ପଦ୍ଧତି ଓ ଆତ୍ମିକ ପରିଣତିରେ ପୁଣି ଅନ୍ତରଙ୍ଗତା ପ୍ରକାଶ ପାଇଲେ ନୂଆ ଧରଣର ଅଙ୍ଗୀକାର ତିଆରି ହୁଏ । ଏପରି ଏକ ଆଲୋଚନା କରିବା ମୂଳରେ ଦୁଇଟି କଥା ସ୍ପଷ୍ଟ । ପ୍ରଥମତଃ ସ୍ୱାଧୀନତାଠାରୁ ଗଢ଼ି ଆସୁଥିବା ଆତ୍ମିକ ଚେତନା ଆଜି ଆଉ କବିପାଇଁ ଗ୍ରହଣୀୟ ନୁହେଁ । ସେ ଏକ ନୂଆ ଯୁଗର ସନ୍ଧାନ ଦେବା ସହ ଏକ ସ୍ୱପ୍ନପ୍ରବଣ ମନ ଓ ଅତାତ୍ତ୍ୱିକ କାରିଗରୀ କୌଶଳ ବିରୁଦ୍ଧରେ ସଂଘର୍ଷ ଆରମ୍ଭ କରିଛି । ଏହି ଦୃଷ୍ଟି-କୋଣରୁ ଅଶୀଦଶକ ମରେ ପରେ ନବମ ଦଶନ୍ଧିର ଓଡ଼ିଆ କାବ୍ୟ ସାହିତ୍ୟର ଇତିହାସରେ ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ଆସିଛି ବ୍ୟାପକ ପରିବର୍ତ୍ତନ । କବିତାର ଆକାର ଅନୁଭୂତି ଓ ଆବେଦନ ଏ ସମୟର କବିତାରେ ସ୍ୱତନ୍ତ୍ର । ଓଡ଼ିଆ କବିତାର ପାରମ୍ପରିକ ଚେତନା ଏ ସମୟର କବିତାମାନଙ୍କରେ ସୁରକ୍ଷିତ ଥିଲେ ମଧ୍ୟ ତାହା ବର୍ତ୍ତମାନ କାଳରେ ଏକ କାବ୍ୟମାଧୁରୀ ଓ ମିଠାସରେ ଅତୀତକୁ ଝୁରିହେବା ପରି ମନେହୁଏ । ତେଣୁ ଏହି ପାରମ୍ପରିକ ଓ ପ୍ରୟୋଗବାଦୀ ଧାରା (୧୯୫୦-୭୦)କୁ ବାଦ୍ ଦେଇ ନୂଆ ମନନର ନୂତନ ସ୍ୱର୍ଗର ସନ୍ଧାନ ଦେବା ଆଜିର କବିତାର ବିଶେଷତ୍ୱ ।

## ସାମ୍ପ୍ରତିକ କବିତାର ମାଟି ଓ ଆକାଶ—

କ୍ରମ ବିକଶିତ ମଣିଷ ଜୀବନରେ ପରିବର୍ତ୍ତନ ନୂଆ ନୁହେଁ । ମାନସିକ ଅଭିବୃଦ୍ଧି ନ ହେଲେ ମଣିଷ ଯେମିତି ଚେତନା ସ୍ତରରେ ପଙ୍ଗୁ ପାଲଟିଯାଏ, ସମାଜରେ ପରିବର୍ତ୍ତନ ନ ଆସିଲେ ସମାଜ ନୂତନମାନଙ୍କ ପାଇଁ ଅକାମୀ ହୋଇଯାଏ । ମଣିଷ ଓ ସମାଜ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଯେଉଁଠି ମଣିଷମାନେ ସମାଜକୁ ନିୟନ୍ତ୍ରଣ କରନ୍ତି ସେଠି ମଣିଷର ସାମାଜିକ ଅବସ୍ଥା ଅଧିକ ସ୍ୱଚ୍ଛଳ ଓ ଦୁଃଖ ସବୁ ହାତଗଢ଼ା । କିନ୍ତୁ ସମାଜ ଯେଉଁଠି ବ୍ୟକ୍ତିକୁ ନିୟନ୍ତ୍ରଣ କରେ ସେଠି ଦୁଃଖ ସବୁ ଈଶ୍ୱରଙ୍କ ଦାନ, ଭାଗ୍ୟର ବିପର୍ଯ୍ୟୟ । ସମୟ ବଦଳୁଛି, ଯୁଗ ବଦଳୁଛି, ବଦଳୁଛି ମଣିଷର ଛବି । ଏଇ କ୍ରମଶଃ ବଦଳୁଥିବା ସମାଜର ବଳୟ ମଧ୍ୟରେ ସମାଜ ଓ ବ୍ୟକ୍ତି ସମାଜର ଅନ୍ତରଣ ଦ୍ୱନ୍ଦ୍ୱ ସାହିତ୍ୟର ଚନ୍ଦ୍ରାଭିଜ୍ୟୋକୁ ଗଭୀର ଭାବରେ ପ୍ରଭାବିତ କରିଛି । ମଣିଷ ବଦଳିବା ସହ ତା'ର ଆବଶ୍ୟକତା ବଢି ଚାଲିଛି । ଏହି ଆବଶ୍ୟକତାର ଅବସାନ ପାଇଁ ସମସ୍ତ କ୍ରମେ କ୍ରମେ ପାରଙ୍ଗମ ଓ ପ୍ରଫୁଲ୍ଲ ଜଣା ପଡ଼ୁଛି । ଯେଉଁଠି ସମାଜ ଅଧିକ ପ୍ରଭାବଶାଳୀ, ମଣିଷ ସେଠି ଭୟ କରୁଛି, ପଳାୟନ କରୁଛି, ନୂଆ ସମାଜ ବସାଉଛି, ନୂଆକରି ଜାତି ହେଉଛି, ନୂଆ ଧର୍ମ ନେଉଛି ପୁଣି ପ୍ରେମ କରୁଛି, ଝାଡ଼ଝୁଡ଼ି ହୋଇ ଉଠି ବସୁଛି, ନୂଆ ନୂଆ ପ୍ରତିଜ୍ଞା କରୁଛି । ଆଜିର ମଣିଷ ସମୁଦ୍ର ସ୍ନାନ ଛାଡ଼ି ଗଙ୍ଗା ସ୍ନାନ କରୁଛି । ସୂର୍ଯ୍ୟ ସ୍ନାନ କରୁଛି, ରାଣୀହାଟ ପୋଲ ଛାଡ଼ି ବାଉଁଶ ପୋଲରେ ଚାଲୁଛି । କଟକ ସହର ଛାଡ଼ି ଚନ୍ଦୋପାଲା ବାଲିରେ ବୁଲୁଛି । ପଚସ୍ତରି ପଇସା ଦେଇ କାନ୍ଥରେ ଜଗନ୍ନାଥଙ୍କ ଫଟୋ ଝୁଲାଉଛି । ନିଶ କଳା କରୁଛି । ଅଇନା ଆଗରେ ମୁଲାୟମ ହସ ହସୁଛି । ଷ୍ଟାର ଟି.ଭି. ଦେଖୁଛି । ବାତ୍ସାୟନଙ୍କ କାମସୂତ୍ର ପଢୁଛି । ସେ ମୋଟାମୋଟି ଫ୍ରଏଡ଼ଙ୍କ ପାଶୋରି ପାରିନାହିଁ ! ପାଶ୍ଚାତ୍ୟର ଫ୍ରଏଡ଼ ପ୍ରାଚ୍ୟର ବାତ୍ସାୟନ ତା' ପାଇଁ ଉପଭୋଗ । ମୃତ୍ୟୁ ମୁକ୍ତିର ନୂତନ ମାର୍ଗ ଫିଟାଇ ଦେଇଛନ୍ତି । ତେଣୁ କାବ୍ୟ ନାୟକ ସ୍ତ୍ରୀର ମନ ବୁଝିଲା ପରି ନୂଆ ନୂଆ ମାର୍ଗରେ ପ୍ରେମ କରୁଛି, ପୁଣି ଭୟ କରୁଛି, ଅଭିମାନ କରୁଛି, ରୁଷୁଛି । ବନ୍ଧ୍ୟାନାରୀ ସବୁ ପାହିଲାବେଳକୁ ଗର୍ଭବତୀ ପାଲଟି ଯାଉଛି ପୁଣି ଗର୍ଭବତୀମାନଙ୍କ ପେଟରୁ ପିଲାଶ୍ଳେଷ ସମ୍ଭବ ହୋଇ ପାରୁଛି । ପୁରୁଷତ୍ୱ ପରୀକ୍ଷା ପାଇଁ ପୁରୁଷମାନେ ବାଗଦାଦ୍ ପଳାଇ ଯାଉଛନ୍ତି ଶୁଣି ସରକାର ଗୋଟିଏ ସନ୍ତାନ ଯଥେଷ୍ଟ ବୋଲି ବିଜ୍ଞାପନ ମାଧ୍ୟମରେ ପ୍ରଚାର କରୁଛନ୍ତି । ବିଦେଶୀ କମ୍ପାନୀ ମଣିଷକୁ ଆହୁରି ପଙ୍ଗୁ କରି ଦେଇଛି । ଘରେ ବସି ଶରୀର ବୃଦ୍ଧିତ ସୁଖକୁ କେଇଘଣ୍ଟା ମଧ୍ୟରେ ଉପଭୋଗ କରି ହେଉଛି । ହାତ ଟେକିଲେ ଈଶ୍ୱରଙ୍କ ସନ୍ଧାନ ମିଳୁଛି ଓ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ନ ଥାଇ ଈଶ୍ୱର ଟିଭିରେ ସାକ୍ଷାତକାର ଦେଉଛନ୍ତି । ପାଟି ଖୋଲିଲେ ପରମାଣୁ ବୋମାର ଚମକ ଚ୍ଛରିଆଡ଼େ ଖେଳି ଯାଉଛି । ନେତାମାନେ

ବିବୃତ ଦେଇ ପୃଥିବୀର ନିରାପତ୍ତାକୁ ଦୃଢ଼ କରିଛନ୍ତି । ସ୍ତ୍ରୀମାନେ ଯଦ୍ୱାରା ରୂପଜୀବୀ ଓ ପ୍ରେମିକାମାନେ ଏଡ୍‌ସ୍ ରୋଗୀ ଓ ପ୍ରେମ ଏକ ପ୍ରସାଧନ ସାମଗ୍ରୀ ଜଳୁଥିବା ବିଡ଼ିରେ ବଦଳି ଯାଇଛି । ଦିନ ଦ୍ୱି-ପ୍ରହରରେ ସ୍ତ୍ରୀଠାରୁ ସ୍ୱାମୀ ସତୀତ୍ୱ ଆଦାୟ କରୁଛି । ସ୍ୱାମୀର ନପୁଂସକତାକୁ ନିର୍ବୋଧ ପଣ ଭାବି ସ୍ତ୍ରୀ ବିଦ୍ରୂପ କରୁଛି । 'ଏ ମଣିଷ ପାରୁନି' ସେ ପାଲଟି ଯାଉଛି ଏକ କ୍ଷୁଦ୍ର ବିଚିତ୍ର ଯନ୍ତ୍ର କାହିଁକି ? ଏହି କାହିଁକି ହେଉଛି ସ୍ୱାଧୀନତାର କବିତା, ଆଉ ସବୁ କବିତା ସେହି 'କାହିଁକି' ମାନଙ୍କର ଅସଲ ଉତ୍ତର ପ୍ରତ୍ୟାଶୀ । ଜୀବନର ସାର୍ଥକ କବିତା ଅଲେଖା ରହିଯାଏ । ସେଇଥିପାଇଁ କବି ଯୁଗ ପରେ ଯୁଗ, ବର୍ଷ ପରେ ବର୍ଷ ଓ କବିତା ପରେ କବିତାରେ ଖୋଜି ଚାଲିଛି ଏ ସମାଧାନର ରହସ୍ୟ । ଏ ବିଶ୍ୱ ତା' ଆଗରେ ଏତେ ବଡ଼ ପୁଣି ଏତେ ଶ୍ରେଷ୍ଠ ହୋଇ ଯାଇଛି ଯେ ରଙ୍ଗ ଓ ତୂଳୀରେ ସେ ଯେତେ ଆଙ୍କିଲେ ମଧ୍ୟ, ପ୍ଲାଷ୍ଟିକ୍ ପଥରରେ କୋଣାର୍କ ତୋଳିଲେ ମଧ୍ୟ ଦାଧିନଉତି ବସି ପାରୁନାହିଁ । ବସେଇବ କିଏ ? ମୂର୍ତ୍ତି ମାଣିବ କିଏ ? ଧର୍ମପଦ ମିଳିବ କେଉଁଠୁ ? ଏଇ ବିଚିତ୍ର କାବ୍ୟ ଭୂମି ଉପରେ ଆଜିର କବିତା ନିଜ ପରିଧିରେ ନିଜେ ହିଁ ଈଶ୍ୱର । ଅଧୁନା କବିତା ଏଇ ସାମଗ୍ରିକ ଭାବଭୂମିର କବିତା, କବିତା ଏଇ ସାମଗ୍ରିକ ଜୀବନର, ଜୀବନରୁ ନିର୍ଗତ ଆଶା ଓ ଆଶାଭଙ୍ଗର ।

୦

ନବମ ଦଶନ୍ଧିର ପୃଥିବୀ ଏକ ବିଚିତ୍ର ପୃଥିବୀ । ବ୍ୟକ୍ତିଗତ ଦୃଷ୍ଟିକୋଣରୁ କେହି କେହି ଆତ୍ମସନ୍ତୋଷ ଅନୁଭବ କଲେହେଁ ସାମଗ୍ରିକ ଦୃଷ୍ଟିକୋଣରୁ ଏହା ଏକ ବିଧବାର ପୃଥିବୀ, ଦୁଃଖର ପୃଥିବୀ, ଆଣ୍ଠୁକୁଣ୍ଡାର ପୃଥିବୀ । ଦୁଇ ଦୁଇଟା ବିଶ୍ୱ ସମରର ତତଲା ନିଆଁ ଏ ସମୟରେ ନାହିଁ କି ଟ୍ରେଞ୍ଚ ଭିତରେ ବସି କବିତା ଲେଖିବାର ଅବକାଶ ନାହିଁ । ପୋଡ଼ିଗଲା, ଜଳିଗଲା ଭାଙ୍ଗିଗଲା ଆମର ସବୁ ଥିଲା, ଗଲାଗଲା ସବୁଗଲା ବୋଲି ପାଟି କରିବାର ସମୟ ମଧ୍ୟ ନାହିଁ । ତାହେଲେ ଦୁଃଖ କ'ଣ । ଏ ଦୁଃଖପ୍ରିୟ ଦୁଃଖ, ବ୍ୟକ୍ତିବିମ୍ବରୁ ସଞ୍ଚରି ଯାଉଥିବା ଦୁଃଖ, ଆଧୁନିକ ମଣିଷର ସଚେତନ ଜ୍ୱଳନ ଓ ମୁକ୍ତିର ପ୍ରାଣାନ୍ତକ ପ୍ରୟାସ ହିଁ ତା' ପାଇଁ ଦୁଃଖ । ସେ ବାସ୍ତବବାଦୀ, ଅତି ବାସ୍ତବବାଦୀ ବା ରୋମାଣ୍ଟିକ୍ ହୋଇପାରେ; କିନ୍ତୁ ଜଳିଯିବାର ଦାବାନଳ ଭିତରେ ସେ ବନ୍ଦୀ । ସ୍ୱାଧୀନତା ପରର ପୃଥିବୀ ଏକ ଶୀତଳ ବିଶ୍ୱ ଯୁଦ୍ଧର ପୃଥିବୀ, ଅବିଶ୍ୱାସର ପୃଥିବୀ, ନବମ ଦଶନ୍ଧିର ପୃଥିବୀ ରାଜନୈତିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ଜର୍ମାନ ଏକତ୍ରୀକରଣ, ସୋଭିଏତ୍ ବିଭାଜନ, ଆଫଗାନ ସଙ୍କଟ, ଉପସାଗରୀୟ ଯୁଦ୍ଧ, ସୋମାଲିଆ, ଇଥୋପିଆ ଆଦି ଆଫ୍ରିକୀୟ ରାଷ୍ଟ୍ରମାନଙ୍କର ଆର୍ଥିକ ଅନଗ୍ରସରତା ଓ ହା-ହୁତାଶ ପରିସ୍ଥିତି, ଦକ୍ଷିଣ ଆଫ୍ରିକାରେ ଗଣତନ୍ତ୍ର ପ୍ରତିଷ୍ଠା, ବୋସନିଆ ସଂଘର୍ଷ, ଭାରତ ଓ ଶ୍ରୀଲଙ୍କାର ଉଗ୍ରବାଦ, ସନ୍ତ୍ରାସବାଦ

ସମଗ୍ର ବିଶ୍ୱକୁ ପ୍ରଭାବିତ କରୁଛି । ଏ ସମୟରେ ଆମେରିକା ଓ ତା'ର ମିତ୍ରରାଷ୍ଟ୍ର ମାନଙ୍କର ଅସାରୋଚିତ ବର୍ବରତା ଧନୀ ଓ ଗରୀବ ରାଷ୍ଟ୍ରମାନଙ୍କ ମଧ୍ୟରେ ନୂଆ ବ୍ୟବଧାନ ସୃଷ୍ଟି କରିଛି । ରାଜନୈତିକ ହତ୍ୟା ଓ ସନ୍ତ୍ରାସବାଦ ଚକ୍ରାନ୍ତରାଜ୍ୟରେ ଯେପରି ଆଲୋଡ଼ନ ସୃଷ୍ଟି କରିଛି ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟାରେ ସାରା ବିଶ୍ୱକୁ ଏକାଠି କରିବା ପାଇଁ ସଂସ୍କାର ଆରମ୍ଭ ହୋଇଛି । ବିଜ୍ଞାନ ଓ କାରିଗରୀ ବିଦ୍ୟା, ଶିଳ୍ପ ଓ ସମବାୟ ଆନ୍ଦୋଳନ, କଳା ସଂସ୍କୃତି ଓ ନୂତନ ସାମାଜିକ ଅଭିବୃଦ୍ଧି ବିଶ୍ୱ ସ୍ତରରେ ଏକ ମିଶ୍ର ସଂସ୍କୃତି (mixed culture) ତିଆରି କରିଛି । ତେଣୁ ଆଜି ବିଶ୍ୱମୁଖୀନତା ଜୀବନ ଭିତରେ କୌଣସି ଚିନ୍ତା ଚେତନା ଜୀବନ ଯାପନ ଶୈଳୀ କାହାର ନିଜସ୍ୱ ହୋଇ ରହିନାହିଁ ।

ନବମ ଦଶନ୍ଧିର ଭାରତୀୟ ସମାଜ ବହୁ ବିତର୍କ ଓ ବହୁବର୍ଣ୍ଣି ସମାଜ । ଜାତୀୟ ଜରୁରୀ ଆଦି ରାଜନୈତିକ ସଙ୍କଟରୁ ଉତ୍ପନ୍ନ ଏ ସମାଜ ସହିଛି ଦୁଇ ଦୁଇ ଜଣ ରାଷ୍ଟ୍ରନାୟକଙ୍କ ବର୍ବର ହତ୍ୟାକାଣ୍ଡ, ଅନ୍ୟ ପକ୍ଷରେ ଦେଶର ପ୍ରତିରକ୍ଷା, ସ୍ଥାୟିତ୍ୱ ଓ ଅର୍ଥନୈତିକ ଗତି, ପରିଣତି ନେଇ ଅନେକ ପ୍ରଶ୍ନବାଚୀ ତିଆରି ହୋଇଛି । ବେକାରୀ, ଦାରିଦ୍ର୍ୟ, ଆଇନର ଅଧପତନ, ମାନବିକ ଅଧିକାର ହ୍ରାସ, ନାରୀ ନିର୍ଯାତନା, ବାଳଶ୍ରମିକ, ପରିବେଶ ସୁରକ୍ଷା ନେଇ ପ୍ରଶ୍ନ, ସାମ୍ବିଧାନିକ ସଙ୍କଟ, ବ୍ୟକ୍ତିଗତ ନିରାପତ୍ତା ଯୋଗାଇ ଦେବାରେ ରାଷ୍ଟ୍ରର ଅସଫଳତା ପଦାରେ ପଡ଼ି ଯାଇଛି । ନଗର ବୃତ୍ତର ଜୀବନ ମୋଟାମୋଟି ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ଗାଁ ସବୁ ଏ ସମୟରେ ସହରରେ ରୂପାନ୍ତରିତ ହୋଇଯାଇଛି ଓ ଗାଁର ସ୍ୱଗତବୋଧ ହ୍ରାସ ପାଇଛି । ଧର୍ମଗତ ସଙ୍କଟ ଭାରତୀୟ ସମାଜର ଧର୍ମ ନିରପେକ୍ଷତା ଓ ଧର୍ମ ବର୍ବରତା ଓ ପାଷାଣ୍ଡତା ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିଛି । ଯେଉଁଠି ବନ୍ଧୁକରୁ ବାରମ୍ବାର ଗୁଳି ଫୁଟୁଛି ସେଠି କବି ହୃଦୟରୁ କବିତାର ଫୁଲ ଫୁଟିବ କିପରି ? ଯେଉଁଠି ବାରୁଦର ବାସ୍ନା ଆସୁଛି ସେଠି କଦମ୍ବ ବା ଲବଙ୍ଗ ଫୁଲର ବାସ୍ନା ମିଳିବ କୁଆଡ଼ୁ ? ଆବଶ୍ୟକତାଠାରୁ ଅଧିକ ମନୋରଞ୍ଜନ ଓ ଉପାର୍ଜନର ସହଜସାଧ୍ୟ ମାଧ୍ୟମ ଯୋଗାଇ ଦେଇ ରାଷ୍ଟ୍ର ମଣିଷକୁ ମୁଖ୍ୟ ପ୍ରସଙ୍ଗରୁ ଦୂରେଇ ରଖିବାରେ ସମର୍ଥ ହୋଇ ପାରିଛି । ସେ ଅଧିକ ଯାନ୍ତ୍ରିକ ଓ ମୂଲ୍ୟହୀନ (valuless) ପାଲଟି ଯାଉଛି । ତା'ର ବ୍ୟକ୍ତିତ୍ୱ ଗୋଟିଏ ସୁବର୍ଣ୍ଣ ଶୂନ (Golden zero) । ଏ ମଣିଷ ତେଣୁ ବୁଝିଛି ମୃତ୍ୟୁ ନିଶ୍ଚିତ, ତାହା ପୁଣି ଖୁବ୍ ଶୀଘ୍ର । ପ୍ରେମିକା ସହ ପ୍ରେମକାମ ଓ ସ୍ତ୍ରୀ ସହ ଜୀବନକାମ କରୁ ନ କରୁଣୁ ତାକୁ ପ୍ରିୟ ମୃତ୍ୟୁ କୋଳେଇ ନେବ । ତେଣୁ ଜୀବନର ଯେତିକ ସମୟ ହାତରେ ଅଛି ତାକୁ ନେଇ ଉପଭୋଗ କରିବାକୁ ମଣିଷ ବ୍ୟସ୍ତ । ନ ବୁଝିବା ସମୟରେ ସବୁ ଠିକ୍‌ଠାକ୍ ଥିଲା ବୁଝିଗଲା ପରେ ତାକୁ ସବୁ ଦୁର୍ବୋଧ ଜଣା ପଡ଼ିଲା । ଉପଭୋଗ ପାଇଁ ଆଗ୍ରହ ପ୍ରକାଶ କରି ସେଥିପାଇଁ

ଧନ, ସମ୍ମାନ, ସାହସ ସଞ୍ଚୟ କରୁ କରୁ ତା'ର ଜୀବନ ଦୀପ ଲିଭିଯାଏ । ସେଇଥିପାଇଁ ତା' ଜୀବନ, ସେଥିପା କବିତା । ଭାରତୀୟ ପାଣିପାଗ ସହ ଓଡ଼ିଆ ସମାଜର ପାଣିପାଗ ପ୍ରାୟତଃ ଏକା । ଏକ ସମୟରେ ଓଡ଼ିଆ କବିତାରେ ମାଟିକୁ ଜାବୁଡ଼ି ଧରି ଆକାଶକୁ ସ୍ପର୍ଶ କରିବାର ଏକ କାବ୍ୟିକ ଆଗ୍ରହ ଥିଲା । ଏପରି ସମୟରେ (୧୯୫୦-୮୦) କବି ନିଜ ସୁବିଧାରେ ଏକ ମଧ୍ୟ ସ୍ୱର୍ଗ ତିଆରି କରିଥିଲେ । ପାଠକ ଓ ଈଶ୍ୱର (ମାଟି ଓ ଆକାଶ) ଠାରୁ ଏହା ସମାନ ଦୂରରେ ଅବସ୍ଥିତ ଥିଲା । ସାଂପ୍ରତିକ କବିତା ଏ ଦିଗରୁ ବହୁ ପ୍ରତିଶ୍ରୁତିବଦ୍ଧ । ଏଠି ମାଟିକୁ ଜାବୁଡ଼ି ଧରିବାର ମୋହ ନୁହେଁ, ରକ୍ତ ଶପଥ ଅଛି । ଗାଳିମାଡ଼ ଖାଇ, ବାତ୍ୟା ବନ୍ୟା ସହ ପଡ଼ି ରହିବାର ଦୃଢ଼ତା ଅଛି । ପୁଣି ଆକାଶକୁ ଲଙ୍ଘିଯିବାର ଲେଉଟିବା ପଣ ଟିକକ ରହିଛି । ଏ ମାଟି ନିଶ୍ଚୟ ଓଡ଼ିଶାର । ଖାଣ୍ଟି ଓଡ଼ିଆ ମାଟି, ଗାଁ, ନଈ, ଆମ୍ବତୋଟା, କଦମ୍ବ ଫୁଲ, ଚନ୍ଦ୍ରୋପୂଲା ଓ ସୋରିଷ ଫୁଲର ମାଟି । ଏ ମଣିଷ ଦେଶୀ ମଣିଷ, ଚରିତ୍ରଗୁଡ଼ିକ ତେଣୁ କବିତାର ଗାଉଁଲି । ପୁଣି ଯେଉଁଗୁଡ଼ିକ ସହରୀ ତାହା ପୁଣି ଖାଣ୍ଟି ସହରୀ ନୁହେଁ । କାରଣ ଆମର ସହର ଗ୍ରାମ୍ୟଭିତ୍ତିକ ଗ୍ରାମର ଏକ ମାର୍ଜିତ ଅବସ୍ଥା । ତେଣୁ ଆମର ଏ ସମୟର ଦୁଃଖ ସମ୍ପୂର୍ଣ୍ଣ ଯାନ୍ତ୍ରିକ ନୁହେଁ । କୃଷି ଓ ଶିଳ୍ପ ମିଶ୍ରଣରେ ଯେଉଁ ମଧ୍ୟମ ବୃତ୍ତି ତାହା ହିଁ ଆମ ସମୟର ସନ୍ଧିମୟ ଯୋଗସୂତ୍ର ଫଳ । ସମନ୍ୱୟର ଜୀବନ, ଦୁଃଖ, ସୁଖ ଓ ହତାଶାବୋଧ, ଅମଙ୍ଗଳତା ଭିତରେ ଅତୀତକୁ ସ୍ମରଣ କରିବା ଏବଂ ଅତୀତ ଅବାଞ୍ଛିତ ବୋଲି ସ୍ୱୀକାର କରି ପୁଣି ପରମ ପୁରୁଷଙ୍କ ନିକଟରେ ସମର୍ପିତ ହୋଇଯିବା ଆଜିର କବି ଓ କବିତାର କର୍ତ୍ତବ୍ୟ । ଏହି ଆତ୍ମଦ୍ୱନ୍ଦ୍ୱ, ସ୍ୱବିରୋଧ ହିଁ ସ୍ୱାଧୀନତା ପରବର୍ତ୍ତୀ କବି, କବିତା ଓ ତା'ର ପୃଷ୍ଠଭୂମି ।

ପ୍ରୟୋଗବାଦୀ କବିତାର ପ୍ରତିଷ୍ଠାପକ କବି ଗୁରୁପ୍ରସାଦ ମହାନ୍ତିଙ୍କ କାବ୍ୟ ଚେତନା ଆଧୁନିକ ଅସହାୟ ମଣିଷର ମର୍ମଲିପି ଭାବରେ ଗୃହୀତ ହୋଇଛି । କବି ଗୁରୁପ୍ରସାଦ ଏକାକୀତ୍ୱକୁ କବିତାର ପଞ୍ଜର କରି ଫର୍ମାଲିନ୍ ଭିତରେ ବଞ୍ଚିଥିବା ମଣିଷ ଜୀବନକୁ ବିବିଧ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଛନ୍ତି । କବି ଭାନୁଜୀ ରାଓଙ୍କ ସହ ମିଶି ଗୁରୁପ୍ରସାଦ 'ନୂତନ କବିତା' ସଂକଳନରେ ପ୍ରୟୋଗବାଦୀ କବିତାର ଆସ୍ୱା ଓ ଅନୁରାଗ ସମ୍ପର୍କରେ ଓଡ଼ିଆ ପାଠକଙ୍କୁ ସଚେତନ କରାଇଥିଲେ । ଏହି କଳା ଚେତନାର ଉତ୍ତରଣ ଭାବରେ କବି 'ସମୁଦ୍ର ସ୍ନାନ' 'କାଳପୁରୁଷ' 'ଆତ୍ମୀୟ ଅଭିସାର' ଆଦି କବିତା ସଙ୍କଳନ ସୃଷ୍ଟି କରିଛନ୍ତି । ଗୁରୁପ୍ରସାଦ ସ୍ୱାଧୀନତ୍ୱର ମଣିଷ ଜୀବନର ବାସ୍ତବ ବ୍ୟାଖ୍ୟାକାର ଭାବରେ ସମ୍ମାନିତ ହୋଇ ଆଆନ୍ତି । କବି ଭାନୁଜୀ ରାଓ କବି ଗୁରୁପ୍ରସାଦଙ୍କ ସହ କବିତା ରଚନା ଆରମ୍ଭ କରିଥିଲେହେଁ ଅନେକ ଦିନର ନୀରବତା ପରେ ପୁଣି କବିତା ଜଗତକୁ ଫେରି ଆସିଛନ୍ତି । 'ଦର୍ପଣ ଆଗରେ' 'ନଈ ଆରପାରି' 'ବିଷାଦ ଏକ ଋତୁ' 'ଚନ୍ଦନ ବନରେ ଏକା' ଆଦି କବିଙ୍କ

ସାର୍ଥକ କବିତା ସଙ୍କଳନ । କବି ଜାନକୀବଲ୍ଲଭ ମହାନ୍ତି 'ଖାଇଁକି' 'ବାଚନବର୍ଣ୍ଣି' ନାମକ ଦୁଇଟି କବିତା ଗ୍ରନ୍ଥ ରଚନା କରିଛନ୍ତି । କବି ବେଣୁଧର ରାଉତ 'ପିଙ୍ଗଳାର ସୂର୍ଯ୍ୟ' କବିତା ସଙ୍କଳନ ରଚନା କରିଛନ୍ତି । କବି ଚନ୍ଦ୍ରମଣି ବେହେରା 'ସ୍ୱସ୍ତିକା' 'ନୂତନ ସ୍ୱାକ୍ଷର' 'କଳା ଓ କଳଙ୍କ' 'ନୀଳ ଲୋହିତ' 'ତୃତୀୟ ଚକ୍ଷୁ' 'ହେ ବୈଦେହୀ ଭୁଲିଯାଅ' 'ଶ୍ୱେତପଦ୍ମ' ଆଦି କବିତା ସଂକଳନ ରଚନା କରିଛନ୍ତି । ଚନ୍ଦ୍ରମଣି ବେହେରାଙ୍କ କବିତା ଅଧିକ ଯୁକ୍ତିନିଷ୍ଠ । ଗୋଟିଏ ଘଟଣାକୁ ବିଭିନ୍ନ ଦିଗରୁ ଦାର୍ଶନିକ ଭଙ୍ଗୀରେ ବ୍ୟାଖ୍ୟା କରିବାର ଦକ୍ଷତା ଶ୍ରୀଯୁକ୍ତ ବେହେରାଙ୍କର ରହିଛି । ଏ ସମୟର ପ୍ରତିଭାଧର ସ୍ରଷ୍ଟା ଭାବରେ ଦୁର୍ଗାମାଧବ ମିଶ୍ରଙ୍କର 'ବୃତ୍ତ ଓ ଆବର୍ତ୍ତ' 'ମୁଠାଏ ମାଟି ଚନାଏ ଆକାଶ' 'ଫଲ୍‌ଗୁର ବନ୍ୟା' ଆଦି କବିତା ସଙ୍କଳନ ଉଲ୍ଲେଖଯୋଗ୍ୟ ।

ପ୍ରଗତିବାଦୀ କାବ୍ୟ ଚେତନାରେ ନିରବଚ୍ଛିନ୍ନ ଭାବରେ କବିତା ଚର୍ଚ୍ଚା ସ୍ମାଲୁ ରଖିଥିବା କବି ରବି ସିଂ ଓଡ଼ିଆ କବିତା ସାମ୍ରାଜ୍ୟକୁ ଅପୂର୍ବ ଦାନ ସମ୍ଭାରରେ ଆହୁରି ଦୀପ୍ତିମନ୍ତ କରିଛନ୍ତି । କବିଙ୍କ 'ଚରମ ପନ୍ଥ' 'ପଥ ପ୍ରାନ୍ତର କବିତା' 'ଲାଲ ପାଗୋଡ଼ାର ପ୍ରେତ ଓ ଅନ୍ୟାନ୍ୟ କବିତା' 'ଜମାନବନ୍ଦୀ' 'ପାଦଟୀକା' 'ଶିଥିଳ ବଲ୍‌ଗା' ଆଦି ଗୋଟିଏ ଗୋଟିଏ ଦାୟିତ୍ୱପୂର୍ଣ୍ଣ କବିତା ସଙ୍କଳନ ।

ପ୍ରୟୋଗବାଦୀ ଓଡ଼ିଆ କବିତାର ଆବେଗଋଦ୍ଧ କବି ଭାବରେ କବି ରମାକାନ୍ତ ରଥଙ୍କ ପରିଚୟ ସ୍ୱତନ୍ତ୍ର । ଆଧୁନିକ ମଣିଷର ବହୁଧା ବ୍ୟକ୍ତିତ୍ୱକୁ ବିଭିନ୍ନ ଦୃଷ୍ଟିରୁ ଗ୍ରହଣ କରି ମୃତ୍ୟୁ ଚେତନାରେ ତତ୍‌ସତ୍ ଆତ୍ମ ଚରିତକୁ କବି ବାରମ୍ବାର ତାଙ୍କ କବିତାରେ ଉନ୍ମୋଚନ କରିଛନ୍ତି । 'କେତେଦିନର' 'ଅନେକ କୋଠରୀ' 'ସନ୍ଦିଗ୍ଧ ମୃଗୟା' 'ସପ୍ତମ ଋତୁ' 'ଶ୍ରୀରାଧା' ଆଦି କାବ୍ୟ ସଙ୍କଳନରେ କବି ରମାକାନ୍ତଙ୍କ ପରିଚୟ ମିଳିଥାଏ ।

କବି ସୀତାକାନ୍ତ ମହାପାତ୍ର ମୋହଗ୍ରସ୍ତ ମଣିଷ ପଣିଆକୁ ନେଇ ଅନେକ କବିତା ରଚନା କରିଛନ୍ତି । ସୀତାକାନ୍ତଙ୍କ କବିତାର ଆବେଦନ ମିଥିକ୍ । ଗୋଟିଏ ସାଂପ୍ରତିକ ଘଟଣାର ପ୍ରକାଶ ପାଇଁ କବି ପୁରାଣ ଓ କିମ୍ବଦନ୍ତୀ ଉପରେ ଆଶ୍ରା କରିଥାନ୍ତି । କବି ସୀତାକାନ୍ତ ତାଙ୍କ କବିତାରେ ଯନ୍ତ୍ରଣାକ୍ତ ମଣିଷର ଅନ୍ତଃ ବିପ୍ଳବକୁ କବିତାରେ ଉଚ୍ଚାରଣ କରିଛନ୍ତି । 'ଦୀପ୍ତି ଓ ଦ୍ୟୁତି' 'ଅଷ୍ଟପଦୀ' 'ଶବଦର ଆକାଶ' 'ସମୟର ଶେଷ ନାମ' 'ଆରଦୃଶ୍ୟ' 'ଚିତ୍ରନଦୀ' 'ଚଢ଼େଇରେ ରୁ କ ଜାଣୁ' 'କାହାକୁ ପୁଚ୍ଛିବା କୁହ' 'ବର୍ଷା ସକାଳ' ଆଦି କବିତା ସଙ୍କଳନରେ କବିଙ୍କ ଆଭିମୁଖ୍ୟ ସ୍ପଷ୍ଟ ଭାବରେ ଉଚ୍ଚାରିତ ହୋଇଛି । ସୀତାକାନ୍ତଙ୍କ କବିତା ସାଂପ୍ରତିକ ମଣିଷର ଭଙ୍ଗା ଜୀବନବୋଧର କଳାତ୍ମକ ପ୍ରତିନିଧି ।

କବି ସୌଭାଗ୍ୟ କୁମାର ମିଶ୍ର 'ବଜ୍ରଯାନ' 'ମଧ୍ୟପଦଲୋପୀ' 'ଆତ୍ମନେପଦୀ' 'ନଇପହଁରା' 'ଅନ୍ଧ ମହୁମାଛି' 'ଦ୍ୱାସୁପର୍ଣ୍ଣ' ଆଦି କବିତା ସଙ୍କଳନର ଜନକ । ମଣିଷର ମୋହଗ୍ରସ୍ତ ଜୀବନକୁ ରୂପ ଦେବାରେ ସୌଭାଗ୍ୟଙ୍କ କାବ୍ୟ ଚେତନା ପ୍ରୟାସୀ, କବି ଦୀପକ ମିଶ୍ର ପ୍ରୟୋଗବାଦୀ କବିତାର ଜଣେ ଦୃଢ଼ ଭାଗୀଦାର, କବିଙ୍କ 'ଅରଣା ମଇଁଷି' 'ଶୂନ୍ୟତାର ଶୋଷ' 'ବୃତ୍ତ' 'ଋକ୍' 'ଅସମାପିକା' 'ଅନୁଷ୍ଟୁପ୍' 'ନିଷିଦ୍ଧ ହ୍ରଦ' 'ନିର୍ଜନ ନକ୍ଷତ୍ର' 'ମଧ୍ୟାହ୍ନର ଗୁଳ' କବିତା ସଙ୍କଳନଗୁଡ଼ିକ ଗୋଟିଏ ଗୋଟିଏ ଉଲ୍ଲେଖନୀୟ ସୃଷ୍ଟି । କବି ଜଗନ୍ନାଥ ପ୍ରସାଦ ଦାସ ଅନେକ କବିତା ରଚନା କରି ପ୍ରୟୋଗବାଦୀ କବିତାର କଳେବରକୁ ଆହୁରି ପ୍ରଶସ୍ତ କରିଛନ୍ତି । 'ପ୍ରଥମ ପୁରୁଷ' 'ସ୍ଥିରଚିତ୍ର' 'ଆହ୍ନିକ' 'ଅନ୍ୟସବୁ ମୃତ୍ୟୁ ଓ ଅନ୍ୟାନ୍ୟ କବିତା' 'ଯେ ଯାହାର ନିର୍ଜନତା' 'ଅନ୍ୟ ଦେଶ ଭିନ୍ନ ସମୟ' ଆଦି କବିତା ସଙ୍କଳନଗୁଡ଼ିକ ତାଙ୍କ ପ୍ରତିଭା ବହନ କରିଥାଏ । କବି ଶରତ ଚନ୍ଦ୍ର ପ୍ରଧାନ ମିଥ୍‌କୁ ଆଶ୍ରା କରି କେତୋଟି ସାର୍ଥକ କବିତା ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରୁ 'ନଈ ଆଉ ମାଛ ହଂସ ଓ ସାରସ' 'ଉର୍ବଶୀଗ୍ରୀବା' 'ଯଯାତି' ଆଦି କବିତା ସଙ୍କଳନ ଶରଣୀସ୍ଥ ଶୈଳୀରେ ପରିପୂର୍ଣ୍ଣ । କବି ବିଭୁଦତ୍ତ ମିଶ୍ର ସନେଟ୍ ମାଧ୍ୟମରେ ନିଜ କବିତା ରଚନା ଅବ୍ୟାହତ ରଖିଛନ୍ତି । କବିଙ୍କ 'ଉର୍ବଶୀର ଚିଠି' 'ସୁପର୍ଣ୍ଣୀର ଗୀତ' 'ଶହେଟି ସନେଟ୍' ତାଙ୍କ ରୋମାଣ୍ଟିକ୍ କାବ୍ୟ ଚେତନାର ପରିଚୟ ବହନ କରିଥାଏ । କବି ଶ୍ରୀନିବାସ ଉଦ୍‌ଗାତାଙ୍କ 'ପ୍ରତିମା ଅପ୍ରତିମ' 'ଚୈତ୍ରରଥ' 'ଆପଣାର ଗୀତ' ଆଦି କବିତା ସଙ୍କଳନଗୁଡ଼ିକ ବିବିଧ ଦୃଷ୍ଟିକୋଣରୁ ପରିପୂର୍ଣ୍ଣ । ପ୍ରଗତିବାଦୀ ଧାରାରେ କବିତା ରଚନା କରୁଥିବା କବି ବ୍ରଜନାଥ ରଥଙ୍କ 'ନିଜସ୍ୱ ସଂଳାପ' 'ମନର ମାନଚିତ୍ର' 'ମରୁ ଗୋଲାପ' 'ନିଃଶବ୍ଦ ପ୍ରତିବାଦ' 'ଶହେଟି ଏକପଦୀ' ମାଟି ଆଉ ମଣିଷର ବାସ୍ତବ ସମସ୍ୟା ଉନ୍ମୋଚନ କରିଥାଏ । ବ୍ରଜନାଥ ପ୍ରଗତି କବି ହେଲେହେଁ ତାଙ୍କ କବିତାରେ ଜାତିମସ୍ତ ଜୀବନର ଛନ୍ଦ ସୁସ୍ପଷ୍ଟ ।

ପରିମାଣ ଦୃଷ୍ଟିରୁ ଏବଂ ଗୁଣାତ୍ମକ ଦୃଷ୍ଟିରୁ ଅନେକ କବିତା ସଙ୍କଳନର ସ୍ରଷ୍ଟା ହୋଇଛନ୍ତି କବି କମଳାକାନ୍ତ ଲେଙ୍କା । କବିଙ୍କ 'ପ୍ରୀତି ଓ ପ୍ରତୀତି' 'ଗୀତ ଗାନାରେ ପକ୍ଷୀ' 'ଖସିବାର ବେଳ' 'ସୁନାର ଫସଲ' 'ଉନ୍ମୋଚନ' 'ଦୁଃଖ ସହ କଥାବାର୍ତ୍ତା' 'ଚିତା ଅଙ୍କା କାନ୍ଥର ଛବି' ତାଙ୍କର ଗୋଟିଏ ଗୋଟିଏ ଉଲ୍ଲେଖନୀୟ ସୃଷ୍ଟି । ମଣିଷର ବାସ୍ତବ ସମସ୍ୟାକୁ କବିତାରେ ରୂପ ଦେବାକୁ ଯାଇ କବି ମୁରଲୀ ମୋହନ ଜେନା 'ହେ ଡାକ୍ତର କୋରମିନ୍ ବନ୍ଦକର' 'ଖରା ଓ ଗୁଳ' 'ଭଗବାନ ତୁମକୁ ମୁଁ ଠିଆ ଫାଡ଼ଦେବି' 'ମୋ ନାଁରେ କୁକୁର ପାଳିବ' ଆଦି କବିତା ସଙ୍କଳନ ସୃଷ୍ଟି କରିଛନ୍ତି ।

କବି ପ୍ରସନ୍ନ କୁମାର ମିଶ୍ର କବିତାରେ ରୋମାଣ୍ଟିକ୍ ବାସ୍ତବତାକୁ ଗ୍ରହଣ କରି ଅନେକ କବିତା ସଙ୍କଳନମାନ ସୃଷ୍ଟି କରିଛନ୍ତି । ପ୍ରସନ୍ନଙ୍କ ଭାଷା ସରଳ ଓ ବୋଧଗମ୍ୟ, ଗୀତମୟ ଭାଷା ଓ ସାଧାରଣ ଘଟଣାକୁ ନେଇ କବି ତାଙ୍କ କବିତାକୁ ଗଢିଛନ୍ତି । କବିଙ୍କ 'ବସନ୍ତର ସ୍କେଚ୍' 'ଆପଣଙ୍କ ଫେରିଆ' 'ସାରା ଆକାଶରେ ତା'ର ଡାକ' 'ଅଦୃଶ୍ୟ ସଙ୍ଗମ' 'ରତ୍ନଦ୍ୱୀପର ମାଟି' 'ଚକ୍ରଜାଲରେ ସନାତନ' 'ମହିମା' ଆଦି କାବ୍ୟ ସଙ୍କଳନ ପ୍ରସନ୍ନ ମିଶ୍ରଙ୍କ ପ୍ରତିଭାର ପରିଚୟ । କବି ହରିହର ମିଶ୍ର 'ଚନ୍ଦ୍ରବିମ୍ବ' 'ଶଙ୍ଖନାଭି' 'ଜଳକଳିର ତପସ୍ୟା' 'ଗୃହିଣୀ ମଣ୍ଡପ' ଆଦି କବିତା ସଙ୍କଳନ ରଚନା କରିଛନ୍ତି । କବି ଦେବଦାସ ଶ୍ରୋତ୍ରିୟଙ୍କ 'ନୀଳ ସରସ୍ୱତୀ' ପାଠକୀୟ ପ୍ରଶଂସା ହାସଲ କରିବାରେ ଏକ ଅନନ୍ୟ କବିତା ସଙ୍କଳନ । ହରପ୍ରସାଦ ଦାସଙ୍କ 'ମନ୍ତ୍ରପାଠ' 'ଗର୍ଭଗୃହ' ଆଦି କବିତା ସଙ୍କଳନ କବିଙ୍କ କବିତ୍ୱ ଓ ପାଣ୍ଡିତ୍ୟକୁ ଗ୍ରହଣ କରି ସୃଷ୍ଟି ହୋଇଛି । କବି ରାଜେନ୍ଦ୍ର କିଶୋର ପଣ୍ଡା 'ଅନ୍ୟା' 'ଶୈଳକଳ୍ପ' 'ଗୌଣ ଦେବତା' 'ଘୁଣାକ୍ଷର' 'ଶତଦ୍ରୁ ଅନେକ' 'ନିଜପାଇଁ ନାନାବାୟା' 'ଚୌକାଠରେ ଚିରକାଳ' 'ଅନବତାର ଓ ଅନ୍ୟ ଅନ୍ୟ' ଆଦି କବିତା ସଙ୍କଳନ ସୃଷ୍ଟି କରିଛନ୍ତି ।

କବି ପ୍ରଦୀପ୍ତ ଶତପଥୀଙ୍କ କାବ୍ୟ ପ୍ରତିଭା ପ୍ରେମ, ବିଯୋଗ ଓ ବିରୋଧାଭାସକୁ ପୁଞ୍ଜିକରି ସୃଷ୍ଟି ହୋଇଛି । ଜଣେ ନାରୀକବି ଭାବରେ ନାରୀ ମନସ୍ତତ୍ତ୍ୱ ଓ ମୁକ୍ତ ସ୍ୱାଧୀନତାକୁ ନେଇ କବି 'ଗ୍ରସ୍ତ ସମୟ' 'ସାହାଡ଼ା ସୁନ୍ଦରୀ' 'ଅସ୍ତକଳ୍ପର ଏଲିଜି' 'ଶବରୀ' 'ମହାମେଘ' 'ଭଗ୍ନସ୍ତୂପ ଗୋଧୂଳି' 'ନିମିଷେ ଅନ୍ଧାର' 'ନିଯୁତ ବସୁଧା' ଆଦି କବିତା ସଙ୍କଳନ ସୃଷ୍ଟି କରିଛନ୍ତି । କବି ସୌରୀନ୍ଦ୍ର ବାରିକ ମହାଭାରତର ମିଥ୍‌କୁ ଅବଲମ୍ବନ କରି 'ଉପଭାରତ' 'ଅନୁଭାରତ' 'ଆକାଶପରି ନିବିଡ଼' 'ସାମାନ୍ୟ କଥନ' ଆଦି କବିତା ସଙ୍କଳନ ସୃଷ୍ଟି କରିଛନ୍ତି । କବି ବଂଶୀଧର ଷଡ଼ଙ୍ଗୀ 'ସମସ୍ତ ଅସମୟ' 'ଛବିର ଅଶ୍ୱାରୋହୀ' କବିତା ସଙ୍କଳନରେ ନିଜର ଦୃଷ୍ଟିଭଙ୍ଗୀ ପ୍ରକାଶ କରିଛନ୍ତି । କବି ସରୋଜ ରଞ୍ଜନ ମହାନ୍ତିଙ୍କ 'କାଗଜଡଙ୍ଗାର ଶୋକ' 'ବାଇଗେଣୀ ଋତୁ' ଆଦି ଦୁଇଟି ସାର୍ଥକ କବିତା ସଙ୍କଳନ । କବି ଦିଲ୍ଲୀପ ଦାସଙ୍କ 'ପକ୍ଷୀଟି ବସିଛି ଡାଳରେ' ହରପ୍ରସାଦ ପରିଛା ପଟ୍ଟନାୟକଙ୍କ 'ଏକା ଏକା' ନିତ୍ୟାନନ୍ଦ ସତପଥୀଙ୍କର 'ନାବିକର ନିଃଶ୍ୱାସ' କବି ଗୋପାଳକୃଷ୍ଣ ରଥଙ୍କ 'ଏକଲ୍ଲ ମଣିଷ' ହୃଷିକେଶ ମଲ୍ଲିକଙ୍କ 'ଆଷାଢ଼ର ଛନ୍ଦ' 'ଫୁଲର ଫଗୁଣ' 'ଧାନ ସାଉଁଟା ଝିଅ' ସୌଭାଗ୍ୟବନ୍ତ ମହାରଣାଙ୍କ 'ଶାଗୁଆ କ୍ଷେତର ସହର' ବିବେକ ଜେନାଙ୍କ 'ପବନର ଘର' ଆଦି ଗୋଟିଏ ଗୋଟିଏ ସଫଳ କବିତା ସଙ୍କଳନ ।

କବି ପ୍ରସନ୍ନ ପାଟ୍ଟଶାଣୀ ରୋମାଣ୍ଟିକ୍ ଓ ବାସ୍ତବବାଦୀ ଧାରାରେ ଅନେକ କବିତା ସୃଷ୍ଟି କରିଛନ୍ତି । କବିଙ୍କ 'ସାପ ଗାତରେ ସକାଳ' 'ବର୍ଷା' 'ରକ୍ତପଥ' 'ଖୋର୍ଦ୍ଧାର କବିତା ମୁଁ ପଢ଼େ' 'ଆକାଶର କାଠଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କ ଜେରା' 'ଦେଖାହେଲେ କହିବି ମୋକଥା' ତାଙ୍କ ପ୍ରତିଭାର ପରିଚୟ ଦେଇଥାଏ । କବି ନୃସିଂହ କୁମାର ରଥଙ୍କ 'ଲୁଲୁପାଇଁ ନାନାବାୟା ଗୀତ' ଓ ନୃସିଂହ ତ୍ରିପାଠୀଙ୍କ 'ପଦ' କବିତା ସଙ୍କଳନ ଦୁଇଟି ସାବଲୀଳ ଓ ସହଜ କବିତା ରଚନାର ସାନ୍ତ୍ରିକାରି ପଦକ୍ଷେପ ।

କବି ସଦାଶିବ ଦାଶ ବିପୁଳ କାବ୍ୟ ସମ୍ଭାବନା ନେଇ ଓଡ଼ିଆ କବିତାରେ ଆତ୍ମପ୍ରକାଶ କରି ଅନେକ କବିତା ରଚନା କରିଛନ୍ତି । କବିଙ୍କ 'ଅରୁ ଚନ୍ଦ୍ରବିନ୍ଦୁ' 'ଅକ୍ଷାଂଶ ଦ୍ରାଘିମା' 'ନିତ୍ୟ ପଦ୍ମତୋଳା' 'ଅବଧୂତକାନ୍ତି' 'କାଳ ନିରବଧି' 'ଷଷ୍ଠ ଚେତନା' କବିତା ସଙ୍କଳନ ଆଧୁନିକ ମଣିଷର ମାନଚିତ୍ର ଆଙ୍କିବାରେ ସମର୍ଥ ହୋଇଛି । କବି ଆଶୁତୋଷ ପରିଡ଼ା 'ଇପ୍ସିତ ବୋଧ' ଓ 'ଚଣ୍ଡାଳ' କବିତା ସଙ୍କଳନରେ ଆତ୍ମପ୍ରକାଶ କରି ନିଜକୁ କବିତା କ୍ଷେତ୍ରରେ ପ୍ରତିଷ୍ଠିତ କରିଛନ୍ତି । କବି ନୀଳାଦ୍ରି ଭୂଷଣ ହରିଚନ୍ଦନ ସ୍ୱାଧୀନତ୍ୱର ସମସ୍ୟରେ ମଣିଷର ମନସ୍ତତ୍ତ୍ୱକୁ ସାର୍ଥକ ରୂପ ପ୍ରଦାନ କରିବାରେ ଜଣେ ଶକ୍ତିଶାଳୀ କବି ଭାବରେ ଆତ୍ମପ୍ରକାଶ କରନ୍ତି । କବିଙ୍କ 'ପାହାଚ' 'ନୀଳଚନ୍ଦନର ଭୁଲ୍ ଠିକଣା' 'ସମ୍ମୋହନସ୍ଥାନ' 'ଅର୍ଜୁନକ ବୃହନ୍ନଳା' 'ନିର୍ବୋଧ ଲୋକର ପୃଥିବୀ' 'ସମୁଦ୍ର ନିରୁତ୍ତର' ଆଦି ମଣିଷର ମନ ଓ ଠିକଣା ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି । କବି ନିତ୍ୟାନନ୍ଦ ନାୟକଙ୍କ 'ହସ୍ତ ପଦ୍ମାସନ' କବି ପ୍ରମୋଦ କୁମାର ମହାନ୍ତିଙ୍କ 'ନମଣଃ' କବି ବ୍ରହ୍ମାନନ୍ଦ ଦାସଙ୍କ 'ଜୀବନ ଯେମିତି' 'ଝର୍କା ବାହାରେ' 'ତାଳଗଛ' 'ଅନ୍ତରଙ୍ଗ ପୃଥିବୀ' ଆଦି ମଣିଷର ରୁଚିବୋଧ ଓ ବିଶ୍ୱାସବୋଧ ପ୍ରକାଶ କରିବାରେ ସମର୍ଥ ହୋଇଛନ୍ତି ।

କବି ମନୋରମା ମହାପାତ୍ରଙ୍କ 'ଅର୍ଦ୍ଧନାରୀଶ୍ୱର' କବି ମନୋରମା ମହାପାତ୍ର ବିଶ୍ୱାଳଙ୍କ 'ଏକଲା ନଈର ଗୀତ' କବି ଗିରିବାଳା ମହାନ୍ତିଙ୍କର 'ସ୍ତ୍ରୀଲୋକ' କବି ଅପର୍ଣ୍ଣା ମହାନ୍ତିଙ୍କର 'ଅସତୀ' 'ଅବ୍ୟକ୍ତ ଆତ୍ମୀୟତା' କବି ଅନ୍ନପୂର୍ଣ୍ଣା ମହାନ୍ତିଙ୍କର 'ପାଦଟୀଣ' 'ନୀଳନଦୀ' କବି ଅନିମା ଦାଶଙ୍କର 'ସମୁଦ୍ରର ମନ' 'ଅସପୂର୍ଣ୍ଣ ପ୍ରତିବିମ୍ବ' ଆଦି ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି । ସାମ୍ପ୍ରତିକ କବିତାରେ ଅନେକ ତରୁଣ ଦାୟିତ୍ୱପୂର୍ଣ୍ଣ କବିତା ରଚନା କରି ଓଡ଼ିଆ କବିତାରେ ନିଜକୁ ଜାହିର କରିଛନ୍ତି । କବି ଫନୀ ମହାନ୍ତିଙ୍କ 'ଅହଲ୍ୟା' 'ମାନଚିତ୍ର' ଆଦି ଦୁଇଟି ବାସ୍ତବବାଦୀ କବିତା ସଙ୍କଳନ ।

କବି ରମେଶ ପ୍ରତାପଙ୍କ 'ପକ୍ଷୀଫେରାର' ତୀର୍ଥାନନ୍ଦ ମିଶ୍ରଙ୍କ 'ପକ୍ଷୀଟିଏ ହେଲେ' ଅଜୟ ପ୍ରଧାନଙ୍କ 'ଭୂମି ପର୍ବ' ପିତାମ୍ବର ତରେଇଙ୍କ 'ଆଦି ପର୍ବ' 'ବୃନ୍ଦେ ଲୁହ ପିଠିରେ ସମୁଦ୍ର' 'ଜଳ ନିଃଶ୍ୱାସରେ ଜଳେ ହିଁ ଜଳୁଛୁ' ଜୟନ୍ତ ମହାପାତ୍ରଙ୍କ 'ବଳି' ସାମ୍ପ୍ରତିକ ସମସ୍ତ ଅନ୍ୱେଷା ଓ ଜୀବନବୋଧ ପରିପ୍ରେକ୍ଷୀରେ ସାର୍ଥକ ପରିଭାଷା ପ୍ରଦାନ କରି ଆଆନ୍ତି ।

ସାମ୍ପ୍ରତିକ ସମୟରେ ଅନେକ ଯୁବ କବି ପ୍ରତିଭା କାବ୍ୟ ରଚନା କରୁଥିବାର ଦେଖାଯିବ । ଏମାନଙ୍କ କବିତାର ଆଭିମୁଖ୍ୟ ପତ୍ର ପତ୍ରିକାରେ ପ୍ରକାଶିତ ହେଉଥିବା କବିତା ମାନଙ୍କରେ ଲକ୍ଷ୍ୟ କରାଯାଇ ପାରିବ । ଗଜାନନ ମିଶ୍ର, ସୁଚେତା ମିଶ୍ର, ସୁଶୀଲ କୁମାର ପୃଷ୍ଟି, ପ୍ରତିଭା ପରିଡ଼ା, ମନୋଜ କୁମାର ମେହେର, ଶ୍ରୀହରି ଧଳ, ଅଜିତ ଦାସ ମହାପାତ୍ର, ସୂର୍ଯ୍ୟ ମିଶ୍ର, ରଞ୍ଜିତା ନାୟକ, ପ୍ରଦୀପ ବିଶ୍ୱାଳ, ଶଶାଙ୍କ ଚୂଡ଼ାମଣି, କ୍ଷୀରୋଦ ପରିଡ଼ା, ଶ୍ରୀଦେବ, ଭଗବାନ ଜୟସିଂ, ବାସୁଦେବ ସୁନାଣୀ, ମଧୁସୂଦନ ପତି, ସୁବ୍ରତ ଦାଶ ପ୍ରମୁଖ ଅନ୍ୟତମ ।

ବହୁ ପ୍ରତିଷ୍ଠିତ ଓ ବଜ୍ଞପିତ କବିମାନେ ସେମାନଙ୍କର କାବ୍ୟ ଆଭିମୁଖ୍ୟକୁ ବଳବତ୍ତର ରଖି ଆଜି ମଧ୍ୟ କବିତା ରଚନା କରୁଛନ୍ତି । କବି ମମତା ଦାଶ, ବନଜଦେବୀ, ସରୋଜିନୀ ଷଡ଼ଙ୍ଗୀ, ସଙ୍ଘମିତ୍ରା ମିଶ୍ର, ନୀଳମଣି ପରିଡ଼ା, ଧୂର୍ଜ ଖୁଣ୍ଟିଆ, ପ୍ରସନ୍ନ କୁମାର ମହାନ୍ତି, ଦୁର୍ଗାଚରଣ କୁଅଁର, ଜୟକୃଷ୍ଣ ସାମଲ, ନିରଞ୍ଜନ ପାଢ଼ୀ, ଦୀପକ କୁମାର ମିଶ୍ର (ଅନଘ) ପ୍ରଭାକର ଶତପଥୀ ପ୍ରମୁଖ ଓଡ଼ିଆ କବିତାକୁ ନିର୍ଦ୍ଦିଷ୍ଟ ଉଚ୍ଚତା ପ୍ରଦାନ କରିବାରେ ସେମାନଙ୍କର କାବ୍ୟିକ ପ୍ରୟାସକୁ ଅବ୍ୟାହତ ରଖିଛନ୍ତି ।

ସାମ୍ପ୍ରତିକ ଓଡ଼ିଆ କବିତା ବହୁ ଦୃଷ୍ଟିରୁ ପରିପୂର୍ଣ୍ଣ । କବିତା ପରି ମନୋରମ ବିଭାଗରେ ସ୍ରଷ୍ଟା ମାନଙ୍କ ସଂଖ୍ୟା ଅଧିକ । ସମସ୍ତଙ୍କୁ କ୍ଷୁଦ୍ର ପରିସର ଭିତରେ ସ୍ମରଣ କରିବା ସମ୍ଭବ ହୋଇ ପାରନାହିଁ । ଓଡ଼ିଆ କବିତାର ଭବିଷ୍ୟତ ଯେ ଉଜ୍ଜ୍ୱଳ ଏକଥା ବିନା ଦ୍ୱିଧାରେ କୁହାଯାଇ ପାରେ ।



# ନାଟକ

ନାଟକ ସାହିତ୍ୟର ଅନ୍ୟତମ ମନୋରମ ବିଭାଗ । ଏହି ସୃଜନଶୀଳ ବିଭାଗଟି ଉଭୟ ପାଠ୍ୟ ଓ ଦୃଶ୍ୟ ହୋଇଥିବାରୁ ଏହାର ଗୁରୁତ୍ୱ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଠାରୁ ଅଧିକ । ନାଟକ ଏକ ମିଶ୍ର କଳା । ଏଥିରେ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଆତ୍ମପ୍ରକାଶ କରିଥାଏ । କାହାଣୀ, ସଙ୍ଗୀତ, ଅଭିନୟ, ନୃତ୍ୟକୁ ପାଥେୟ କରି ନାଟକ ପରିପୁଷ୍ଟ ହୋଇଥାଏ । ଅତୀତରେ ସାଧାରଣ ମଣିଷର ମନୋରଞ୍ଜନ ପାଇଁ ବିଭିନ୍ନ ପ୍ରକାର ଲୋକ ନାଟକ ଥିଲା ଏକମାତ୍ର ମାଧ୍ୟମ । ଦାସକାଠିଆ, ପାଲା, ଦଣ୍ଡନୃତ୍ୟ, ବାଘନାଚ, କେଳାକେଳୁଣୀ ନାଚ ମାଧ୍ୟମରେ ଦର୍ଶକ ତା'ର ତୃଷା-ମୋଚନ କରୁଥିଲା । କ୍ରମଶଃ ଏହିପରି ଏକ ଗୀତ ଓ ସଙ୍ଗୀତର ଅତୀତ ପୃଷ୍ଠଭୂମିରୁ ନାଟକ ସୃଷ୍ଟି ଆରମ୍ଭ ହୋଇଛି । ମଣିଷ ଦିନଯାକ ପରିଶ୍ରମ କରେ, ସନ୍ଧ୍ୟାହେଲେ ବିଶ୍ରାମ କରିବାକୁ ଯାଇ ଯାତ୍ରା ଦେଖେ । ଏହି ଯାତ୍ରାରେ ଗୀତ ଓ ସଂଳାପ ମାଧ୍ୟମରେ ତା'ର ପରି କେତୋଟି ମଣିଷ ମଞ୍ଚରେ ଠିଆହୋଇ ଅଭିନୟ ମାଧ୍ୟମରେ ଦୁନିଆର ପ୍ରାତ୍ୟହିକ ସମସ୍ୟା ବା ଈଶ୍ୱର ଈଶ୍ୱରୀଙ୍କ ଅପ୍ରାକୃତିକ ଲୀଳାର କାହାଣୀ ଅଭିନୟ ମାଧ୍ୟମରେ ପରିବେଷଣ କରିଥାଆନ୍ତି । କୁହାଯାଇ ଥାଏ 'କାବ୍ୟେଷୁ ନାଟକଂ ରମ୍ୟଂ', ଅର୍ଥାତ୍ କାବ୍ୟମାନଙ୍କ ଭିତରେ ନାଟକ ହେଉଛି ସୁନ୍ଦର ଓ ଭାବପ୍ରଦ ବର୍ଣ୍ଣନାଧର୍ମୀ କଳା । ନାଟକକୁ ଦୃଶ୍ୟ କାବ୍ୟ ଭାବରେ ଗ୍ରହଣ କରାଯାଇଥାଏ । ନାଟକ ଏପରି ଏକ ସର୍ଜନା ଯାହାକୁ ଦେଖିହୁଏ, ଦେଖେଇ ହୁଏ । ଦୁଃଖାର୍ତ୍ତ ଶ୍ରମାର୍ତ୍ତ ଶୋକାର୍ତ୍ତ ମଣିଷମାନଙ୍କର ଚିତ୍ତବିନୋଦନର ମାଧ୍ୟମ ରୂପେ ନାନାଦି କାଳରୁ ନାଟକ ବ୍ୟବହୃତ ହୋଇ ଆସୁଛି । ମଧୁରମୟ ଈଶ୍ୱରଙ୍କ ସୃଷ୍ଟିକୁ ଏକ ବୃହତ ନାଟକ ସହ ତୁଳନା କରାଯାଏ । ସଂସାରରେ ସବୁ ମଣିଷ ନିଜ ନିଜ ଅଭିନୟ ସାରି ଚାଲିଗଲା ପରି ନାଟକର ବିଭିନ୍ନ ଚରିତ୍ର ମଞ୍ଚକୁ ଆସି ନିଜ ନିଜ ଅଭିନୟ ସାରି ଚାଲିଯାଆନ୍ତି । ନାଟକ ଅଗଣିତ ମଣିଷମାନଙ୍କର ମନୋରଞ୍ଜନର ପ୍ରଧାନ ସାମଗ୍ରୀ । ଗାଁରୁ ନଗରଯାଏ ସମସ୍ତ ମଣିଷ ନାଟକ ଭିତରେ ନିଜ ଜୀବନର

ଚଣକୁ ଖୋଜି ପାଇ ଥାଆନ୍ତି । ନାଟକ ଗୋଟିଏ ଜାତିର କଳା ଓ ସଂସ୍କୃତିର ଆତ୍ମା ରୂପେ ବ୍ୟବହୃତ ହୋଇଥାଏ ।

## ନାଟକର ସଂଜ୍ଞା, ସ୍ୱରୂପ—

ସଂସ୍କୃତ ସାହିତ୍ୟରେ ନାଟକ ଏକ ସ୍ୱତନ୍ତ୍ର ବିଭାଗ ରୂପେ ଗୃହୀତ ହୋଇ ନାହିଁ । ମହାକାବ୍ୟ, କାବ୍ୟ, ମୁକ୍ତକ, କଥା, ଆଖ୍ୟାୟିକା ଓ ଚମ୍ପୂ ଇତ୍ୟାଦି ସମସ୍ତ କାବ୍ୟରେ ହିଁ ଅନ୍ତର୍ଭୁକ୍ତ । କାବ୍ୟ ଦ୍ୱିବିଧ । ଶ୍ରବ୍ୟ ଏବଂ ଦୃଶ୍ୟ । କିନ୍ତୁ କାବ୍ୟ କାହାକୁ କହନ୍ତି ? ଭରତ, ଆରିଷ୍ଟୋଟଲ ପ୍ରମୁଖ ପ୍ରାଚ୍ୟ ତଥା ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ କାବ୍ୟ ହେଉଛି ଜଗତ୍ ଓ ଜୀବନର ଅନୁକୃତି । * ନାଟକକୁ ଦୃଶ୍ୟ କାବ୍ୟ କହିବା ମୂଳରେ ଏହାର ସମାଜ ଚେତନା ଓ ରସବୋଧକୁ ଗ୍ରହଣ କରାଯାଇ ଥାଏ । 'କାବ୍ୟେଷୁ ନାଟକଂ ରମ୍ୟ'—ଉକ୍ତି ପ୍ରମାଣ କରିଥାଏ ଯେ ନାଟକ କାବ୍ୟ-ମାନଙ୍କ ଭିତରେ ମନୋରମ ମନୋଜ୍ଞ କାବ୍ୟ । ପ୍ରାଚ୍ୟ ନାଟ୍ୟଦର୍ଶନରେ ନାଟକକୁ କାବ୍ୟର ମାନ୍ୟତା ଦିଆଯାଇଛି । ନାଟକ ଉଭୟ ଦୃଶ୍ୟ ଓ ଶ୍ରବ୍ୟ ହୋଇଥିବାରୁ ଏହାର ଆବଶ୍ୟକତା ଓ ବ୍ୟାପକତା ଅଧିକ । ଚଣନାଟ୍ୟ ମାଧ୍ୟମରେ ଯେ କୌଣସି ରସ ଆସ୍ୱାଦନ ସହଜସାଧ୍ୟ ହୋଇଥାଏ । ଅଭିନବ ଭାରତୀ କହିଛନ୍ତି—

'ଚଣ ନାଟ୍ୟେ ହ୍ୟୁଚିତ ଭାଷାବୃତ୍ତି,କାକୁ
ନେପଥ୍ୟ ପ୍ରଭୃତିଭିଃ ପୂର୍ଯ୍ୟତେ ରସବତ୍ତ୍ୱ—'ଅଭିନବ ଭାରତୀ ।

ଦେଖିବାର ଆକର୍ଷଣରେ ନାଟ୍ୟରସ ସହଜରେ ହୃଦୟରେ ପ୍ରବେଶ କରିଥାଏ ଓ ସାଧାରଣ ଦର୍ଶକ ଏଥିରୁ ଆନନ୍ଦ ଉପଭୋଗ କରିଥାଏ ।

ନାଟକ ଶବ୍ଦଟି ପ୍ରାଚୀନ 'ନଟ୍' ଧାତୁରୁ ଉତ୍ପନ୍ନ । ଏହି ନଟ ଧାତୁ ନୃତ୍ୟ/ ନାଚ ଅର୍ଥରେ ବ୍ୟବହୃତ ହୋଇଥାଏ । 'ନଟ' ଚରିତ୍ର ବହୁଳ ପ୍ରୟୋଗ ପ୍ରଥମେ ପ୍ରାଚ୍ୟ ନାଟକରେ ଦେଖା ଯାଉଥିଲା । ନଟନଟୀମାନେ ନାଟକର ପ୍ରାରମ୍ଭରେ ବା ମଝିରେ ଆସି କାହାଣୀର ବର୍ଣ୍ଣନା କରିବା ସହ ହାସ୍ୟରସ ସୃଷ୍ଟି କରୁଥିଲେ । ନଟମାନେ ଥିଲେ ନାଟକର ଅନ୍ୟତମ ଆକର୍ଷଣ । ଏହି ନାଟମାନଙ୍କର ଲୋକ-ପ୍ରିୟତାରୁ ପରବର୍ତ୍ତୀ ସମୟରେ ନାଟକ ଶବ୍ଦର ଉତ୍ପତ୍ତିକୁ ଅସ୍ୱୀକାର କରିହେବ ନାହିଁ । ପ୍ରାଚ୍ୟ ପଣ୍ଡିତମାନେ ନାଟକକୁ ବିଭିନ୍ନ ଅର୍ଥରେ ବ୍ୟାଖ୍ୟା କରିଛନ୍ତି । ନାଟ୍ୟ ଶାସ୍ତ୍ରର ପ୍ରଣେତା 'ଭରତ ମୁନି'ଙ୍କ ଠାରୁ ଆରମ୍ଭ କରି ବିଶ୍ୱନାଥ କବିରାଜ ଓ ମମ୍ମଟ ଭଟ୍ଟ ପ୍ରମୁଖ ନାଟକ ଶବ୍ଦକୁ ବିଶ୍ଳେଷଣ କରିଛନ୍ତି ।

---

* ନାଟକ ବିଚାର—ସର୍ବେଶ୍ୱର ଦାଶ, ପୃ-୧ ।

ପାଶ୍ଚାତ୍ୟ ନାଟ୍ୟ ସମାଲୋଚକମାନେ ନାଟକ (Drama) ଶବ୍ଦକୁ ବିସ୍ତୃତ ଭାବରେ ବ୍ୟାଖ୍ୟା କରିବାର ପ୍ରୟାସ କରିଛନ୍ତି । ସିସିରୋ (ciciro) ନାଟକ ସମ୍ପର୍କରେ କହିଛନ୍ତି—"Drama is the copy of life, a mirror of clestom and reflection of truth." ନାଟକକୁ ଜୀବନର ଅନୁଷ୍ୟ, ରୀତିନୀତିର ଦର୍ପଣ ଏବଂ ସତ୍ୟର ପ୍ରତିଫଳନ ଭାବରେ ଗ୍ରହଣ କରାଯାଇଥାଏ । ଆରିଷ୍ଟଟଲ ନାଟକର ସଂଜ୍ଞା ଦେଇ କହନ୍ତି—'The drama was a longer and higher form of Art' ନାଟକ ହେଉଛି କଳାର ଉଚ୍ଚତମ ସୋପାନ । କଳାର ଚରମ ଉତ୍କର୍ଷତା ନାଟକ ମାଧ୍ୟମରେ ପ୍ରକାଶ ପାଇଥାଏ । ଏଲିଜାବେଥ୍ ଡ୍ରୁ ଏ ସମ୍ପର୍କରେ କହନ୍ତି—'Drama is a creation and representation of life in terms of theatre.' ଜୀବନର ସୃଜନଶୀଳ ପ୍ରତିଫଳନକୁ ମଞ୍ଚ ମାଧ୍ୟମରେ ପ୍ରକାଶ କରିବାର ମାଧ୍ୟମ ହେଉଛି ନାଟକ । ନାଟକ ଜୀବନ ଓ ଜଗତକୁ ଗୋଟିଏ ଭାବ ବନ୍ଧନରେ ମିଶାଇ ଦେଇଥାଏ । ଗୋଟିଏ ଜାତିର କଳା, ସାହିତ୍ୟ, ସଂସ୍କୃତି ଓ ଜୀବନ ଧାରଣକୁ ପ୍ରକାଶ କରିଥାଏ । କୁହାଯାଇଥାଏ ଯେଉଁ ଜାତିର କଳା ଯେତେ ଉନ୍ନତ ସେ ଜାତିର ଜୀବନ ଧାରଣ ମାନ ସେତେ ପ୍ରାଚୀନ, ସଂଗତ ଓ ବୃହତ । ନାଟକ ବାସ୍ତବିକ୍ ଗୋଟାଏ ଜାତିର ଜୀବନର ପ୍ରତିନିଧିତ୍ୱ କରିଥାଏ ।

ଦୁଃଖାର୍ତ୍ତ ଶ୍ରମାର୍ତ୍ତ ଓ ଶୋକାର୍ତ୍ତମାନଙ୍କର ଚିତ୍ତ ବିନୋଦନର ମାଧ୍ୟମ ରୂପେ ନାଟକ ବ୍ୟବହୃତ ହୋଇଥାଏ । ମନୋରଞ୍ଜନ ନାଟକର ମୁଖ୍ୟ ଉଦ୍ଦେଶ୍ୟ । ଅଭିନୟ ମାଧ୍ୟମରେ ମଣିଷର ସମସ୍ୟା ଓ ମାନସିକ ସରହଦକୁ ଛୁଇଁ ଯିବାର ବିଳାସ ଯାହା ଏଥିରେ ଦେଖାଯାଏ । ପାଶ୍ଚାତ୍ୟ ନାଟ୍ୟ ସମାଲୋଚକ ଏଲାରଡାଇସ ତାଙ୍କର ସମାଲୋଚନା ଗ୍ରନ୍ଥ 'The Theory of Drama' ଗ୍ରନ୍ଥରେ କହିଛନ୍ତି— 'Drama is the art of expressing ideas about life in such a manner as to render the express on capable of interpretation by altors and likely to interest an audience assembled to hear the words and witness the action.'

ପାଶ୍ଚାତ୍ୟ ନାଟ୍ୟ ସମୀକ୍ଷକ ଆରିଷ୍ଟଟଲ ହୁଅନ୍ତୁ ବା ପ୍ରାଚ୍ୟ ନାଟ୍ୟ ପଣ୍ଡିତ ପଞ୍ଚମ ବେଦର ରଚୟିତା ଭରତମୁନି ହୁଅନ୍ତୁ ସମସ୍ତେ ନାଟକରେ ଅଭିନୟକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଏକ କଥାବସ୍ତୁକୁ ଅଭିନୟ ମାଧ୍ୟମରେ ଉପସ୍ଥାପନା କରିବାକୁ ନାଟକର ମର୍ଯ୍ୟାଦା ଦିଆଯାଇଛି ।

ନାଟକ ସମାଜରେ ବିଭିନ୍ନ ସମୟରେ ଘଟୁଥିବା ଘଟଣାମାନଙ୍କୁ ଗ୍ରହଣ କରିଥାଏ । 'ମଣିଷ' ନାଟକର ପ୍ରଧାନ ଉପାଦାନ । ସମାଜ ବୃତ୍ତର ମଣିଷମାନଙ୍କର କାହାଣୀକୁ ଏହା ଗ୍ରହଣ କରିଥାଏ । ନାଟକ ମଣିଷର ମଣିଷଙ୍କ ପାଇଁ ଏବଂ ମଣିଷଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ । ମନୋରଞ୍ଜନ ଯୋଗାଇ ଦେବାର ଏକ ପ୍ରାଥମିକ ପରମ୍ପରା ନାଟକ ମାଧ୍ୟମରେ ଦେଖାଯାଏ । ଦୁଃଖାର୍ତ୍ତ ଶ୍ରମାର୍ତ୍ତ ଶୋକାର୍ତ୍ତମାନଙ୍କର ଚିତ୍ତ ବିନୋଦନର ମାଧ୍ୟମ ରୂପେ ଅନାଦି କାଳରୁ ନାଟକ ଜନକୁ ପ୍ରତିଷ୍ଠା ଯୋଗାଇ ଆସିଛି ।

ମନୋରଞ୍ଜନ ଯୋଗାଇ ଦେବା ନାଟକର ପ୍ରଧାନ ଲକ୍ଷ୍ୟ; କିନ୍ତୁ ମନୋରଞ୍ଜନ ସହିତ ଏଥିରେ ନୀତିଶିକ୍ଷା ସମାନ୍ତରାଳ ଭାବରେ ପ୍ରକାଶ ପାଇଥାଏ । (to teach and delight) । ପ୍ରାଚ୍ୟ ନାଟ୍ୟବିତ୍ମାନେ ନାଟକ ରଚନାରେ ଏହି ଦୁଇଟି ସ୍ୱରୂପକୁ ଭଲ ଭାବରେ ଗ୍ରହଣ କରିଛନ୍ତି ଓ ପ୍ରୟୋଗ ମଧ୍ୟ କରିଛନ୍ତି । ନାଟକରେ ବିଭିନ୍ନ ଚରିତ୍ରର ଅବତାରଣା କରାଯାଇଥାଏ । ଖଳ ଚରିତ୍ରମାନେ ନାଟକରେ ବିଭିନ୍ନ ମନ୍ଦ କାର୍ଯ୍ୟ ରଚନା କରିଥାଆନ୍ତି । କିନ୍ତୁ ନାଟକ ଶେଷରେ ନାଟ୍ୟକାର ସେସବୁ ଚରିତ୍ରକୁ ବିଦାୟ ଦେଇଥାଏ । Benjohnsonଙ୍କ ମତରେ 'To delight and teach is the aim of drama.' ଏହି ଉକ୍ତି ସହିତ ଏକମତ ହୋଇ Dryden ପ୍ରକାଶ କରିଛନ୍ତି—'To Instruct delightfully is the aim of all Poetry.' ପାଶ୍ଚାତ୍ୟ ନାଟକର ମନୋରଞ୍ଜନ ଓ ନୀତି ଶିକ୍ଷାକୁ ପ୍ରଧାନ ବୈଶିଷ୍ଟ୍ୟ ଭାବରେ ଗ୍ରହଣ କରି ନିଆଯାଇଛି । ଆମ ନାଟକମାନଙ୍କରେ ମଧ୍ୟ ଏହି ଭାବଧାରାର ପରିପ୍ରକାଶ ଘଟିଛି । ଭାରତୀୟ ସଂସ୍କୃତ ନାଟକରେ କିନ୍ତୁ ଧାର୍ମିକ ଆବେଦନକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା ।

ଭରତ ମୁନି ନାଟ୍ୟ ଶାସ୍ତ୍ରରେ କହିଛନ୍ତି—

"ଧର୍ମୋ ଧର୍ମ ପ୍ରବୃତ୍ତାନାଂ କାମଃ କାମାର୍ଥ ସେବିନାମ
ନିଗ୍ରହୋ ଦୁର୍ବିନୀତାନାଂ ମତ୍ତାନାଂ ଦମନ କ୍ରିୟା ।"

ଏହା ଧାର୍ମିକମାନଙ୍କୁ ଧର୍ମ ବିଷୟରେ ଦୁର୍ବୃତ୍ତମାନଙ୍କୁ କାମ ଶିକ୍ଷା ଦିଏ, ଅତ୍ୟାଚାରୀମାନଙ୍କୁ ଦମନ କରିଥାଏ । ନାଟକ ଶ୍ରବଣ ଓ ଦର୍ଶନରେ ବେଦ ଅଧ୍ୟୟନର ଫଳପ୍ରାପ୍ତି ହୋଇଥାଏ । ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁଃବର୍ଗ ଫଳପ୍ରାପ୍ତି ନାଟକ ମାଧ୍ୟମରେ ସମ୍ଭବ ହୋଇଥାଏ । ଏହା ଯୋଗୀକୁ ବିକାର, କାମୁକ ଜନକୁ ରତିରସ ଉତ୍ସାହ, ଭୀରୁ ଜନକୁ ସାହସ ଓ ଦୁର୍ବଳଠାରେ ଶକ୍ତି ସଞ୍ଚାର କରିବାରେ ସାହାଯ୍ୟ କରିଥାଏ ।

ନାଟକର ସ୍ୱରୂପ ବିଷୟରେ ଏହାର ସାମାଜିକ ଆବେଦନକୁ ଉପେକ୍ଷା କରି ହେବନାହିଁ । ନାଟକରେ ସମାଜର ଯେ କୌଣସି ଘଟଣାକୁ ଗ୍ରହଣ କରାଯାଇଥାଏ । ସେଇଥିପାଇଁ ନାଟକକୁ ସମାଜ ଦର୍ପଣ ଭାବରେ ଗ୍ରହଣ କରାଯାଇଥାଏ । ମଣିଷ ସମାଜରେ ଈଶ୍ୱର ବିଶ୍ୱାସ, କଳା ସଂସ୍କୃତିର ପ୍ରକାଶ ନାଟକ ମାଧ୍ୟମରେ ଘଟିଥାଏ ।

ସାହିତ୍ୟର ଅନ୍ୟ ଯେ କୌଣସି ବିଭାଗଠାରୁ ନାଟକ ପୃଥକ । ଏହାକୁ ଅଭିନୟ ମାଧ୍ୟମରେ ପରିବେଷଣ କରାଯାଉଥିବାରୁ ଏହାର ଆବେଦନ ଅଧିକ ତୀବ୍ର । କୌଣସି ସାହିତ୍ୟ ମଣିଷକୁ ଏତେ ଶୀଘ୍ର ଆନନ୍ଦ ଦେଇ ପାରନ୍ତି ନାହିଁ କି ମଣିଷର ସମସ୍ୟାକୁ ସେହି ମଣିଷମାନଙ୍କ ଆଗରେ ପ୍ରକାଶ କରନ୍ତି ନାହିଁ । ନାଟକ କିନ୍ତୁ ନାଟ୍ୟକାର ରଚନା କରି ସାରିବା ପରେ ଅଭିନେତା ଓ ନିର୍ଦ୍ଦେଶକ ତା'ର ଦାୟିତ୍ୱ ନେଇ ଥାଆନ୍ତି । ମଞ୍ଚରେ ଅଭିନୟ ସମୟରେ କୌଣସି ଚରିତ୍ର ଭୁଲ୍ ଅଭିନୟ କଲେ ତାକୁ ସୁଧାରିବାର କୌଣସି ଉପାୟ ନ ଥାଏ । ଏଥିପାଇଁ ଚରିତ୍ରମାନେ ପୂର୍ବ ପ୍ରସ୍ତୁତି ଅନୁସାରେ ମାପିଚୁପି ନିଜକୁ ପ୍ରକାଶ କରି ଥାଆନ୍ତି । ନାଟକ ଏକ ମିଶ୍ରକଳା । ଏଥିରେ ସମାଜ ଓ ମଣିଷର ସବୁ ସ୍ତରର ଅନୁଭବ ପ୍ରକାଶ ପାଇଥାଏ ।

## ନାଟକର ଗଠନ ପ୍ରକ୍ରିୟା—

ଏକ ପୂର୍ଣ୍ଣାଙ୍ଗ ନାଟକ ରଚନା ପାଇଁ ଅନେକ ଉପାଦାନର ଆବଶ୍ୟକତା ରହିଛି । କଳା ଓ ସାହିତ୍ୟର ବିଭିନ୍ନ ବିଭାଗ ଦ୍ୱାରା ସମୃଦ୍ଧ ହୋଇ ନାଟକ ନିଜକୁ ପ୍ରକାଶ କରିଥାଏ । ନାଟକକୁ ମିଶ୍ରକଳା ବୋଲି କୁହାଯାଇଥାଏ । ଏଥିରେ କବିତା, ଗଳ୍ପ, ଉପନ୍ୟାସ, ଲୋକନୃତ୍ୟ, ଶାସ୍ତ୍ରୀୟ ସଙ୍ଗୀତ, ସଂସ୍କୃତି, ପରମ୍ପରା ଏବଂ ମୌଖିକ ସାହିତ୍ୟର ପ୍ରୟୋଗ ଲକ୍ଷ୍ୟ କରାଯାଏ । ଏହା ଉଭୟେ ଶ୍ରବ୍ୟ ଓ ଦୃଶ୍ୟ । ପାଠକ ଓ ଶ୍ରୋତାଙ୍କୁ ଆକୃଷ୍ଟ କରିବାପାଇଁ ଏହା ସବୁଠାରୁ ଅଧିକ ଉପଯୋଗୀ ମାଧ୍ୟମ । ଦର୍ଶକ ଏହାର ବିଭିନ୍ନ ଅଂଶକୁ ଅଭିନୟ ମାଧ୍ୟମରେ ଉପଭୋଗ କରିଥାଆନ୍ତି । ଚରିତ୍ରମାନେ ଅଭିନୟ ମାଧ୍ୟମରେ କାହାଣୀକୁ ଆଗେଇ ନେଉଥିବାରୁ ଦର୍ଶକ ମନରେ ଘଟଣାଟି ସଦ୍ୟ ଅନୁଷ୍ଠିତ ହେଉଥିବାର ଭ୍ରମ ସୃଷ୍ଟି କରିଥାଏ । ତା' ଆଖି ପାଖରେ ଘଟି ଯାଇଥିବା ଘଟଣାକୁ ମଣିଷ ଅଭିନୟ ଓ ସଂଳାପ ମାଧ୍ୟମରେ ପ୍ରକାଶ କରୁଥିବାରୁ ସେ ଏଥିପ୍ରତି ଆକୃଷ୍ଟ ହୋଇଥାଏ । ପ୍ରାଚ୍ୟ ଭାବରେ ମଧ୍ୟ ନାଟକ ଆନନ୍ଦ ପ୍ରଦାନ କରିଥାଏ । ଏହା ଏପରି ଏକ ସାହିତ୍ୟ ସୃଷ୍ଟି ଯାହା ଏକ ପକ୍ଷରେ ପାଠକ ଅପର ପକ୍ଷରେ ଦର୍ଶକ-

ମାନଙ୍କର ସମାନ୍ତରାଳ ମନୋରଞ୍ଜନ କରିଥାଏ । ନାଟକ ରଚନା କରିବା ପାଇଁ ବିଭିନ୍ନ ଉପାଦାନର ଆବଶ୍ୟକତା ରହିଛି । ମଣିଷ ଯେପରି ଆଖି, କାନ, ନାକ, ନଖ ଆଦି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ବ୍ୟବହାର କରି ନିଜ ଇଚ୍ଛା ସାଧନ କରିଥାଏ, ନାଟକ ସେହିପରି କେତେକ ଉପାଦାନକୁ ସୃଷ୍ଟି କରି ପ୍ରକାଶିତ ହୋଇଥାଏ । ଏହାର ନାଟ୍ୟ ଉପାଦାନ ଗୁଡ଼ିକ ଏହାକୁ ପରିପୁଷ୍ଟ କରିବା ସହ ବିଭିନ୍ନ ଦୃଷ୍ଟି-କୋଣରୁ ମନୋରଞ୍ଜନ ପ୍ରଦାନ କରିବାରେ ସହାୟକ ହୋଇଥାଏ । ନିମ୍ନରେ ନାଟକର ବିଭିନ୍ନ ବିଭାଗ ବିଷୟରେ ଆଲୋଚନା କରାଗଲା ।

## କଥାବସ୍ତୁ ବା କାହାଣୀ—

ନାଟକ ରଚନା ପାଇଁ ପ୍ରଧାନ ଆବଶ୍ୟକତା ହେଉଛି କାହାଣୀ । ନାଟକର କାହାଣୀ ବିଭାଗ ସୁଦୃଢ଼ ଥିଲେ ନାଟକ ସଫଳତା ପାଇଥାଏ । କାହାଣୀକୁ ନେଇ କେମିତି ବିନ୍ୟାସ କରାଯିବ ଏହା ନାଟ୍ୟକାରର ପାରଦର୍ଶିତା ଉପରେ ନିର୍ଭର କରିଥାଏ । ପ୍ରତିଭା ସମ୍ପନ୍ନ ନାଟ୍ୟକାରମାନେ ଗୋଟିଏ ବଳିଷ୍ଠ କାହାଣୀ ନାଟକରେ ଗ୍ରହଣ କରି ଥାଆନ୍ତି । ଏହି କାହାଣୀ ସାମାଜିକ, ପୌରାଣିକ, ଇତିହାସ ଭିତ୍ତିକ ହୋଇପାରେ । ଅନେକ ସମୟରେ ଘଟଣାପ୍ରଧାନ କାହାଣୀ ଉପରେ ନାଟ୍ୟକାର ଗୁରୁତ୍ୱ ଦେଇଥାଏ । ଓଡ଼ିଆ ନାଟକର ମଞ୍ଚ ପଟରେ ଏହିପରି ଅନେକ କାହାଣୀକୁ ନାଟ୍ୟରୂପ ପ୍ରଦାନ କରାଯାଇ ଥିଲା ।

କାଳୀଚରଣ ପଟ୍ଟନାୟକ ତାଙ୍କ ନାଟକମାନଙ୍କରେ ଘଟଣାପ୍ରଧାନ ଓ ଚରିତ୍ରପ୍ରଧାନ କାହାଣୀ ଚୟନ କରିଛନ୍ତି । ଭାତ, ଗାର୍ଲସ୍କୁଲ, ଚୁମ୍ବନ ଆଦି ନାଟକରେ ଘଟଣା ସହ ଚରିତ୍ରକୁ ଯୋଡ଼ିଦେଇ କାହାଣୀ ପ୍ରକାଶନରେ ସିଦ୍ଧହସ୍ତତା ପ୍ରୟୋଗ କରିଛନ୍ତି ।

ପୌରାଣିକ ନାଟକରେ ପୁରାଣର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶକୁ କାହାଣୀ ଭାବରେ ଗ୍ରହଣ କରାଯାଇ ଥାଏ । ନାଟ୍ୟକାର ଏଥିରେ ଖଳ ଚରିତ୍ରର ଅତ୍ୟାଚାର ପ୍ରାରମ୍ଭରେ ପ୍ରଦର୍ଶନ କରି ଉପସଂହାରରେ ଦୁଷ୍ଟଦମନ କରି ଥାଆନ୍ତି । ପୌରାଣିକ ନାଟକର କାହାଣୀ ସାଧାସିଧା । ଏଥିରେ ନାଟ୍ୟକାରର କଳ୍ପନା ବିଳାସ କମ ଭାବରେ ପ୍ରକାଶ ପାଇଥାଏ ।

ସାମ୍ପ୍ରତିକ ନାଟକରେ କାହାଣୀକୁ ଉପସ୍ଥାପନା କରିବା ଶୈଳୀରେ ନୂତନତ୍ୱ ଆସିଛି । କାହାଣୀ ବର୍ତ୍ତମାନ ନାଟକରେ ପୂର୍ଣ୍ଣ ଭାବରେ ପ୍ରକାଶ ନ ପାଇ ଆଂଶିକ ପ୍ରକାଶ ପାଉଛି । ଆଧୁନିକ ନାଟକ ଅଧିକ ମଞ୍ଚମାୟା ଓ ଆଲୋକସଜ୍ଜା ଉପରେ ନିର୍ଭର କରୁଥିବାରୁ ନାଟ୍ୟକାରମାନେ ନାଟକରେ ଅଭିନୟକୁ ଗୁରୁତ୍ୱ ଦେଇ କାହାଣୀ କମ ଭାବରେ ପ୍ରକାଶ କରୁଛନ୍ତି ।

କାହାଣୀ ନାଟକର ପ୍ରଧାନ ଆବଶ୍ୟକତା । କାହାଣୀ ଭଲ ନ ଥିଲେ ଏହା ପାଠକ ଓ ଦର୍ଶକଙ୍କୁ ଆକୃଷ୍ଟ କରିପାରେ ନାହିଁ । ନାଟକରେ କାହାଣୀକୁ ମୁଖ୍ୟ ଓ ପ୍ରଥମ ଉପାଦାନ ଭାବରେ ଗ୍ରହଣ କରାଯାଇଛି । ନାଟ୍ୟକାର ପ୍ରଥମେ ଏକ କାହାଣୀ କଳ୍ପନା କରି ପରେ ସେଥିରେ ଚରିତ୍ର ସଂଳାପ ଆଦି ସଂଯୋଜନା କରିଥାଏ । କାହାଣୀ ବିନା ନାଟକ ପରିକଳ୍ପନା କରିବା ଅସମ୍ଭବ ।

## ଚରିତ୍ର—

କାହାଣୀ ଗ୍ରହଣ ପରେ ନାଟ୍ୟକାର ଚରିତ୍ରମାନଙ୍କ ବିଷୟରେ ଚିନ୍ତା କରିଥାଏ । କାହାଣୀର ରଙ୍ଗ କିପରି ହେବ ଓ କେଉଁ ପ୍ରକାର ଚରିତ୍ର ଏହାକୁ ପ୍ରଭାବଶାଳୀ କରି ପାରିବେ, ସେ ବିଷୟରେ ନାଟ୍ୟକାର ଚିନ୍ତା କରିଥାଏ । କାହାଣୀ ଦୃଷ୍ଟିରୁ ସେ ଚରିତ୍ରମାନଙ୍କୁ ଦୁଇ ଭାଗରେ ବିଭକ୍ତ କରିଥାଏ । ମୁଖ୍ୟ ଚରିତ୍ର ଓ ଗୌଣ ଚରିତ୍ର । ମୁଖ୍ୟ ଚରିତ୍ର ଭାବରେ ନାୟକ, ନାୟିକା, ପ୍ରତିନାୟକ ଏବଂ ଏମାନଙ୍କର ମୁଖ୍ୟ ସହକାରୀ ଚରିତ୍ରମାନଙ୍କୁ ଗ୍ରହଣ କରାଯାଇ ଥାଏ । ନାଟକ ପ୍ରଧାନତଃ ଏହି ଚରିତ୍ରମାନଙ୍କୁ ଗ୍ରହଣ କରି ଶୀର୍ଷବିନ୍ଦୁ (climax) ଆଡ଼କୁ ଆଗେଇ ଯାଏ । ଗୌଣ ଚରିତ୍ର ଭାବରେ ଦୂତ, ଦୁଆରୀ, ନର୍ତ୍ତକୀ ଆଦି ଚରିତ୍ରକୁ ଗ୍ରହଣ କରାଯାଇ ପାରେ । ଏମାନେ ଆଜ୍ଞାବହ ଚରିତ୍ର । ଏ ଚରିତ୍ର ସବୁ ନାଟକରେ ହାସ୍ୟରସ ସୃଷ୍ଟି କରିଥାଆନ୍ତି । ନାୟକ ବା ନାୟିକା ପାଖେ ପାଖେ ରହି ସେମାନଙ୍କର ଆବଶ୍ୟକତା ପୂରଣ କରିଥାଆନ୍ତି । ନାଟକରେ ଖଳନାୟକ ଚରିତ୍ରର ଯଥାଯଥ ଗୁରୁତ୍ୱ ଦିଏ । ନାଟକରେ ହିଂସ୍ରତା, ବୀଭତ୍ସତା ସୃଷ୍ଟି କରିବାରେ ଏ ଚରିତ୍ର ନିଜକୁ ନିୟୋଜିତ କରିଥାଏ । ନାଟକ ଶେଷରେ ଅବାଞ୍ଛିତ ଚରିତ୍ର ଗୁଡ଼ିକର ଅବତାରଣା କରାଯାଇ ନ ଥାଏ । ମନ୍ଦ ଚରିତ୍ରମାନେ ମୃତ୍ୟୁ ବରଣ କରନ୍ତି ବା ପରିବର୍ତ୍ତିତ ହୋଇ ଯାଆନ୍ତି । ମୁଖ୍ୟ ଚରିତ୍ରମାନଙ୍କୁ ନାଟ୍ୟକାର ନାଟକ ଶେଷରେ ଜୀବିତ ରଖିଥାଏ । କେତେକ ଚରିତ୍ରପ୍ରଧାନ ନାଟକ ଅଛି ଯେଉଁଥିରେ ଅନେକ ଚରିତ୍ର ଦେଖାଯାଆନ୍ତି, ଆଉ କେତେକ ନାଟକ ଅଛି ଯେଉଁଥିରେ ସୀମିତ ଚରିତ୍ର ପ୍ରକାଶ ପାଇଛନ୍ତି ।

ନାଟକରେ ଚରିତ୍ର ଚିତ୍ରଣକୁ ଗୁରୁତ୍ୱ ଦିଆଯାଇ ଥାଏ । ନାଟ୍ୟ ଉତ୍କର୍ଷ ଓ ସଫଳତା ଉପଯୁକ୍ତ ଚରିତ୍ର ଚିତ୍ରଣ ଉପରେ ନିର୍ଭର କରିଥାଏ । ସେଇଥିପାଇଁ କୁହାଯାଇ ଥାଏ—

'Characterisation is the really fundamental and lasting element in the greatness of any dramatic work'.

ନାଟକର ଯେ କୌଣସି ବିଭାଗଠାରୁ ଚରିତ୍ର ଚିତ୍ରଣ ଅଧିକ ଗୁରୁତ୍ୱପୂର୍ଣ୍ଣ । ଉପଯୁକ୍ତ ଚରିତ୍ର ଚିତ୍ରଣ ନାଟକର ମହତ୍ୱ ବୃଦ୍ଧି କରିଥାଏ ।

## ସଂଳାପ—

ଚରିତ୍ର ମୁଖରେ କାହାଣୀକୁ ପ୍ରକାଶ କରିବାପାଇଁ ସଂଳାପର ଆବଶ୍ୟକତା ପଡ଼ିଥାଏ । ନାଟ୍ୟକାର ଚରିତ୍ରମାନଙ୍କୁ ନାଟକ ପାଇଁ ମନସ୍ଥ କଲାବେଳେ ସେହି ଚରିତ୍ରମାନଙ୍କର ଭୂମିକା ଓ ମାନସିକ ଅବସ୍ଥାକୁ ଲକ୍ଷ୍ୟକରି ସଂଳାପ ସୃଷ୍ଟି କରିଥାଏ । କାହାଣୀକୁ ସଂଳାପ ମାଧ୍ୟମରେ ପ୍ରକାଶ କରିବାପାଇଁ ନାଟ୍ୟକାର ଚରିତ୍ରମାନଙ୍କୁ ପ୍ରସ୍ତୁତ କରିଥାଏ । କେଉଁ ଚରିତ୍ର କିପରି ସଂଳାପ ଉଚ୍ଚାରଣ କରିବ ସେଥିପାଇଁ ସେ ଚେଷ୍ଟା କରିଥାଏ । ମନେ କରାଯାଉ ନାଟକର ନାୟକ ଯେମିତି ଦୃଢ଼ତର ସଂଳାପ କହିବ ନାହିଁ, ତା' ସଂଳାପରେ ଓଜନ ରହିବା ଆବଶ୍ୟକ, ନାଟ୍ୟକାର ଏ ବିଷୟରେ ଚିନ୍ତା କରିଥାଏ । ପାତ୍ରଯୁକ୍ତ ସଂଳାପ ପ୍ରୟୋଗ ହେଲେ ନାଟକ ସଫଳ ହୋଇଥାଏ । ସଂଳାପ ଲକ୍ଷ୍ୟଭେଦ ଓ ସିଧାସଳଖ ହେବା ଆବଶ୍ୟକ । ସଂଳାପ ମାଧ୍ୟମରେ ଯେପରି କାହାଣୀ କେଉଁଠି ବ୍ୟାହତ ନ ହୁଏ, ଏଥିପ୍ରତି ନାଟ୍ୟକାରକୁ ଦୃଷ୍ଟିଦେବାକୁ ପଡ଼ିବ । ପାତ୍ରଚିତ୍ର ସଂଳାପ ନାଟକ ଓ ଚରିତ୍ରର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ସଂଳାପର ପ୍ରୟୋଗ ସମ୍ପର୍କରେ କୁହାଯାଇଛି— 'Dramatic dialouge must be direct and to the point, absolutely characterstic of the person speeking and the speeches as short as possible.'

ପରୀକ୍ଷାଧର୍ମୀ ଓଡ଼ିଆ ନାଟକରେ ସଂଳାପ ବ୍ୟବହାରରେ ନୂତନତା ଦେଖିବାକୁ ମିଳେ । ଆଜିର ନାଟକରେ ସଂଳାପ କାବ୍ୟଧର୍ମୀ ଓ ସଂକ୍ଷିପ୍ତ ଭାବରେ ବ୍ୟବହୃତ ହୋଇଛି । ଏଥିରେ ବୌଦ୍ଧିକତା ଅଧିକ, ଦ୍ୱନ୍ଦ୍ୱ ଅଧିକ, ଯୁକ୍ତି ଅଧିକ ଓ ଭାବପ୍ରବଣତା ଅଧିକ । ମନୋରଞ୍ଜନ ଦାସଙ୍କର ଅନେକ ନାଟକରେ ଏପ୍ରକାର ସଂଳାପର ବ୍ୟବହାର କରାଯାଇଛି ।

ସାମ୍ପ୍ରତିକ ନାଟକ ସଂଳାପର ନାଟକ । ସଫଳ ସଂଳାପ ପ୍ରୟୋଗ ନବ-ନାଟ୍ୟ ଆନ୍ଦୋଳନକୁ ସଫଳ କରିଛି । ସଂଳାପ ନାଟକର ଏକ ଅପରିହାର୍ଯ୍ୟ ବିଭାଗ ।

## ଦ୍ୱନ୍ଦ୍ୱ—

No conflict no drama ଦ୍ୱନ୍ଦ୍ୱ ନାହିଁ ତ ନାଟକ ନାହିଁ । ନାଟକ ଆତ୍ମା' କାହାଣୀ ନୁହେଁ କି ଜନ୍ମମାନଙ୍କ ଗପ ନୁହେଁ । ନାଟକ ଭିତରେ କାହାଣୀ ପ୍ରକାଶପାଏ ସତ; କିନ୍ତୁ ସିଧାସଳଖ ଭାବରେ କାହାଣୀ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗତି କରେନାହିଁ । ନାଟ୍ୟକାର କାହାଣୀ ଭିତରେ ଦ୍ୱନ୍ଦ୍ୱ ଅବତାରଣା କରି ଦର୍ଶକଙ୍କ

ପାଇଁ ଏହାକୁ ଅଧିକ ଉପଯୋଗ୍ୟ କରିଥାଏ । ପୌରାଣିକ ବା ଐତିହାସିକ ନାଟକ ଭାବରେ ଖୋଲାଖୋଲି ଭାବରେ ସଂଘର୍ଷ ପ୍ରକାଶ ପାଇଥାଏ । ଦାନବ-ଦେବ ଯୁଦ୍ଧ ହେଉ ବା ପୁରୁଷୋତ୍ତମ ଦେବ କାଞ୍ଚିରାଜା ହୁଅନ୍ତୁ ପ୍ରକାଶ୍ୟ ସମର ଏଠାରେ ପ୍ରକାଶ ପାଇଥାଏ । ଏଥିରେ ଦ୍ୱନ୍ଦ୍ୱ ଦର୍ଶକ ପାଇଁ ବୋଧଗମ୍ୟରେ କୌଣସି ଅସୁବିଧା ହୁଏନାହିଁ; କିନ୍ତୁ ସାମାଜିକ ନାଟକମାନଙ୍କରେ ଦ୍ୱନ୍ଦ୍ୱ କଳାତ୍ମକ ଭାବରେ ପ୍ରକାଶ ପାଇଥାଏ । ସଂଘର୍ଷରେ କାହାଣୀ ଭାଗ ଆଗେଇ ଥାଏ ଏବଂ ନାଟ୍ୟକାରର ଇଚ୍ଛା ପୂରଣ ପର୍ଯ୍ୟନ୍ତ ଦ୍ୱନ୍ଦ୍ୱକୁ ସେ ବଢ଼ାଇ ଚାଲି ଥାଆନ୍ତି ।

ସାମାଜିକ ନାଟକମାନଙ୍କରେ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଦେଖାଯାଏ । ଆଧୁନିକ ମଣିଷର ଚିନ୍ତା ରାଜ୍ୟକୁ ବିଶ୍ଳେଷଣ କରି ଅନେକ ସାମାଜିକ ମନସ୍ତାତ୍ତ୍ୱିକ ନାଟକ ସୃଷ୍ଟି ହୋଇଛି । ମନସ୍ତାତ୍ତ୍ୱିକ ସଂଘର୍ଷର ସୂତ୍ରପାତ କରାଇ ଏପରି ନାଟକ ଶୀର୍ଷ ବିନ୍ଦୁରେ ପହଞ୍ଚିଯାଏ । ଦ୍ୱନ୍ଦ୍ୱ ନାଟକକୁ ଅଧିକ ରସଗ୍ରାହୀ ଓ ମନସ୍କ କରିଥାଏ । ବାସ୍ତବିକ ଦ୍ୱନ୍ଦ୍ୱ ନାହିଁ ତ ନାଟକ ନାହିଁ ବୋଲି ବୁଝିବାକୁ ହେବ ।

## ପଞ୍ଚସନ୍ଧି—

କାହାଣୀ ଭାଗକୁ ବିନ୍ୟାସ କରିବା ପାଇଁ ନାଟ୍ୟକାର ପଞ୍ଚସନ୍ଧିର ଆଶ୍ରୟ ନେଇଥାଏ । ପଞ୍ଚସନ୍ଧି କାହାଣୀ ବିନ୍ୟାସର ପାଞ୍ଚଗୋଟି ଅବସ୍ଥା । ଏହି ପାଞ୍ଚଟି ସ୍ତର ଦେଇ କାହାଣୀ ବିକଶିତ ହୋଇଥାଏ । କାହାଣୀର ବିକାଶ ସହିତ ନାଟକର ଦ୍ୱନ୍ଦ୍ୱର ବିକାଶ ଘଟିଥାଏ ଏବଂ ଏହି ଦ୍ୱନ୍ଦ୍ୱ ଶୀର୍ଷ ବିନ୍ଦୁରେ ପହଞ୍ଚିବା ପରେ ପରିଣତି ବିନ୍ଦୁ ଆଡ଼କୁ ଅଗ୍ରସର ହୋଇଥାଏ । ନାଟକର ଏହି ପାଞ୍ଚୋଟି ଅବସ୍ଥାକୁ ମୁଖ-ପ୍ରତିମୁଖ-ଗର୍ଭ-ବିମର୍ଷ-ନିର୍ବହଣ ନାମରେ ନାମିତ କରାଯାଇଛି । ପାଶ୍ଚାତ୍ୟ ସାହିତ୍ୟରେ ନାଟକର ଏହି ପାଞ୍ଚ ଅବସ୍ଥାକୁ ଯଥାକ୍ରମେ Introduction, Risingaction,c limax, Falling action, Catastrophe ନାମରେ ଗ୍ରହଣ କରାଯାଇଛି । ନିମ୍ନରେ ନାଟକର ଏହି ପାଞ୍ଚ ଅବସ୍ଥାକୁ ରେଖାଚିତ୍ର ମାଧ୍ୟମରେ ପ୍ରକାଶ କରାଗଲା ।



ମୁଖରେ ନାଟ୍ୟକାର କାହାଣୀ ଆରମ୍ଭ କରିଥାଏ । ଏହି ପର୍ଯ୍ୟାୟରେ ମୁଖ୍ୟ ଚରିତ୍ରମାନେ ମଞ୍ଚକୁ ଆସନ୍ତି । ପରସ୍ପର ସହ ପରିଚୟ ପର୍ବ ଆରମ୍ଭ ହୋଇଥାଏ । ମିଳନର ପୂର୍ବରାଗ ଓ କାହାଣୀର ପ୍ରାରମ୍ଭିକ ବିକାଶ ଏହି ପର୍ଯ୍ୟାୟରୁ ଲକ୍ଷ୍ୟ କରିଯାଏ । ପ୍ରତିମୁଖ ପର୍ଯ୍ୟାୟରେ କାହାଣୀ ଗତିଶୀଳ ଅବସ୍ଥାରେ ଥାଏ । ଏହି ପର୍ଯ୍ୟାୟରେ ଯେ କୌଣସି ବଡ଼ ଧରଣର ବିପର୍ଯ୍ୟୟ ଘଟିବା ପାଇଁ ପୂର୍ବପ୍ରସ୍ତୁତି ଚାଲିଥାଏ । ପ୍ରତିନାୟକମାନେ ଅସୁବିଧା ସୃଷ୍ଟି ପାଇଁ ଉଦ୍ୟମ କରନ୍ତି, ନାୟକ ନାୟିକାଙ୍କର ଅନୁରାଗ ପ୍ରକାଶ ପାଇଥାଏ । ଗର୍ଭ ହେଉଛି ନାଟକର ଚରମ ଅବସ୍ଥା । ଏହି ପର୍ଯ୍ୟାୟରେ ନାଟ୍ୟ ଉତ୍କଣ୍ଠା ପ୍ରକାଶ ପାଇଥାଏ । ନାଟ୍ୟକାର ଏହି ପର୍ଯ୍ୟାୟରେ ଅତି ସଫଳତାର ସହ କାହାଣୀକୁ ପ୍ରକାଶ କରିଥାଏ । ଗର୍ଭ ଅବସ୍ଥାରେ ନାଟ୍ୟକାର ହଠାତ୍ ଏକ ବିପର୍ଯ୍ୟୟ ସୃଷ୍ଟି କରେ, ଯାହାକି ଅନ୍ୟମାନଙ୍କୁ ସମ୍ମୁଖୀଭୂତ କରିଥାଏ । ନାଟକରେ ଦୁଇ ପକ୍ଷୀୟ ଚରିତ୍ରମାନଙ୍କର ବ୍ୟସ୍ତତା ଭିତରେ କାହାଣୀ ଚରମ ପର୍ଯ୍ୟାୟ ଦେଇ ଗତିକରେ । ଦର୍ଶକମାନଙ୍କ ଭିତରେ ଉତ୍କଣ୍ଠା ଓ ଅନ୍ୟାନ୍ୟ ଦୃଶ୍ୟ ପ୍ରତି ଆଗ୍ରହ ଏହି ଅବସ୍ଥାରେ ସୃଷ୍ଟି ହୋଇଥାଏ । ବିମର୍ଷ ଅବସ୍ଥାରେ ନାଟକ ଏକ ସ୍ଥାୟୀ ସମାଧାନରେ ପହଞ୍ଚି ପାରି ନ ଥାଏ । ଦୁଇ ଛକରେ ଠିଆ ହୋଇଥିବା ମଣିଷଟି ଯେମିତି ଜାଣି ପାରେନା କେଉଁ ରାସ୍ତା ବାଛିନେବ, ଏ ପର୍ଯ୍ୟାୟରେ ନାଟକ ଠିକ୍ ସେହିପରି ଗତି କରିଥାଏ । ନିର୍ବହଣ ପର୍ଯ୍ୟାୟରେ ନାଟକ ଶେଷ ଦୃଶ୍ୟରେ ପହଞ୍ଚି ଥାଏ । ସମସ୍ତ ସମସ୍ୟାର ସମାଧାନ ହୋଇଥାଏ । ଖଳ ଚରିତ୍ରର ବିଦାୟ ଓ ସାଧୁ ଚରିତ୍ରର ବିଜୟ ଘଟିଥାଏ ।

ପ୍ରାଚ୍ୟ ନାଟତତ୍ତ୍ୱର ଏହି ପାଞ୍ଚଟି ପର୍ଯ୍ୟାୟ ସହ ପାଶ୍ଚାତ୍ୟ ନାଟ୍ୟତତ୍ତ୍ୱର ପାଞ୍ଚଟି ପର୍ଯ୍ୟାୟକୁ ସମାନ୍ତରାଳ ଆଲୋଚନା କରିଯାଇ ପାରିବ । ନାଟକ ପାଞ୍ଚଗୋଟି ଅବସ୍ଥା ଦେଇ ଗତି କରିଥିବାରୁ କାହାଣୀର ଉପଯୁକ୍ତ ପରିପ୍ରକାଶ ସମ୍ଭବ ହୋଇଥାଏ ।

## ସ୍ଥାନ-କାଳ-ପାତ୍ର :—

ଯେ କୌଣସି ନାଟକ ରଚନା ପାଇଁ ସ୍ଥାନ-କାଳ-ପାତ୍ରର ସଂଯୋଗ ନିହାତି ଆବଶ୍ୟକ । ନାଟ୍ୟକାରର ବିଷୟ ବିନ୍ୟାସ ଓ କଳା ପ୍ରକରଣରେ କେତୋଟି ସାଧାରଣ ଘଟଣାକୁ ଦୃଷ୍ଟି ଦେବା ଆବଶ୍ୟକ ହୋଇଥାଏ । ନାଟ୍ୟକାର ଯେଉଁ ସମୟର କାହାଣୀ ବର୍ଣ୍ଣନା କରୁଥାଏ ସେହି ସମୟର ସଂଳାପ, ପୋଷାକ ଓ ଅଭିରୁଚି ଚରିତ୍ର ମାନଙ୍କଠାରେ ଖଞ୍ଜିବା ଆବଶ୍ୟକ । ନାଟକରେ ବର୍ଣ୍ଣିତ ଘଟଣାର ସମୟ ସୀମା ଯେମିତି ବେଶୀ ଦୂର ନ ହୁଏ ଏଥିପ୍ରତି ଗୁରୁତ୍ୱ ଦେବାକୁ ହୋଇଥାଏ । ନାଟ୍ୟକାର ରଜା ମୁହଁରେ ଯେପରି ନୂତନ ସଂଳାପ ନ ଦିଏ ସେଥିପ୍ରତି ସତର୍କ

ହେବା ଦରକାର । ସଂଳାପ ପାତ୍ରୋଚିତ ଓ ପରିବେଶଗତ ହେବା ଆବଶ୍ୟକ । ନାଟକରେ ସ୍ଥାନ-କାଳ-ପାତ୍ରର ସୁ ସମାବେଶ ହୋଇଥିଲେ ଏହାର ସୌନ୍ଦର୍ଯ୍ୟ ଫୁଟି ଉଠିଥାଏ ।

## ରସ ପ୍ରସଙ୍ଗ—

ନାଟକର ପ୍ରଧାନ ଉଦ୍ଦେଶ୍ୟ ହେଉଛି ମନୋରଞ୍ଜନ । ଏହି ମନୋରଞ୍ଜନ ପାଇଁ ନାଟ୍ୟକାର ନାଟକ ମଧ୍ୟରେ ବିଭିନ୍ନ ରସର ଅବତାରଣା କରିଥାଏ । ନାଟକ ଦେଖିବାପାଇଁ ବିଭିନ୍ନ ଧରଣର ଲୋକମାନଙ୍କର ସମାଗମ ହୋଇଥାଏ । ବିଭିନ୍ନ ଲୋକମାନଙ୍କର ରୁଚି ଭିନ୍ନ ଭିନ୍ନ । ନାଟ୍ୟକାର ଦର୍ଶକମାନଙ୍କର ରୁଚିକୁ ଦୃଷ୍ଟି ନାଟକରେ ବିଭିନ୍ନ ରସର ଅବତାରଣା କରିଥାଆନ୍ତି । ପ୍ରାଚ୍ୟ ନାଟକ ମିଳନାତ୍ମକ ହୋଇଥିଲାବେଳେ ପାଶ୍ଚାତ୍ୟ ନାଟକରେ ବିୟୋଗାନ୍ତକ କାହାଣୀ ଦେଖିବାକୁ ମିଳେ । ଆମ ନାଟକରେ ମିଳନ ଓ ବିୟୋଗର ଏକ ସୁଦୃଶ୍ୟ ସମନ୍ୱୟ ଦେଖିବାକୁ ମିଳେ । ଏଇ ଦୃଷ୍ଟିରୁ ଆମ ନାଟକରେ ହାସ୍ୟ ଓ କରୁଣ ରସ ସମାନ ଭାବରେ ପ୍ରକାଶ ପାଇ ଥାଆନ୍ତି । ନିମ୍ନରେ ନାଟକରେ ପ୍ରକାଶ ପାଉଥିବା ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ରସ ବିଷୟରେ ଆଲୋଚନା କରାଗଲା ।

## ନାଟକରେ କମେଡ଼ି—

ନାଟକରେ ହାସ୍ୟରସ ସୃଷ୍ଟି କରିବାପାଇଁ କମେଡ଼ିର ଅବତାରଣା କରାଯାଇଥାଏ । ନଟନଟୀ, ଦୁଆରୀ, ବିଦୂଷକ ଆଦି ଚରିତ୍ରମାନଙ୍କ ଦ୍ୱାରା ନାଟକରେ ହାସ୍ୟରସ ସୃଷ୍ଟି ହୋଇଥାଏ । ଏମାନେ ବିଭିନ୍ନ ପ୍ରକାରର କିମ୍ଭୂତ କିମାକାର ପୋଷାକ ପିନ୍ଧି ମୁହଁରେ ରଙ୍ଗ ମାରି ଅପ୍ରାକୃତିକ ସଂଳାପ, ଗୀତ ଓ ଅଭିନୟ ମାଧ୍ୟମରେ ନାଟକରେ ହାସ୍ୟରସ ସୃଷ୍ଟି କରି ଥାଆନ୍ତି । ହାସ୍ୟରସ ନାଟକର ଆଦିମ ଆଧାର । ଅନେକ ଦର୍ଶକ ଥାଆନ୍ତି ଯେଉଁମାନେ ହାସ୍ୟରସ ପାଇଁ ଆକୃଷ୍ଟ ହୋଇ ନାଟକ ଦେଖିବାକୁ ଆସିଥାଆନ୍ତି । ସେହିପରି ଦର୍ଶକମାନଙ୍କ ପାଇଁ କମେଡ଼ି ଅଧିକ ଆବଶ୍ୟକ ହୋଇଥାଏ । ଦୁଃଖାର୍ତ୍ତ ଶ୍ରମାର୍ତ୍ତ ଓ ଶୋକାର୍ତ୍ତମାନଙ୍କର ଚିତ୍ତ ବିନୋଦନର ମାଧ୍ୟମ ରୂପେ ନାଟକ ବ୍ୟବହୃତ ହୋଇଥାଏ । ନାଟକର ପ୍ରଧାନ ଉଦ୍ଦେଶ୍ୟ ହେଉଛି ମନୋରଞ୍ଜନ । ଏହି ମନୋରଞ୍ଜନକୁ କମେଡ଼ି ହିଁ ପୂରଣ କରିଥାଏ । ଆମର ପ୍ରାଚୀନ ନାଟକମାନଙ୍କରେ କମେଡ଼ିର ବହୁଳ ପ୍ରୟୋଗ ଦେଖାଯାଏ । ପ୍ରାଚ୍ୟ ନାଟକ ମିଳନାତ୍ମକ । ନାଟକ ଶେଷରେ ଦର୍ଶକ ଆନନ୍ଦର ସହ ଘରକୁ ଫେରିଯିବା ନାଟ୍ୟକାର ଅଧିକ ପସନ୍ଦ କରିଥାଏ । ଏକ ମିଳନାତ୍ମକ

କାହାଣୀରେ ହାସ୍ୟରସ ଅଧିକ ସୃଷ୍ଟି ହୋଇଥାଏ । କମେଡ଼ି ନାଟକରେ ଆବଶ୍ୟକୀୟ ରସଚର୍ଯ୍ୟା ଭାବରେ ସର୍ବଦା ସ୍ୱୀକୃତ ।

## ନାଟକରେ ଟ୍ରାଜେଡ଼ି—

ସମସ୍ତଙ୍କ ଜୀବନରେ ଟ୍ରାଜେଡ଼ି ଆସେ । ଜୀବନର ମଧୁରତମ ମୁହୂର୍ତ୍ତି ସବୁ ତାସର ଘର ପରି ଭୁସୁଡ଼ି ଯାଏ । କିନ୍ତୁ ଜୀବନର ଦୁଃଖଦ ଦିନ ସବୁ ସବୁଦିନ ପାଇଁ ଲିପିବଦ୍ଧ ହୋଇଯାଏ । ଟ୍ରାଜେଡ଼ି ସେହିପରି ଏକ ଅବସ୍ଥା ଯାହା ସବୁଦିନ ପାଇଁ ମଣିଷ ଜୀବନକୁ ଦୋହଲାଇ ଦିଏ । ପାଶ୍ଚାତ୍ୟ ନାଟକ ସବୁ ଟ୍ରାଜେଡ଼ି ସର୍ବସ୍ୱ । ଭାରତୀୟ ନାଟକ ଏହି ପାଶ୍ଚାତ୍ୟ ଦର୍ଶନର ବିରୋଧୀ ହେଲେ ମଧ୍ୟ ଟ୍ରାଜେଡ଼ିକୁ ଛାଡ଼ି ନାଟକର ପରିକଳ୍ପନା କରାଯାଇ ପାରିବ ନାହିଁ ।

ନାୟକ ନାୟିକାଙ୍କ ଜୀବନରେ କୌଣସି କାରଣରୁ ବିପର୍ଯ୍ୟୟ ଆସିଲେ ନାଟକରେ ଟ୍ରାଜେଡ଼ି ସୃଷ୍ଟି ହୋଇଥାଏ । ପରସ୍ପର ଆକର୍ଷଣ ଥାଇ ମଧ୍ୟ ଏମାନଙ୍କ ମଧ୍ୟରେ ବିବାହ ସମ୍ପର୍କ ହୋଇପାରେ ନାହିଁ କିମ୍ବା ଦୁର୍ଭାଗ୍ୟବଶତଃ ପରସ୍ପରଠାରୁ ଅଲଗା ହୋଇଗଲେ ନାଟକରେ ଟ୍ରାଜେଡ଼ି ସୃଷ୍ଟି ହୋଇଥାଏ । ଜଣେ ସତ୍ ଚରିତ୍ର ଅକାଳରେ ମୃତ୍ୟୁବରଣ କଲେ ଟ୍ରାଜେଡ଼ି ଆରମ୍ଭ ହୋଇଥାଏ । ଟ୍ରାଜେଡ଼ି ନାଟକକୁ ସଫଳ କରିବାରେ ସାହାଯ୍ୟ କରିଥାଏ । ଆଖିର ଅଶ୍ରୁରେ ଦର୍ଶକମାନେ ନାଟକକୁ ଶ୍ରଦ୍ଧାଞ୍ଜଳି ଜଣାଇ ଥାଆନ୍ତି ।

ଟ୍ରାଜେଡ଼ି ନାଟକର ଅନ୍ତଃସଲିଳ ଆବେଦନ । ଟ୍ରାଜେଡ଼ିକୁ ଛାଡ଼ି ନାଟକ କଳ୍ପନା କରିବା ଅବାନ୍ତର ଓ ଅପୂର୍ଣ୍ଣ ।

## ନାଟକୀୟ ଉତ୍କଣ୍ଠା—

ନାଟକରେ ଉତ୍କଣ୍ଠା ପ୍ରକାଶ ପାଇଲେ ଏହା ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ନାଟ୍ୟ ଉତ୍କଣ୍ଠା ପ୍ରକାଶ କରିବା ଏକ କଳା । ଯେଉଁ ନାଟ୍ୟକାର ଯେତେ ସଫଳ ଭାବରେ ଏହାକୁ ପ୍ରୟୋଗ କରିଥାଏ ସେହି ନାଟ୍ୟକାର ସେତିକି ସଫଳ ହୋଇଥାଏ । ନାଟ୍ୟ ଉତ୍କଣ୍ଠା ଯୋଗୁ ଦର୍ଶକ ଅପେକ୍ଷା କରିଥାଏ ଏ ଦୃଶ୍ୟ ପରେ କ'ଣ ହେବାକୁ ଯାଉଛି । କ'ଣ ଅନୁଷ୍ଠିତ ହେବ ଏ ସମ୍ପର୍କରେ ସେ ସାବଧାନ ଥାଏ । ଉତ୍କଣ୍ଠା କାହାଣୀକୁ ବିକଶିତ ହେବାରେ ପୂର୍ଣ୍ଣ ସହଯୋଗ କରିଥାଏ ।

ସାମ୍ପ୍ରତିକ ନାଟକରେ ସଫଳ ଭାବରେ ନାଟ୍ୟ ଉତ୍କଣ୍ଠାକୁ ପ୍ରକାଶ କରାଯାଉଛି । ନାଟ୍ୟ ଉତ୍କଣ୍ଠା ଯେ କୌଣସି ସଫଳ ନାଟକର ଅପରିହାର୍ଯ୍ୟ ଅଙ୍ଗ ।

## ନାଟ୍ୟ ଶ୍ଳେଷ—

ନାଟ୍ୟ ଶ୍ଳେଷ (Dramatic irong) ନାଟକକୁ ଶାବ୍ଦିକ ଗୌରବ ପ୍ରଦାନ କରିଥାଏ, ନାଟ୍ୟ ଶ୍ଳେଷ ସଂଳାପର ସଫଳତା ଉପରେ ଅଧିକ ନିର୍ଭରଶୀଳ । ସାମାଜିକ କଥାବସ୍ତୁରେ ନାଟ୍ୟ ଶ୍ଳେଷ ଅଧିକ ଭାବରେ ପ୍ରକାଶ ପାଇଥାଏ । ନାଟ୍ୟ ଶ୍ଳେଷ ଚରିତ୍ରମାନଙ୍କର ମନସ୍ତତ୍ତ୍ୱ ପ୍ରକାଶ କରିବାରେ ସାହାଯ୍ୟ କରିଥାଏ । ନାଟ୍ୟକାର ସଂଳାପକୁ ଦୁଇଟି ଅର୍ଥରେ ବ୍ୟବହାର କରିଥାଏ । ସଂଳାପର ଅଭ୍ୟନ୍ତର ଅର୍ଥଟିକୁ ଗ୍ରହଣ କରିବା ପାଇଁ ଦର୍ଶକଙ୍କ ବୌଦ୍ଧିକ ଅବବୋଧର ଅଧିକ ଆବଶ୍ୟକତା ରହିଛି । ନାଟକର ଏପରି ଏକ ବସ୍ତୁରବନ୍ତ ବିଭାଗ ସାମ୍ପ୍ରତିକ ନାଟକରେ ଅଧିକ ସଫଳ ଭାବରେ ପ୍ରୟୋଗ ହୋଇ ଆସୁଛି । ଦ୍ୱାର୍ଥିକ ଭାବରେ ସଂଳାପ ଉଚ୍ଚାରଣ କରି ଏବଂ ସଂଳାପକୁ ପ୍ରତୀକାତ୍ମକ କରି ଆଜିର ନାଟକରେ ଅଧିକ ସଫଳତାର ସହ ନାଟ୍ୟ ଶ୍ଳେଷ ସୃଷ୍ଟି କରାଯାଇ ପାରୁଛି । ନାଟ୍ୟ ଶ୍ଳେଷ ପ୍ରୟୋଗବାଦୀ ନାଟକର ଏକ ପ୍ରଧାନ ବିଭବ । ଏହା ନାଟକରେ ଓଜନଦାର ଅନୁଭବ ପ୍ରକାଶ କରିବାରେ ସାହାଯ୍ୟ କରିଥାଏ ।

## ମଞ୍ଚମାୟା—

ନାଟକର ସଫଳ ପରିବେଷଣ ପାଇଁ ମଞ୍ଚମାୟାର ଆବଶ୍ୟକତା ରହିଛି । ମଞ୍ଚରେ ଆଲୋକ ସଜ୍ଜା ଓ ଅନ୍ୟାନ୍ୟ ବ୍ୟବସ୍ଥାକୁ ମଞ୍ଚମାୟା ମାଧ୍ୟମରେ ସୁଷ୍ଠୁରୂପେ ସମ୍ପାଦନା କରାଯାଇଥାଏ । ଅନେକ ନାଟକ ଦୁଇଟି ମଣ୍ଡପରେ (stage) ଅନୁଷ୍ଠିତ ହୋଇଥାଏ । ଡବଲ ପେଣ୍ଡାଲରେ ଗାଡ଼ି ପୋଡ଼ିଯିବା, ଉଡ଼ାଜାହାଜ ଉଡ଼ିବା, ଘର ପୋଡ଼ିବା ଆଦି ଦୃଶ୍ୟକୁ ଦେଖାଇ ଦିଆ ଯାଇଥାଏ । ଏସବୁ ପାଇଁ ମଞ୍ଚମାୟାର ଆବଶ୍ୟକତା ରହିଛି । ମଞ୍ଚମାୟା ଦର୍ଶକମାନଙ୍କୁ ମଧ୍ୟ ଆକୃଷ୍ଟ କରିଥାଏ ।

## ସ୍ମାରକ—

ନାଟକରେ ସ୍ମାରକର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମଞ୍ଚରେ ଯାତ୍ରା ଚାଲିଥିଲାବେଳେ ସ୍ମାରକ ସତର୍କତାର ସହ ନାଟକର ସଂଳାପକୁ ଚରିତ୍ରମାନଙ୍କୁ ଧରାଇ ଦେଇଥାଏ । ଗୋଟିଏ ଚରିତ୍ର ସବୁଯାକ ସଂଳାପ ଘୋଷିବା ସମ୍ଭବ ନୁହେଁ । ସ୍ମାରକ ମଞ୍ଚ ଆଡ଼ୁଆଳରେ ଠିଆ ହୋଇ ଚରିତ୍ରମାନଙ୍କୁ ସଂଳାପ କହିବାରେ ସାହାଯ୍ୟ କରିଥାଏ ।

## ସଙ୍ଗୀତ—

ସଙ୍ଗୀତ ନାଟକର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ । ଲୋକ ନାଟକରୁ ଆମର ନାଟକ ବିକାଶ ଲାଭ କରିଛି । ଲୋକ ନାଟକରେ ସଙ୍ଗୀତ ସହ ନୃତ୍ୟର ଯେଉଁ ସମନ୍ୱୟ ପ୍ରକାଶ ପାଇଛି, ନାଟକ ତାହାକୁ ଗ୍ରହଣ କରିଛି । ନାଟକରେ ସଙ୍ଗୀତ ପରିବେଷଣ କରାଯାଏ ଓ ଏହି ସଙ୍ଗୀତ ତାଳେ ତାଳେ ନୃତ୍ୟ ପରିବେଷଣ କରାଯାଇଥାଏ । ନାଟକରେ ଗୋଟିଏ ଭକ୍ତି ସଙ୍ଗୀତ, ହାସ୍ୟରସାତ୍ମକ ମୂଳଗୀତ, ଟ୍ରାଜେଡ଼ି ଗୀତ, ମିଳନାତ୍ମକ ଗୀତ ଛଡ଼ା ଅନ୍ୟାନ୍ୟ ଗୀତର ସଂଯୋଜନା କରାଯାଇଥାଏ । ମଧ୍ୟଯୁଗୀୟ ଓଡ଼ିଆ ନାଟକରେ ଏକାଧିକ ଗୀତ ପରିବେଷଣ କରାଯାଉଥିଲା । କାଳି ଚରଣ ପଞ୍ଚନାୟକ ନାଟକରେ ପାଞ୍ଚଟି ଗୀତକୁ ଗୁରୁତ୍ୱ ଦେଇଛନ୍ତି ।

ସାଂପ୍ରତିକ ନାଟକରେ ଗୀତକୁ ମୋଟାମୋଟି ବର୍ଜନ କରାଯାଇଛି । ଯାହା ନାଟକମାନଙ୍କରେ ପାଞ୍ଚଟି ଗୀତ ପରଂପରା ଆଜି ପର୍ଯ୍ୟନ୍ତ ଦେଖାଯାଉଛି । ନାଟକରେ ସଙ୍ଗୀତ ମଧୁର ମୂର୍ଚ୍ଛନା ସୃଷ୍ଟି କରିବା ସହ ପ୍ରସାଦଗୁଣ ସୃଷ୍ଟି କରିଥାଏ ।

## ନିର୍ଦ୍ଦେଶକ—

ନାଟକରେ ନିର୍ଦ୍ଦେଶକର ଭୂମିକା ରହିଛି । ନିର୍ଦ୍ଦେଶକ ବିନା ନାଟକ ପାଇଲଟ୍ ବିହୀନ ଜାହାଜ ପରି ଦିଗଭ୍ରଷ୍ଟ । ନାଟ୍ୟକାର ନାଟକ ରଚନା କରି ସାରିବା ପରେ ଏହାକୁ କିପରି ପରିବେଷଣ କରାଯିବ ସେ ସମ୍ପର୍କରେ ନିର୍ଦ୍ଦେଶକ ଚିନ୍ତା କରିଥାଏ । ବେଳେବେଳେ ନାଟ୍ୟକାର ନିଜେ ନାଟକର ନିର୍ଦ୍ଦେଶନା ଦେଇ ଥାଆନ୍ତି । ନାଟ୍ୟକାର ନିଜେ ନିର୍ଦ୍ଦେଶନା ଦେବାର ଦୃଷ୍ଟାନ୍ତ ଆମ ନାଟକରେ ଅଧିକ ଦେଖାଯାଏ । ନିର୍ଦ୍ଦେଶକ ଚରିତ୍ରମାନଙ୍କ ଭିତରେ ଜୀବନ ସଞ୍ଚାର କରି ଥାଆନ୍ତି । ଯେ କୌଣସି ନାଟକର ସଫଳତା ସଫଳ ନିର୍ଦ୍ଦେଶନା ଉପରେ ନିର୍ଭର କରିଥାଏ । ନିର୍ଦ୍ଦେଶକ ନାଟକର ସମସ୍ତ ବିଭାଗ ଓ ଚରିତ୍ରମାନଙ୍କୁ ନିୟନ୍ତ୍ରଣ କରି ଥାଆନ୍ତି । ସେ ଚାହିଁଲେ ଯେ କୌଣସି କମାଇ ବା ବଢ଼ାଇ ପାରନ୍ତି । ନିର୍ଦ୍ଦେଶକ ନାଟକର ଦ୍ୱିତୀୟ ସ୍ରଷ୍ଟା । ନାଟକର ମଞ୍ଚସ୍ଥ ଓ ସଫଳତା ବିଫଳତା ନିର୍ଦ୍ଦେଶକ ଉପରେ ନିର୍ଭର କରିଥାଏ । ନିର୍ଦ୍ଦେଶନା ନାଟକର ଏକ ମୁଖ୍ୟ ଅବଲମ୍ବନ ।

## ନାଟକର ପ୍ରକାରଭେଦ—

ନାଟକ ଏକ ମିଶ୍ରକଳା । ଏଥିରେ ସଙ୍ଗୀତ, ସଂଳାପ, ଚରିତ୍ର, କାହାଣୀ, ନୃତ୍ୟର ମଧୁର ସମନ୍ୱୟ ଦେଖିବାକୁ ମିଳିଥାଏ । ସାହିତ୍ୟର ସମସ୍ତ ବିଭାଗର

ମନୋରମ ଝଙ୍କାର ଏଥିରେ ଦେଖାଯାଏ । ମୌଖିକ ସାହିତ୍ୟର ସିଧାସଳଖ ପରିପ୍ରକାଶ ଏଥିରେ ସମ୍ଭବ ହୋଇଥାଏ । ବିଷୟବସ୍ତୁ ଓ କଳାପ୍ରକରଣ ଦୃଷ୍ଟିରୁ ନାଟକ ବହୁ ଆୟତନ ବିଶିଷ୍ଟ ଏକ ବୃହତ କଳା । ସୃଷ୍ଟିର ଆରମ୍ଭ କାଳରୁ ସମାଜରେ ନାଟକ ବିଭିନ୍ନ ରୂପରେ ଆତ୍ମପ୍ରକାଶ କରିଛି । କେତେବେଳେ ଯାଯାବର ମଣିଷମାନେ ଶିକାର ସାରି ନଦୀ କୂଳରେ ବସି ଆନନ୍ଦରେ ଶିକାର ଉପଭୋଗ କରୁଥିବାବେଳେ ମହାନନ୍ଦରେ ନାଚି ଯାଉଥିଲେ ତ ପୁଣି ଆକାଶର ବର୍ଷା ବିନ୍ଦୁ ଝରିପଡ଼ିବାବେଳେ ଗୀତ ଓ ନୃତ୍ୟର ତାଳେ ତାଳେ ତାକୁ ଉପଭୋଗ କରୁଥିଲେ । ପରବର୍ତ୍ତୀ ସମୟରେ ନାଟକ ମଣିଷର ବୃହତ ମନୋରଞ୍ଜନ ଅର୍ଥରେ ବ୍ୟବହୃତ ହୋଇଛି । ପାଶ୍ଚାତ୍ୟ ଦେଶମାନଙ୍କ ଠାରୁ ଆରମ୍ଭ କରି ବୃହତ ଭାରତ ବର୍ଷରେ ନାଟ୍ୟକଳା ବିଭିନ୍ନ ରୂପରେ ଆଜିପର୍ଯ୍ୟନ୍ତ ଗଢ଼ି କରି ଆସୁଛି । ଭାରତୀୟ ପରମ୍ପରାରେ ବିଭିନ୍ନ ପ୍ରକାର କ୍ଷୁଦ୍ର ନାଟକ ଓ ନାଟିକାମାନ ଦେଖିବାକୁ ମିଳେ । ସଂସ୍କୃତ ନାଟ୍ୟ ତତ୍ତ୍ୱ ଅନୁସାରେ ଏସବୁ ବିଭିନ୍ନ ଭାଗରେ ନାମିତ କରାଯାଇଛି । ନାଟକ ସୃଷ୍ଟି ଠାରୁ ଆଜି ପର୍ଯ୍ୟନ୍ତ ଏହାର କଳେବର ଓ ପ୍ରବୃତ୍ତିକୁ ବିଚାର କରି ଏହାକୁ ଆଲୋଚନା ଦୃଷ୍ଟିରୁ ବିଭିନ୍ନ ଭାଗରେ ବିଭକ୍ତ କରିହେବ ।

ପାଶ୍ଚାତ୍ୟ ସମାଲୋଚକମାନେ ନାଟକର ପରିସର, ସ୍ୱରୂପ, ଭାବ ବିନ୍ୟାସ, ରସବୋଧ ଓ କଳା ପ୍ରକରଣକୁ ନଜର ରଖି ଏହାକୁ ବିଭିନ୍ନ ଭାଗରେ ବିଭକ୍ତ କରିଛନ୍ତି । ପାଶ୍ଚାତ୍ୟ ନାଟ୍ୟ ସମାଲୋଚକ Nicoll ତାଙ୍କର ଆଲୋଚନା ପୁସ୍ତକ 'Theory of Drama' ପୁସ୍ତକରେ ନାଟକର ଶ୍ରେଣୀ ବିଭାଗ କରି ଏହାକୁ ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି । ନିକୋଲ ନାଟକର ଗଠନ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ନାଟକର ଅନ୍ତଃସ୍ୱର କ'ଣ କହିବାରେ ସମର୍ଥ ସେ କଥାକୁ ବିଚାରକୁ ନେଇ ସେପରି ବିଭକ୍ତିକରଣ କରିଛନ୍ତି । ପାଶ୍ଚାତ୍ୟ ନାଟ୍ୟ ସମାଲୋଚନାରେ ନିକୋଲଙ୍କ ଏହି ବ୍ୟାଖ୍ୟାକୁ ଗୁରୁତ୍ୱ ଦିଆଯାଇ ଥାଏ । ନିମ୍ନରେ ପାଶ୍ଚାତ୍ୟ ନାଟକର ବିଭାଗୀ କରଣ ଆଲୋଚନା କରାଗଲା ।

## ୧ । ଦୁଃଖାନ୍ତକ (Tragedy)—

ପାଶ୍ଚାତ୍ୟ ସାହିତ୍ୟ ବିଚ୍ଛେଦ ଓ ବିରହକୁ ଅଧିକ ଗୁରୁତ୍ୱ ଦେଇଥାଏ । କାହାଣୀର ଶେଷରେ ଦୁଇଟୋପା ଲୁହ ନିଗାଡ଼ିବାରେ ସମସ୍ତେ ଆନନ୍ଦ ପାଇ ଥାଆନ୍ତି । ଏପରି ଏକ ମାନସିକତାରୁ ପାଶ୍ଚାତ୍ୟ ନାଟକରେ ଦୁଃଖାନ୍ତକ ନାଟକ ସୃଷ୍ଟିର ପରମ୍ପରା ଆରମ୍ଭ ହୋଇଛି । ପାଶ୍ଚାତ୍ୟ ନାଟକ ପ୍ରାୟତଃ ଦୁଃଖାତ୍ମକ । ମଣିଷ ଜୀବନର ବିଭିନ୍ନ ସମସ୍ୟା ଓ ସ୍ୱରଭଙ୍ଗକୁ ସେମାନେ କଳାତ୍ମକ ଭାବରେ

ନାଟକରେ ପରସ୍ଫୁଟନ କରି ଥାଆନ୍ତି । ପାଶ୍ଚାତ୍ୟ ନାଟକମାନଙ୍କ ଭିତରେ ଦୁଃଖାନ୍ତକ ନାଟକକୁ ପ୍ରଧାନ ନାଟକ ଭାବରେ ଗ୍ରହଣ କରାଯାଇଛି ।

## ୨ । ସୁଖାନ୍ତକ (Comedy)—

ବିୟୋଗାନ୍ତକ ନାଟକ ଭିତରୁ ସୁଖାନ୍ତକ ନାଟକର ସୃଷ୍ଟି । ଅତି ଦୁଃଖରେ ଥାଇ ମଧ୍ୟ ମଣିଷ ହସିଥାଏ । ଦୁଃଖକୁ ଭୁଲିଯିବାକୁ ଅଭିନବ ଉଦ୍ୟମ କରିଥାଏ । ସୁଖାନ୍ତକ ନାଟକ ସେହିପରି ପରିବେଶରୁ ସୃଷ୍ଟି । କେତେକ ନାଟକ କେବଳ ଯାଦୁ, ଜୋକର ମାନଙ୍କୁ ନେଇ ସୃଷ୍ଟି ହୋଇଥାଏ । ଏସବୁ ଚରିତ୍ର ନାଟକ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମଞ୍ଚରେ ହାସ୍ୟରସ ସୃଷ୍ଟି କରି ଥାଆନ୍ତି । ଏହି କମେଡ଼ି ଭିତରେ ରୋମାଣ୍ଟିକ କମେଡ଼ି, ବ୍ୟଙ୍ଗବିଦ୍ରୂପ କମେଡ଼ି ଏବଂ କୂଟ କପଟ ଚରିତ୍ରର ଅଭିମୁଖ୍ୟ ହାସ୍ୟରସ ମଧ୍ୟରେ ବର୍ଣ୍ଣନା କରାଯାଇ ଥାଏ । ପାଶ୍ଚାତ୍ୟ ନାଟ୍ୟ ସାହିତ୍ୟରେ ଗୁଣାତ୍ମକ ଦୃଷ୍ଟିରୁ ଅନେକ ସାର୍ଥକ ସୁଖାନ୍ତକ ନାଟକ ସୃଷ୍ଟି ହୋଇଛି ।

## ୩ । ସୁଖ ଦୁଃଖାତ୍ମକ (Tragic comedy)—

କେତେକ ନାଟକରେ ମଣିଷର ସୁଖଦୁଃଖ ମିଳିତ ଭାବରେ ପ୍ରକାଶ ପାଇଥାଏ । ଏଥିରେ କାହାର ପ୍ରାଧାନ୍ୟ ଦେଖାଯାଏ ନାହିଁ । ଗୋଟିଏ ବଡ଼ କାହାଣୀ ଭିତ୍ତିରେ ସଇତାନ ଚରିତ୍ରର ଅବତାରଣା କରାଯାଇ ଥାଏ । ଏହି ସଇତାନ ଚରିତ୍ରଟି ସୁଖରେ ଥିବା ଚରିତ୍ରମାନଙ୍କୁ କୌଣସି ଏକ ସମସ୍ୟାରେ ବାନ୍ଧି ଦେଇଥାଏ । ଫଳରେ ଘଟଣା ଚକ୍ରରେ ଆମୋଦରେ ଥିବା ଚରିତ୍ରମାନଙ୍କ ଭିତରେ ଦୁଃଖ ଓ ଦ୍ୱନ୍ଦ ପ୍ରକାଶ ପାଇଥାଏ । ସୁଖ ଦୁଃଖାତ୍ମକ ନାଟକ ମନୋରଞ୍ଜନ ଦୃଷ୍ଟିରୁ ଅଧିକ ଦର୍ଶକଙ୍କୁ ଆକୃଷ୍ଟ କରିଥାଏ ।

## ୪ । ଆବେଗମୟ ନାଟକ (Melodrama)—

ଆବେଗମୟ ନାଟକରେ ଅଭିନୟର ଗୁରୁତ୍ୱ ବୃଦ୍ଧି ପାଇଥାଏ । ଚରିତ୍ର କାହାଣୀରେ ବର୍ଣ୍ଣିତ ଘଟଣା ସହ ନିଜକୁ ସାମିଲ କରିଥାଏ । ଏହି ଘଟଣାର ବର୍ଣ୍ଣିତ କାହାଣୀ ସହ ନିଜ ଜୀବନକୁ ଜଡ଼ିତ କରିଥାଏ । ନାଟ୍ୟକାର ଅତି ସ୍ପର୍ଶ କାତର ଦୃଶ୍ୟମାନ ଏପରି ନାଟକରେ ପ୍ରକାଶ କରିଥାଏ । ବେଗରେ ମରିଯିବା, ଅକାଳ ବିୟୋଗ, ଦୈବୀ ଦୁର୍ବିପାକ, ରୋମାଣ୍ଟିକ ବନ୍ଧନ, ଆଲିଙ୍ଗନ, ଚୁମ୍ବନ ଆଦି ଦୃଶ୍ୟର ବର୍ଣ୍ଣନା କରାଯାଇଥାଏ । ଅଭିନୟ ମାଧ୍ୟମରେ ଚରିତ୍ର ଏହାକୁ ପ୍ରକାଶ କରିଥାଏ । ଏଥିରେ ଅନେକ ସମୟରେ ଅତି ଅଭିନୟ ବା ଉଚ୍ଚ ଅଭିନୟ ଆତ୍ମପ୍ରକାଶ କରିଥାଏ । ଏପରି ନାଟକର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି ।

## ପ୍ରହସନ (Farce)—

ଭାରତୀୟ ନାଟ୍ୟ ପରଂପରାରେ ପ୍ରହସନକୁ ଏକ ସ୍ୱତନ୍ତ୍ର ନାଟ୍ୟକଳାର ମର୍ଯ୍ୟାଦା ଦିଆଯାଏ ନାହିଁ । ପାଶ୍ଚାତ୍ୟ ନାଟକମାନଙ୍କରେ ପ୍ରହସନ ଅନ୍ୟ ନାଟକ-ମାନଙ୍କ ସହ ମିଶି ପ୍ରକାଶ ପାଇଥାଏ । କମେଡ଼ି ନାଟକରେ ପ୍ରହସନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବୁଇଟି ଚରିତ୍ର କୌଣସି ଘଟଣାକୁ ଲଘୁ ଭାବରେ ପ୍ରକାଶ କରିଥାଆନ୍ତି । ଏପରି ଦୃଶ୍ୟ ଖୁବ୍ କମ୍ ସମୟ ପାଇଁ ମଞ୍ଚରେ ଦେଖାଯାଇଥାଏ । ପ୍ରହସନକୁ ଏକ ସ୍ୱତନ୍ତ୍ର ନାଟକ ନ କହି ନାଟକର ଏକ କ୍ଷୁଦ୍ର ଦୃଶ୍ୟ ଭାବରେ ଗ୍ରହଣ କରିନେବା ଅଧିକ ପ୍ରାସଙ୍ଗିକ ହେବ ।

**Theory of Drama** ପୁସ୍ତକରେ ପାଶ୍ଚାତ୍ୟ ନାଟକର ପ୍ରକାରଭେଦ ସମ୍ପର୍କରେ ଏପରି ଏକ ଧାରଣା ଦିଆଯାଇଛି । **Nicole** ସେ ସମୟର ଅର୍ଥାତ୍ ପୁରୁଣା ନାଟ୍ୟ ପରମ୍ପରାକୁ ନଜର ରଖି ବର୍ଣ୍ଣନା କରିଥିଲେ । ସଂପ୍ରତି ପାଶ୍ଚାତ୍ୟ ନାଟକରେ ବହୁ ପରୀକ୍ଷା ଓ ପରିବର୍ତ୍ତନ ଘଟିଯାଇଛି । ସେକ୍ସପିୟରଙ୍କ ଯୁଗ ପରେ ନାଟ୍ୟ ରଚନାରେ ନୂତନ ସ୍ୱାଦ ଓ ରୁଚିବୋଧ ଆସିଛି । ଆଧୁନିକ ପଥପ୍ରାନ୍ତ ନାଟକ **(Street Play)** କୁ ଏହାର ଅଂଶ ଭାବରେ ଗ୍ରହଣ କରାଯାଇ ପାରେ । ଯାହା-ହେଉ **Nicole**ଙ୍କ ବର୍ଗୀକରଣ ପୃଥିବୀର ବିଭିନ୍ନ ଭାଷାର ସମାଲୋଚନାରେ ସ୍ୱୀକାର କରାଯାଇଛି ।

ପାଶ୍ଚାତ୍ୟ ନାଟକ ପରି ଭାରତୀୟ ନାଟ୍ୟ ପରମ୍ପରାରେ ବିଭିନ୍ନ ପ୍ରକାରର ନାଟକ ଦେଖିବାକୁ ମିଳେ । ପ୍ରାଚ୍ୟ ସାହିତ୍ୟରେ ନାଟକର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସଂସ୍କୃତ ସାହିତ୍ୟରେ ନାଟକକୁ କାବ୍ୟ ଭାବରେ ଗ୍ରହଣ କରାଯାଇଥିଲା । ଏହାର ସାଙ୍ଗିତିକ ଆବେଦନ ଗୀତ ଓ ନୃତ୍ୟକୁ ଗ୍ରହଣ କରି ଏହାକୁ ଦୃଶ୍ୟ କାବ୍ୟ ଭାବରେ ନାମିତ କରାଯାଇ ଥିଲା । ବିଭିନ୍ନ ସମୟରେ ପ୍ରାଚ୍ୟ ଆଲୋଚକ-ମାନେ ନାଟକ ସମ୍ପର୍କରେ ତାଙ୍କର ଚିନ୍ତାଧାରା ବିଶ୍ଳେଷଣ କରିଛନ୍ତି । କଥାବସ୍ତୁ, ଚରିତ୍ର, ରସପ୍ରସଙ୍ଗ ଓ ଚିତ୍ତବିନୋଦନ ଦୃଷ୍ଟିରୁ ପ୍ରାଚ୍ୟ ନାଟ୍ୟକାରମାନେ ନାଟକକୁ କେତେକ ବିଭାଗରେ ବିଭକ୍ତ କରିଛନ୍ତି । ସଂସ୍କୃତ ନାଟ୍ୟକାରମାନେ ନାଟକକୁ ଦଶଟି ରୂପକ ଏବଂ ୧୮ ଟି ଉପରୂପକରେ ବିଭକ୍ତ କରିଛନ୍ତି । ନିମ୍ନରେ ଏହି ରୂପକ ଏବଂ ଉପରୂପକମାନଙ୍କ ସମ୍ପର୍କରେ ଆଲୋଚନା କରାଗଲା ।

# ରୂପକ ଶ୍ରେଣୀୟ ନାଟକ

## ୧। ନାଟକ—

ଇତିହାସ କିମ୍ବା ପୁରାଣ ପ୍ରସିଦ୍ଧ କଥାବସ୍ତୁର ଅବଲମ୍ବନରେ ନାଟକ ରଚିତ ହେବ । ଏହା ବିଳାସ (ଅର୍ଥାତ୍ ଧୀରଦୃଷ୍ଟି, ବିଚିତ୍ରଗତି ଏବଂ ସସ୍ମିତ ବାକ୍ୟ) ଋଦ୍ଧି ଅର୍ଥାତ୍ ଅଭ୍ୟୁନ୍ନତି, ଧୈର୍ଯ୍ୟ, ଗାମ୍ଭୀର୍ଯ୍ୟ ଏବଂ ବିଭୂତି ଅର୍ଥାତ୍ ସୁଖ ଦୁଃଖ ସମୁଦ୍ଭୂତ ନାନାପ୍ରକାର ରସର ଆବିର୍ଭାବ) ଇତ୍ୟାଦି ଗୁଣଯୁକ୍ତ ହେବ । ନାଟକର ନାୟକ ସର୍ବଦା ପ୍ରଖ୍ୟାତ ବଂଶଜ, ଧୀରୋଦାତ୍ତ, ପ୍ରତାପବାନ୍, ଗୁଣବନ୍ତ, ଉତ୍ସାହୀ ଏବଂ ବେଦରକ୍ଷକ ହେବେ । ସେ ରାଜର୍ଷି (ଦୁଷ୍ମନ୍ତାଦି), ଦିବ୍ୟ (ଶ୍ରୀକୃଷ୍ଣାଦି) କିମ୍ବା ଦିବ୍ୟାଦିବ୍ୟ (ରାମଚନ୍ଦ୍ରାଦି) ହୋଇଥିବେ । ପ୍ରଧାନ କାର୍ଯ୍ୟର ସହାୟତା କରିବା ନିମିତ୍ତ ୪।୫ ଜଣ ବ୍ୟକ୍ତି ରହିବେ । ନାଟକ ଶୃଙ୍ଗାର ଅଥବା ବୀରରସ ପ୍ରଧାନ ହେବ । ଅନ୍ୟାନ୍ୟ ରସ ସମୂହ କେବଳ ମୁଖ୍ୟରସର ସହାୟକ ହେବ । ନାଟକରେ ୫ରୁ ୧୦ ଅଙ୍କ ପର୍ଯ୍ୟନ୍ତ ରହିପାରେ । ପଞ୍ଚାଙ୍କରୁ ଅଧିକ ଅଙ୍କ ବିଶିଷ୍ଟ ନାଟକର ନାମ ହେବ ମହାନାଟକ । ନିର୍ବହଣ ସନ୍ଧିରେ ଅଦ୍ଭୁତ ରସର ଅବତାରଣା କରାଯିବ । ଶକୁନ୍ତଳା, ଉତ୍ତର ରାମ ଚରିତ, ମୁଦ୍ରା ରାକ୍ଷସ, ବେଣୀ-ସଂହାର ଏବଂ ଅନର୍ଘରାଘବ ଇତ୍ୟାଦି ସଂସ୍କୃତ ନାଟକ ସୁପରିଚିତ । ଏଗୁଡ଼ିକ ପାଶ୍ଚାତ୍ୟ ସାହିତ୍ୟ ସମୀକ୍ଷାନୁସାରୀ Tragic Comedy ଓ Comedyର ଅନ୍ତର୍ଗତ ।

## ୨। ପ୍ରକରଣ—

ପ୍ରକରଣର କଥାବସ୍ତୁ ଲୌକିକ ବା କବି କଳ୍ପିତ । ଏଥିରେ ମୁଖ୍ୟରସ ଶୃଙ୍ଗାର । ନାୟକ ଧୀର ପ୍ରଶାନ୍ତ, ଧର୍ମ କାମାର୍ଥ ତତ୍ପର ଏବଂ କର୍ମ କୁଶଳ । ସେ ମନ୍ତ୍ରୀ, ବିପ୍ର ଅଥବା ବଣିକ ହୋଇଥିବେ । ନାୟିକା କୁଳକନ୍ୟା ବେଶ୍ୟା କିମ୍ବା ଉଭୟ ହୋଇ ପାରନ୍ତି । ନାୟିକା ଭେଦରେ ପ୍ରକରଣ ତ୍ରିବିଧ । ଯଥା—ଶୁଦ୍ଧ, ବିକୃତ ଏବଂ ସଂକୀର୍ଣ୍ଣ । ତରଙ୍ଗ ଦତ୍ତ ଏବଂ ମାଳତୀ ମାଧବ ଶୁଦ୍ଧ ପ୍ରକରଣ; ପୁଷ୍ପ ଦୂଷିକା ବିକୃତ ଏବଂ ମୃଚ୍ଛକଟିକ ସଂକୀର୍ଣ୍ଣ । ସଂକୀର୍ଣ୍ଣ ପ୍ରକରଣରେ କିତବ, ଦୂତକାଦି ଧୂର୍ତ୍ତ ପାତ୍ରମାନଙ୍କର ବାହୁଲ୍ୟ ପରିଲକ୍ଷିତ ହୁଏ । ରସସିଦ୍ଧ ଏବଂ ଅର୍ଥୋପକ୍ଷେପକ ଇତ୍ୟାଦି ଅନ୍ୟାନ୍ୟ ବିଷୟରେ ଏହା ନାଟକ ସଦୃଶ । ପାଶ୍ଚାତ୍ୟ ସମାଲୋଚକମାନଙ୍କ ମତରେ ପ୍ରକରଣ ଏକପ୍ରକାର Romantic Comedy.

୩ । ଭାଣ—

ଏକ ଅଙ୍କ ଏବଂ ଏକ ପାତ୍ର ବିଶିଷ୍ଟ ଏକପ୍ରକାର ରୂପକାର ନାମ ଭାଣ । ଏହାର କଥାବସ୍ତୁ କଳ୍ପିତ । ଏଥିରେ ବିଟ ବା ଧୂର୍ତ୍ତ ଶୂନ୍ୟ ପ୍ରତି ନିରୀକ୍ଷଣପୂର୍ବକ ଏକ କଳ୍ପିତ ବ୍ୟକ୍ତି ସହିତ କଥୋପକଥନ ଛଳରେ ସ୍ୱକୃତ ଅଥବା ପରକୃତ ଧୂର୍ତ୍ତତାପୂର୍ଣ୍ଣ ଶୃଙ୍ଗାର ବିଷୟକ କାର୍ଯ୍ୟର ବର୍ଣ୍ଣନା କରେ । ଏଥିରେ ଭାରତୀ ବୃତ୍ତି (ସ୍ଥଳ ବିଶେଷରେ କୌଶିକୀ ବୃତ୍ତି) ମୁଖ ଏବଂ ନିର୍ବହଣ ସନ୍ଧି ଏବଂ ଗେୟ ପଦାଦି ୧୦ ଲାସ୍ୟାଙ୍ଗର ପ୍ରୟୋଗ କରାଯାଇଥାଏ । ଉଦାହରଣ—ଲୀଳା ମଧୁକର ଏବଂ ଶାରଦା ତିଳକ । ପାଶ୍ଚାତ୍ୟ ସମାଲୋଚକମାନେ ଏହାକୁ Monologue ଏକୋକ୍ତି ଆଖ୍ୟା ପ୍ରଦାନ କରିଅଛନ୍ତି ।

୪ । ପ୍ରହସନ—

ଏହା ହାସ୍ୟରସ ପ୍ରଧାନ ଏବଂ ଏହାର ବିଷୟବସ୍ତୁ କଳ୍ପିତ । ଆରଭଟୀ ବୃତ୍ତି ଏବଂ ପ୍ରବେଶକ । ବିଷ୍କମ୍ଭକାଦିର ପ୍ରୟୋଗ ଏଥିରେ ନିଷିଦ୍ଧ । ଶୁଦ୍ଧ, ବିକୃତ ଏବଂ ସଙ୍କର ଭେଦରେ ଏହା ତିନି ପ୍ରକାର ।

ଶୁଦ୍ଧ ପ୍ରହସନରେ ଶୈବ, ସନ୍ନ୍ୟାସୀ, ବୌଦ୍ଧଭିକ୍ଷୁ, ତପସ୍ୱୀ ଆଦି ଚରିତ୍ର ଅଙ୍ଗଭଙ୍ଗୀ, ବେଶଭୂଷା ଓ କଥୋପକଥନରେ ହାସ୍ୟରସ ସୃଷ୍ଟି କରନ୍ତି । ବିକୃତରେ ନପୁଂସକ, କଞ୍ଚୁକୀ, ତପସ୍ୱୀ ଆଦି ଚରିତ୍ର ବେଶ ଓ ଭାଷାରେ କାମୁକ ଆଚରଣରେ ରସ ସୃଷ୍ଟି କରିଥାଆନ୍ତି । ସଙ୍କର ପ୍ରହସନରେ ବେଶ୍ୟା, ନପୁଂସକ ଆଦି ଚରିତ୍ର ଉଚ୍ଛୃଙ୍ଖଳତା ସହ ହାସ୍ୟରସ ସୃଷ୍ଟି କରିଥାଆନ୍ତି ।

୫ । ଡିମ—

ଇତିହାସ ବା ପୁରାଣ ପ୍ରସିଦ୍ଧ କୌଣସି ସୁପରିଚିତ ବିଷୟବସ୍ତୁର ଅବଲମ୍ବନରେ ଡିମ ରଚିତ ହୋଇଥାଏ । ଏଥିରେ ଦେବତା, ଅସୁର, ଯକ୍ଷ, ଗନ୍ଧର୍ବ ଭୂତ, ପ୍ରେତ, ପିଶାଚ ଏବଂ ନାଗାଦି ୧୬ ଜଣ ଉଦ୍ଧତ ନାୟକ ଥାଆନ୍ତି ଏବଂ ମାୟା, ଇନ୍ଦ୍ରଜାଲ, ସଂଗ୍ରାମାଦି ଉଦ୍ଧତ ଚେଷ୍ଟା ଏବଂ ସୂର୍ଯ୍ୟ ଚନ୍ଦ୍ର ଗ୍ରହଣାଦିର ବର୍ଣ୍ଣନା ସନ୍ନିବେଶିତ ହୋଇଥାଏ । ଏଥିରେ ରୌଦ୍ର ଅଙ୍ଗୀରସ ଏବଂ ହାସ୍ୟ ଓ ଶୃଙ୍ଗାର ବ୍ୟତୀତ ଅନ୍ୟାନ୍ୟ ଗୌଣ ରସର ଆବତାରଣା କରାଯାଇପାରେ । ୪ ଅଙ୍କ ୪ ସନ୍ଧି (ବିମର୍ଷ ସନ୍ଧି ନ ଥାଏ) ଏବଂ କୌଶିକୀ ବ୍ୟତୀତ ଅନ୍ୟାନ୍ୟ ବୃତ୍ତିର ପ୍ରୟୋଗ ଏଥିରେ କରାଯାଏ । ପ୍ରସ୍ତାବନାଦି ଅନ୍ୟାନ୍ୟ ବିଷୟରେ ଏହା ନାଟକ ସଦୃଶ । 'ଡିମ' ଶବ୍ଦର ଅର୍ଥ ସଂଘାତ ବା ଦ୍ୱନ୍ଦ୍ୱ । ସୁତରାଂ ଏହା ସଂଘାତ ବା Conflict ରୂପକ ।

## ୬ । ବ୍ୟାୟୋଗ—

କୌଣସି ପୁରାଣ ବା ଇତିହାସ ପ୍ରସିଦ୍ଧ କଥାବସ୍ତୁ ଅବଲମ୍ବନରେ ରଚିତ । ଏହାର ନାୟକ ପ୍ରସିଦ୍ଧ ରାଜର୍ଷି, ଦିବ୍ୟ ପୁରୁଷ କିମ୍ବା ଧୀରୋଦ୍ଧତ ବ୍ୟକ୍ତି । ଏଥିରେ ପୁରୁଷ ଚରିତ୍ର ସଂଖ୍ୟା ଅଧିକ ଏବଂ ସ୍ତ୍ରୀ ଚରିତ୍ର ସଂଖ୍ୟା ଅଳ୍ପ । ସମରାଦିର ବର୍ଣ୍ଣନା ସନ୍ନିବେଶିତ ହେବ; କିନ୍ତୁ ସ୍ତ୍ରୀ ସମ୍ପର୍କ ଜନିତ ଯୁଦ୍ଧାଦିର ବର୍ଣ୍ଣନା ରହିବ ନାହିଁ । ଶୃଙ୍ଗାର, ହାସ୍ୟ ଏବଂ ଶାନ୍ତ ବ୍ୟତୀତ ଅନ୍ୟାନ୍ୟ ରସର ଏବଂ କୌଶିକୀ ବ୍ୟତୀତ ଅନ୍ୟାନ୍ୟ ବୃତ୍ତିର ପ୍ରୟୋଗ କରାଯିବ । ଏହା ଏକ ଅଙ୍କ ବିଶିଷ୍ଟ ଏବଂ ଗର୍ଭ ଓ ବିମର୍ଷ ସନ୍ଧି ବିହୀନ ।

## ୭ । ସମବକାର—

ଏଥିରେ ୧୨ଜଣ ପ୍ରଖ୍ୟାତ ଏବଂ ଉଦାତ୍ତ ଦେବାସୁର ନାୟକ ରହିବେ । ଏହା ବୀରରସ ପ୍ରଧାନ ହେବ ଏବଂ ଅନ୍ୟ ସମସ୍ତ ରସ ଅଙ୍ଗ ସ୍ୱରୂପ ଏହାର ପରିପୁଷ୍ଟିରେ ସାହାଯ୍ୟ କରିବେ । ଏଥିରେ ୩ ଅଙ୍କ ଏବଂ ବିମର୍ଷ ସନ୍ଧି ବ୍ୟତୀତ ଅପର ଚାରି ସନ୍ଧି ରହିବ । ଏ ଦୃଶ୍ୟ କାବ୍ୟରେ କାପଟ୍ୟ, କୋଳାହଳ, ଯୁଦ୍ଧ ଏବଂ ପ୍ରେମଲୀଳା ପ୍ରଧାନ ବର୍ଣ୍ଣନୀୟ ବିଷୟ ।

## ୮ । ବୀଥୀ—

ବୀଥୀ ରୂପକ ଅନେକାଂଶରେ ଭାଣ ସଦୃଶ । ଏହା ଏକ ଏକାଙ୍କିକା ଏବଂ ଏଥିରେ ପାତ୍ରପାତ୍ରୀ ସଂଖ୍ୟା ଦୁଇ ଅଥବା ତିନି । ନାୟକ ଉତ୍ତମ, ମଧ୍ୟମ ବା ଅଧମ ପୁରୁଷ ହୋଇ ପାରନ୍ତି । ଭାଣ ସଦୃଶ ଆକାଶ ଭାଷିତ ଦ୍ୱାରା ଉକ୍ତି ପ୍ରତ୍ୟୁକ୍ତିର ପ୍ରୟୋଗ ଏଥିରେ କରାଯାଇଥାଏ । ଏଥିରେ ଶୃଙ୍ଗାର ରସର ପ୍ରାଚୁର୍ଯ୍ୟ ଏବଂ ଅନ୍ୟ ରସର ସାମାନ୍ୟ ସୂଚନା ପରିଲକ୍ଷିତ ହୁଏ । ଏଥିରେ ପଞ୍ଚ ଅର୍ଥ ପ୍ରକୃତି ଏବଂ ମୁଖ ଓ ନିର୍ବହଣ ସନ୍ଧି ଥାଏ ।

## ୯ । ଅଙ୍କ—

ଏଥିରେ ଏକମାତ୍ର ଅଙ୍କ ଏବଂ ବହୁ ପ୍ରାକୃତ ପୁରୁଷ ଥାନ୍ତି । ଏହାର ବିଷୟବସ୍ତୁ ପୁରାଣ କିମ୍ବା ଇତିହାସରୁ ଗୃହୀତ ହେଲେହେଁ ନାଟ୍ୟକାର ନିଜ କଳ୍ପନାରୁ ବହୁ ନୂତନ କଥା ଯୋଗକରି ଥାଆନ୍ତି । ନାରୀମାନଙ୍କର ବିଳାପର ବର୍ଣ୍ଣନା ସନ୍ନିବେଶିତ ହେଉଥିବାରୁ ଏହା ମୁଖ୍ୟତଃ କରୁଣ ରସ ପ୍ରଧାନ ହୋଇଥାଏ । ଯୁଦ୍ଧ ବିଗ୍ରହ, ଜୟ ପରାଜୟାଦିର ବର୍ଣ୍ଣନା ମଧ୍ୟ ଏଥିରେ ପ୍ରଦତ୍ତ ହୁଏ ।

## ୧୦ । ଇହାମୃଗ—

ଏହାର କଥାବସ୍ତୁ ଅଂଶତଃ ପ୍ରସିଦ୍ଧ ଏବଂ ଅଂଶତଃ କବି କଳ୍ପିତ । ଚାରି ଅଙ୍କ ଏବଂ ତିନି ସନ୍ଧି (ମୁଖ-ପ୍ରତିମୁଖ-ନିର୍ବହଣ) ଥାଏ । ଏହାର ନାୟକ ଏବଂ ପ୍ରତି ନାୟକ ପ୍ରସିଦ୍ଧ ଧୀରୋଦ୍ଧତ ଦେବତା କିମ୍ବା ମନୁଷ୍ୟ, ନାୟିକା, ଦିବ୍ୟନାୟିକା ଏବଂ ନାୟକ ଓ ପ୍ରତି ନାୟକ ମଧ୍ୟରେ ସଂଘର୍ଷର ଏକମାତ୍ର କାରଣ । ପ୍ରତି ନାୟକ କବଳରୁ ନାୟିକାକୁ ରକ୍ଷା କରିବା ନାୟକର କାର୍ଯ୍ୟ । ଇତିହାସ ସମ୍ମତ ହେଲେ ମଧ୍ୟ ନାୟକର ସଂହାର ପ୍ରଦର୍ଶନ ଏଥିରେ ନିଷିଦ୍ଧ ।

# ଉପ ରୂପକ

## ୧ । ନାଟିକା—

ନାଟିକାର କଥାବସ୍ତୁ ଇତିହାସ ସମ୍ବନ୍ଧ ବା କଳ୍ପିତ । ଏଥିରେ ଅଙ୍କ ସଂଖ୍ୟା ଚାରି ଏବଂ ସ୍ତ୍ରୀ ଚରିତ୍ରର ପ୍ରାଚୁର୍ଯ୍ୟ ଦୃଷ୍ଟ ହୁଏ । ଏହାର ନାୟକ କୌଣସି ପ୍ରଖ୍ୟାତନାମା ଧୀର ଲଳିତ ରାଜା ଏବଂ ନାୟିକା ଅପୂର୍ବ ରୂପ ଲାବଣ୍ୟମୟୀ ସଙ୍ଗୀତ ପ୍ରବୀଣା, ନବାନୁରାଗବତୀ ରାଜକନ୍ୟା, ଅଙ୍ଗୀରସ ଶୃଙ୍ଗାର ଏବଂ ବୃତ୍ତି କୌଶିକୀ । ବିମର୍ଷ ସନ୍ଧି ବ୍ୟତୀତ ଅପର ଚାରି ସନ୍ଧିର ପ୍ରୟୋଗ ହୁଏ ।

## ୨ । ତ୍ରୋଟକ—

ଏହା ମୁଖ୍ୟତଃ ଶୃଙ୍ଗାର ରସାତ୍ମକ ଏବଂ ଦେବତା ଓ ମାନବ ଚରିତ ଅବଲମ୍ବନରେ ରଚିତ । ଏହାର ଅଙ୍କ ସଂଖ୍ୟା ପାଞ୍ଚ, ସାତ, ଆଠ ଅଥବା ନଅ ଏବଂ ପ୍ରତି ଅଙ୍କରେ ବିଦୂଷକ ଚରିତ୍ରର ଅବତାରଣା କରାଯିବ । ଅନ୍ୟାନ୍ୟ ସମସ୍ତ ବିଷୟରେ ଏହା ନାଟକ ସଦୃଶ ।

## ୩ । ଗୋଷ୍ଠୀ—

ଏହା ଏକାଙ୍କ ବିଶିଷ୍ଟ ଏବଂ ଶୃଙ୍ଗାର ରସାତ୍ମକ । ଏଥିରେ ପୁରୁଷ ପାତ୍ର ସଂଖ୍ୟା ୮-୧୦ ଏବଂ ସ୍ତ୍ରୀ ପାତ୍ର ସଂଖ୍ୟା ୫-୬ । ବୃତ୍ତି କୈଶିକୀ, ଉଦାତ୍ତ ବାକ୍ୟ ଯୋଜନା, ଗର୍ଭ ଓ ବିମର୍ଷ ସନ୍ଧିର ପ୍ରୟୋଗ ଏଥିରେ ନିଷିଦ୍ଧ ।

## ୪ । ସଟ୍ଟକ—

ପ୍ରାକୃତ ଭାଷାରେ ରଚିତ । ଚାରି ଅଙ୍କ ବିଶିଷ୍ଟ । ଅଦ୍ଭୁତ ରସ ପ୍ରଧାନ ଏବଂ ଏଥିରେ ପ୍ରବେଶକ ଓ ବିଷ୍କମ୍ଭକ ନାହିଁ । ଏଥିରେ ଅଙ୍କ ସମୂହକୁ ଯବନିକା କୁହାଯାଏ । ଅନ୍ୟାନ୍ୟ ସମସ୍ତ ବିଷୟରେ ନାଟକ ସଦୃଶ ।

## ୫ । ନାଟ୍ୟ ରାସକ—

ବସ୍ତୁ ତାଳଲୟ ସମନ୍ୱିତ ଏକାଙ୍କିକା । ଏହାର ନାୟକ ଉଦାତ୍ତ ଏବଂ ଉପନାୟକ ପୀଠମର୍ଦ୍ଦ । ନାୟିକା ବାସକସଜ୍ଜା । ହାସ୍ୟ ହେଉଛି ଅଙ୍ଗୀରସ ଏବଂ ସହାୟକ ରସ ହେଉଛି ଶୃଙ୍ଗାର ।

## ୬ । ପ୍ରସ୍ଥାନକ—

ଏହା ଦୁଇ ଅଙ୍କ ବିଶିଷ୍ଟ । ତାଳଲୟ ସମନ୍ୱିତ ନାନାବିଧ ବିଳାସଯୁକ୍ତ ଏବଂ ଭାରତୀ ଓ କୈଶିକୀ ବୃତ୍ତି ଅବଲମ୍ବନରେ ରଚିତ । ଦାସ୍ୟବୃତ୍ତିଯୁକ୍ତ କୌଣସି ପୁରୁଷ ଏଥିରେ ନାୟକ । ତଦପେକ୍ଷା ହୀନ ବ୍ୟକ୍ତି ଉପନାୟକ ଏବଂ ନାୟିକା ଦାସୀ ।

## ୭ । ଉଲ୍ଲାପ୍ୟ—

ଦିବ୍ୟ କଥାବସ୍ତୁ ସମ୍ବଳିତ । ହାସ୍ୟ, ଶୃଙ୍ଗାର ଏବଂ କରୁଣ ରସାତ୍ମକ ଏକାଙ୍କିକାର ନାମ ଉଲ୍ଲାପ୍ୟ । ଏଥିରେ ନାୟିକା ସଂଖ୍ୟା ଚାରି ଏବଂ ନାୟକ ଜଣେ ଧୀରୋଦାତ୍ତ ପୁରୁଷ ।

## ୮ । ଶ୍ରୀ ଗଦିତ—

ଇତିହାସ ବା ପୁରାଣ ପ୍ରସିଦ୍ଧ ବୃତ୍ତାନ୍ତ ଅବଲମ୍ବନରେ ରଚିତ । ଗର୍ଭ ଓ ବିମର୍ଷ ସନ୍ଧି ବର୍ଜିତ ଭାରତୀ ବୃତ୍ତି ବହୁଳ ଏକାଙ୍କିକାର ନାମ ଶ୍ରୀ ଗଦିତ । ଏଥିରେ ନାୟକ ପ୍ରସିଦ୍ଧ ଧୀରୋଦାତ୍ତ ପୁରୁଷ ଏବଂ ନାୟିକା ସୁପ୍ରସିଦ୍ଧା ନାରୀ ।

## ୯ । ଶିଲ୍ପକ—

ଚତୁର୍ବିଧ ବୃତ୍ତି ଅବଲମ୍ବନରେ ରଚିତ, ହୀନ ଉପନାୟକ ଓ ବ୍ରାହ୍ମଣ ନାୟକ ଯୁକ୍ତ, ଚାରି ଅଙ୍କ ବିଶିଷ୍ଟ ଉପରୂପକର ନାମ ଶିଲ୍ପକ । ଏଥିରେ ଶାନ୍ତ ଓ ହାସ୍ୟରସ ଭିନ୍ନ ଅନ୍ୟାନ୍ୟ ରସ ଏବଂ ଶବ ଓ ଶ୍ମଶାନାଦିର ବର୍ଣ୍ଣନା ଥାଏ ।

## ୧୦ । ବିଳାସିକା—

ଶୃଙ୍ଗାର ରସ ବହୁଳ । ହୀନ ନାୟକ ଓ ବିଟ, ବିଦୂଷକ ଓ ପୀଠମର୍ଦ୍ଦାଦି ପାତ୍ର ବିଶିଷ୍ଟ ସ୍ୱଳ୍ପ କଥାବସ୍ତୁ ସମ୍ବଳିତ ଏବଂ ଗର୍ଭ ଓ ବିମର୍ଷ ସନ୍ଧି ବିହୀନ ଉପ-ରୂପକର ନାମ ବିଳାସିକା ।

## ୧୧ । ଦୁର୍ମ୍ମଲ୍ଲିକା—

ଏହା ଚାରି ଅଙ୍କ ବିଶିଷ୍ଟ । କୈଶିକୀ ଓ ଭାରତୀ ବୃତ୍ତି ଅବଲମ୍ବନରେ ରଚିତ । ଗର୍ଭ ସନ୍ଧି ରହିତ, ଚତୁର ପାତ୍ର ଓ ନ୍ୟୂନନାୟକ ଭୂଷିତ ଉପରୂପକର ନାମ ଦୁର୍ମ୍ମଲ୍ଲିକା

## ୧୨ । ପ୍ରକରଣିକା—

ଏହି ଉପରୂପକ ଅନେକାଂଶରେ ନାଟିକା ସଦୃଶ । କେବଳ ଏଥିରେ ନାୟକ ପଥିକ ଅଥବା ପ୍ରବାସୀ ଏବଂ ନାୟକ ଓ ନାୟିକା ଉଭୟ ସମବଂଶଜ ।

## ୧୩ । କାବ୍ୟ—

ଆରଭଟୀ ବୃତ୍ତି ବିହୀନ ହାସ୍ୟରସ ପ୍ରଚୁର ଶୃଙ୍ଗାର ରସାତ୍ମକ ବଚନଯୁକ୍ତ ଏବଂ ଗୀତ ବହୁଳ ଏକାଙ୍କିକାର ନାମ କାବ୍ୟ । ଏହାର ନାୟକ ଏବଂ ନାୟିକା ଉଭୟ ଉଦାତ୍ତ ।

## ୧୪ । ପ୍ରେଙ୍ଖଣ—

ବିଷ୍କମ୍ଭକ, ପ୍ରବେଶକ ଓ ସୂତ୍ରଧାର ରହିତ ଗର୍ଭ ଓ ବିମର୍ଷ ସନ୍ଧି ବର୍ଜିତ ହୀନ ନାୟକଯୁକ୍ତ ଏବଂ ଯୁଦ୍ଧ ଓ ସଂଫେଟାଦି ସଂଘର୍ଷ ମୂଳକ ବିଷୟ ସମ୍ବଳିତ ଏକାଙ୍କିକାର ନାମ ପ୍ରେଙ୍ଖଣ ।

## ୧୫ । ରାସକ —

ଭାରତୀ ଓ କୈଶିକୀ ବୃତ୍ତି ଅବଲମ୍ବନରେ ରଚିତ-ମୁଖ ଓ ନିର୍ବହଣ ସନ୍ଧିଯୁକ୍ତ ଏବଂ ସୂତ୍ରଧାର ରହିତ ଏକାଙ୍କିକାର ନାମ ରାସକ । ଏଥିରେ ପାତ୍ର ସଂଖ୍ୟା ପାଞ୍ଚ, ନାୟିକା ବିଖ୍ୟାତ ଏବଂ ନାୟକ ମୂର୍ଖ ! ନୃତ୍ୟ ଗୀତ ଓ ଉଦାତ୍ତ ଭାବରାଜିର ବିନ୍ୟାସ ଏବଂ ସଂସ୍କୃତ ଓ ପ୍ରାକୃତ ଭାଷାର ଯଥାଯଥ ପ୍ରୟୋଗ ଦ୍ୱାରା ଏହା ସୁମଧୁର ଓ ଚିତ୍ତରଞ୍ଜକ ହୋଇଥାଏ ।

## ୧୬ । ସଂଲାପକ—

ଏହା ନବରାଗବୋଧ । ସଂଗ୍ରାମ ଓ ବିଦ୍ରୋହ କଥାବସ୍ତୁ ସମ୍ବଳିତ । କୈଶିକୀ ଓ ଭାରତୀ ବୃତ୍ତି ବର୍ଜିତ । ପାଷାଣ୍ଡ ନାୟକଯୁକ୍ତ ଏବଂ ତିନି ଚାରି ଅଙ୍କ ବିଶିଷ୍ଟ ଏକ ଉପରୂପକ । ଶୃଙ୍ଗାର ଓ କରୁଣ ବ୍ୟତୀତ ଅନ୍ୟ ଯେ କୌଣସି ରସ ଏଥିରେ ଅଙ୍ଗୀରସ ହୋଇ ପାରିବ ।

## ୧୭ । ହଲ୍ଲୀଶକ—

ସାତ ଆଠ ଜଣ ସ୍ତ୍ରୀ ପାତ୍ର ଏବଂ ଏକ ପୁରୁଷ ପାତ୍ର ବିଶିଷ୍ଟ ଏକାଙ୍କିକାର ନାମ ହଲ୍ଲୀଶକ । ଏହାର ବାକ୍ୟ ଯୋଜନା ଅତି ଉତ୍କୃଷ୍ଟ । ଆଧୁନିକ ପାଶ୍ଚାତ୍ୟ ନୃତ୍ୟ ନାଟ୍ୟ (opertic loallet) ସଙ୍ଗେ ଏହା ତୁଳନୀୟ । କବି ରବୀନ୍ଦ୍ରନାଥଙ୍କର ଚିତ୍ରାଙ୍ଗଦା, ଚଣ୍ଡାଳିକା ଏବଂ ନଟରାଜ ପ୍ରଭୃତି ରଚନା ଅଧୁନିକ ଭାରତୀୟ ନୃତ୍ୟ ନାଟ୍ୟର ପ୍ରକୃଷ୍ଟ ଉଦାହରଣ ।

## ୧୮ । ଭାଣିକା—

ଏଥିରେ ଏକମାତ୍ର ଅଙ୍କ, ଉତ୍କୃଷ୍ଟ ନାୟିକା, ନିକୃଷ୍ଟ ନାୟକ, ମୁଖ ଓ ନିର୍ବହଣ ସନ୍ଧି ଥାଏ । ଯଥା—କାମଦତ୍ତ ।

ଭାରତୀୟ ନାଟ୍ୟ ପରମ୍ପରାରେ ବିଶେଷ କରି ସଂସ୍କୃତ ସାହିତ୍ୟରେ ବିଭିନ୍ନ ପ୍ରକାର ନାଟ୍ୟକଳାର ପ୍ରକାଶ ହୋଇଛି । ପ୍ରାକୃତ ଓ ପାଲି ଭାଷାରେ ବିଭିନ୍ନ ସମୟରେ ସଟ୍ଟକ ମାନ ରଚନା କରାଯାଇଛି । ସଙ୍ଗୀତ ସହ ନୃତ୍ୟକୁ ସମନ୍ୱୟ କରି ପ୍ରାଚ୍ୟ ସ୍ରଷ୍ଟାମାନେ ସାର୍ଥକ ନାଟକମାନ ସୃଷ୍ଟି କରିଛନ୍ତି । ଭାରତୀୟ ନାଟକକୁ ବିଚାର କଲେ ଏହାର ସଙ୍ଗୀତମୟ ସ୍ୱଭାବକୁ ଗ୍ରହଣ କରିବାକୁ ପଡ଼ିବ । ଭାରତୀୟ ନୃତ୍ୟ ସହ କଳାଗତ ଦୃଢ଼ ଅନୁବନ୍ଧନ ସମଗ୍ର ନାଟ୍ୟ ଚେତନାକୁ ବାନ୍ଧି ରଖିଛି । ପ୍ରବୃତ୍ତି ଓ ପ୍ରକୃତିର ସାମାନ୍ୟ ପ୍ରାର୍ଥକ୍ୟ ହେତୁ ଗୋଟିଏ ନାଟକ ଅନ୍ୟଠାରୁ ଅଲଗା ହୋଇ ପଡ଼ିଛି । ବିଶ୍ୱ ସାହିତ୍ୟର ନାଟ୍ୟ କଳାକୁ ନେଇ ଯଦି ଏକ ତୁଳନାତ୍ମକ ଅଧ୍ୟୟନ କରାଯାଏ, ସେଠି ଭାରତୀୟ ନାଟ୍ୟ କଳାର ଔଚିତ୍ୟ ଫୁଟି ଉଠିବ ।

✳ ନାଟକର ପ୍ରକାରଭେଦ ଆଲୋଚନା ଆରମ୍ଭରୁ ଭାରତୀୟ ନାଟକର ବିଭାଗୀ କରଣ ପର୍ଯ୍ୟନ୍ତ ସର୍ବେଶ୍ୱର ଦାସଙ୍କ 'ନାଟକ ବିଚାର' ପୁସ୍ତକର ଦୃଶ୍ୟ କାବ୍ୟର ଶ୍ରେଣୀ ବିଭାଗ ଅଧ୍ୟାୟଟିକୁ ଗ୍ରହଣ କରାଯାଇଛି । ଭାରତୀୟ ନାଟ୍ୟତତ୍ତ୍ୱକୁ ଏକ ପ୍ରାଚୀନ ପୋଥିରୁ ଉଦ୍ଧାର କରି ତାକୁ ନବନ୍ୟାସ ଦେବା ଆମର ଉଦ୍ଦେଶ୍ୟ । ୧୦ଟି ରୂପକ ଓ ୧୮ଟି ଉପରୂପକକୁ ଏହାର ମୌଳିକତା ଓ ଆବଶ୍ୟକତା ଦୃଷ୍ଟିରୁ ଅବିକଳ ଉପସ୍ଥାପନ କରାଯାଇଛି । କୌଣସି ପାଠକଙ୍କର ଏଥିନେଇ କୌଣସି ସନ୍ଦେହ ରହିବା ଉଚିତ ନୁହେଁ । ଅଧିକ ଜାଣିବାକୁ ଆଗ୍ରହୀ ନାଟ୍ୟ ରସିକମାନେ ସର୍ବେଶ୍ୱର ଦାସଙ୍କ ମୂଳ ପୁସ୍ତକକୁ ଗ୍ରହଣ କରି ପାରନ୍ତି ।

[ ନାଟକ ବିଚାର / ସର୍ବେଶ୍ୱର ଦାଶ, ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ, ଦ୍ୱିତୀୟ ସଂସ୍କରଣ—୧୯୭୭ । ]

ବିଶ୍ୱ ନାଟ୍ୟ ସାହିତ୍ୟ ଓ ଭାରତୀୟ ନାଟ୍ୟ ପରମ୍ପରା ପରି ଓଡ଼ିଆ ନାଟ୍ୟ ସାହିତ୍ୟର ଏକ ସ୍ୱତନ୍ତ୍ର ପରମ୍ପରା ରହିଛି । ଓଡ଼ିଆ ନାଟକ ବିଭିନ୍ନ ଦୃଷ୍ଟିକୋଣରୁ ସମୃଦ୍ଧ । ଜଗମୋହନ ଲାଲଙ୍କ ସଫଳ ଉଦ୍ୟମ ପରେ ଓଡ଼ିଆ ଭାଷାରେ ବିଧିବଦ୍ଧ ନାଟକ ସୃଷ୍ଟି ହୋଇଛି । ବିଧିବଦ୍ଧ ନାଟକ ରଚନା ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ଲୋକ ନାଟକ, ସୁଆଙ୍ଗ ଅନେକ ଆଗରୁ ଅଗଣିତ ସାଧାରଣ ମଣିଷଙ୍କର ମନୋରଞ୍ଜନ ମାଧ୍ୟମ ରୂପେ ବ୍ୟବହୃତ ହେଉଥିଲେ । ଓଡ଼ିଶାରେ ବିଭିନ୍ନ ପ୍ରକାର ଜନଜାତିର ଲୋକମାନେ ବାସ କରନ୍ତି । ଆଧୁନିକ ଓ ବିକଶିତ ଓଡ଼ିଶା ମୁଖ୍ୟତଃ କଟକ, ପୁରୀ, ବାଲେଶ୍ୱର ଉପକୂଳ ଅଞ୍ଚଳକୁ ନେଇ ସୀମିତ ରହିଛି । ଏସବୁ ଅଞ୍ଚଳର ଭାଷା ସଂସ୍କୃତି ଅନ୍ୟାନ୍ୟ ଅଞ୍ଚଳଠାରୁ ଅଲଗା ଜଣାଯାଏ । ଓଡ଼ିଶାର ପ୍ରାନ୍ତରରେ ବାସ କରୁଥିବା ଅଧିକାଂଶ ଜନବହୁଳ ଅଞ୍ଚଳ ଓ ଓଡ଼ିଶାର ଜନସଂଖ୍ୟାର ଅଧାରୁ ଅଧିକ ଅଧିବାସୀ ଗୋଟିଏ ଜାତିର ମୁଖ୍ୟ ସ୍ରୋତଠାରୁ ଅଲଗା ରହି ନିଜସ୍ୱ ଶୈଳୀ ଓ ସଂସ୍କୃତିକୁ ମାଧ୍ୟମ କରି ବଞ୍ଚିଆନ୍ତି । ଗିରିଜନ ଓ ହରିଜନମାନେ ନିଜ ନିଜ ସମାଜରେ ଲୋକ ବିଶ୍ୱାସ ଓ ଚଳଣିକୁ ଗ୍ରହଣ କରି ଜୀବନ ଯାପନ କରନ୍ତି । ସାମାଜିକ ଓ ଧାର୍ମିକ ବିବିଧତା ସତ୍ତ୍ୱେ ସମଗ୍ର ଓଡ଼ିଶାର ଜନଜୀବନ ଭିତରେ ଗୋଟିଏ ଅଦୃଶ୍ୟ ଭାବସାମ୍ୟ ଲକ୍ଷ୍ୟ କରାଯାଇଥାଏ । ଗୋଟିଏ ଜାତିର ଲୋକ ନାଚ, ଗୀତ ସଙ୍ଗୀତ ଅନ୍ୟଠାରୁ ଅଲଗା ନୁହେଁ, ବରଂ ଜଣେ ଅନ୍ୟ ଜଣକୁ ଗ୍ରହଣ କରି ରୂପାୟିତ ହୋଇଛି । ବିଭିନ୍ନ ସମ୍ପ୍ରଦାୟର ଲୋକନୃତ୍ୟ, ଲୋକ ସଙ୍ଗୀତ, ଲୋକ-ନାଟକ ସୃଷ୍ଟି କରିଛି । ଏହି ଲୋକ ନାଟକର ବିଭିନ୍ନ ବିଭାଗ ପରବର୍ତ୍ତୀ ସମୟରେ ଆମ ଆଧୁନିକ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛି । ଆଧୁନିକ ନାଟକ ଆଧୁନିକ ମଣିଷ ଓ ସମାଜ ବ୍ୟବସ୍ଥାକୁ ନେଇ ପ୍ରକାଶ ପାଇଛି । ଏଥିରେ ସମାଜ ଜୀବନ ଓ ବ୍ୟକ୍ତି ଜୀବନ ସମାନ୍ତରାଳ ଭାବରେ ପ୍ରକାଶ ପାଇଛି । ନିମ୍ନରେ ଓଡ଼ିଆ ନାଟକର କେତୋଟି ଗୁରୁତ୍ୱପୂର୍ଣ୍ଣ ବିଭାଗ ଆଲୋଚନା କରାଗଲା ।

## ୧ । ସାମାଜିକ ନାଟକ --

ସାମାଜିକ ନାଟକରେ ସମାଜରେ ଘଟୁଥିବା ବିଭିନ୍ନ ଘଟଣା ଆତ୍ମପ୍ରକାଶ କରିଥାଏ । ସମାଜ ଜୀବନର କ୍ରିୟା ପ୍ରତିକ୍ରିୟା ଏହାର ମୂଳ ଆଧାର । ମଣିଷ ସମାଜ ଭିତରେ ବାସ କରେ । ନିଜକୁ ପୂର୍ଣ୍ଣ ଭାବରେ ବିକାଶ କରିବାପାଇଁ ବ୍ୟକ୍ତି ସମାଜ ଉପରେ ନିର୍ଭର କରେ ଏବଂ ପରୋକ୍ଷରେ ମଣିଷମାନଙ୍କର ସାମୂହିକ ସମାବେଶରେ ସମାଜ ନିଜକୁ ପରିପୁଷ୍ଟ କରି ପାରିଥାଏ । ପ୍ରାଚୀନ ସମାଜରେ ମଣିଷ ଓ ସମାଜ ଭିତରେ ଏକ ପ୍ରାକୃତିକ ସମ୍ପର୍କ ସ୍ଥାପିତ ହୋଇଥିଲା । ବନ-ପ୍ରକୃତି କୋଳରେ ଆଦିମ ମଣିଷ ମୁଖ୍ୟତଃ ଜୀବନଯାପନ ପାଇଁ (ଶିକାର, ପଶୁପାଳନ) ମୁଖ୍ୟତଃ ନିର୍ଭର

କରୁଥିଲା । ପରେ ପରେ ମଣିଷ ଯେତେବେଳେ ଯାଯାବର ପ୍ରବୃତ୍ତି ପରିତ୍ୟାଗ କରି କୃଷି ଉପରେ ଗୁରୁତ୍ୱ ଦେଲା, ଗୋଷ୍ଠୀ ଗଠନ କଲା ସେତେବେଳେ ସମାଜର ଗୁରୁତ୍ୱ ବ୍ୟକ୍ତି ପକ୍ଷରେ ବୃଦ୍ଧି ପାଇଲା । ସେ ସମାଜ ଗଢ଼ିଲା ଏବଂ ନିଜର ବିବିଧ କ୍ରିୟାକର୍ମ ସମାଜ ବ୍ୟବସ୍ଥାକୁ ବୃଦ୍ଧିମନ୍ତ କଲା । ଏ ସମୟରେ ମଣିଷର କ୍ରିୟାକଳାପକୁ ନେଇ ଅନେକ ସାମାଜିକ ଲୋକନାଟକ ସୃଷ୍ଟି ହୋଇଥିଲା । ଚଢ଼େୟା ଚଢ଼େୟାଣୀ, ଡାଲଖାଇ, କରମା ଆଦି ନାଚରେ ସମାଜ ଓ ବ୍ୟକ୍ତି ଜୀବନର ଅନେକ ଚିତ୍ର ପ୍ରକାଶ ପାଉଥିଲା ।

ଓଡ଼ିଆ ନାଟ୍ୟ ସାହିତ୍ୟର ଆରମ୍ଭରେ ସାମାଜିକ ନାଟକରୁ ହିଁ ନାଟକ ରଚନା କରିବା ଆରମ୍ଭ ହୋଇଛି । ଊନବିଂଶ ଶତକର ସମାଜ ବ୍ୟବସ୍ଥାକୁ ଲକ୍ଷ୍ୟକରି ଜଗମୋହନ ଲାଲ ରଚନା କରିଥିଲେ 'ବାବାଜୀ' ନାଟକ । ନାଟକରେ ବାବାଜୀ ମାନଙ୍କର କ୍ରିୟାକଳାପ ଓ ସମାଜର କୁସଂସ୍କାରକୁ ଜଗମୋହନ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ପରେ ପରେ ତାଙ୍କର 'ସତୀ' ନାଟକରେ ଏହି ସାମାଜିକ ଆଭି-ମୁଖ୍ୟର ପ୍ରକାଶ ଦେଖିବାକୁ ମିଳେ । ୧୮୭୭ ମସିହାରେ ବାବାଜୀ ଓ ୧୮୮୭ ମସିହାରେ ଜଗମୋହନ ଲାଲ 'ସତୀ' ନାଟକ ରଚନା କରିଥିଲେ । ସେ ମଧ୍ୟ 'ପ୍ରୀତି' ଓ 'ବୃଦ୍ଧ ବିବାହ' ନାମକ ଅନ୍ୟ ଦୁଇଟି ସାମାଜିକ ନାଟକ ରଚନା କରିଥିଲେ । ଓଡ଼ିଆ ନାଟ୍ୟ ସାହିତ୍ୟର ପ୍ରଥମ ନାଟ୍ୟକାର ଜଗମୋହନ ଲାଲ ପ୍ରଥମ କରି ନାଟକର ପ୍ଲଟ୍ ଭାବରେ ସାମାଜିକ କାହାଣୀକୁ ଗ୍ରହଣ କରିଛନ୍ତି । 'ବାବାଜୀ' ନାଟକଠାରୁ 'ବୃଦ୍ଧ ବିବାହ' ପର୍ଯ୍ୟନ୍ତ ପ୍ରତ୍ୟେକ ନାଟକରେ ଜଗମୋହନ ନିଜ ନାଟକର ସାମାଜିକ ଆଭିମୁଖ୍ୟ ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି । ଏଠି ସ୍ମରଣ କରିବାକୁ ହେବ ୧୮୭୮ ମସିହାରେ ରଘୁନାଥ ପରିଛାଙ୍କ 'ଗୋପୀନାଥ ବଲ୍ଲଭ' ନାଟକର ମର୍ଯ୍ୟାଦା ହାସଲ ନ କରିବା ମୂଳରେ ଏହାର ପୌରାଣିକ ପ୍ଲଟ୍‌କୁ ମଧ୍ୟ ଏକ କାରଣ ରୂପେ ଗ୍ରହଣ କରାଯିବ । ଓଡ଼ିଆ ନାଟକର ଆଦି ଯୁଗରେ ନାଟ୍ୟକାର ଜଗମୋହନ ଲାଲଙ୍କର ଏ ଉଦ୍ୟମ ପ୍ରଶଂସନୀୟ ନିଶ୍ଚୟ ।

ଓଡ଼ିଆ ନାଟ୍ୟ ସାହିତ୍ୟର ମଧ୍ୟ ଯୁଗରେ ଅନେକ ସଫଳ ସାମାଜିକ ନାଟକ ପ୍ରକାଶ ପାଇଛି । ଶିକ୍ଷା ଓ ସଭ୍ୟତାର ବିକାଶ ସହ ଓଡ଼ିଆ ଭାଷାର ସମୃଦ୍ଧି ଓ ଜାତୀୟ ମାନସିକ ଅଭିବୃଦ୍ଧି ସହ ବଙ୍ଗାଳୀ ଓ ଓଡ଼ିଆମାନଙ୍କ କଳାପ୍ରବଣତା ଆମ ଭାଷାରେ ଏ ସମୟରେ ଅନେକ ନାଟକ ସୃଷ୍ଟି କରିଛି । ସାମାଜିକ ନାଟକ ରଚନା କରିବାରେ ଅଶ୍ୱିନୀ କୁମାର ଘୋଷ ଏ ସମୟର ଜଣେ ପ୍ରତିଭାବାନ୍ ସ୍ରଷ୍ଟା । ନାଟ୍ୟକାରଙ୍କର 'ଓଡ଼ିଆ ପୁଅ' 'ଚଷା ଝିଅ' ନାଟକ ଦୁଇଟିକୁ ସ୍ରଷ୍ଟାଙ୍କର ବଳିଷ୍ଠ ନିଦର୍ଶନ ଭାବରେ ଗ୍ରହଣ କରାଯାଇ ପାରିବ । ଓଡ଼ିଆ ନାଟକକୁ ଦର୍ଶକ ନିକଟରେ

ପହଞ୍ଚାଇବାରେ ଓ ସମାଜର ରୂପ ରଙ୍ଗ ଭରି ଦେବାରେ କାଳୀଚରଣ ପଟ୍ଟନାୟକଙ୍କର ଉଦ୍ୟମ ପ୍ରଶଂସନୀୟ । 'ଭାତ' 'ଚୁମ୍ବନ' 'ଗାର୍ଲସ୍କୁଲ' 'ରକ୍ତମାଟି' 'ବେକାର' 'ଅଭିଗିନୀ' ଆଦି ନାଟକକୁ କାଳୀଚରଣଙ୍କ ବଳିଷ୍ଠ ସାମାଜିକ ନାଟକ ଭାବରେ ଗ୍ରହଣ କରିହେବ । ଭଞ୍ଜକିଶୋର ପଟ୍ଟନାୟକଙ୍କ 'ମାଣିକଯୋଡ଼ି' ରାମଚନ୍ଦ୍ର ମିଶ୍ରଙ୍କର 'କରିଗୀ' 'ଭାଇ ଭାଉଜ' 'ଘରସଂସାର' ଗୋପାଳ ଛୋଟରାୟଙ୍କର 'ଶଙ୍ଖାସିନ୍ଦୂର' 'ଫେରିଆ' 'ଅଭିଗିନୀର ସ୍ୱର୍ଗ' । ନାଟକଗୁଡ଼ିକ ସମାଜ ଚିତ୍ରରେ ହୃଷ୍ଟପୁଷ୍ଟ । କମଳଲୋଚନ ମହାନ୍ତିଙ୍କର 'ଭୁଠପଥର' 'ପୀୟୂଷ ପ୍ରବାହ' ଆଦି ନାଟକକୁ ସାମାଜିକ ନାଟକ ଭାବରେ ଗ୍ରହଣ କରାଯିବ । ଏ ସମୟରେ ଓଡ଼ିଆ ନାଟକରେ ଅନେକ ସାମାଜିକ ନାଟକ ସୃଷ୍ଟି ହୋଇଥିଲା । ଓଡ଼ିଶାର ଜନଜୀବନ, ସଂସ୍କୃତି, ଆଦର୍ଶବୋଧ ଓ ପାରିବାରିକ ଚିତ୍ର ବହୁଳ ଭାବରେ ନାଟକରେ ଆତ୍ମ-ପ୍ରକାଶ କରିଥିଲା ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଆ ନାଟ୍ୟ ସାହିତ୍ୟରେ ଆଙ୍ଗିକ ଓ ଆତ୍ମିକରେ ଯେଉଁ ପରିବର୍ତ୍ତନ ଆସିଛି, ସେହି ପରିବର୍ତ୍ତନକୁ ପାଥେୟ କରି ଓଡ଼ିଆ ନାଟକ ତା'ର ସମାଜ ସ୍ୱରୂପକୁ ପ୍ରୟୋଗାତ୍ମକ ଶୈଳୀରେ ପ୍ରକାଶ ପାଇଛି । ଏସବୁ ନାଟକରେ ମଣିଷର ଆବେଗ (emotion)କୁ ଅଧିକ ଗୁରୁତ୍ୱ ଦିଆଯାଉଛି । ସାମାଜିକ ନାଟକମାନଙ୍କରେ ଯେପରି ଧାରାବାହିକ ଘଟଣା ବା ନିରବଧି କାହାଣୀ ପ୍ରକାଶ ପାଉଥିଲା ସାମ୍ପ୍ରତିକ ନାଟକରେ ସେପରି ଅନୁଭବ ବିରଳ । ପୁଣି ଅନେକ ସାମାଜିକ ନାଟକ ନିଜର ବାର୍ତ୍ତା ଓ ଅନୁଭବକୁ ମିଥ୍ ମାଧ୍ୟମରେ ପ୍ରକାଶ କରୁଛନ୍ତି । ସାମ୍ପ୍ରତିକ ସାମାଜିକ ନାଟକରେ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଅନେକ ପରିବର୍ତ୍ତନ ଆସିଛି । ମନୋରଞ୍ଜନ ଦାସଙ୍କର 'ଆଗାମୀ' 'ଅବରୋଧ' 'ଉର୍ମି' 'ଅରଣ୍ୟଫସଲ' 'କାଠଯୋଡ଼ା' 'ବିଚାର୍ଚିତ ଅପରାହ୍ନ' 'କ୍ଲାନ୍ତ ପ୍ରଜାପତି' ବିଜୟ ମିଶ୍ରଙ୍କର 'ଶବବାହକମାନେ' ଜଣେ ରାଜା ଥିଲେ । 'ଜନନୀ' ରତ୍ନାକର ଚଇନିଙ୍କର 'ରାଜହଂସ' 'ଆଶାବୃନ୍ଦାବନ' 'ଶୂନ୍ୟତାର ସିଢ଼ି' 'ଦୁଇଟି ସୁଗନ୍ଧିତଗନ୍ଧ ଫୁଲକୁ ନେଇ' ରମେଶ ପାଣିଗ୍ରାହୀଙ୍କର 'ଜଣେ ମହାପୁରୁଷଙ୍କ ଜନ୍ମ ମୃତ୍ୟୁ ସମ୍ପର୍କରେ' 'ହାତୀକୁ ହୋମିଓପାଥି' 'ଆନନ୍ଦନଗରୀକୁ ଯାତ୍ରା' ଅକ୍ଷୟ କୁମାର ମହାନ୍ତିଙ୍କର 'ସମ୍ବିତ୍' ଓ 'କାଗଜଡଙ୍ଗା' ବିଶ୍ୱଜିତ୍ ଦାସଙ୍କର 'ଧୃତରାଷ୍ଟ୍ରର ଆଖି' 'ନାଲିପାନ ରାଣୀ କଳାପାନ ରାଜା' କାର୍ତ୍ତିକ ରଥଙ୍କର 'ଈଶ୍ୱର ଜଣେ ଯୁବକ' 'ବହ୍ନିମାନ' ପ୍ରଫୁଲ୍ଲ ରଥଙ୍କର 'ଶବପଡ଼ିଛି' ଆଦି ନାଟକରେ ସମାଜର ପ୍ରତିବିମ୍ବକୁ ଧରିହୁଏ । ଏହି ନାଟକଗୁଡ଼ିକୁ ସଫଳ ପ୍ରୟୋଗବାଦୀ ସାମାଜିକ ନାଟକ ଭାବରେ ଗ୍ରହଣ କରାଯିବ ।

ସାମ୍ପ୍ରତିକ ଯାତ୍ରା ନାଟକରେ ଗ୍ରହଣ କରାଯାଉଥିବା ନାଟକଗୁଡ଼ିକରୁ ଅଧିକାଂଶ ନାଟକ ସାମାଜିକ ନାଟକ । ମଧ୍ୟପର୍ବର ଥିଏଟର ନାଟକ ପରି ଯାତ୍ରା ନାଟକ ପୁଣି ଦର୍ଶକମାନଙ୍କୁ ବାନ୍ଧି ରଖିବାର ପ୍ରୟାସ କରୁଛି । ଓଡ଼ିଶାର ପୁରପଲ୍ଲୀ ଠାରୁ ଆରମ୍ଭ କରି ସହର ଜୀବନ ଭିତରେ ଯାତ୍ରା ନାଟକର ଗୁରୁତ୍ୱ ଓ ଆଦର ସବୁଠି ଲକ୍ଷ୍ୟ କରାଯାଉଛି ।

ସାମାଜିକ ନାଟକରେ ସମାଜ ସମ୍ପର୍କ ଓ ବ୍ୟକ୍ତିର ବାସ୍ତବ ସମସ୍ୟା ରୂପାୟିତ ହୋଇଥିବାରୁ ଏହା ଅଧିକ ଦର୍ଶକଙ୍କୁ ଅତିଶୀଘ୍ର ଆକୃଷ୍ଟ କରି ପାରିଛି । 'ଶ୍ରୀକୃଷ୍ଣ ଆସୁଛନ୍ତି' 'ମୋ ପେଁକାଲି ବଜେଇ ଦେ' 'କିଏ ଯୋଡ଼ିଦେବ ଭଙ୍ଗା ଚୂଡ଼ିକି' 'କାଗଜ ଫୁଲ' 'ଅନ୍ଧ ଦେଶେ ଗଲି ଦର୍ପଣ ବିକି' 'ଅଡ଼ୁଆ ସୂତା' ଆଦି ବିଭିନ୍ନ ଅପେରାର କେତୋଟି ସାମାଜିକ ନାଟକ ଆଜି ମଧ୍ୟ ଦର୍ଶକଙ୍କୁ ଆକୃଷ୍ଟ କରିଥାଏ । ଅଶ୍ୱିନୀ କୁମାର ଓ କାଳୀ ଚରଣଙ୍କ ଓଡ଼ିଆ ସାମାଜିକ ନାଟକ ସହ ଆଜିର ଯାତ୍ରା ନାଟକକୁ ଅଧିକ ଆଗ୍ରହର ସହ ବିଚାର କରାଯାଇ ପାରିବ ।

ସାମାଜିକ ନାଟକ ଯେ କୌଣସି ନାଟକର ଓ ଭାଷାର କଳାତ୍ମକ ସର୍ବଶ୍ରେଷ୍ଠ ପ୍ରୟାସ । ଓଡ଼ିଆ ନାଟ୍ୟ ସାହିତ୍ୟର ଇତିହାସରେ ଅନେକ ସଫଳ ସାମାଜିକ ନାଟକ ସୃଷ୍ଟି ହୋଇଛି ।

## ୨ । ଇତିହାସଭିତ୍ତିକ ନାଟକ—

ଇତିହାସକୁ କାହାଣୀର ପଞ୍ଜର ଭାବରେ ଗ୍ରହଣ କରି ସେଥିରେ ସାମାଜିକତା ଆରୋପ କରି ଇତିହାସଭିତ୍ତିକ ନାଟକ ସୃଷ୍ଟି ହୋଇଥାଏ । ଜନମାନସରେ ଯେଉଁ ଐତିହାସିକ ଘଟଣା ଜୀବିତ ଥାଏ ବା ଯେଉଁ ଘଟଣାର ଗୁରୁତ୍ୱ ସମାଜ ଜୀବନରେ ପୁଣି ଦେଖା ଦେଉଥାଏ ସେଭଳି ଘଟଣାକୁ ନେଇ ଐତିହାସିକ ନାଟକ ସୃଷ୍ଟି ହୋଇଥାଏ । ଇତିହାସ ପ୍ରସିଦ୍ଧ କୌଣସି ପୁରୁଷ ନାଟକର ନାୟକ ହୋଇ ଆଆନ୍ତି । ଇତିହାସର ଘଟଣା ଭିତରେ ଗୋଟିଏ ଜାତିର ଅବକ୍ଷୟ ଓ ଗୌରବ ଆତ୍ମପ୍ରକାଶ କରିଥାଏ ।

ଓଡ଼ିଆ ନାଟକର ଇତିହାସରେ କେତୋଟି ସଫଳ ଐତିହାସିକ ନାଟକ ଦେଖିବାକୁ ମିଳେ । ରାମଶଙ୍କର ରାୟଙ୍କ 'କାଞ୍ଚି କାବେରୀ' ଗୋବିନ୍ଦ ବିଦ୍ୟାଧରଙ୍କ 'କଳାପାହାଡ଼' ନାଟକ ଅନ୍ୟତମ । ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମଦେବ' ଓ କାଳୀ ଚରଣ ପଟ୍ଟନାୟକଙ୍କର 'ଅଭିଯାନ' ନାଟକ ଓଡ଼ିଶାର ସ୍ୱାଭିମାନ ଓ ଜଗନ୍ନାଥ ଚେତନାରେ ପରିପୁଷ୍ଟ । ପ୍ରୟୋଗବାଦୀ ନାଟକରେ ରତ୍ନାକର ଚଇନିଙ୍କ 'ମୂଷା' ଏକ ସଫଳ ଐତିହାସିକ ନାଟକ ।

## ୩ । ପୌରାଣିକ ନାଟକ—

ପୌରାଣିକ ନାଟକରେ ପୁରାଣର କଥାବସ୍ତୁକୁ ଗ୍ରହଣ କରାଯାଇ ଥାଏ । ଭଗବାନଙ୍କ ପ୍ରତି ଥିବା ଲୋକଙ୍କର ବିଶ୍ୱାସକୁ ନେଇ ପୌରାଣିକ ନାଟକ ରଚନା କରାଯାଏ । ଭାରତରେ ସୁବୃହତ ପୁରାଣ ପରମ୍ପରା ଦେଖାଯାଏ । ଈଶ୍ୱରଙ୍କ ଲୀଳାଭୂମି ରୂପେ ଭାରତ ପ୍ରତିଷ୍ଠା ଅର୍ଜନ କରିଛି । ଭାରତରୁ ବିଭିନ୍ନ ସମୟରେ ବିଭିନ୍ନ ଧର୍ମମତ ଓ ଈଶ୍ୱରଙ୍କ ମର୍ତ୍ତ୍ୟଲୀଳା ଆରମ୍ଭ ହୋଇଛି । ପୌରାଣିକ ନାଟକମାନଙ୍କରେ ଭଗବାନଙ୍କ ଅବତାର ଗ୍ରହଣକୁ ଅନେକ ସମୟରେ ଗ୍ରହଣ କରାଯାଇ ଥାଏ । ଭକ୍ତ ଓ ଭଗବାନଙ୍କର ସମ୍ପର୍କ, ଭଗବାନଙ୍କ ଦୁଷ୍ଟଦଳନ ଓ ଭଗବାନଙ୍କ ମାନବୀୟ କ୍ରିୟାକର୍ମକୁ ନେଇ ନାଟକ ଆକାରରେ ପ୍ରକାଶ କରାଯାଇ ଥାଏ । ଭାରତରେ ଓ ଓଡ଼ିଶାରେ ଦେଖାଯାଉଥିବା ପୁରାଣକୁ ଭିତ୍ତିକରି ପୌରାଣିକ ନାଟକମାନ ସୃଷ୍ଟି ହୋଇଥାଏ । ଓଡ଼ିଆ ପୌରାଣିକ ନାଟକ ଓଡ଼ିଆ ପୁରାଣ ସାହିତ୍ୟ ଦ୍ୱାରା ଅଧିକ ଭାବରେ ପ୍ରଭାବିତ ହୋଇଛି ।

ରଘୁନାଥ ପରିଛାଙ୍କର 'ଗୋପାଳ ବଲ୍ଲଭ' ନାଟକକୁ ଏକ ପୌରାଣିକ ନାଟକ ବା ଗୀତିନାଟ୍ୟ ଭାବରେ ଗ୍ରହଣ କରାଯାଇ ପାରେ । ରାମଶଙ୍କର ରାୟଙ୍କର 'କଂସବଧ' 'ରାମାଭିଷେକ' ଦୁଇଟି ସାର୍ଥକ ପୌରାଣିକ ନାଟକ । କାମପାଳ ମିଶ୍ରଙ୍କ 'ସୀତାବିବାହ' ଅଶ୍ୱିନୀ କୁମାର ଘୋଷଙ୍କ 'ଧ୍ରୁବ' 'ବୀରଅଭିମନ୍ୟୁ' ରାମଚନ୍ଦ୍ର ମାହାପାତ୍ରଙ୍କ 'ସୁଦାମା' ଗୋପୀନାଥ ନନ୍ଦଙ୍କ 'ଜାନକୀ ପରିଣୟ' କାଳୀଚରଣ ପଟ୍ଟନାୟକଙ୍କ 'ଚଣ୍ଡୀ' କାର୍ତ୍ତିକ କୁମାର ଘୋଷଙ୍କ 'ଲକ୍ଷ ହୀରା' ଆଦି ନାଟକକୁ ପୌରାଣିକ ନାଟକ ଭାବରେ ଗ୍ରହଣ କରାଯିବ ।

ସାମ୍ପ୍ରତିକ ନାଟକରେ ପୁରାଣ ଚେତନ ମିଥ୍ (myth) ମାଧ୍ୟମରେ ଆତ୍ମ-ପ୍ରକାଶ କରିଛି । 'ଈଶ୍ୱର ଜଣେ ଯୁବକ' 'ରାତି ବାରଟାରେ ଭଗବାନ ମରିଗଲେ' ଆଦି ନାଟକରେ ପୁରାଣ ଚେତନା ସହ ସାମ୍ପ୍ରତିକତାର ସ୍ୱରୂପକୁ ମିଶାଇ ଦିଆ-ଯାଇଛି ।

## ୪ । ରାଜନୈତିକ ନାଟକ—

ଶାସନ ବ୍ୟବସ୍ଥା ଓ ଶାସନ ନୀତିକୁ ନେଇ ରାଜନୈତିକ ନାଟକ ଆତ୍ମ-ପ୍ରକାଶ କରିଥାଏ । ଅନେକ ନାଟକରେ ରାଜନୈତିକ ସଚେତନତା ପ୍ରକାଶ ପାଇଥାଏ । ଓଡ଼ିଆ ନାଟକରେ ରାଜନୈତିକତାକୁ ଦୁଇ ଭାଗରେ ପ୍ରକାଶ କରିହେବ । ପ୍ରଥମତଃ ଦେଶ ସ୍ୱାଧୀନ ଜନିତ ସଂଗ୍ରାମ ଓ ସାଧାରଣ ଜନତାଙ୍କ ନାଟକ

ମାଧ୍ୟମରେ ପ୍ରେରଣା ପ୍ରଦାନ ଏବଂ ଦ୍ୱିତୀୟତଃ ସାମ୍ପ୍ରତିକ ଶାସନ ବ୍ୟବସ୍ଥାକୁ ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ ଉପସ୍ଥାପନା କରିବା । ସ୍ୱାଧୀନତା ଚେତନା ଆମ ନାଟକରେ ବିରଳ ନୁହେଁ । ତଥାପି କେତେକ ନାଟକରେ ଦେଶପ୍ରେମୀ ଚରିତ୍ରମାନଙ୍କର ଅବତାରଣା ଫଳରେ ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ଧାରଣା ସୃଷ୍ଟି ହୋଇଛି । ସ୍ୱାଧୀନତାର ଶାସନ ବ୍ୟବସ୍ଥାକୁ ତୀର୍ଯ୍ୟକ ଭାବରେ ପ୍ରକାଶ କରିବାରେ ପ୍ରୟୋଗବାଦୀ ନାଟକ ଅଧିକ ସଫଳ ହୋଇଛି । ରାଜନୀତି ଭିତରେ ଦେଖାଯାଉଥିବା ଭ୍ରଷ୍ଟାଚାର ପ୍ରତିଶ୍ରୁତିର ଅପପ୍ରୟୋଗ, ସୁବିଧାବାଦୀ ରାଜନୀତି, ସ୍ୱାର୍ଥସର୍ବସ୍ୱ ବିଚାରଧାରା, ଦୁର୍ନୀତି ଏବଂ ତଥାକଥିତ ସିଂହାସନ ପ୍ରୀତିକୁ ନେଇ ଅନେକ ନାଟକ ଦୃଷ୍ଟିପୁଷ୍ଟ ହୋଇଛନ୍ତି ।

ପ୍ରଥମ ପର୍ଯ୍ୟାୟର ରାଜନୈତିକ ନାଟକ ଭାବରେ ମନୋରଞ୍ଜନ ଦାସଙ୍କର 'ଅଗସ୍ତ ନଅ' 'ଅବରୋଧ' ଆଦିକୁ ବିଚାର କରାଯିବ । ରାଜନୈତିକ ପ୍ରତାରଣା ଓ ମିଥ୍ୟା ଭାଷଣ ବାଜିକୁ ନେଇ ଗୋପାଳ ଛୋଟରାୟଙ୍କ 'ପରକଲମ' ନାଟକଟି ବେଶ୍ ମନଛୁଆଁ । ସ୍ୱାଧୀନତାର ରାଜନୈତିକ ଚେତନା ପ୍ରକାଶ କରିବାରେ ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ' ଏକ ସ୍ୱତନ୍ତ୍ର ସୃଷ୍ଟି । ରତ୍ନାକର ଚଇନିଙ୍କର 'ଅଥଚରୁଣକ୍ୟ' ନାଟକରେ ରାଜନୀତିରେ ଆଦର୍ଶବାଦିକୁ ହତ୍ୟା ଓ କ୍ଷମତାରେ ପହଞ୍ଚିବା ପରେ ମଣିଷ କପରି ପଥଭ୍ରଷ୍ଟ ହୋଇଯାଏ, ତାହାର ବର୍ଣ୍ଣନା ପ୍ରଦାନ କରିଛନ୍ତି । ରମେଶ ପାଣିଗ୍ରାହୀଙ୍କ 'ହାତୀକୁ ହୋମିଓ ପାଥି' ନାଟକରେ ସମାଜର ବଡ଼ପଣ୍ଡା ମାନେ କପରି ଦୁର୍ନୀତିଗ୍ରସ୍ତ ତାହା ଦେଖାଇ ଦିଆଯାଇଛି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଅନେକ ନାଟକ ରାଜନୈତିକ ନ ହେଲେ ମଧ୍ୟ ରାଜନୈତିକ ଚେତନା ପ୍ରକାଶ କରିବାରେ ସକ୍ଷମ ହୋଇଛନ୍ତି ।

## ୪ । ପରୀକ୍ଷାଧର୍ମୀ ନାଟକ—

ସ୍ୱାଧୀନତା ପର୍ଯ୍ୟନ୍ତ ଓଡ଼ିଆ ନାଟକରେ ତା'ର ନିଜସ୍ୱ ପାରମ୍ପରିକ ଧାରା ପ୍ରକାଶ ପାଇ ଆସୁଥିଲା । ଏ ସମୟରେ ନାଟକ କାଳୀବାବୁ ଓ ଅଶ୍ୱିନୀ କୁମାରଙ୍କର ପାଞ୍ଚସେଟ୍‌ର ଫର୍ମୁଲାକୁ ଗ୍ରହଣ କରିଥିଲା । ନାଟକରେ ପାଞ୍ଚଟି ପର୍ଯ୍ୟନ୍ତ ସଙ୍ଗୀତ ଦିଆ ଯାଉଥିଲା । ନଟନଟୀ, ଦୁଆରୀ ଓ ବିଦୂଷକ ଚରିତ୍ରର ଆବଶ୍ୟକତା ଅନୁସାରେ ଅବତାରଣା କରାଯାଉଥିଲା । ସ୍ୱାଧୀନତା ପରେ ଓଡ଼ିଆ ନାଟକରେ ପରୀକ୍ଷାଧର୍ମୀ ନାଟକ ସୃଷ୍ଟି ହେବାର ପରିବେଶ ସୃଷ୍ଟି ହେଲା । ଯେତେବେଳେ ସମଗ୍ର ବିଶ୍ୱ ଜ୍ଞାନ ବିଜ୍ଞାନ ଦୃଷ୍ଟିରୁ ସମୃଦ୍ଧ ସେତେବେଳେ ଆମେ ଆମର ଝର୍କା ବନ୍ଦ ରଖି ପାରିବା ନାହିଁ । ବିଶ୍ୱ ସାହିତ୍ୟରେ ଏ ସମୟରେ ମାର୍କସ, କାମ୍ୟୁ, କାଫକା, ଫ୍ରଏଡ଼୍, ନିତସେ, ଡାରଉଇନ୍, କଙ୍କ ଗାର୍ଡ ଆଦି ଦାର୍ଶନିକମାନଙ୍କର ଚିନ୍ତାଧାରାର ପ୍ରତିଫଳନ ସମଗ୍ର ବିଶ୍ୱରେ ଦେଖିବାକୁ ମିଳୁଥିଲା । ଏହି ଚିନ୍ତାଧାରାର ସଂକ୍ରମତା

କେବଳ ଜୀବନରେ ନୁହେଁ ସାହିତ୍ୟରେ ମଧ୍ୟ ଅଧିକ ଭାବରେ ଦେଖିବାକୁ ମିଳିଲା । ସାହିତ୍ୟର ସୁପ୍ତ ଚେତନାକୁ ଏହା ନୂତନ ସଞ୍ଜିବନୀ ପ୍ରଦାନ କଲା । ନାଟକ ଉଭୟ ଦୃଶ୍ୟ ଓ ଶ୍ରାବ୍ୟ ହୋଇଥିବାରୁ ଏବଂ ଏଥିରେ ସମାଜ ଓ ବ୍ୟକ୍ତି ଜୀବନର ସିଧାସଳଖ ପ୍ରତିଫଳନ ଘଟିଥିବାରୁ ଏଥିରେ ଆଧୁନିକ ସମାଜର ସମସ୍ତ ଦର୍ଶନ ମିଳିତ ଭାବରେ ଆତ୍ମପ୍ରକାଶ କରିଛି । ଦୁଇ ଦୁଇଟା ବିଶ୍ୱଯୁଦ୍ଧ ସହିଥିବା ମଣିଷ ପାଇଁ ଆଜିର ପୃଥିବୀ ବିଶୃଙ୍ଖଳିତ ପାଲଟି ଯାଉଛି । ଏହିପରି ଏକ ସମାଜ ବ୍ୟବସ୍ଥାରେ ମଣିଷ ଅବିରତ ଅମଙ୍ଗଳବୋଧ ଭିତରେ ଜୀବନ ବିତାଉଛି । ମଣିଷର ଅସହାୟତା, ନିଃସଙ୍ଗତା, ପାପବୋଧ, ଗ୍ଲାନି, ନଂପୁସକତା, ବିବେକ ହୀନତାକୁ ନେଇ ଆଜିର ନାଟକରେ ନୂତନ ପରୀକ୍ଷା କରାଯାଉଛି । କେବଳ ଆତ୍ମିକ ଦୃଷ୍ଟିରୁ ନୁହେଁ ଆଙ୍ଗିକ ଦୃଷ୍ଟିରୁ ମଧ୍ୟ ନାଟକର କଳେବର ବଦଳି ଯାଇଛି । ପାଞ୍ଚସେଟ୍ ଜାଗାରେ ତିନି ସେଟ୍‌ର ନାଟକ ସୃଷ୍ଟି ହୋଇଛି । ଖୁବ୍ କମ ଚରିତ୍ର, ମାପଚୁପ ସଂଳାପ ଓ ଆବଶ୍ୟକୀୟ ଦ୍ୱନ୍ଦ ଛଞ୍ଜିଦେଇ ଆଜିର ନାଟକ ସଫଳତା ହାସଲ କରି ପାରୁଛି । ଆଧୁନିକ ନାଟକରୁ ସଙ୍ଗୀତକୁ ପ୍ରାୟ ବର୍ଜନ କରାଯାଇଛି ।

ନାଟ୍ୟକାର ନାଟକ ଆରମ୍ଭରେ ସିଧାସଳଖ କାହାଣୀ ଆରମ୍ଭ କରୁଛି । ବିଶେଷ କରି ନାଟକର କାହାଣୀ ମିଥିକ୍ ପରିବେଶରେ ଗଢ଼ କରୁଛି । ନାଟ୍ୟକାର ଓ ସଂଳାପରେ ପ୍ରତୀକ, ରୂପକ ଓ ଅର୍ଥାଳଙ୍କାରର ଅଧିକ ବ୍ୟବହାର କରୁଛି । ପ୍ରାଚୀନ ନାଟ୍ୟକଳା ଯଥା—ପାଲା, ଘୋଡ଼ାନାଚ, ଚଢେୟା ଚଢେୟାଣୀ ନାଚକୁ ଆଧୁନିକ ଓ ଅଭିନବ ଉପାୟରେ ଉଦ୍ଦେଶ୍ୟ ମୂଳକ ଭାବରେ ପ୍ରୟୋଗ କରାଯାଉଛି । ନାଟକର ଆଙ୍ଗିକ ଓ ଆତ୍ମିକର ଆସିଛି । ବ୍ୟାପକ ପରିବର୍ତ୍ତନ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ଏପରି ପରିବର୍ତ୍ତନୀୟ ନାଟ୍ୟଚେତନାକୁ ପରୀକ୍ଷାଧର୍ମୀ ନାଟକ ବା ପ୍ରୟୋଗବାଦୀ ଓଡ଼ିଆ ନାଟକ ନାମରେ ନାମିତ କରାଯାଇଛି ।

ପରୀକ୍ଷାଧର୍ମୀ ଓଡ଼ିଆ ନାଟକ ଆରମ୍ଭରେ ନାଟ୍ୟକାର ମନୋରଞ୍ଜନ ଦାସଙ୍କର 'ଆଗାମୀ' ନାଟକ ବିଚାର୍ଯ୍ୟ । ଏହି ତିନି ସେଟ୍‌ର ନାଟକ ପ୍ରଥମ କରି ଓଡ଼ିଆ ନାଟ୍ୟ ସାହିତ୍ୟରେ ଏକ ପରିବର୍ତ୍ତନର ପଥ ଦେଖାଇଛି । ପାଶ୍ଚାତ୍ୟ ନାଟ୍ୟ ପ୍ରଭାବରେ ରଚିତ ମନୋରଞ୍ଜନଙ୍କର 'କାଠଘୋଡ଼ା' 'ଅମୃତସ୍ୟ ପୁତ୍ର' ପରୀକ୍ଷାଧର୍ମୀ ଓଡ଼ିଆ ନାଟକରେ ପ୍ରଭାବ ପକାଇ ପାରିଛି । ମନୋରଞ୍ଜନଙ୍କର 'କ୍ଳାନ୍ତ ପ୍ରଜାପତି' 'ଅରଣ୍ୟ-ଫସଲ' 'ବିତର୍କିତ ଅପରାହ୍ନ' 'ବନହଂସୀ' ନାଟକଗୁଡ଼ିକୁ ମଧ୍ୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ସଫଳ ପରୀକ୍ଷାଧର୍ମୀ ନାଟକ ଭାବରେ ସ୍ୱୀକୃତି ପାଇଛନ୍ତି ।

ପରୀକ୍ଷାଧର୍ମୀ ଓଡ଼ିଆ ନାଟକ ଆଲୋଚନାରେ ନାଟ୍ୟକାର ରମେଶ ପ୍ରସାଦ ପାଣିଗ୍ରାହୀ ଜଣେ ପ୍ରତିଶ୍ରୁତିବାନ୍ ପ୍ରତିଭା । ନାଟ୍ୟକାର ନୀରବ ଅଥଚ ଶକ୍ତିଶାଳୀ ଭାବରେ ପରୀକ୍ଷାଧର୍ମୀ ଓଡ଼ିଆ ନାଟକକୁ ଋଦ୍ଧିମନ୍ତ କରିଛନ୍ତି । ନାଟ୍ୟକାରଙ୍କ 'ମୁଁ ଆମ୍ଭେ ଆମ୍ଭେମାନେ' 'ଆନନ୍ଦ ନଗରକୁ ଯାତ୍ରା' 'ଜଣେ ମହାପୁରୁଷଙ୍କ ଜନ୍ମ ମୃତ୍ୟୁ ସମ୍ପର୍କରେ' 'ହ୍ୱାଇଟ୍‌କୁ ହୋମିଓପାଥି' ଆଦି ନାଟକ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକକୁ ହୃଷ୍ଟପୁଷ୍ଟ କରିଛି ।

ଆଲୋଚ୍ୟ ସମୟର ପ୍ରତିଭା ବିଜୟ ମିଶ୍ରଙ୍କ ଅନେକ ନାଟକ ପରୀକ୍ଷାଧର୍ମୀ ନାଟ୍ୟ ଆନ୍ଦୋଳନକୁ ବେଗ ପ୍ରଦାନ କରିଛି । 'ଜଣେ ରାଜା ଥିଲେ' 'ଶବବାହକ ମାନେ' 'ଚନ୍ଦ୍ରରେଖା' 'ଦୁଇଟି ସୂର୍ଯ୍ୟ ଦଗ୍‌ଧ ଫୁଲର ନେଇ' ଆଦି ନାଟକଗୁଡ଼ିକ ଓଡ଼ିଆ ପରୀକ୍ଷାଧର୍ମୀ ନାଟକରେ ଗୋଟିଏ ଗୋଟିଏ ସଫଳ ସୃଷ୍ଟି ।

ପ୍ରୟୋଗବାଦୀ ଓଡ଼ିଆ ନାଟକ ବିଶ୍ୱରରେ ଜଗନ୍ନାଥ ପ୍ରସାଦ ଦାସଙ୍କ 'ସବାଶେଷ ଦର୍ଶକ' ହରିହର ମିଶ୍ରଙ୍କ 'ହେ ନିଷାଦ ନିବୃତ୍ତ ହୁଅ' ପ୍ରସନ୍ନ କୁମାର ମିଶ୍ରଙ୍କର 'ପ୍ରେମଖେଳ' କୃଷ୍ଣରାୟଙ୍କର 'ନାୟିକର ନାଁ ଚନ୍ଦ୍ରସେଣା' ବିଜୟ କୁମାର ଶତପଥୀଙ୍କର 'କଣ୍ଠି' ନାଟକର ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ । ସ୍ୱାଧୀନତା ପରବର୍ତ୍ତୀ ସମୟରୁ ପ୍ରୟୋଗବାଦୀ ନାଟକ ଓଡ଼ିଆ ନାଟ୍ୟ ସାହିତ୍ୟରେ ନବନାଟ୍ୟ ଆନ୍ଦୋଳନ ନାମରେ ନିଜର ମହତ୍ତ୍ୱ ପ୍ରତିଷ୍ଠା କରି ପାରିଛି ।

## ୭ । ମନସ୍ତାତ୍ତ୍ୱିକ ନାଟକ—

ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏକ ମହତ ନାଟ୍ୟକଳା । ନାଟ୍ୟକାର ଚରିତ୍ର-ମାନଙ୍କ ଭିତରେ ଦ୍ୱନ୍ଦ୍ୱ ସ୍ଥାପନ କରି ଗୋଟିଏ ଚରିତ୍ରକୁ ବିଭିନ୍ନ ଦୃଷ୍ଟିକୋଣରୁ ପରୀକ୍ଷା କରିଥାଏ । ମନସ୍ତତ୍ତ୍ୱ ଚିତ୍ରଣରେ ଗୋଟିଏ ଚରିତ୍ରରେ ଅନ୍ତଃସତ୍ତ୍ୱା ଉନ୍ମୋଚିତ ହୋଇଥାଏ । ପ୍ରୟୋଗବାଦୀ ନାଟକରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅଧିକ ଭାବରେ ଦେଖା ଯାଇଥାଏ । ସାଂପ୍ରତିକ ସମୟରେ ଫ୍ରଏଡ଼ଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ (ସଚେତନ-ଅବଚେତନ-ଅଚେତନ) ନାଟ୍ୟକାରମାନଙ୍କୁ ଅଧିକ ପ୍ରଭାବିତ କରିଛି । ପ୍ରତୀକ ଓ ମିଥ୍ ମାଧ୍ୟମରେ ସୁନ୍ଦର ସଂଳାପ ପ୍ରୟୋଗ କରି ଚରିତ୍ରର ମନସ୍ତତ୍ତ୍ୱ ପ୍ରକାଶ କରିବାରେ ଆମ ନାଟ୍ୟକାରମାନେ ଅଧିକ ସକ୍ଷମ ହୋଇ ପାରୁଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ରଚନା କରାଯାଇଥିବା ପ୍ରୟୋଗବାଦୀ ନାଟକମାନଙ୍କରେ ମନସ୍ତତ୍ତ୍ୱ ଦେଖା ଯାଇଥାଏ । ମନସ୍ତତ୍ତ୍ୱର ପ୍ରୟୋଗ ମନୋରଞ୍ଜନ ଦାସ 'ଆଗାମୀ'ରେ ଆରମ୍ଭ କରି (ଶରତ-ସରସୀ-ସରୋଜ) ଅରଣ୍ୟ ଫସଲରେ ଅଧିକ (ବେବି-ଲିଲି) ସଫଳ ହୋଇଛନ୍ତି । ନାରୀ ମନର ଆଦିମ କ୍ଷୁଧାକୁ ଅରଣ୍ୟ

ଫସଲ ମାଧ୍ୟମରେ ଆବିଷ୍କାର କରାଯାଇଛି । ମନସ୍ତତ୍ତ୍ୱ ପ୍ରୟୋଗରେ ରତ୍ନାକର ଚଇନଙ୍କର 'ଶୂନ୍ୟତାର ସିଡ଼ି' ଗୋଟିଏ ସଫଳ ସୃଷ୍ଟି । ଆଶ୍ରା ଖୋଜୁଥିବା ମଣିଷ ପାଇଁ ଆଶ୍ରୟ ମିଳେନାହିଁ । ମଣିଷର ଅସହାୟ ଅବସ୍ଥାକୁ ମନସ୍ତତ୍ତ୍ୱ ମାଧ୍ୟମରେ ନାଟ୍ୟକାରମାନେ ପ୍ରକାଶ କରିଛନ୍ତି । ପରୀକ୍ଷାଧର୍ମୀ ନାଟକରେ ମନସ୍ତତ୍ତ୍ୱ ଗୋଟିଏ ଚେତନା ଭାବରେ ପ୍ରକାଶ ପାଇଛି ।

## ୭ । ଉଦ୍‌ଭଟ ନାଟକ —

ଯାହାକୁ ଆମେ ଉଦ୍‌ଭଟ୍ ବୋଲି କହୁ ତାହାକୁ ଇଂରାଜୀ ଶବ୍ଦ ଆବସର୍ଡ଼ ମାଧ୍ୟମରେ ପ୍ରକାଶ କରାଯାଇଥାଏ । ଆବସର୍ଡ଼ ଶବ୍ଦର ଓଡ଼ିଆ ରୂପାନ୍ତର ଭାବରେ ଅସଙ୍ଗତ, ଅଯୌକ୍ତିକ ଆଦି ଅର୍ଥକୁ ଗ୍ରହଣ କରାଯାଇଥାଏ । ଯେଉଁ ନାଟକ ଅସଙ୍ଗତ ଭାବରେ ପ୍ରକାଶ ପାଇଥାଏ, ଅଥଚ ଯେଉଁଥିରେ ଅଲୌକିକ, ଆଶ୍ଚର୍ଯ୍ୟଜନକ ଘଟଣାମାନ ଘଟିଥାଏ, ତାହାକୁ ଆବସର୍ଡ଼ ନାଟକ କୁହାଯାଏ । ମଣିଷ ମୁଣ୍ଡ ଲଗାଇ ଚାଲିବା, ଗୋଡ଼ରେ ଖାଇବା, ଆକାଶରେ ଉଡ଼ିବା ଓ ଭଗବାନଙ୍କୁ ହତ୍ୟା କରିବା ଆଦି ଯେତେ ଅଯୌକ୍ତିକ ବିନ୍ୟାସକୁ ଏଥିରେ ଗ୍ରହଣ କରାଯାଇଥାଏ । ପାଶ୍ଚାତ୍ୟ ସାହିତ୍ୟରେ ଆବସର୍ଡ଼ ନାଟକର ସୁବୃହତ ପ୍ରୟୋଗ ଲକ୍ଷ୍ୟ କରାଯାଏ । ସେଠାକାର ପରିବେଶ ଓ ଜୀବନବୋଧ ପାଶ୍ଚାତ୍ୟ ଭାଷା ସାହିତ୍ୟରେ ଏପରି ନାଟକକୁ ଜନ୍ମ ଦେଇଛି । ବସ୍ତୁବାଦୀ ମଣିଷ ଯେତେବେଳେ ଏ ପୃଥିବୀକୁ ବାଧ୍ୟବାରେ ପରିଣତ କରିଛି ସେତେବେଳେ ଅଭିନବ ଏକ ନୂତନ ଅଥଚ ଆଶ୍ଚର୍ଯ୍ୟ-ଜନକ ଜୀବନ ପାଇଁ ଅଧୀର ହୋଇ ଉଠିଛି । ପାଶ୍ଚାତ୍ୟ ଜୀବନଯାପନ ଶୈଳୀ ଓ ସାମାଜିକ ରାଜନୈତିକ ଧାର୍ମିକ ପାଣିପାଗ ସେମାନଙ୍କ ପାଇଁ ଆବସର୍ଡ଼ ନାଟକ ସୃଷ୍ଟି କରିଛି ।

ଓଡ଼ିଆ ଭାଷାରେ ପୂର୍ଣ୍ଣାଙ୍ଗ ଭାବରେ ଆବସର୍ଡ଼ ନାଟକ ଦେଖାଯାଏ ନାହିଁ । ଯେଉଁ ଅର୍ଥରେ ପାଶ୍ଚାତ୍ୟ ଭାଷାରେ ଆବସର୍ଡ଼ ନାଟକ ପ୍ରୟୋଗ ସେ ଅର୍ଥରେ ଏ ପର୍ଯ୍ୟନ୍ତ ଆମେ ଆବସର୍ଡ଼ ନାଟକ ରଚନା କରିବାରେ ସକ୍ଷମ ହୋଇନାହୁଁ । ଭାରତୀୟ ଶିଥିଳ ସମାଜ ବ୍ୟବସ୍ଥା ଓ ଆମର ଭାଗବତ ଜୀବନ ବୃତ୍ତି ଏ ପର୍ଯ୍ୟନ୍ତ ଆମକୁ ଏକ ଅମଙ୍ଗଳ ଜୀବନଯାପନରୁ ସୁରକ୍ଷା ଦେଇ ଆସିଛି । ଓଡ଼ିଆ ନାଟ୍ୟକାରମାନେ ଦେଶରେ ପ୍ରୟାସ କରିଛନ୍ତି ଓ କେତେକ ନାଟକରେ ଉଦ୍‌ଭଟତାର ପ୍ରୟୋଗ ମଧ୍ୟ କରିଛନ୍ତି । ରମେଶ ପାଣିଗ୍ରାହୀଙ୍କର 'ଧୃତରାଷ୍ଟ୍ରର ଆଖି' ବିଶ୍ୱଜିତ ଦାସଙ୍କର 'ମୃଗୟା' ନାଟକରେ ଏ ପ୍ରକାରର ଲକ୍ଷଣମାନ ଦେଖାଯାଏ । ଯଦୁନାଥ ଦାଶ ମହାପାତ୍ରଙ୍କ 'ଅଥବା ଅନ୍ଧାର' ଓ ବିଜୟ ମିଶ୍ରଙ୍କର

'ଶବ ବାହକମାନେ' ନାଟକରେ ଉଦ୍‌ଭଟ ନାଟକ ରଚନାର ପ୍ରୟାସ ଦେଖାଯାଏ ।

ପ୍ରୟୋଗବାଦୀ ଓଡ଼ିଆ ନାଟକ ଅନେକ ଦୃଷ୍ଟିକୋଣରୁ ବୁଦ୍ଧିମନ୍ତ ହୋଇ-ଥିଲେହେଁ ଆବସର୍ଡ଼ ନାଟକ ରଚନା କରିବାରେ ଏ ପର୍ଯ୍ୟନ୍ତ ପୂର୍ଣ୍ଣ ସକ୍ଷମ ହୋଇ ପାରିନାହିଁ । ବୋଧହୁଏ ଓଡ଼ିଶାର ପାଠକ ଓ ପାଣିପାଗକୁ ଦୃଷ୍ଟିରେ ରଖି ନାଟ୍ୟକାରମାନେ ଖୁବ୍ ସଚେତନ ଆଭିମୁଖ୍ୟ ଗ୍ରହଣ କରୁଛନ୍ତି ।

## ୮ । ଏକ-ଅଙ୍କ ନାଟକ—

ଏପରି ନାଟକରେ ଗୋଟିଏ ଥର ମଞ୍ଚରୁ ପର୍ଦ୍ଦା ଉଠିଥାଏ ଏବଂ କାହାଣୀର ଆରମ୍ଭ ହୋଇ ନାଟକ କ୍ଲାଇମାକ୍ସରେ ପହଞ୍ଚିଥାଏ । ଏକାଙ୍କିକା ନାଟକ ଓଡ଼ିଶାରେ ଖୁବ୍ ଲୋକପ୍ରିୟ । ଏଥିରେ ଅଯଥା ଦୃଶ୍ୟ ବର୍ଣ୍ଣନା, ସଙ୍ଗୀତ ଓ ବାଦ୍ୟ ଯନ୍ତ୍ରର ବ୍ୟବହାର ନ ଥାଏ । ଅଧ ଘଣ୍ଟାରୁ ଘଣ୍ଟାଏ ଭିତରେ ଏହା ଆରମ୍ଭ ହୋଇ ଶେଷ ହୋଇଥାଏ । ଏକାଙ୍କିକାର ପାତ୍ରପାତ୍ରୀ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମଞ୍ଚରେ ଥାଇ ନିଜକୁ ପ୍ରକାଶ କରିଥାଆନ୍ତି । ନାଟ୍ୟକାର ଏହି ନିରୂପିତ ସମୟ ଭିତରେ ନିଜର ଆଭିମୁଖ୍ୟ ବ୍ୟକ୍ତ କରିଥାଏ । ସମସ୍ତ ସଙ୍କଟରେ ପଡ଼ିଥିବା ଆଧୁନିକ ମଣିଷ ପାଇଁ ଏକାଙ୍କିକାର ଗୁରୁତ୍ୱ ଖୁବ୍ ବେଶୀ । ଏକାଙ୍କିକା ରଚନା କ୍ଷେତ୍ରରେ ସୁରେନ୍ ନାୟକ, ଗୋପାଳ ଛୋଟରାୟ, ପ୍ରାଣବନ୍ଧୁ କର ସୁନାମ ଅର୍ଜନ କରିଛନ୍ତି ।

ପ୍ରବୃତ୍ତି ଓ ପ୍ରୟୋଗ ଦୃଷ୍ଟିରୁ ଓଡ଼ିଆ ନାଟକ ଅନେକ ଭାଗରେ ବିଭକ୍ତ । ଆଲୋଚ୍ୟ ବିଭାଗମାନଙ୍କରେ ଅନ୍ୟ ଧର୍ମାବଲମ୍ବୀ ନାଟକମାନେ ଆତ୍ମପ୍ରକାଶ କରି-ଥାଆନ୍ତି ।

## ୯ । ବିଜ୍ଞାନ ଭିତ୍ତିକ ନାଟକ—

ସାଂପ୍ରତିକ ଯୁଗରେ ବିଜ୍ଞାନକୁ ପ୍ଲଟ୍ ଭାବରେ ଗ୍ରହଣ କରି ନାଟକ ରଚନା କରାଗଲାଣି । ବୈଜ୍ଞାନିକ ଉଦ୍‌ଭାବନା ଓ ବୈଜ୍ଞାନିକ ଚିନ୍ତନକୁ ନେଇ ସଫଳ ନାଟକ ସୃଷ୍ଟି କରାଯାଉଛି । ସମ୍ପ୍ରତି କମ୍ପ୍ୟୁଟର ଯୁଗରେ ଯନ୍ତ୍ର ମାନବ 'ରୋବଟ୍'କୁ ନେଇ ନାଟକର ନାୟକ ସଜାଇ ସଫଳତା ଅର୍ଜନ କରାଗଲାଣି । ପାଶ୍ଚାତ୍ୟ ନାଟ୍ୟ ସାହିତ୍ୟରେ ଅନେକ ବିଜ୍ଞାନଭିତ୍ତିକ ନାଟକ ଦେଖାଯାଏ । ସେମାନେ ବିଜ୍ଞାନକୁ ନେଇ ଚଳଚ୍ଚିତ୍ର ମଧ୍ୟ ନିର୍ମାଣ କରିଥାଆନ୍ତି ।

ଓଡ଼ିଆ ଭାଷାରେ ବିଜ୍ଞାନଭିତ୍ତିକ ନାଟକ ଖୋଜିବାକୁ ଗଲେ ହତୋତ୍ସାହିତ ହେବାକୁ ହୁଏ । ପ୍ରସନ୍ନ କୁମାର ମିଶ୍ରଙ୍କର 'ସୁବର୍ଣ୍ଣ ବସୁଧା' ଏ ଦିଗରେ ଏକ ସାନ୍ତ୍ୱନା । ଆମ ନାଟ୍ୟକାରମାନେ ଏ ଦିଗରେ ଅଧିକ ଉଦ୍ୟମ କରିବା ଆବଶ୍ୟକ ।

## ୧୦ । ବେତାର ନାଟକ—

ଆକାଶବାଣୀ କଟକ କେନ୍ଦ୍ରର ସ୍ଥାପନା ପରେ ଓଡ଼ିଶାରେ ବେତାର ନାଟକ ସୃଷ୍ଟି ପରମ୍ପରା ଆରମ୍ଭ ହୋଇଛି । କଟକ କେନ୍ଦ୍ରରୁ ଅନେକ ବେତାର ନାଟକ ପ୍ରସାରିତ ହୋଇଛି । ଜୟପୁର, ସମ୍ବଲପୁର, ବିବିଧ ଭାରତୀ ବିଜ୍ଞାପନ ସେବା କଟକ କେନ୍ଦ୍ର ମଧ୍ୟ ଏ ଦିଗରେ ଉଦ୍ୟମ କରିଛନ୍ତି ।

ଆକାଶବାଣୀ କଟକ କେନ୍ଦ୍ରର 'ମିଛୁ ଅପା' 'ଆଖି' 'ଛମାଣ ଆଠଗୁଣ୍ଠ' 'ମାମୁଁ' 'ଶୃଙ୍ଖଳ ନଇର ସୁଅ' 'ଅଗନ୍ତୁକ ଅତିଥି ଶାଳାରେ' ଆଦି ନାଟକ ପ୍ରଣିଧାନଯୋଗ୍ୟ ।

## ୧୧ । ଯାତ୍ରା ନାଟକ—

ସମ୍ପ୍ରତି ଯାତ୍ରା ନାଟକର ପ୍ରଭାବ ଗାଁରୁ ନଗର ଯାଏ ସବୁଠି ଲକ୍ଷ୍ୟ କରାଯିବ । ଓଡ଼ିଶା ଅପେରା, ଶିବାନୀ ଗଣନାଟ୍ୟ, ଗୌରୀ ଗଣନାଟ୍ୟ, ଅଷ୍ଟଶମ୍ଭୁ ଗଣନାଟ୍ୟ, ତୁଳସୀ ଗଣନାଟ୍ୟ, ଜଗନ୍ନାଥ ଅପେରା ଆଦି ଯାତ୍ରାଦଳ ନୂଆ ରୁଚିର ନାଟକ ପରିବେଷଣ କରୁଛନ୍ତି ।

'ମଝି ନଇରେ ଘର' 'ଆସ ଦେଖିଯିବା ଅଷ୍ଟଶମ୍ଭୁକୁ' 'ପୂରୀରୁ ପଞ୍ଚାମୁଣ୍ଡାଇ' ଆଦି ନାଟକ ଓଡ଼ିଶାର ଜନ ମାନସକୁ ପ୍ରଭାବିତ କରି ପାରିଛି ।

# ନାଟକ ଉତ୍ପତ୍ତି ସମ୍ପର୍କିତ ମତବାଦ

ନାଟକ କିପରି ଉତ୍ପତ୍ତି ହେଲା ଏ ସମ୍ପର୍କରେ ବିଭିନ୍ନ ମତବାଦ ଦେଖିବାକୁ ମିଳିଥାଏ । କେହି କେହି ଜନଶ୍ରୁତି ଲୋକନାଟ୍ୟକୁ ନାଟକର ସୃଷ୍ଟି ବୋଲି ମତ ଦେଉଥିବାବେଳେ ଆଉ କେହି କେହି ଧର୍ମୀୟ କର୍ମକାଣ୍ଡ ଓ ଈଶ୍ୱର ବିଶ୍ୱାସରୁ ନାଟକ ସୃଷ୍ଟି ହୋଇଥିବା କଥା ଗ୍ରହଣ କରିଥାନ୍ତି । ଲବ୍‌ଧ ସମସ୍ତ ତଥ୍ୟ ଓ କାହାଣୀକୁ ଅନୁମାନ ଭାବରେ ଗ୍ରହଣ କରାଯାଇଥାଏ । ଏସବୁ କଳ୍ପନାର ଏ ପର୍ଯ୍ୟନ୍ତ କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ମିଳିନାହିଁ । ନିମ୍ନରେ କେତୋଟି ବହୁ ବିଜ୍ଞାପିତ ମତବାଦ ସମ୍ପର୍କରେ ଆଲୋକପାତ କରାଗଲା ।

## ନଟ୍ ଧାତୁରୁ ନାଟକ ସୃଷ୍ଟି—

ସଂସ୍କୃତ 'ନଟ୍' ଧାତୁରୁ ନାଟ ବା ନାଟକ ଶବ୍ଦର ଉତ୍ପତ୍ତି ଘଟିଛି । ନଟମାନେ ପ୍ରଥମେ ଯେଉଁ ନୃତ୍ୟ ପରିବେଷଣ କରୁଥିଲେ କ୍ରମେ ସେହି ନୃତ୍ୟ ପରମ୍ପରାରେ ନାଟକ ସୃଷ୍ଟି ହୋଇଛି । ଏହି ମତବାଦୀମାନେ ରୁଦ୍ରଙ୍କୁ ପ୍ରଥମ ନଟ ଓ ଉମାଙ୍କୁ ନଟୀ ରୂପରେ ବର୍ଣ୍ଣନା କରିଥାଆନ୍ତି । ରୁଦ୍ରଙ୍କ ତାଣ୍ଡବ ନୃତ୍ୟ ସହି

ଉମାଙ୍କ ଲାସ୍ୟ ମିଶି ନାଟକ ସୃଷ୍ଟିର ପ୍ରାଥମିକ ପ୍ରଯତ୍ନ କରିଛନ୍ତି । ଉଗ୍ରତମ୍ବରୁ ବାଦ୍ୟ ସହ ରୁଦ୍ରଙ୍କ ତାଣ୍ଡବ ରୂପ ଯେଉଁ ବର୍ଣ୍ଣିତା ସଦୃଶ ନୃତ୍ୟ ରଚନା କରିଥିବ, ପରବର୍ତ୍ତୀ ସମୟରେ ତାହା ସଂହାରର ରୂପ ଭାବରେ ବ୍ୟବହୃତ । ନଟରୁ ନଟରାଜଙ୍କ ନୃତ୍ୟ ଭାରତରେ ଖୁବ୍ ପରିଚୟ । ରୁଦ୍ରଙ୍କ ନୃତ୍ୟ କାଳକ୍ରମେ ନୃତ୍ୟ ସୃଷ୍ଟିର ଏକ ଅଭିନବ ପରମ୍ପରା ସୃଷ୍ଟି କରିଥିବ । ଆବଶ୍ୟକ ଓ ଫୁରସତ ସମୟରେ ପ୍ରାଚୀନ ଅଧିବାସୀମାନେ ନିଜର ପ୍ରାତ୍ୟହିକ କାର୍ଯ୍ୟ ସହ ନୃତ୍ୟକୁ ମନୋରଞ୍ଜନ ଭାବରେ ଗ୍ରହଣ କରି ନେଇଥିବେ । ଏହି ନୃତ୍ୟରେ କାଳକ୍ରମେ ସଙ୍ଗୀତ ଓ ପରେ ପରେ ସଂଳାପର ପ୍ରୟୋଗ ଘଟିଥିବ । ତେଣୁ ନଟ୍ ଧାତୁରୁ ନୃତ୍ୟ ସୃଷ୍ଟି ହେବାକୁ କେତେକ ସମାଲୋଚକ ଗ୍ରହଣ କରିନେଇ ଥାଆନ୍ତି ।

## ଧାର୍ମିକ ଅନୁଷ୍ଠାନରୁ ନାଟକ ସୃଷ୍ଟି—

ଧାର୍ମିକ କ୍ରିୟାକର୍ମରୁ ନାଟକ ସୃଷ୍ଟି ହେବା କଥା ଅନେକ ବିଶ୍ୱାସ କରିଆଆନ୍ତି । ବେଦରେ ଯେଉଁ ସୂକ୍ତମାନଙ୍କର ବର୍ଣ୍ଣନା କରାଯାଇଛି ସେଥିରେ ନାଟ୍ୟକଳା ନିହିତ ଅଛି । ବିଶେଷ କରି ଯଜ୍ଞ ସମୟରେ ଯେତେବେଳେ ପୂର୍ଣ୍ଣାହୁତି ଦିଆଯାଏ ସେତେବେଳେ ଲୋକମାନେ ଏକାଠି ହୋଇ ବିଭିନ୍ନ ନୃତ୍ୟ ଓ ଗୀତ ମାଧ୍ୟମରେ ନାଟକ ପରିବେଷଣ କରି ଥାଆନ୍ତି । ଭାରତରେ ବିଭିନ୍ନ ଧର୍ମୀୟ ପୂଜାବିଧି ଓ ଅନୁଷ୍ଠାନ ପରେ ନୃତ୍ୟଗୀତ ପରିବେଷଣର ପରମ୍ପରା ଏବେ ବି ପ୍ରଚଳିତ । ଏବେ ଅଷ୍ଟପ୍ରହରୀ, ଧନୁଯାତ୍ରା, ରଥଯାତ୍ରା ଆଦି ସମୟରେ ନୃତ୍ୟ ଗୀତ ପରିବେଷଣ କରାଯାଇଥାଏ । କେବଳ ଭାରତ ନୁହେଁ—ଚୀନ, ଜାପାନ, ଇଂଲଣ୍ଡ ଏବଂ ଗ୍ରୀସ୍ ଆଦି ଦେଶମାନଙ୍କରେ ନାଟକ ସୃଷ୍ଟି ଧର୍ମ ଧାରଣାକୁ କେନ୍ଦ୍ର କରି ହୋଇଛି ବୋଲି ଅନୁମାନ କରାଯାଇଥାଏ । ବିଭିନ୍ନ ଯଜ୍ଞର କର୍ମରେ ଋତ୍ୱିକଗଣ ପ୍ରମୁଖ ବ୍ରାହ୍ମଣ ନିଯୁକ୍ତ ହୋଇ ଥାଆନ୍ତି । ହୋତା ମନ୍ତ୍ର ଉଚ୍ଚାରଣ କରନ୍ତି, ଉଦ୍‌ଗାତା ସଙ୍ଗୀତ ଗାନ କରୁଥିଲେ । ଅଧ୍ୱର୍ଯ୍ୟ ମନ୍ତ୍ର ଉଚ୍ଚାରଣ ସହ ଯଜ୍ଞ କାର୍ଯ୍ୟ ତଦାରଖ କରୁଥିଲେ, ଏବଂ ଏସବୁ ଧାର୍ମିକ କାର୍ଯ୍ୟକଳାପକୁ ବ୍ରହ୍ମା ନିୟନ୍ତ୍ରଣ କରୁଥିଲେ । ଏକଦା ଏହି ଋରି ବ୍ରାହ୍ମଣଙ୍କ ମିଳିତ ସମବାୟରେ ସେଠାରେ ଏକ ମନୋରମ ପରିସ୍ଥିତି ସୃଷ୍ଟି ହେଉଥିଲା । ସଙ୍ଗୀତ, ଶ୍ଳୋକ, ମନ୍ତ୍ର ଓ ବାଦ୍ୟ ମାଧ୍ୟମରେ ଯଜ୍ଞ କାର୍ଯ୍ୟ ସମାପନ ହେଉଥିଲା । କାଳକ୍ରମେ ଏହି ଯଜ୍ଞ କାର୍ଯ୍ୟର ପ୍ରଭାବରେ ନାଟକ ସୃଷ୍ଟି ହେବା କଥାକୁ ଗ୍ରହଣ କରା ଯାଇଥାଏ । ବିଭିନ୍ନ ଦେଶର ଧାର୍ମିକ ପାରିପାର୍ଶ୍ୱ ସେ ଦେଶର ନାଟକ ସୃଷ୍ଟି ହେବାରେ ସାହାଯ୍ୟ କରିଛି ।

## ଗ୍ରୀକ୍ ମତବାଦ —

ନାଟକର ଉତ୍ପତ୍ତି ଭାବରେ ଗ୍ରୀସ୍ ଦେଶର ଏକ ପ୍ରାଚୀନ କାହାଣୀକୁ ଗ୍ରହଣ କରାଯାଇଥାଏ । ସମଗ୍ର ଗ୍ରୀସରେ 'ଡାୟୋନିସିସ' କୃଷି ଓ ଶସ୍ୟର ଦେବତା ରୂପେ ପୂଜା ପାଇ ଆସୁଥିଲେ । ପ୍ରଜାମାନେ ବର୍ଷକୁ ଦୁଇଥର ଆଟିକ୍ ପ୍ରଦେଶରେ ବସନ୍ତ ଓ ଶୀତ ଋତୁରେ ଏହି ଦେବତାଙ୍କ ପୂଜା ଅର୍ଚ୍ଚନା କରାଯାଇଥାଏ । ଡାୟୋନିସିସ ତାଙ୍କର ଅନୁଚରମାନଙ୍କ ସହ ଜଙ୍ଗଲରେ ବୁଲନ୍ତି ବୋଲି ବିଶ୍ୱାସ କରାଯାଏ । ଏମାନଙ୍କର ଶରୀର ଗଠନ ଅର୍ଦ୍ଧମାନବ ଓ ଅର୍ଦ୍ଧ ପଶୁର । ତେଣୁ ଈଶ୍ୱର ଉପାସନା ସମୟରେ ପ୍ରଜାମାନେ ନିଜକୁ ଡାୟୋନିସିସଙ୍କ ଅନୁଚର ପରି ସଜାଇ ଥାଆନ୍ତି । ପୂଜାର ଆରମ୍ଭରେ ଗୋଟିଏ ଛାଗକୁ ବଳି ଦିଆଯାଏ ଏବଂ ସମବେତ ଜନତା ଛାଗ ନୃତ୍ୟ ପ୍ରଦର୍ଶନ କରିଥାଆନ୍ତି । କୃଷି ଓ ଶସ୍ୟର ଦେବତାଙ୍କୁ ସନ୍ତୁଷ୍ଟ ରଖିବାପାଇଁ ବର୍ଷକୁ ଦୁଇଥର ଏପରି ଏକ ଅଭିନବ ଆୟୋଜନ କରିବାକୁ ହୋଇଥାଏ । 'ଛାଗ'କୁ ଗ୍ରୀକ୍ ଭାଷାରେ 'Trgos' ବୋଲି କୁହାଯାଇଥାଏ । ଏହି Trgos ଶବ୍ଦରୁ ପରବର୍ତ୍ତୀ ସମୟରେ 'Tragedy' ଶବ୍ଦର ଉତ୍ପତ୍ତି ବୋଲି ଧାରଣା କରାଯାଏ । ଏହି ଛାଗ ନୃତ୍ୟ 'Trgos dance'ରୁ ପରବର୍ତ୍ତୀ ସମୟରେ ନାଟକ ସୃଷ୍ଟି ହୋଇଛି ବୋଲି ବିଶ୍ୱାସ କରାଯାଏ ।

## ଭାରତୀୟ ମତବାଦ –

ନାଟକ ଉତ୍ପତ୍ତି ସମ୍ପର୍କରେ ଭାରତୀୟ ପରମ୍ପରାରେ ଅନେକ କାହାଣୀ ଶୁଣିବାକୁ ମିଳେ । ଏହି କାହାଣୀ ଅନୁଯାୟୀ ବ୍ରହ୍ମାଙ୍କ ଉତ୍ସାହ, ଶିବଙ୍କ ପ୍ରୋତ୍ସାହନ ଫଳରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ କର୍ମକ୍ଳାନ୍ତ ମଣିଷମାନଙ୍କର ମନୋରଞ୍ଜନ ପାଇଁ ନାଟକ ସୃଷ୍ଟି ହୋଇଛି । ଭରତମୁନି 'ପଞ୍ଚମ ବେଦ' ରଚନା କରିବା ପରେ ଭାରତରେ ବିଧିବଦ୍ଧ ଭାବରେ ନାଟକ ଆରମ୍ଭ ହୋଇଛି । ଏହି ପଞ୍ଚମ ବେଦ ରଚନା ଓ ଭାରତରେ ନାଟ୍ୟ ଧାରା ବିକାଶର ଏକ ମନୋଜ୍ଞ କାହାଣୀ ଶୁଣାଯାଏ ।

ଜମ୍ବୁ ଦ୍ୱୀପର ଅଧିବାସୀମାନେ କାମ, ମୋହ, ପାପ ଓ ଅନୁଶାସନହୀନତାର ବଶବର୍ତ୍ତୀ ହୋଇ ଅନିୟନ୍ତ୍ରିତ ହୋଇଯିବାରୁ ସ୍ୱର୍ଗପୁରର ଅଧିବାସୀମାନେ ବ୍ରହ୍ମାଙ୍କ ନିକଟରେ ଅନୁରୋଧ ଜଣାଇ କହିଲେ—ସେହି ଶୂଦ୍ରମାନଙ୍କ ପାଇଁ ପଞ୍ଚମ ବେଦ ରଚନା କରିବାପାଇଁ ଯାହାକୁ ଶ୍ରବଣ ଓ ଦର୍ଶନ କରି ସେମାନେ ପୁଣି ଜୀବନର ମୁଖ୍ୟ ମାର୍ଗକୁ ଫେରି ଆସିବେ । ବ୍ରହ୍ମା ଭରତମୁନିଙ୍କୁ ଡାକିଲେ ଓ ତାଙ୍କୁ 'ପଞ୍ଚମ ବେଦ' ସୃଷ୍ଟି କରିବା ପାଇଁ ନିବେଦନ କଲେ । ବ୍ରହ୍ମା ଋକ ବେଦରୁ ପାଠ୍ୟ (କାହାଣୀ) ସାମବେଦରୁ ସଙ୍ଗୀତ ଯଜୁର୍ବେଦରୁ ଅଭିନୟ ଏବଂ ଅଥର୍ବ ବେଦରୁ ରସ ଗ୍ରହଣ କରି ପଞ୍ଚମ ବେଦ ସୃଷ୍ଟି କଲେ । ଏଥିରେ ଶିବଙ୍କ ନୃତ୍ୟ ଓ ପାର୍ବତୀଙ୍କ ଲାସ୍ୟକୁ ମଧ୍ୟ

ସମନ୍ୱସ୍ତ କରାଗଲା । ଭରତମୁନି ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଏହାକୁ ସ୍ୱର୍ଗ, ମର୍ତ୍ତ୍ୟ ଏବଂ ପାତାଳରେ ପ୍ରୟୋଗ କଲେ । ଫଳତଃ ସମଗ୍ର ଭାରତ ବର୍ଷରେ ଗୋଟିଏ ପରେ ଗୋଟିଏ ନାଟକ ସୃଷ୍ଟି ଆରମ୍ଭ ହେଲା ।

କର୍ମମୟ ଜୀବନରେ ମନୋରଞ୍ଜନ ପାଇଁ ବ୍ରହ୍ମା ନାଟକର ପରିକଳ୍ପନା କରିଥିଲେ । ସମଗ୍ର ଭାରତରେ ନାଟକ ଦେବତା ମାନବ ଅସୁରମାନଙ୍କର ମନୋରଞ୍ଜନର ମାଧ୍ୟମ ଭାବରେ ଆତ୍ମପ୍ରକାଶ କରିଥିଲା ବୋଲି ଏକ ବିଶ୍ୱାସ ଏବେ ବି ପ୍ରଚଳିତ ରହିଛି ।

## କଣ୍ଢେଇ ନାଚରୁ ନାଟକ—

ଭାରତ ବର୍ଷରେ ବିଭିନ୍ନ ପ୍ରକାର କଣ୍ଢେଇ ନାଚ ଦେଖାଯାଏ । ଏହା ଭାରତର ଏକ ପ୍ରାଚୀନ ଲୋକକଳା । ଆମ ସମାଜରେ ଏପରି କେତେକ ସମ୍ପ୍ରଦାୟ ଅଛନ୍ତି ଯେଉଁମାନେ କଣ୍ଢେଇ ନାଚକୁ ଜୀବିକା ଭାବରେ ଗ୍ରହଣ କରି ନେଇଛନ୍ତି । ଭାରତରେ ବିଭିନ୍ନ ପ୍ରକାର କଣ୍ଢେଇ ଦେଖାଯାଆନ୍ତି । ସଖିକଣ୍ଢେଇ ନାଚ ଏହାମଧ୍ୟରୁ ଅନ୍ୟତମ । କଣ୍ଢେଇ ନାଚରେ କଣ୍ଢେଇ ନାଚ ସହ ଗୀତଗାନ କରାଯାଇ ଥାଏ । କାଳକ୍ରମେ ଏଥିରେ ନାଟକ ସୃଷ୍ଟି ହୋଇଥିବ ଏପରି ଏକ ଲୋକ ବିଶ୍ୱାସ ନାଟକ ଉତ୍ପତ୍ତି ସମ୍ପର୍କରେ ଜଣାଯାଇ ଥାଏ ।

## ଜର୍ଜର ପୂଜାରୁ ନାଟକ—

ଦେବାସୁର ସଂଗ୍ରାମ ପରେ ଦେବତାମାନଙ୍କ ବିଜୟ ଉପଲକ୍ଷେ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଭରତମୁନି ସ୍ୱର୍ଗରେ 'ମହେନ୍ଦ୍ରବିଜୟ' ନାମକ ଏକ ନାଟକ ମଞ୍ଚସ୍ଥ କରୁଥାଆନ୍ତି । ଏ ସମୟରେ ଅସୁରମାନେ ନାଟକ ଦେଖିବାର ଆଗ୍ରହ ରଖି ରଙ୍ଗମଞ୍ଚକୁ ଆକ୍ରମଣ କଲେ ଓ ନାଟକ ବନ୍ଦ କରିଦେଲେ । ଦେବରାଜ ଇନ୍ଦ୍ର ଅସୁର ମାନଙ୍କୁ ଘଉଡ଼ାଇ ଦେବାପାଇଁ ତାଙ୍କ ଅସ୍ତ୍ର 'ଜର୍ଜର'ର ପ୍ରୟୋଗ କଲେ । ଯାହା ଫଳରେ ଅସୁରମାନେ ଘୁଞ୍ଚି ଚାଲିଗଲେ ଓ ନିର୍ବିଘ୍ନରେ ନାଟକ ଅନୁଷ୍ଠିତ ହେଲା । ବ୍ରହ୍ମା ନାଟକ ପ୍ରତି ଅସୁରମାନଙ୍କ ଆଗ୍ରହକୁ ଲକ୍ଷ୍ୟକରି ଏହାକୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ପ୍ରୟୋଗ କରିବା ପାଇଁ ଆଦେଶ ଦେଲେ । ନାଟକ ମଞ୍ଚସ୍ଥ ଆରମ୍ଭରେ ସବୁଠି ଜର୍ଜର ପୂଜା କରାଯାଇ ଥାଏ, ଆଶା କରାଯାଏ ଏହି ଜର୍ଜର ପୂଜାରୁ ନାଟକର ସୃଷ୍ଟି ହୋଇଛି ।

## ଲୋକ ନାଟକରୁ ନାଟକ—

ଲୋକ ନାଟକରୁ ନାଟକ ସୃଷ୍ଟି ହୋଇଥିବା ଧାରଣାଟିକୁ ସହଜରେ ଗ୍ରହଣ କରାଯାଇ ଥାଏ । ସବୁ ଦେଶରେ ଲିଖିତ ସାହିତ୍ୟ ସୃଷ୍ଟି ହେବା ପୂର୍ବରୁ ମୌଖିକ

ସାହିତ୍ୟର ପରିପୁଷ୍ଟ ଧାରା ଦେଖିବାକୁ ମିଳିଥାଏ । ଲୋକ ନାଟକ ଲୋକ ସାହିତ୍ୟର ଅନ୍ୟତମ ରସାଳ ବିଭାଗ । ପ୍ରାଚୀନ ମଣିଷର ମନୋରଞ୍ଜନ ଲୋକ ନାଟକ ମାଧ୍ୟମରେ ହିଁ ପୂରଣ ହେଉଥିଲା । ଆମ ସମାଜରେ ପାଲା, ଦାସକାଠିଆ ଠାରୁ ଆରମ୍ଭ କରି ଘୋଡ଼ାନାଚ, ଦଣ୍ଡ ନାଚ, ରାମଲୀଳା ଆଦି ବିଭିନ୍ନ ଲୋକନାଟ୍ୟ ଦେଖିବାକୁ ମିଳିଥାଏ । ଆଜିର ନାଟକକୁ ସେହି ଲୋକ ନାଟକର ବିବର୍ତ୍ତିତ ଆଧୁନିକ ଅବସ୍ଥା ଭାବରେ ଗ୍ରହଣ କରାଯାଇ ପାରିବ ।

## ବୀରପୂଜା ପରମ୍ପରା—

ବୀରପୂଜା ପରମ୍ପରାରୁ ନାଟକ ସୃଷ୍ଟି ହୋଇଥିବା କଥାକୁ ମଧ୍ୟ ଗ୍ରହଣ କରାଯାଇ ଥାଏ । ପ୍ରାଚୀନ କାଳରେ ବୀରମାନେ ମରିଗଲେ ସେମାନଙ୍କର ବୀରତ୍ୱ ଓ ସାହସିକତାକୁ ନୃତ୍ୟ ଓ ଗୀତ ମାଧ୍ୟମରେ ପରିବେଷଣ କରାଯାଉ ଥିଲା । ମିଶରରେ ତିଆରି କରାଯାଉଥିବା 'ମମି' ଏହାର ଏକ ଦୃଷ୍ଟାନ୍ତ । ମୃତ ବ୍ୟକ୍ତିକୁ ପିରାମିଡ଼ ଭିତରେ ରଖି ତା'ର ସ୍ମୃତି ଉଦ୍ଦେଶ୍ୟରେ ନାଚଗୀତର ଆୟୋଜନ କରାଯାଉ ଥିଲା ଓ ତାହାର ଗୁଣ ଗାନ କରାଯାଉ ଥିଲା । ଭାରତରେ ପୌରାଣିକ ନାୟକ ଯଥା ରାମ, କୃଷ୍ଣଙ୍କର ଲୀଳା ଅନୁଷ୍ଠିତ ହୋଇଥାଏ । ଗୀତ ଓ ନୃତ୍ୟ ମାଧ୍ୟମରେ ଏହି ମହାପୁରୁଷମାନଙ୍କର ଅଲୌକିକତା ପ୍ରଦର୍ଶନ କରାଯାଇ ଥାଏ । କ୍ରମଶଃ ଏହିପରି ଏକ ପରମ୍ପରାରୁ ନାଟକ ସୃଷ୍ଟି ହୋଇଥିବ ବୋଲି ଧାରଣା ସୃଷ୍ଟି ହୋଇଥାଏ ।

ନାଟକ ଉତ୍ପତ୍ତି ସମ୍ପର୍କୀୟ ବିଭିନ୍ନ ମତବାଦକୁ ବିଚାର କଲେ, ଅଧିକ ମତଗୁଡ଼ିକ କଳ୍ପନାପ୍ରବଣ ଓ ଆନୁମାନିକ ବୋଲି ଜଣାଯାଇ ଥାଏ । ଅନେକ ମତ ପଛରେ କୌଣସି ବିଜ୍ଞାନ ଭିତ୍ତିକ ତଥ୍ୟ ଓ ଯୁକ୍ତି ନାହିଁ । ନାଟକ ସୃଷ୍ଟି ପାଇଁ କୌଣସି ଗୋଟିଏ ମତବାଦ କାରଣ ହୋଇ ନ ପାରେ ବରଂ ସାମଗ୍ରିକ ଭାବେ ଏହାର ପ୍ରଭାବ ନାଟକ ସୃଷ୍ଟିରେ ସହାୟକ ହୋଇ ପାରିଛି । ନାଟକ ଉତ୍ପତ୍ତି ମୂଳରେ ଲୋକ ନାଟକ ପରମ୍ପରାକୁ ଅଧିକ ଆଶାର ସହ ଗ୍ରହଣ କରିହେବ ।

## ନାଟକରେ ମଞ୍ଚ ବ୍ୟବସ୍ଥା—

ନାଟକ ମଞ୍ଚସ୍ଥ ପାଇଁ ମଞ୍ଚର ଆବଶ୍ୟକତା ରହିଛି । ଚରିତ୍ରମାନେ ସ୍ୱୀକୃତ ଗୋଟିଏ ଜାଗାରେ ଏକାଠି ହୋଇ ନିଜର ଅଭିନୟ ପ୍ରଦର୍ଶନ କରିଥାଆନ୍ତି । ବୈଦିକ କାଳରେ ଯଜ୍ଞମଣ୍ଡପ ପାର୍ଶ୍ୱରେ ନୃତ୍ୟ ଗୀତର ଆୟୋଜନ କରାଯାଇ ଥିଲା । ପ୍ରଥମେ ମଞ୍ଚ ନିର୍ମାଣ ସ୍ୱର୍ଗପୁରରେ କରାଯାଇଥିବା ବିଶ୍ୱାସ କରାଯାଏ । ଦେବତାମାନଙ୍କ ବିଜୟ ଉତ୍ସବ ପାଳନ କରିବା ପାଇଁ ଭରତମୁନି 'ମହେନ୍ଦ୍ର ବିଜୟ' ନାମକ ଏକ ନାଟକର ପରିକଳ୍ପନା ସ୍ୱର୍ଗରେ କଲେ । ଏହି ନାଟକ ଅଭିନୀତ ହେଉଥିଲାବେଳେ

ଅସୁରମାନେ ଆକ୍ରୋଶ ଓ ଆଗ୍ରହ ବଶତଃ ଯାତ୍ରାସ୍ଥଳୀର କ୍ଷତି କରିବା ସହ ନାଟକରେ ବ୍ୟାଘାତ ସୃଷ୍ଟି କରିଥିଲେ । ଭରତମୁନି ଏପରି ଅବସ୍ଥାରୁ ନାଟକକୁ ଉଦ୍ଧାର କରିବା ପାଇଁ ବ୍ରହ୍ମାଙ୍କ ନିକଟରେ ଅନୁରୋଧ ଜଣାଇଥିଲେ । ବ୍ରହ୍ମା ଏହାର ସ୍ଥାୟୀ ସମାଧାନ ସହିତ ସ୍ୱର୍ଗପୁରରେ ଏକ ସୁନ୍ଦର ମଞ୍ଚ ନିର୍ମାଣ ପାଇଁ ବିଶ୍ୱକର୍ମାଙ୍କୁ ନିର୍ଦ୍ଦେଶ ଦେଇଥିଲେ । ବିଶ୍ୱକର୍ମା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେବାପରି ସ୍ଥାୟୀ ମଞ୍ଚଟିଏ ସୃଷ୍ଟି କରିଥିଲେ । ପୃଥିବୀରେ ମଞ୍ଚ ସୃଷ୍ଟିର ଇତିହାସରେ ବିଶ୍ୱକର୍ମାଙ୍କ ଦ୍ୱାରା ସୃଷ୍ଟ ଉକ୍ତ ମଞ୍ଚଟିକୁ ପ୍ରଥମ ମଞ୍ଚର ମାନ୍ୟତା ଦିଆଯାଇ ଥାଏ ।

ନାଟକ ବିକାଶ ସହିତ ମଞ୍ଚର ବିକାଶ ଘଟିଛି । ପ୍ରାଚୀନ ଭାରତ ବର୍ଷରେ ଶାସ୍ତ୍ରୀୟ ମତରେ ମଞ୍ଚ ସୃଷ୍ଟି ହେଉଥିଲା । ସଂସ୍କୃତ ନାଟକ ଅଭିନୀତ ହେବା ପାଇଁ ସ୍ୱତନ୍ତ୍ର ମଞ୍ଚ ତିଆରି ହେଉଥିଲା । ଏହି ମଞ୍ଚରେ ପ୍ରଥମେ ଜର୍ଜର ପୂଜା ଅନୁଷ୍ଠିତ ହେଉଥିଲା । ପୂଜା ପରେ ଚରିତ୍ରମାନେ ଜଣେ ଜଣେ ମଞ୍ଚକୁ ଆସୁଥିଲେ । ପ୍ରଥାସିଦ୍ଧ ନାଟକ ମଞ୍ଚସ୍ଥ ପାଇଁ ସେ ସମୟରେ ସ୍ଥାୟୀ ମଞ୍ଚ ନିର୍ମାଣ କରାଯାଉଥିଲା । ଓଡ଼ିଆ ଭାଷାର ନାଟକମାନ ମଧ୍ୟ ପ୍ରଥମେ ସ୍ଥାୟୀ ମଞ୍ଚରେ ଅନୁଷ୍ଠିତ ହେଉଥିଲା । ମାହାଙ୍ଗାର କୋଟପଦାଠାରେ ଗୋଟିଏ ସ୍ଥାୟୀ ମଞ୍ଚ ଥିଲା । ଯେଉଁଥିରେ ଓଡ଼ିଆ ଭାଷାର କେତୋଟି ନାଟକ ମଞ୍ଚସ୍ଥ ହୋଇଥିଲା ।

ଲୋକ ନାଟକରେ ମଞ୍ଚର ଆବଶ୍ୟକତା ନ ଥାଏ । ହାଟ, ବଜାର, ମେଳା, ପର୍ବ, ଯଜ୍ଞ ଆଦି ସ୍ଥାନରେ ଗୋଟିଏ ଗୋଲେଇ ଜାଗାରେ ଏହାର ପାତ୍ରପାତ୍ରୀ ଏକାଠି ହୋଇ ନୃତ୍ୟଗୀତ ମାଧ୍ୟମରେ ବିଷୟବସ୍ତୁ ଉପସ୍ଥାପନ କରି ଥାଆନ୍ତି । ଚାରିକଡ଼ରେ ଦର୍ଶକମାନେ ଗୋଲାକାରରେ ଠିଆ ହୁଅନ୍ତି ଏବଂ ଚରିତ୍ରମାନେ ମଝିରେ ଅଭିନୟ କରି ଥାଆନ୍ତି । ଲୋକ ନାଟକରେ ମଞ୍ଚର ଆବଶ୍ୟକତା ନ ଥିଲା । କିନ୍ତୁ ଲୋକ ନାଟକ ଯେତେବେଳେ ଅଧିକ ସଂଳାପମୁଖୀ ହୋଇଛି, ସେଥିରେ ମଞ୍ଚର ଆବଶ୍ୟକତା ପଡ଼ିଛି । ରାମଲୀଳା, କୃଷ୍ଣଲୀଳା, ପାଲାକୁ ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇ ପାରେ ।

ଓଡ଼ିଶାରେ ଅଶ୍ୱିନୀ କୁମାର ଘୋଷ ଓ କାଳୀଚରଣ ପଟ୍ଟନାୟକ ମଞ୍ଚ ଓ ମଞ୍ଚ ନାଟକ ସୃଷ୍ଟି କରିବାରେ ଯଥେଷ୍ଟ ଉତ୍ସାହ ଦେଖାଇଛନ୍ତି । ସେ ସମୟରେ ଓଡ଼ିଶାରେ ଅନେକ ଥିଏଟର ଦଳ ଗଢ଼ି ଉଠିଥିଲେ, ଯେଉଁମାନେ ସ୍ଥାୟୀ ମଞ୍ଚରେ ନାଟକ ପରିବେଷଣ କରୁଥିଲେ । ଜନତା, ଓଡ଼ିଶା, ଅନ୍ନପୂର୍ଣ୍ଣା ଥିଏଟର ଆଦି ବିଭିନ୍ନ ନାଟ୍ୟସଂସ୍ଥା ନାଟକ ଓ ରଙ୍ଗମଞ୍ଚକୁ ନୂତନ ଜୀବନ୍ୟାସ ପ୍ରଦାନ କରିଥିଲେ । କାଳୀଚରଣଙ୍କ ଗାର୍ଲସ୍କୁଲ, ଚୁମ୍ବନ ଆଦି ନାଟକ ଏହି ମଞ୍ଚରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଆ ନାଟକର ମଧ୍ୟଯୁଗରେ ରଙ୍ଗମଞ୍ଚର ବିକାଶ ସମ୍ଭବ ହୋଇଥିଲା ।

ଓଡ଼ିଶାରେ ରଙ୍ଗମଞ୍ଚ ବିକାଶରେ ଯାତ୍ରା ନାଟକର ଅବଦାନ ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ ଯାତ୍ରାଦଳମାନ ଓଡ଼ିଶାର ବିଭିନ୍ନ ଅଞ୍ଚଳମାନ ଭ୍ରମଣ କରି ଅସ୍ଥାୟୀ ରଙ୍ଗମଞ୍ଚ ମାଧ୍ୟମରେ ନାଟକ ପରିବେଷଣ କରୁଥିଲେ । ଏସବୁ ନାଟକ ମୁଖ୍ୟତଃ ଗୋଟିଏ ମଞ୍ଚକୁ ନେଇ ଅନୁଷ୍ଠିତ ହେଉଥିଲା । ପରେ ପରେ ଯାତ୍ରାଦଳରେ ଦୁଇଟି ମଞ୍ଚ ଓ ତିନୋଟି ମଞ୍ଚ ଦେଖାଗଲା । ଗୋଟିଏ ପ୍ରଧାନ ମଞ୍ଚ ଛଡ଼ା ଉଦ୍ଦେଶ୍ୟ ସାଧନ ପାଇଁ ଆଉ ଦୁଇଟି ଗୌଣ ମଞ୍ଚ ନିର୍ମାଣ କରାଗଲା । ପ୍ରଥମେ ଯେତେବେଳେ ଗୋଟିଏ ମଞ୍ଚ ଥିଲା ସେତେବେଳେ ମଂଚର ଆଗ ଦୁଇ ପାଖକୁ ଚରିତ୍ର ମାନଙ୍କର ପ୍ରବେଶ ଓ ପ୍ରସ୍ଥାନ ପଥ ରୂପେ ବ୍ୟବହାର କରାଯାଉଥିଲା । କିନ୍ତୁ ମଂଚ ନିର୍ମାଣ ଓ ପରିବେଷଣ ଶୈଳୀରେ ଆଧୁନିକତାକୁ ଗ୍ରହଣ କରାଯାଇ ପ୍ରବେଶ ଓ ପ୍ରସ୍ଥାନପଥକୁ ମଧ୍ୟ ଅସ୍ଥାୟୀ ମଂଚ ଭାବରେ ଗ୍ରହଣ କରାଗଲା । ‧ଦ୍ୱିତୀୟ ମଂଚ ଗଡ଼ଣୀଲ ମଂଚ ରୂପେ ବ୍ୟବହୃତ ହେଲା । ସମଗ୍ର ନାଟକ ତିନୋଟି ମଂଚରେ ପ୍ରଦର୍ଶିତ ହେବାର ଆଧୁନିକତା ପ୍ରଥମ କରି ଯାତ୍ରା ନାଟକରେ ଦେଖିବାକୁ ମିଳିଲା । ନାଟକର ପରିବର୍ତ୍ତନ ସହ ମଂଚର ମଧ୍ୟ ପରିବର୍ତ୍ତନ ଆସିଛି । ଏହି ପରିବର୍ତ୍ତନକୁ ଚିତ୍ର ମାଧ୍ୟମରେ ଗ୍ରହଣ କରିହେବ ।

## ମଞ୍ଚବ୍ୟବସ୍ଥା (ରେଖାଚିତ୍ର)

### (କ) ଲୋକ ନାଟକର ମଞ୍ଚ—




୧—ଅଭିନୟ ସ୍ଥାନ—

୨,୩,୪,୫—ଦର୍ଶକ ମାନଙ୍କର ଦେଖିବା ସ୍ଥାନ, ଅଣ୍ଡାକାର କ୍ଷେତ୍ର ଆକାରରେ ସ୍ଥିର ପାଟରେ ଦର୍ଶକ ବୃତ୍ତ ଆକାରରେ ଠିଆହୋଇ ଉପଭୋଗ କରି ଥାଆନ୍ତି । ଲୋକନାଟକ ପାଇଁ ଆନୁଷ୍ଠାନିକ ମଂଚ ବ୍ୟବସ୍ଥା ନ ଥାଏ । ଏହା ଓସାରିଆ ରାସ୍ତା, ଛକମାନଙ୍କରେ ମୁକ୍ତ ଆକାଶ ତଳେ ପ୍ରାୟତଃ ଦିନବେଳା ଅନୁଷ୍ଠିତ ହୁଏ ।

(ଖ) ଯାତ୍ରା ମଞ୍ଚ—




୧—ଅଭିନୟ ମଂଚ ବା ପେଣ୍ଡାଲ୍ ।

୨—କନ୍‌ସେର୍ଟ୍ ପାର୍ଟି ବା ବାଦ୍ୟବଜାଳିଙ୍କ ସ୍ଥାନ ।

୩—ପ୍ରବେଶ ଓ ପ୍ରସ୍ଥାନ ପଥ ।

୪,୫,୬—ଦର୍ଶକଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନ ।

(ଗ) ଅପେରା ମଞ୍ଚ—




୧—ମୁଖ୍ୟ ରଙ୍ଗମଂଚ, ଅଭିନୟ ସ୍ଥଳ ।

୨—ପ୍ରସ୍ଥାନ ପଥ

୩—ପ୍ରବେଶ ପଥ

୪—କନସେର୍ଟ୍ ପାର୍ଟି ବା ବାଦ୍ୟଦଳ

୫—ଡବଲପେଣ୍ଡାଲ୍ ବା ଗୌଣ ମଂଚ

୬—ଡ୍ରେସିଙ୍ଗ୍ ରୁମ୍ ।

୭—ଦର୍ଶକଙ୍କ ବସିବା ସ୍ଥାନ ।

୮—ଦର୍ଶକଙ୍କ ବସିବା ସ୍ଥାନ ।

୯—ଦର୍ଶକଙ୍କ ବସିବା ସ୍ଥାନ ।

## (ଘ) ସାମ୍ପ୍ରତିକ ଗଣନାଟ୍ୟ ମଞ୍ଚ—




୧—ମୁଖ୍ୟ ରଙ୍ଗମଞ୍ଚ

୨—ବାଦ୍ୟଦଳ

୩—ଦ୍ୱିତୀୟ ମଞ୍ଚ, ଯାହାକି ସମ୍ପ୍ରତି ମୁଭିଙ୍ଗ୍ ପେଣ୍ଡାଲ ରୂପେ ପରିଚିତ ।

୪—ତୃତୀୟ ମଂଚ, ଯାହାକି ପୂର୍ବର ଉଦଳ ପେଣ୍ଡାଲ ପରି, ଏବେ ମଧ୍ୟ ପ୍ରୟୋଗ କରାଯାଉଛି ।

୫,୬—ପ୍ରବେଶ ପଥ ଓ ଅସ୍ଥାୟୀ ମଂଚ ରୂପେ ବ୍ୟବହୃତ । ଏଥିରେ ମୁଖ୍ୟତଃ ଦଳବଦ୍ଧ ନୃତ୍ୟ ଗୀତ ପରିବେଷିତ ହୋଇଥାଏ ।

୭—ଗ୍ରୀନ୍‌ରୁମ ବା ଅପେକ୍ଷା ଗୃହ ।

୮,୯,୧୦—ଦର୍ଶକଙ୍କ ବସିବା ସ୍ଥାନ ।

* (ଉପରୋକ୍ତ ଚିତ୍ରଗୁଡ଼ିକୁ ଏହି ଲେଖକଙ୍କର 'ଲୋକ ଜୀବନ ଓ ଲୋକ ସାହିତ୍ୟ' (୧୯୯୫) ପୁସ୍ତକରୁ ଗ୍ରହଣ କରାଯାଇଛି । )

## ନାଟକ ଓ ଲୋକ ନାଟକ—

ନାଟକ ଓ ଲୋକ ନାଟକ ଉଭୟ ଦର୍ଶକର ମନୋରଞ୍ଜନ କରୁଥିଲେ ମଧ୍ୟ ନାଟକ ଓ ଲୋକ ନାଟକ ଭିତରେ କେତୋଟି ପ୍ରଭେଦ ଦେଖାଯାଏ । ଏ ପ୍ରଭେଦ କଳାଗତ ବୈଷମ୍ୟ, ପ୍ରକାଶଭଙ୍ଗୀ ଓ ଅଙ୍ଗୀକାରକୁ ନେଇ । ନିମ୍ନରେ ନାଟକ ଓ ଲୋକ ନାଟକ ଭିତରେ କେତେକ ବୈଷମ୍ୟ ଓ ସାମ୍ୟକୁ ଆଲୋଚନା କରାଗଲା ।

(କ) ଲୋକ ନାଟକ ନାଟକ ନୁହେଁ କି ନାଟକ ଲୋକ ନାଟକ ନୁହେଁ । ଉଭୟେ ସ୍ୱତନ୍ତ୍ର ଓ ଅଲଗା ଅଲଗା କଳା ।

(ଖ) ନାଟକ ସହରର ଦର୍ଶକ ଓ ପାଠକ ପାଇଁ ଉଦ୍ଦିଷ୍ଟ । ଲୋକ ନାଟକ ବେଶୀ ଗାଁ ଗାଉଁଲିର ଦର୍ଶକମାନଙ୍କର ଶ୍ରଦ୍ଧାଭାଜନ ହୋଇଥାଏ ।

(ଗ) ନାଟକ ଦୃଶ୍ୟ ଓ ଶ୍ରବ୍ୟ । ଲୋକ ନାଟକ କେବଳ ଦୃଶ୍ୟ । ଏହାର ଲିଖିତ ରୂପ ନାହିଁ ।
(ଘ) ନାଟକ ଗଦ୍ୟମୟ, ଲୋକ ନାଟକ ପଦ୍ୟମୟ ।
(ଙ) ନାଟକର ମୁଖ୍ୟ ଉପାଦାନ ସଂଳାପ ।
ଲୋକନାଟକର ମୁଖ୍ୟ ଉପାଦାନ ସଙ୍ଗୀତ ।
(ଚ) ନାଟକ ସମଗ୍ର ସମାଜର ପ୍ରତିନିଧିତ୍ୱ କରୁଥିବାବେଳେ ଲୋକ ନାଟକ ଏକ ଅଂଚଳର ପ୍ରତିନିଧିତ୍ୱ କରିଥାଏ ।
(ଛ) ନାଟକ ପାଇଁ ରଙ୍ଗମଂଚର ଆବଶ୍ୟକତା ରହିଛି । ଲୋକ୍ ନାଟକ ପାଇଁ ରଙ୍ଗମଂଚର ଆବଶ୍ୟକତା ନାହିଁ ।
(ଜ) ନାଟକ ଶାସ୍ତ୍ରୀୟ, ଏହାର ଏକ ନିର୍ଦ୍ଦିଷ୍ଟ ରୂପ (form) ଅଛି । ଲୋକ ନାଟକ ଖାପଛଡ଼ା, ବିକୃତ ।
(ଝ) ନାଟକ ଆକାରରେ ବୃହତ । ଲୋକ ନାଟକ ଅପେକ୍ଷାକୃତ କ୍ଷୁଦ୍ର । ଗୋଟିଏ ନାଟକ ଭିତରେ ଲୋକ ନାଟକ ଆତ୍ମପ୍ରକାଶ କରିଥାଏ ।

ସାଧାରଣତଃ ଏହିସବୁ ବିଭେଦକୁ ବାଦଦେଲେ ଉଭୟଙ୍କ ମଧ୍ୟରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ । ନାଟକ ହେଉ ବା ଲୋକ ନାଟକ ଉଭୟଙ୍କର ଉଦ୍ଦେଶ୍ୟ ମନୋରଞ୍ଜନ କରିବା । ସାମ୍ପ୍ରତିକ ନାଟକରେ ଲୋକ ନାଟକକୁ ପରୀକ୍ଷାମୂଳକ ଭାବରେ ବ୍ୟବହାର କରାଯାଉଛି । ଲୋକ ନାଟକକୁ ନାଟକର ଆଦି ଅବସ୍ଥା ଓ ନାଟକକୁ ଲୋକ ନାଟକର ସାମ୍ପ୍ରତିକ ପରିଣତ ସ୍ୱରୂପ ଗ୍ରହଣ କରାଯାଇ ପାରିବ । ନାଟକ ଓ ଲୋକ ନାଟକ ପରସ୍ପର ପରିପୂରକ । ଗୋଟିଏକୁ ବାଦ୍ ଦେଲେ ଅନ୍ୟ ବିଭାଗଟି ଅପୂର୍ଣ୍ଣ ହୋଇଯାଏ । ଗୋଟିଏ ଭିତରେ ଅନ୍ୟଟିକୁ ଖୋଜିଲେ ଏହାର ସାର୍ଥକତା ଓ ସୌନ୍ଦର୍ଯ୍ୟ ଅଧିକ ମାତ୍ରାରେ ଫୁଟି ଉଠିଥାଏ ।

## ଓଡ଼ିଆ ନାଟକର ବିକାଶଧାରା—

ଭାରତୀୟ ଭାଷା ସାହିତ୍ୟରେ ନାଟକର ଉତ୍ପତ୍ତି ଓ ବିକାଶ ମୂଳରେ ଏକ ସୁଦୀର୍ଘ ଇତିହାସ କଥା କହିଥାଏ । ବେଦବେଦାନ୍ତ ସମୟରୁ ଭାରତରେ ନାଟକ ରଚନା ଆରମ୍ଭ ହେବାର ସୂଚନା ମିଳିଥାଏ । ସମଗ୍ର ବେଦକୁ ନାଟକ ଭାବରେ ବର୍ଣ୍ଣନା କରାଯାଇ ଥାଏ । ବୈୟାକରଣିକ ପାଣିନୀ ଶିଳାଲୀ ଏବଂ କୃଶାଶ୍ୱ ନାମକ ଦୁଇ ଜଣ ନାଟ୍ୟରସିକ ସୂତ୍ରଧରଙ୍କ ନାମରେ ଉଲ୍ଲେଖ କରିଛନ୍ତି । ଅନୁମାନତଃ ଏମାନେ ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ ବେଳକୁ ନାଟକ ପରିବେଷଣ କରୁଥିଲେ । ବେଦର ଅନେକ ସୂକ୍ତ କାହାଣୀ ଆକାରରେ ଅଭିନୟ ମାଧ୍ୟମରେ ପ୍ରଦର୍ଶିତ ହୋଇଥିବାର ଧାରଣା ସୃଷ୍ଟି ହୋଇଥାଏ । ରାମାୟଣ ଓ ମହାଭାରତରେ ଅନେକ କାବ୍ୟାଂଶ ନାଟକ ଆକାରରେ ବର୍ଣ୍ଣନା କରାଯାଇଛି । ବୌଦ୍ଧ ଜାତକ ଗଳ୍ପମାନଙ୍କରେ ନାଟ୍ୟକଳାର ପ୍ରୟୋଗ ଦେଖାଯାଏ । ପ୍ରାଚୀନ ଭାରତୀୟ ବ୍ୟବସ୍ଥାରେ

ଉନ୍ନତ ସୁସଙ୍ଗଠିତ ନାଟକମାନ ସୃଷ୍ଟି ହୋଇଥିଲା । ଏହି ହଜିଯାଇଥିବା ଅନେକ ନାଟକ ମଧ୍ୟରୁ ସ୍ୱପ୍ନବାସବଦତ୍ତା, ପଂଚରାତ୍ର, ଚାରୁଦତ୍ତ, ଦୂତଘଟୋତ୍କଚ, ଅଭିମାରକ, ବାଲଚରିତ, କର୍ଣ୍ଣଭାର, ପ୍ରତିମା, ମୃଚ୍ଛକଟିକ, ବିକ୍ରମୋର୍ବଶୀୟ ଆଦି ନାଟକ ସେ ସମୟର ଭାରତୀୟ ନାଟକର ମହିମା ଓ ମହତ୍ତ୍ୱ ପ୍ରତିଷ୍ଠା କରିଥାଏ । ପ୍ରାଚୀନ ଭାରତୀୟ ନାଟକର ପରିପୃଷ୍ଠ ଭୂମିରେ ବିଭିନ୍ନ ପ୍ରାଦେଶିକ ଭାଷାର ନାଟକ ସମୃଦ୍ଧ ହୋଇଛି ।

ଓଡ଼ିଆ ନାଟକକୁ ଆଲୋଚନା କରିବାକୁ ହେଲେ ଊନବିଂଶ ଶତକର ଶାସନ ଓ ସମାଜ ବ୍ୟବସ୍ଥାକୁ ଅଧ୍ୟୟନ କରିବା ଆବଶ୍ୟକ ହୋଇଥାଏ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଏ ଜାତିର ଜୀବନରେ ନୂତନ ଅଧ୍ୟାୟର ଆରମ୍ଭ ହୋଇଥିଲା । ଇଂରେଜମାନଙ୍କ ସହ ଶାସନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଅନେକ ବଙ୍ଗାଳୀ ଓଡ଼ିଶା ଆସିଥିଲେ । ଏକ ପକ୍ଷରେ ସୁସଭ୍ୟ ଓ ଶିକ୍ଷିତ ଇଂରେଜ ଜାତି ଏବଂ ଅପର ପକ୍ଷରେ କଳାପ୍ରିୟ ବଙ୍ଗଳା ଜାତିଙ୍କ ସମନ୍ୱୟରେ ଓଡ଼ିଶାର କଳା ସଂସ୍କୃତି କ୍ଷେତ୍ରରେ ଏକ ନୂତନ ଉନ୍ମାଦନା ଦେଖାଦେଲା । ଏହିପରି ଏକ ମାନସିକ ବ୍ୟାୟାମକୁ ରେଭେନ୍‌ସା ମହାବିଦ୍ୟାଳୟର ପ୍ରତିଷ୍ଠା ଅଧିକ ସାହାଯ୍ୟ କଲା । ଓଡ଼ିଶାରେ ଇଂରେଜ ଶିକ୍ଷା ଓ ଉଚ୍ଚ ଶିକ୍ଷାର ସୁଯୋଗ ପାଇ ଅନେକ ଓଡ଼ିଆ ନିଜ ଭାଷା, ସାହିତ୍ୟ ଓ କଳାପ୍ରତି ସଚେତନ ସଶ୍ରଦ୍ଧ ଦୃଷ୍ଟିଭଙ୍ଗୀ ପୋଷଣ କରିଥିଲେ । ଏହିପରି ଏକ ଅନୁଭବରୁ ଓଡ଼ିଶାରେ ଆଧୁନିକ ନାଟକର ଆତ୍ମପ୍ରକାଶ ।

ଲୋକ ନାଟକ ଓ ଯାତ୍ରା ନାଟକ ପରମ୍ପରାରୁ ମୁକ୍ତ ହୋଇ ୧୮୭୭ ମସିହାରେ ଜଗମୋହନ ଲାଲଙ୍କର ଓଡ଼ିଆ ଭାଷାର ପ୍ରଥମ ନାଟକ 'ବାବାଜୀ' ଆତ୍ମପ୍ରକାଶ କଲା । ୧୮୭୮ ମସିହାରେ ରଘୁନାଥ ପରିଚ୍ଛା 'ଗୋପୀନାଥ ବଲ୍ଲଭ' ନାମକ ଏକ ଯାତ୍ରା-ଭିତ୍ତିକ ନାଟକ ରଚନା କରିଥିଲେ ମଧ୍ୟ ତାହା ନାଟକ ଭାବରେ ଗ୍ରହଣୀୟ ହୁଏ ନାହିଁ । ପ୍ରଥମ କରି ଜଗମୋହନ ନାଟକ ଶୈଳୀରେ ପ୍ରଥମ ଓଡ଼ିଆ ନାଟକ ସୃଷ୍ଟି କଲେ । ଏହା ପରେ ପରେ ଜଗମୋହନ ଲାଲ ୧୮୮୭ ମସିହାରେ 'ସତୀ' ନାଟକ ରଚନା କରିଛନ୍ତି । 'ପ୍ରୀତି' ଓ 'ବୃଦ୍ଧବିବାହ' ନାମରେ ସେ ଆଉ ଦୁଇଟି ନାଟକ ସୃଷ୍ଟି କରିଛନ୍ତି । ବାବାଜୀ ଓ ସତୀ ନାଟକରେ ସାମାଜିକ ଆବେଦନ ଓ କଳା-ପ୍ରକରଣ, କାହାଣୀ ଦୃଷ୍ଟିରୁ ଜଗମୋହନ ଯେ ଜଣେ ସିଦ୍ଧହସ୍ତ ପ୍ରତିଭା, ଏକଥା ସ୍ୱୀକାର କରିବାକୁ ପଡ଼ିଥାଏ ।

ଓଡ଼ିଆ ନାଟକର ଆଦିଯୁଗରେ ରାମଶଙ୍କର ରାୟ ଜଣେ ପ୍ରତିଭାବନ୍ତ ନାଟ୍ୟକାର । କେହି କେହି ରାମଶଙ୍କରଙ୍କୁ ଓଡ଼ିଆ ଭାଷାରେ ପ୍ରଥମ ନାଟ୍ୟାକାରର ମର୍ଯ୍ୟାଦା ଦେଇଥାନ୍ତି । ରାମଶଙ୍କରଙ୍କର ନିରବଚ୍ଛିନ୍ନ ଭାବରେ ଓଡ଼ିଆ ସାହିତ୍ୟକୁ

ଅନେକ ନାଟକ ଉପହାର ଦେଇଛନ୍ତି । କାଞ୍ଚିକାବେରୀ, ବନମାଳା, ବୃନ୍ଦାବନ, ବିଷମୋଦକ, ରାମାଭିଷେକ, ସୀତା ବିବାହ, ବିଶ୍ୱଯଜ୍ଞ, ବଡ଼ଲୋକ, କଂସବଧ, ବନବାସ, କାଞ୍ଚନମାଳା, ଚୈତନ୍ୟଲୀଳା, ଯୁଗଧର୍ମ, ରାମବନବାସ, କଳିକାଳ ଆଦି ପୌରାଣିକ ଓ ସାମାଜିକ ନାଟକମାନଙ୍କରେ ରାମଶଙ୍କରଙ୍କ ନାଟ୍ୟପ୍ରତିଭାର ପରିଚୟ ମିଳିଥାଏ ।

କାମପାଳ ମିଶ୍ର ଏ ସମୟର ଏକ ଅନନ୍ୟ ପ୍ରତିଭା । ବସନ୍ତଲତିକା, ସୀତା-ବିବାହ, ଦୁର୍ଗାଶଙ୍କରୀ, ହରିଶ୍ଚନ୍ଦ୍ର ଆଦି ନାଟକରେ ତାଙ୍କ ପ୍ରତିଭାର ପରିଚୟ ମିଳିଥାଏ । ଭିକାରି ଚରଣ ପଟ୍ଟନାୟକ ଏ ସମୟରେ ଅନେକ ସାର୍ଥକ ନାଟକ ରଚନା କରିଛନ୍ତି । ରାଜାପୁରୁଷୋତ୍ତମଦେବ, କନ୍ଧନେଣରୀ, ରତ୍ନମାଳୀ, ସୁଶୀଳା, ନିରୁପମା ଆଦି ନାଟକରେ ଭିକାରି ଚରଣଙ୍କ ନାଟ୍ୟ ପ୍ରତିଭାର ପରିଚୟ ମିଳିଥାଏ । ଆଦିପର୍ବରେ ଅନେକ ସାମାଜିକ ଓ ପୌରାଣିକ ନାଟକ ସୃଷ୍ଟି ହୋଇଛି । ପଦ୍ମନାଭ ନାରାୟଣଦେବ ଏ ସମୟରେ ଦାନ ପରୀକ୍ଷା, ଅହଲ୍ୟା ଶାପ ଓ ମୋଚନ, ବାଣା-ଦର୍ପଦଳନ, ଚନ୍ଦ୍ରାବତୀ ସ୍ୱୟମ୍ବର, ତାଡ଼କସଂହାର ଆଦି ଅନେକ ଗୁଡ଼ିଏ ନାଟକ ରଚନା କରିଛନ୍ତି । ଜଗନ୍ନାଥ ପାଣି ଏ ସମୟର ଜଣେ ସଫଳ ନାଟ୍ୟକାର । ଦକ୍ଷଯଜ୍ଞ, ସୀତାବନବାସ, ଧ୍ରୁବଚରିତ, ସୁଭଦ୍ରା ପରିଣୟ, ଦ୍ରୌପଦୀ ହରଣ, ଉଷାହରଣ, ମହୀରାବଣ ବଧ, ମାନଭଞ୍ଜନ, ଲକ୍ଷ୍ମଣ ଶକ୍ତିଭେଦ, କପଟପାଶା, ମୀରାଚରିତ ଆଦି ଅନେକ ସଫଳ ପୌରାଣିକ ଗୀତିନାଟ୍ୟମାନ ରଚନା କରିଛନ୍ତି । ଏସବୁ ପୂର୍ଣ୍ଣ ନାଟକ ନ ହେଲେ ମଧ୍ୟ ନାଟକର ଖୁବ୍ ନିକଟବର୍ତ୍ତୀ । ଆଦିଯୁଗ ଓଡ଼ିଆ ନାଟକରେ ଉକ୍ତ ନାଟକଗୁଡ଼ିକର ମହତ୍ତ୍ୱ ପ୍ରତିପାଦିତ । ଏ ସମୟରେ ରାଧାମୋହନ ରାଜେନ୍ଦ୍ରଦେବ ପ୍ରେମତରଙ୍ଗ, ପରିମଳା ସହଗମନ, ପାଣ୍ଡବ ବନବାସ, ପ୍ରକୃତି-ରହସ୍ୟ, ପ୍ରକୃତ ପରିଣୟ ଆଦି ନାଟକ ରଚନା କରିଥିଲେ । ଏ ସମୟରେ ହରିହର ରଥ ଶକୁନ୍ତଳା, ରାମକନ୍ଦ, ରାବଣବଧ, ରାମ ନିର୍ବାସନ, ବେଣୀ ସଂହାର ଆଦି ପୌରାଣିକ ନାଟକମାନ ରଚନା କରିଥିଲେ । ଆଦିଯୁଗର ଓଡ଼ିଆ ନାଟକରେ ସାମାଜିକ, ପୌରାଣିକ ଏବଂ ଆବଶ୍ୟକ ସ୍ଥଳେ କାଳ୍ପନିକ କଥାବସ୍ତୁକୁ ଗ୍ରହଣ କରି ନାଟକ ସୃଷ୍ଟି ହୋଇଥିଲା ।

ନାଟ୍ୟକାର ଗୋଦାବରୀଶ ମିଶ୍ର ଐତିହାସିକ ନାଟକ ରଚନା ଦିଗରେ ନିଜକୁ ପ୍ରତିଷ୍ଠିତ କରି ଯାଇଛନ୍ତି । ସତ୍ୟବାଦୀ ଯୁଗରେ ସାଧାରଣ ମଣିଷ ଭିତରେ ଜାତିପ୍ରୀତି ଉଦ୍ରେକ କରିବା ପାଇଁ ନିଜର ଐତିହ୍ୟ ଓ ଇତିହାସର ଗୌରବମୟ ଅଧ୍ୟାୟକୁ ପ୍ରକାଶ କରିବାରେ ଗୋଦାବରୀଶ ସହାୟକ ହୋଇଛନ୍ତି । ଗୋଦାବରୀଶ ପୁରୁଷୋତ୍ତମଦେବ ଓ ମୁକୁନ୍ଦଦେବ ନାମକ ଦୁଇଖଣ୍ଡ ନାଟକ ରଚନା କରିଛନ୍ତି ।

ପୁରୁଷୋତ୍ତମଦେବ ନାଟକରେ ଜଗନ୍ନାଥଙ୍କ ଭକ୍ତପ୍ରୀତି ଓ ଜାତିପ୍ରୀତି ସହ ଉତ୍କଳର ବୀରତ୍ୱ ଓ ଗଜପତି ରାଜାର ସ୍ୱାଭିମାନକୁ ରୂପ ଦିଆଯାଇଛି । ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁରାଜା ମୁକୁନ୍ଦଦେବଙ୍କୁ ଗ୍ରହଣ କରି ଗୋଦାବରୀଶ ଉକ୍ତ ନାଟକ ମାଧ୍ୟମରେ ଅତୀତ ଉତ୍କଳର ଗୌରବ ଓ ଅବକ୍ଷୟକୁ ସ୍ମରଣ କରାଇଛନ୍ତି । ଓଡ଼ିଶାରେ ଏ ସମୟରେ ବୈଷ୍ଣବ ପାଣିଙ୍କ ଦ୍ୱାରା ରଚିତ ଅନେକ ସୁଆଙ୍ଗ, ଲୀଳା ଓ ଗୀତିନାଟ୍ୟ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଛି ।

ଓଡ଼ିଆ ନାଟ୍ୟ ସାହିତ୍ୟର ମଧ୍ୟପର୍ବ ବା ବିକାଶ ପର୍ବରେ ଅନେକ ବଳିଷ୍ଠ ନାଟକ ସୃଷ୍ଟି ହୋଇଛି । ବାସ୍ତବିକ ଏ ସମୟରେ ଅନେକ ପ୍ରତିଭାଧର ସ୍ରଷ୍ଟା ଓଡ଼ିଆ ନାଟକକୁ ଋଦ୍ଧିମନ୍ତ କରିବାରେ ପ୍ରୟାସ କରିଛନ୍ତି । ଲୀଳା, ସୁଆଙ୍ଗର ବ୍ୟାପକ ପରିଚର୍ଯ୍ୟା ଫଳରେ ଦର୍ଶକମାନେ ନିଜକୁ ମାନସିକ ସ୍ତରରେ ନାଟକ ପାଇଁ ପ୍ରସ୍ତୁତ କରି ନେଇଥିଲେ । ଭାରତର ପ୍ରାଦେଶିକ ଭାଷାମାନଙ୍କରେ ଏ ସମୟରେ ବଳିଷ୍ଠ ନାଟକମାନ ସୃଷ୍ଟି ହୋଇ ସାରିଥିଲା । ତେଣୁ ଓଡ଼ିଆ ଭାଷାରେ ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ସୁସ୍ଥ ନାଟକ ରଚନା କରିବାର ପ୍ରୟାସ ସ୍ରଷ୍ଟାମାନଙ୍କ ଭିତରେ ଦେଖାଗଲା ।

ଓଡ଼ିଆ ନାଟକର ବିକାଶ ପର୍ବରେ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ନାମ ଉଲ୍ଲେଖଯୋଗ୍ୟ । ଶ୍ରୀଯୁକ୍ତ ଘୋଷ ପ୍ରକୃତ ପକ୍ଷରେ ବହୁ କଷ୍ଟ ସ୍ୱୀକାର କରି ବଳିଷ୍ଠ ଓଡ଼ିଆ ନାଟକ ରଚନା କରିବାରେ ନିଜକୁ ନିୟୋଜିତ କରିଥିଲେ । ଗୋଟିଏ ନାଟକ ରଚନା କରି ସାରିବା ପରେ ତାକୁ ମଞ୍ଚସ୍ଥ କରିବା ପାଇଁ ଆର୍ଥିକ ଅସୁବିଧା ସତ୍ତ୍ୱେ ନିରୁତ୍ସାହିତ ନ ହୋଇ ଅଶ୍ୱିନୀ କୁମାର ନିଜର ସାଧନା ଅବ୍ୟାହତ ରଖିଥିଲେ । ଅଶ୍ୱିନୀ କୁମାର ଅନେକ ସାମାଜିକ, ପୌରାଣିକ ଓ ଐତିହାସିକ ନାଟକମାନ ରଚନା କରିଛନ୍ତି । ଉତ୍କଳଗୌରବ, କଳାପାହାଡ଼, ଶ୍ରୀମନ୍ଦିର, କୋଣାର୍କ, ଭୀଷ୍ମ, ସେଓଜୀ, ସମଲେଶ୍ୱରୀ, ଗୋବିନ୍ଦ ବିଦ୍ୟାଧର, ହିନ୍ଦୁରମଣୀ, ରଘୁଅରକ୍ଷିତ ଆଦି ନାଟକ ଉଲ୍ଲେଖଯୋଗ୍ୟ । ଅଶ୍ୱିନୀ କୁମାର ଓଡ଼ିଆ ନାଟକକୁ ବାସ୍ତବିକ ଗତି ପ୍ରଦାନ କରିଛନ୍ତି ଓ ସମସ୍ତ ପ୍ରାରମ୍ଭିକ କଷ୍ଟ ସ୍ୱୀକାର କରି ଓଡ଼ିଆ ନାଟକକୁ ଅନ୍ୟମାନଙ୍କ ନିକଟରେ ପରିଚିତ କରାଇଛନ୍ତି । ନାଟ୍ୟକାରଙ୍କ ଗୋବିନ୍ଦ ବିଦ୍ୟାଧର ଓ ରଘୁଅରକ୍ଷିତ ନାଟକ ଦୁଇଟି ଏବେ ବି ଏହାର ଆବେଦନ ଦୃଷ୍ଟିରୁ ପାଠକୀୟ ଶ୍ରଦ୍ଧା ହାସଲ କରିଥାଏ ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏ ସମୟର ଅନ୍ୟତମ ଅନନ୍ୟ ପ୍ରତିଭା । ଅଶ୍ୱିନୀ କୁମାରଙ୍କ ପରେ ଓଡ଼ିଆ ନାଟକକୁ ପରିଚାଳନା କରିବାର ଦାୟିତ୍ୱ କାଳୀଚରଣ ଗ୍ରହଣ କରିଥିବା ପରି ଅନୁମେୟ ହୁଏ । କାଳୀଚରଣ ଅଶ୍ୱିନୀ କୁମାରଙ୍କ

ଶୈଳୀକୁ ଗ୍ରହଣ କରିବା ସହ ତାଙ୍କ ନାଟକମାନଙ୍କରେ ଲୀଳା, ସୁଆଙ୍ଗ ଓ ଗୀତନାଟ୍ୟର ସମନ୍ୱୟ କରିଛନ୍ତି ।

କାଳୀଚରଣଙ୍କ ନାଟକର ବୈଶିଷ୍ଟ୍ୟ ହେଉଛି ସଙ୍ଗୀତ । ନାଟ୍ୟକାର ତାଙ୍କ ନାଟକରେ ପାଞ୍ଚରୁ ଅଧିକ ଗୀତର ସଂଯୋଜନା କରିଥାଆନ୍ତି । ଗୀତନାଟ୍ୟ ହେଉ ବା ନାଟକ ହେଉ କାଳୀଚରଣ ଗୀତକୁ ଆଶ୍ରୟ କରି ଅଭିନୟର ମର୍ମ ଓ ଆବେଗ ଦର୍ଶକମାନଙ୍କ ପାଖରେ ପହଞ୍ଚାଇ ଥାନ୍ତି । କାଳୀଚରଣ ପ୍ରାକ୍ ସ୍ୱାଧୀନତା କାଳରେ ନାଟକ ରଚନା ଓ ମଞ୍ଚସ୍ଥ କରିବାର ନେତୃତ୍ୱ ନେଇଥିଲେ । କାଳୀ ବାବୁଙ୍କ ସମୟରେ ଓଡ଼ିଶାର ପ୍ରତିଯୋଗିତାମୂଳକ ଓ ବ୍ୟବସାୟିକ ଥିଏଟରର ଆରମ୍ଭ ହୋଇଥିଲା । କାଳୀଚରଣଙ୍କ ଶ୍ରେଷ୍ଠ କୃତି ମଧ୍ୟରେ ଭକ୍ତ, ଗାର୍ଲସ୍କୁଲ, ଚମ୍ପକ, ରକ୍ତମାଟି, ଜୟଦେବ ଆଦି ନାଟକ ଉଲ୍ଲେଖଯୋଗ୍ୟ । ସାମାଜିକ ଓ ପାରିବାରିକ କାହାଣୀକୁ ମାଧ୍ୟମ କରି କାଳୀଚରଣ ପ୍ରାକ୍ ସ୍ୱାଧୀନତା ସମୟରେ ଓଡ଼ିଆ ସମାଜ ଚିତ୍ରକୁ ଆଙ୍କି ପାରିଥିଲେ । ରାମଚନ୍ଦ୍ର ମହାପାତ୍ର ପ୍ରାକ୍ ସ୍ୱାଧୀନତା କାଳରେ ଅନେକ ପୌରାଣିକ ନାଟକ ରଚନା କରିଛନ୍ତି । ରକ୍ତ ଅରକ୍ଷିତ, ବାଲ୍ୟ ମଙ୍ଗଳ, ସୁଦାମା ଆଦି ନାଟକ ତାଙ୍କ ପ୍ରତିଭାର ପରିଚୟ ବହନ କରିଥାଏ । ଲଳିତ ନଗେନ୍ଦ୍ର କୁମାର ରାୟ କଳିଙ୍ଗ ବିଜୟ, ଶେଷ ସ୍ୱାଧୀନତା, ରକ୍ତ ଅରକ୍ଷିତ, ଭକ୍ତାଧୀନ ନାଟକ ରଚନା କରିଛନ୍ତି ।

ଓଡ଼ିଆ ନାଟକର ବିକାଶ ପର୍ବରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ବସନ୍ତ ବିଳାସ, ବରୁଣ ବିଜୟ, କାଳୀୟ ଦଳନ, ଶରତରାସ, କର୍ଣ୍ଣ, ଲକ୍ଷ୍ମୀ ଚଣ୍ଡାଳୁଣୀ, ବଂଶୀ ଶିକ୍ଷା ଆଦି ସଙ୍ଗୀତାତ୍ମକ ନାଟକ ଓଡ଼ିଆ ଲୀଳା ନାଟକର ପୃଷ୍ଠପଟ୍ଟରେ ରଚନା କରାଯାଇ ଆମ ନାଟ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଏ ସମୟରେ ବାଲକୃଷ୍ଣ କର 'ଚନ୍ଦ୍ରଗୁପ୍ତ' ନାମକ ଏକ ଐତିହାସିକ ନାଟକ ସହ 'ଶିବଦାସ' ନାମକ ଏକ କାଳ୍ପନିକ ନାଟକ ଲେଖିଥିଲେ । ନାଟ୍ୟକାର କାର୍ତ୍ତିକ କୁମାର ଘୋଷଙ୍କର ବୀର ଅଭିମନ୍ୟୁ, ମୀରକାସୀମ ନାଟକ ଓଡ଼ିଆ ନାଟ୍ୟ ସାହିତ୍ୟର ଗୌରବ ବୃଦ୍ଧି କରିଥିଲା । କାର୍ତ୍ତିକ ଘୋଷ ଅଶ୍ୱିନୀ କୁମାରଙ୍କ ଐତିହାସିକ ନାଟକ ଶୈଳୀରେ 'ମୀରକାସୀମ' ନାଟକ ରଚନା କରିଥିଲେ ।

ଓଡ଼ିଆ ନାଟକର ବିକାଶ ପର୍ବରେ ଅନେକ କବି ଓ ପ୍ରାବନ୍ଧିକ ନାଟକ ରଚନାରେ ବ୍ରତୀ ହୋଇଛନ୍ତି । ହରେକୃଷ୍ଣ ମହତାବ ଏ ସମୟରେ ଜୀବନ ସମସ୍ୟା, ଆତ୍ମଦାନ, ଶେଷ ଅଶ୍ରୁ ନାମକ ନୈକଖଣ୍ଡ ନାଟକ ରଚନା କରିଥିଲେ । ସବୁଜ ଯୁଗର କବି କାଳନ୍ଦୀ ଚରଣ ପାଣିଗ୍ରାହୀ ସୌମ୍ୟା, ପଦ୍ମିନୀ, ପ୍ରିୟଦର୍ଶୀ, ନାମରେ ନାଟକ ରଚନା କରିଥିଲେ । ଅନ୍ୟତମ କବି

ବୈକୁଣ୍ଠ ପଟ୍ଟନାୟକ 'ମୁକ୍ତପଥେ' ନାମକ ଏକ ନାଟକ ରଚନା କରିଥିଲେ । କବି ମାୟାଧର ମାନସିଂହ ମଧ୍ୟ ନିଜ ନାଟ୍ୟ ପ୍ରତିଭାର ପରିଚୟ ଦେବାକୁ ଯାଇ ପୁଷ୍ପିତା, କଷ୍ଟିପଥର, ପୂଜାରଣୀ, ରାଜକବି ଉପେନ୍ଦ୍ର, ବାରବାଟୀ ଆଦି ନାଟକ ରଚନା କରିଥିଲେ । ଏସବୁ ନାଟକରେ କବିତ୍ୱ, ବର୍ଣ୍ଣନା ବିଳାସ ଓ ସଙ୍ଗୀତମୟତାର ପ୍ରଭାବ ଅଧିକ ଜଣାପଡ଼େ । ନାଟ୍ୟକଳା ଦୃଷ୍ଟିରୁ ଏସବୁ ନାଟକଗୁଡ଼ିକୁ ସେ ସମୟର ସଫଳ ସୃଷ୍ଟି ଭାବରେ ଗ୍ରହଣ କରାଯାଏ । ନାଟ୍ୟକାର ରାମାରଞ୍ଜନ ମହାନ୍ତି ଗୌଡ଼ବିଜେତା, ବିଜୟଗର୍ଵ ନାମକ ଦୁଇଖଣ୍ଡ ନାଟକ ରଚନା କରିଛନ୍ତି । ପ୍ରାଣବନ୍ଧୁ କର ଅନେକ ଏକାଙ୍କିକା ଓ ନାଟକ ରଚନା କରି ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ସ୍ୱାମୀ ସଂହାର, ଦୁଃଖାବତରଣ, ଅଶାନ୍ତ ଆଦି ନାଟକ ତାଙ୍କର ସଫଳ ସୃଷ୍ଟିର ନିଦର୍ଶନ । ଏହାଛଡ଼ା ଓଡ଼ିଆ ଭାଷାର ଅନେକ କ୍ଲାସିକ୍ ଉପନ୍ୟାସକୁ ସେ ନାଟ୍ୟରୂପ ପ୍ରଦାନ କରିଛନ୍ତି । ମାଟିର ମଣିଷ, ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା ଆଦି ଉପନ୍ୟାସମାନଙ୍କୁ ନାଟକ ଭାବରେ ପ୍ରତିଷ୍ଠା ଦେଇଛନ୍ତି । ନାଟ୍ୟକାର ଲକ୍ଷ୍ମୀଧର ନାୟକ ଏ ସମୟରେ ସାମାଜିକ ଚେତନାରେ ଅନୁପ୍ରାଣିତ ହୋଇ ଅନେକ ସାର୍ଥକ ନାଟକ ସୃଷ୍ଟି କରିଛନ୍ତି । ସଙ୍ଗହରା, ଲାଲ ଗୁରୁକ, ଜମିଦାର ଆଦି ନାଟକରେ ସମାଜରେ ଧନୀ ଗରିବମାନଙ୍କ ଭିତରେ ଥିବା ବ୍ୟବଧାନକୁ ଆଲୋଚନା କରିଛନ୍ତି ।

୬

ଏସବୁ ପ୍ରତିଭାଧର ନାଟ୍ୟକାରମାନଙ୍କୁ ବାଦ୍ ଦେଇ ଓ ସମୟର ଅନ୍ୟତମ ସଫଳ ଓ ପ୍ରଭାବଶାଳୀ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ନାଟ୍ୟ ପ୍ରତିଭା ଆଲୋଚନା କରାଯାଇ ପାରିବ । କାଳୀଚରଣ ଓ ଅଶ୍ୱିନୀ କୁମାରଙ୍କ ପରେ ଓଡ଼ିଆ ଭାଷାରେ ସାମାଜିକ ନାଟକ ରଚନା କରିବାରେ ଗୋପାଳ ଛୋଟରାୟ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ନାଟ୍ୟକାରଙ୍କ ଭରସା, ଫେରିଆ, ଶଙ୍ଖାସିନ୍ଦୂର, ପରକଲମ, ନୂଆବୋଉ, ନଷ୍ଟଉର୍ବଶୀ, ପୁରାପୁରି ପାରିବାରିକ, ଶ୍ରୀହରିଙ୍କ ସଂସାର ଆଦି ନାଟକ ଛୋଟରାୟଙ୍କ ପ୍ରତିଭାର ପରିଚୟ ବହନ କରିଥାଏ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଶ୍ରୀଯୁକ୍ତ ଛୋଟରାୟ ପାରମ୍ପରିକ ଓ ପାରିବାରିକ ନାଟକ ରଚନାରେ ନିଜକୁ ନିୟୋଜିତ କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଆ ନାଟକ କ୍ଷେତ୍ରରେ ନୂତନ ନାଟ୍ୟ ସୃଷ୍ଟିର ପ୍ରୟାସ ଆରମ୍ଭ ହୋଇଛି । ପାରମ୍ପରିକ ନାଟ୍ୟଧାରାକୁ ପ୍ରତିରୋଧ କରି ଓଡ଼ିଆ ନାଟକରେ ପ୍ରୟୋଗବାଦୀ ଧାରା ଆତ୍ମପ୍ରକାଶ କରିଛି । ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଓଡ଼ିଆ ନାଟକ ଭିତରେ ନୂତନ ଚେତନା ଓ ପ୍ରକାଶନ ଶୈଳୀ ସୃଷ୍ଟି ହୋଇଛି । ଆଧୁନିକ ମଣିଷର ସ୍ୱପ୍ନଭଙ୍ଗ, ମୋହ, ଅମଙ୍ଗଳବୋଧ, ଦାୟିତ୍ୱହୀନତା

ଓ ଅସହାୟତାକୁ ନେଇ ଅନେକ ନାଟକ ସୃଷ୍ଟି ହୋଇଛି । ଓଡ଼ିଆ ନାଟ୍ୟସାହିତ୍ୟରେ ଏପରି ପରିବର୍ତ୍ତନକୁ ନବନାଟ୍ୟ ଆନ୍ଦୋଳନ ନାମରେ ନାମିତ କରାଯାଇଛି । ଅନେକ ସ୍ରଷ୍ଟାମାନଙ୍କର ସଫଳ ସୃଷ୍ଟିକୁ ମାଧ୍ୟମ କରି ଏ ସମୟର ନାଟକ ହୃଷ୍ଟପୁଷ୍ଟ ହୋଇଛି । ନିମ୍ନରେ ଏ ସମୟର ପ୍ରମୁଖ ନାଟ୍ୟକାର ଓ ସେମାନଙ୍କର ନାଟକର ନାମ ପ୍ରଦାନ କରାଗଲା ।

ମନୋରଞ୍ଜନ ଦାସ—ଯୌବନ, କଣ୍ଠସମ୍ରାଟ, ଅଗଷ୍ଟନ, ବନ୍ୟା ଜଗବନ୍ଧୁ, ଆଗାମୀ, ଅରଣ୍ୟ ଫସଲ, କାଠଘୋଡ଼ା, ଅମୃତସ୍ୟପୁତ୍ର, କ୍ଷତବିକ୍ଷତ ଅପରାହ୍ନ, କ୍ଳାନ୍ତ ପ୍ରଜାପତି, ବନହଂସୀ, ଅବରୋଧ, ସାଗରମନ୍ଥନ ।

ରମେଶ ପ୍ରସାଦ ପାଣିଗ୍ରାହୀ—ଆନନ୍ଦନଗରକୁ ଯାତ୍ରା, ହାତୀକୁ ହୋମିଓପାଥି, ଜଣେ ମହାପୁରୁଷଙ୍କ ଜନ୍ମମୃତ୍ୟୁ ସମ୍ପର୍କରେ, ମହାନାଟକ, ମୁଁ ଆମ୍ଭେ ଆମ୍ଭେମାନେ, ଧୃତରାଷ୍ଟ୍ରର ଆଖି, ଶେଷ ପାହାଚ, ହେ ପୃଥିବୀ ବିଦାୟ, ଶ୍ରୀକୃଷ୍ଣ ଆସୁଛନ୍ତି, ଉତ୍କଳା ପାହାଡ଼ର ଦର୍ଜା ।

କମଳଲୋଚନ ମହାନ୍ତି—ଡାକବଙ୍ଗଳା, ସ୍ୱାମୀ ସ୍ତ୍ରୀ, କରାଣୀ, ଗାଁ ମାଟି, ସମାଧାନ, ମାତୃମଙ୍ଗଳ କେନ୍ଦ୍ର, ମଣିକାଞ୍ଚନ, ମିସ୍ ମଲ୍ଲିକ୍ ।

ରାମଚନ୍ଦ୍ର ମିଶ୍ର—ଘର ସଂସାର, ଭାଇ ଭାଉଜ, ମୂଲିଆ, ନରୋତ୍ତମ ଦାସ କହେ, ସାଇପଡ଼ିଶା, ଅଭିମାନ, ମ୍ୟାନେଜର, କବିସୂର୍ଯ୍ୟ ।

ଭଞ୍ଜକିଶୋର ପଟ୍ଟନାୟକ—ପ୍ରେମପୃଷ୍ଠା, ଗରିବ, ମାଣିକ ଯୋଡ଼ି, ଜହର, ବେନାମୀ, ଶିକାରୀ, ଦେବୀ ।

ସୁରେନ୍ ମହାନ୍ତି—ବେଗମ୍‌କୋଠି, ଅନୁପ୍ରାସ, ବଜ୍ରକବାଟ, ଝରକା ।

ଭୁବନେଶ୍ୱର ମହାପାତ୍ର—ବାଟବଣା, କିଏ କାହାର, ତୁଠପଥର, ଘର ଘରଣୀ, କାଚକାଞ୍ଚନ, ଜମାନବନ୍ଦୀ, ବାଡ଼ୁଅ ଝିଅ, ମୋତିମହଲ, ତୋଫାନ-ପରେ ।

ନରସିଂହ ମହାପାତ୍ର—କଲିକତିଆ ଜୋଇଁ, ହୋଲି, ସଞ୍ଜସକାଳ, ଗୋପାଳକୃଷ୍ଣ, ବାଉଁଶରାଣୀ ।

ବ୍ୟୋମକେଶ ତ୍ରିପାଠୀ—କଂସା କବାଟ, ସିଂହଦ୍ୱାର, ସୁନାଫରୁଆ, ତୋଳା କନିଆ, ଜାଗରଣ ।

ଧନେଶ୍ୱର ପଟ୍ଟନାୟକ—ଦାରୋଗାବାବୁ, ହଠା ପାଟେଶ୍ୱରୀ, ଗାନ୍ଧାରୀ, ପଦ୍ମିନୀଣୀ ।

ନୀଳକଣ୍ଠ ମିଶ୍ର—ଖଇକଉଡ଼ି, ଲିଭିନ ସେ ଦୀପଶିଖା, ଜୀଶାନ୍ତର ଅନ୍ଧକାର, ଶପଥ ।

ଯଦୁନାଥ ଦାଶ ମହାପାତ୍ର—ଅଥବା ଅନ୍ଧାର, ପରଶମଣି, ସୂର୍ଯ୍ୟମନ୍ଦର, ଭୂଲିହୁଏନା, ନୂଆ କହୁ ନୁହେଁ, ସେତୁବନ୍ଧ ।

ବଳରାମ ମିଶ୍ର—ବିଷବୃକ୍ଷ, ଶଙ୍ଖମହୁରୀ, ସଙ୍କଳ୍ପ ।

ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ—ମୟୂର ସିଂହାସନ, କୃଷ୍ଣଚୂଡ଼ାର ହସ, ଦୋଳ-ମୁକୁଟ, ଅଭିଶପ୍ତ ଘୁଙ୍ଗୁର ।

ବସନ୍ତ କୁମାର ମହାପାତ୍ର—ଶେଷଶ୍ରାବଣ, ଝଡ଼ବିହଙ୍ଗ, କାଚଘର, ଜ୍ୱାଳା, ଶୃଙ୍ଗାର ଶତକ, ମୋନାଲିସାର ହସ ।

ହିମାଂଶୁଭୂଷଣ ସାବତ—ଛାଇ ଓ ଆଲୁଅ, ରକ୍ତଶିଖା ।

ଜଗନ୍ନାଥ ପ୍ରସାଦ ଦାସ—ସବାଶେଷ ଲୋକ, ସୂର୍ଯ୍ୟାସ୍ତ ପୂର୍ବରୁ ।

ଅକ୍ଷୟ କୁମାର ମହାନ୍ତି—ସମ୍ପତ୍ତି ଓ କାଗଜଡଙ୍ଗା, ରାତିର ରାଧା, ଭଙ୍ଗା ହେହେଲ, ଅନନ୍ତ ଅନର୍ଦ୍ଦିଷ୍ଟ ।

ଚନ୍ଦ୍ରାମଣି ଜେନା—ସୂର୍ଯ୍ୟତୃଷ୍ଣା, କୃଷ୍ଣଚୂଡ଼ା, ଧୂମକେତୁ ।

ବିଶ୍ୱଜିତ୍ ଦାସ—ପ୍ରତାପଗଡ଼ରେ ଦୁଇଦିନ, ନୀଳିପଦ୍ମା, ବହ୍ନି, ନାଲିପାନ-ରାଣୀ, କଳାପାନ ରାଜା, ମୃଗୟା, ଶୁଣସୁଜନେ ।

ବିଜୟ ମିଶ୍ର—ଅଶାନ୍ତ ଗ୍ରହ, ଭଟ୍ଟ ନିରଞ୍ଜନା, ତମିରତୀର୍ଥ, ଜନନୀ, ପଞ୍ଚଶାସ୍ତ୍ରକ, ସାଗରତୀରେ, ଯାଯାବର, ଅସଭ୍ୟ ସହର, ଶବବାହକମାନେ ।

ପ୍ରଫୁଲ୍ଲ କୁମାର ରଥ—ଶବପଡ଼ିଛୁ, ଆଜି ଓ କାଲି, ସିନ୍ଦୂର ଟୋପା, ସହରରେ ଅଜଗର, ଶରଶଯ୍ୟା, ସ୍ୱର୍ଗକୁ ଯାଅ ହେ ପାପୀମାନେ ।

ରତ୍ନାକର ଚଇନି—ଶୂନ୍ୟତାର ସିଡ଼ି, ଅଥଃସ୍ୱଣ୍ଟକ୍ୟ, ରାଜହଂସ, ଆଶା-ବୃନ୍ଦାବନ, ପୁନଶ୍ଚ ପୃଥିବୀ, ଅପଦେବତା, ନାଗଫେଣୀର ରକ୍ତ ।

ହରିହର ମିଶ୍ର—ହେ ନିଷାଦ ନିବୃତ୍ତ ହୁଅ, ଜନ୍ମିତ ଗଜପତି, କାଗଜ ଡଙ୍ଗା, ମହିଦିଗରୀ, ହଂସ ଧ୍ୱଜ, ରାତିର ଦୁଇଟି ଡେଣା, ମଧୁଲତା ।

ପ୍ରସନ୍ନ କୁମାର ମିଶ୍ର—ଗୋଟିଏ ଘର ଛଅଟି ଝରକା, ପ୍ରେମଖେଳ, ଜୀବନ ନାମକ ଗଛରେ ଦୁଃଖ ନାମକ ଫୁଲ, ସୁବର୍ଣ୍ଣ ବସୁଧା, ଜନସେବକ ।

କାର୍ତ୍ତିକଚନ୍ଦ୍ର ରଥ—ଆଜିର ରାଜା, ସ୍ୱର୍ଗଦ୍ୱାର, ଈଶ୍ୱର ଜଣେ ଯୁବକ, ଅବଶିଷ୍ଟ ପୃଥିବୀ, ଦୁଇଟୋପା ଲୁହ, ପାପ ଲିଭିଯାଏ ।

ବିଜୟ କୁମାର ଶତପଥୀ—କର୍ଣ୍ଣ ।

କୁଞ୍ଜ ରାୟ—ନାୟକର ନାମ ଚନ୍ଦ୍ରସେଣା ।

କାଳନ୍ଦୀ ବେହେରା—ମ୍ଳାନ ଶର୍ବରୀ ।

ବ୍ରଜେନ୍ଦ୍ର ନାୟକ—ମାଙ୍କଡ଼ ଖାଏ କାଙ୍କଡ଼ କଷି ।

ମନ୍ମଥ ଦାସ—ଅରଣ୍ୟ ବହ୍ନି ।

ବ୍ୟୋମକେଶ ତ୍ରିପାଠୀ—ମୁଦ୍ରାରାକ୍ଷସ ।

ଏସବୁ ନାଟ୍ୟକାରମାନଙ୍କ ବିପୁଳ ସୃଷ୍ଟିରେ ଓଡ଼ିଆ ନାଟକ ପରିପୁଷ୍ଟ ହୋଇଛି । ନବନାଟ୍ୟ ଆନ୍ଦୋଳନର ପ୍ରଭାବରେ ଅନେକ ନୂତନ ନାଟ୍ୟକାର ନୂଆ-ରୂପର ନାଟକ ସୃଷ୍ଟି କରିଛନ୍ତି । ଯେଉଁମାନେ ଆଗରୁ ପାରମ୍ପରିକ ନାଟକ ରଚନା କରୁଥିଲେ ସେମାନଙ୍କର ଆଭିମୁଖ୍ୟରେ ମଧ୍ୟ ପରିବର୍ତ୍ତନ ଆସିଛି । ସାମ୍ପ୍ରତିକ ନାଟକ ମଣିଷର ଗୋଟିଏ ନିରୂପିତ ସମସ୍ୟାକୁ ନେଇ ଆତ୍ମପ୍ରକାଶ କରୁଛି । ଓଡ଼ିଆ ନାଟକର ବିକାଶ ପର୍ବରେ ସାମାଜିକ କଥାବସ୍ତୁ ସହ ପୌରାଣିକ ଏ ଐତିହାସିକ ଘଟଣାକୁ ନେଇ ନାଟକ ରଚନା କରାଯାଉଥିଲା । ପରବର୍ତ୍ତୀ ସମୟରେ ଇତିହାସ ଓ ସାମାଜିକ କଥାବସ୍ତୁ ନାଟକରେ ବହୁଳ ଭାବରେ ପ୍ରୟୋଗ କରାଗଲା । କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ ସମୟରେ ସାମାଜିକ ବିଷୟବସ୍ତୁକୁ ପ୍ରାଧାନ୍ୟ ଦିଆଯାଇଛି । ଇତିହାସ ଓ ପୁରାଣ ମିଥ୍ ଭାବରେ କାହାଣୀ ଓ ଚରିତ୍ର ଭିତରେ ଆତ୍ମପ୍ରକାଶ କରିଛନ୍ତି । ସାମ୍ପ୍ରତିକ ମଣିଷର ଅସହାୟତା ଓ ରାଜକୀୟ ନିଃସଙ୍ଗତାକୁ ପାଥେୟ କରି ଆଜିର ନାଟକ ପରିପୁଷ୍ଟ ହୋଇଛି ।

ଓଡ଼ିଆ ନାଟକର ପ୍ରବାହମାନ ଧାରାକୁ ଲକ୍ଷ୍ୟକରି କୁହାଯାଇ ପାରିବ, ଏହାର ଭବିଷ୍ୟତ ଉଜ୍ଜ୍ୱଳ । ଅନେକ ତରୁଣ ନାଟ୍ୟକାର ବର୍ତ୍ତମାନ ଯାତ୍ରାନାଟକ ଏବଂ ଅନେକ କଲେଜ ଯୁବକ ଆନ୍ତଃ ମହାବିଦ୍ୟାଳୟ ଓ ଆନ୍ତଃ ବିଶ୍ୱବିଦ୍ୟାଳୟ ସ୍ତରରେ ନାଟକ ମଞ୍ଚସ୍ଥ କରିବାର ସୁଯୋଗ ପାଉଛନ୍ତି । ଗ୍ରାମ ଓ ସହରମାନଙ୍କରେ ନାଟକ ମଞ୍ଚସ୍ଥକୁ ସାମୂହିକ ମନୋରଞ୍ଜନ ଭାବରେ ଗ୍ରହଣ କରି ନିଆଯାଇଛି । ଏହାଦ୍ୱାରା ଅନେକ ତରୁଣ ନାଟ୍ୟକାର, କଳାକାର ଓ ନାଟ୍ୟରସିକମାନଙ୍କର ସୃଷ୍ଟି ହୋଇଛି । ଓଡ଼ିଆ ନାଟକ ଅତୀତର ସମସ୍ତ ଅସହାୟତାକୁ ଦୂରକରି ଆଜି ସମୃଦ୍ଧ ଓ ପ୍ରବାହମାନ ।

ଠ

# ଏକାଙ୍କିକା

୮

ଏକାଙ୍କିକା ନାଟକର ଆଧୁନିକତମ ପରୀକ୍ଷାମୂଳକ କଳା । ନାଟ୍ୟପ୍ରେମୀ ସାଧାରଣ ମଣିଷ ଦୀର୍ଘ ସମୟ ବସିରହି ନାଟକ ଉପଭୋଗ କରିଥାଏ । ଅନେକ ସମୟରେ ନାଟକର ମୁଖ୍ୟପ୍ରସଙ୍ଗରୁ ବିଚ୍ୟୁତ ହୋଇ ଆଉ ଏକ କ୍ଷୁଦ୍ର ଅଂଶର ସଂଯୋଜନା କରାଯାଇଥାଏ । ସାଧାରଣ ଜନତାକୁ ଆନନ୍ଦ ଦେବାପାଇଁ ହାସ୍ୟରସ ପ୍ରସଙ୍ଗ ଥରେ ବା ଏକାଧିକ ଥର ନାଟକରେ ପରିବେଷଣ କରାଯାଇଥାଏ । ଅନେକ ସମୟରେ ଦର୍ଶକ ନାଟକର କାହାଣୀ ଓ ପରିବେଷଣରେ ବିରକ୍ତ ହୋଇ ଏହି ବିକଳ୍ପ ଦୃଶ୍ୟ ପରିବେଷଣ ପର୍ଯ୍ୟନ୍ତ ଅପେକ୍ଷା କରିଥାଏ । ନାଟକ ପ୍ରାରମ୍ଭରୁ ଦର୍ଶକଙ୍କୁ ଅଧିକ ମନସ୍କ କରିବା ଉଦ୍ଦେଶ୍ୟରେ ନାଟିକା ପରିବେଷଣ କରାଯାଇ ଥାଏ । ନାଟିକା ଦୃଶ୍ୟଗୀତ ସଂଳାପ ସମ୍ବଳିତ ଏକାଙ୍କିକା ନିକଟବର୍ତ୍ତୀ ଏକ କ୍ଷୁଦ୍ର ନାଟ୍ୟକଳା ।

ଇଉରୋପର ଥିଏଟରମାନଙ୍କରେ ନାଟକ ଆରମ୍ଭ ହେବା ପୂର୍ବରୁ କ୍ଷୁଦ୍ର ନାଟକ **Curtain Roiser** ମଞ୍ଚସ୍ଥ କରାଯାଉଥିଲା । ଅନେକ ସମୟରେ ଏହି ପ୍ରାରମ୍ଭ ନାଟକ ପରିବେଷଣ ପରେ ଦର୍ଶକମାନେ ଅଧିକ ଆକୃଷ୍ଟ ହୋଇପଡ଼ିବା ଲକ୍ଷ୍ୟ କରାଯାଏ । **Curtain Roiser** କୁ ଆମ ନାଟକର ନାଟିକା ସହ ତୁଳନା କରାଯାଇ ପାରିବ । କ୍ରମଶଃ ନାଟକ ସଙ୍କୁଚିତ ହୋଇ ଓ ନାଟିକା ବିକଶିତ ହୋଇ ଏକାଙ୍କିକା ଆତ୍ମପ୍ରକାଶ କରିଛି । ଏକାଙ୍କିକା ନାଟିକା ଓ ନାଟକର ଏକ ମିଶ୍ରିତ ରୂପ ।

ଏକାଙ୍କିକା ଉତ୍ପତ୍ତି ଉତ୍ସରୂପେ ନାଟକପରି ବିଭିନ୍ନ ପ୍ରାକୃତିକ ପ୍ରତିକ୍ରିୟାକୁ ଗ୍ରହଣ କରାଯାଇ ଥାଏ । ଗୋଟିଏ ଫସଲ ଅମଳ କରିବା ସମୟରେ ଗୋଷ୍ଠୀବଦ୍ଧ ଆନନ୍ଦ, ଶିକାରକାଳୀନ ଦୃଶ୍ୟ ଏବଂ ମନୋରଞ୍ଜନ ପାଇଁ ପ୍ରାଚୀନ ମଣିଷ ବ୍ୟବହାର କରୁଥିବା ବିଭିନ୍ନ ବ୍ୟାୟାମ, ଶାରୀରିକ କ୍ରୀଡ଼ାରୁ କ୍ରମ ବିକଶିତ ହୋଇ ଏକାଙ୍କିକା ଆତ୍ମପ୍ରକାଶ କରିଥିବା ସମାଲୋଚକମାନେ ମନେକରି ଥାଆନ୍ତି । ଏସବୁ କଳା ଓ କାଳଚେତନାକୁ ନାଟକର ଉତ୍ପତ୍ତି ସହ ସଂଯୋଗ କରାଯାଇ ପାରିବ । କାରଣ

ଏକାଙ୍କିକା ନାଟ୍ୟ ଜଗତରେ ଆଧୁନିକ ଅତିଥି । ଏଥିରେ ପ୍ରାଚୀନ କଳା ଖୋଜିବାକୁ ହେଲେ ନାଟକର ଉଦ୍‌ଭବ ଓ ବିକାଶ ସହିତ ଏହାକୁ ଯୋଡ଼ିବାକୁ ପଡ଼ିବ ।

ଏକାଙ୍କିକା ଆଧୁନିକ ମନନର ଚିନ୍ତାଶୀଳ ଅଭିବ୍ୟକ୍ତି । କଳା ଓ ବିଜ୍ଞାନର ଚମତ୍କାର ଅଭିବୃଦ୍ଧିରୁ ଏକାଙ୍କିକା ସୃଷ୍ଟି ହୋଇଛି । ମଣିଷ ଯେତେବେଳେ ଆଧୁନିକ ହେଲା ସେତେବେଳେ ଚିନ୍ତାଧାରା ଓ ବାହ୍ୟିକ କ୍ରିୟାକଳାପରେ ମଧ୍ୟ ସେହି ଅଭିରୁଚିକୁ ପ୍ରକାଶ କଲା । ଆଧୁନିକ ମଣିଷ ଯନ୍ତ୍ର ମଣିଷ । ତା' ଜୀବନର ସମସ୍ତ କ୍ରିୟା ସ୍ରୋତ ଏହି ଯନ୍ତ୍ରଦ୍ୱାରା ପରିଚାଳିତ । ଏହି ବ୍ୟସ୍ତ ମଣିଷପାଇଁ ଅତୀତର ପରମ୍ପରା ଓ ଭବିଷ୍ୟତର ଆଶା ଏବଂ ବର୍ତ୍ତମାନର ମୋହଭଙ୍ଗ ତା' ପାଇଁ ଏକ ନୂତନ ଜୈବିକ ପୃଥିବୀର ସନ୍ଧାନ ଦେଇ ସାରିଛନ୍ତି । ଆଧୁନିକ ମଣିଷ ମାଟିର ନୁହେଁ କି ଆକାଶର ; ତ୍ରିଶଙ୍କୁର ମଧ୍ୟ ସ୍ୱର୍ଗରେ ବସିଥିବା ଅନାହୂତ ପ୍ରଗଲ୍‌ଭ ଆଧୁନିକ ନାୟକଟିଏ । ଶିଳ୍ପ ବିପ୍ଳବ ମଣିଷକୁ ଉତ୍ପାଦନଶୀଳ ଏକ ଯନ୍ତ୍ରରେ ପରିଣତ କରିଛି । ପୁଣି ଡାରଉଇନ୍ କହିଛନ୍ତି—ଯିଏ ଯୋଗ୍ୟ ସିଏ ବଞ୍ଚିବ (Survival of the fittest) ଆଇନ୍‌ଷ୍ଟାଇନଙ୍କ ପରମାଣୁ ବୋମା-କାମ୍ୟୁକାଫକାଙ୍କ ସ୍ଥିତିବାଦୀତତ୍ତ୍ୱ-ନିଉଟନଙ୍କ ମାଟି ଓ ମଣିଷର ସନ୍ତୁଳିତ ନିୟମ ତାକୁ ଅହରହ ପ୍ରଭାବିତ କରିଛି । ଏପରି ଏକ ଯନ୍ତ୍ରଣାକ୍ତ ମୁହୂର୍ତ୍ତରେ ମଣିଷ କିପରି ଓ କେଉଁପରି ନାଟକ ଦେଖିବାପାଇଁ ତିନିଘଣ୍ଟାରୁ ଊର୍ଦ୍ଧ୍ୱକାଳ ରଙ୍ଗମଞ୍ଚ ନିକଟରେ ବସିରହିବ । ଯେତେ କମ୍ ସମୟରେ ଅଧିକ ଆନନ୍ଦପାଇଁ ପ୍ରୟାସୀ ମଣିଷ ପାରମ୍ପରିକ ନାଟ୍ୟକଳାକୁ ପରିତ୍ୟାଗ କରି ସ୍ୱଳ୍ପ ସମୟ ଭିତରେ ନାଟ୍ୟରସ ଆସ୍ୱାଦନ ପାଇଁ ଉଦ୍ୟମ କରିଥିବା ଏପରି ଏକ ଅଭିନବ ପ୍ରୟାସରୁ ଏକାଙ୍କିକା ସୃଷ୍ଟି ହୋଇଥିବ । ଏକାଙ୍କିକା ଅଳ୍ପ ସମୟରେ ଅଧିକ ଆନନ୍ଦ ଦେଉଥିବାରୁ ଏହା ସମସ୍ତଙ୍କ ପାଇଁ ଗ୍ରହଣୀୟ ହୋଇଥିବ । ସାମ୍ପ୍ରତିକ ସମୟରେ ଇଲେକ୍‌ଟ୍ରୋନିକ୍ ମିଡ଼ିଆ ଏକାଙ୍କିକାର ଗୁରୁତ୍ୱ ବୃଦ୍ଧି କରିଛନ୍ତି । ବେତାର ଓ ଦୂରଦର୍ଶନ ମାଧ୍ୟମରେ ଏକାଧିକ ଏକାଙ୍କିକା ସଫଳତାର ସହ ପରିବେଷଣ କରାଯାଉଛି । ଏସବୁ ଅନୁଷ୍ଠାନରେ ଦୀର୍ଘସମୟ ଅପେକ୍ଷା ରଖୁଥିବା ନାଟକ ପରିବେଷଣ ପାଇଁ ଉପଯୁକ୍ତ ବାତାବରଣ ନ ଥାଏ । ଏକାଙ୍କିକା ଖୁବ୍ ବେଶୀରେ ଗୋଟିଏ ଘଣ୍ଟା ସମୟ ନେଉଥିବାରୁ ଏହାକୁ ପ୍ରସାରଣ କରିବାରେ ବିଶେଷ ଅସୁବିଧା ନ ଥାଏ । ଏକାଙ୍କିକାର ଉତ୍ପତ୍ତି ଓ ବିକାଶରେ ଆଧୁନିକ ମଣିଷର ରୁଚି ପରିବର୍ତ୍ତନ, ପାରମ୍ପରିକ ମନୋରଞ୍ଜନର ଗୁରୁତ୍ୱ ହ୍ରାସ, କଳା ପରିବେଷଣରେ ବିଜ୍ଞାନ ଓ ଟେକ୍‌ନୋଲୋଜିର ବ୍ୟବହାରକୁ ଗୁରୁତର ସହ ଗ୍ରହଣ କରାଯାଇ ପାରିବ । ଏକାଙ୍କିକାର କଥା—କାହାଣୀ-କଳେବର ଆଧୁନିକ ମଣିଷ ସହ ଜଡ଼ିତ, ତେଣୁ ଏହାକୁ ଏକ ଆଧୁନିକତମ କଳା କହିଲେ ଅତ୍ୟୁକ୍ତି ହେବନାହିଁ ।

## ସଂଜ୍ଞା ଓ ସ୍ୱରୂପ—

ଏକାଙ୍କିକା ନାଟକର ଏକ କ୍ଷୁଦ୍ର ବିଭାଗ ଭାବରେ ସ୍ୱୀକୃତ ହୋଇଛି । ନାଟକୀୟ ଲକ୍ଷଣରେ ଏହା ପରିପୁଷ୍ଟ ହୋଇଥିବାରୁ ନାଟକକୁ ବାଦଦେଇ ଏହାର ଏକ ସ୍ୱୟଂସମ୍ପୂର୍ଣ୍ଣ ସଂଜ୍ଞା ପ୍ରଦାନ କରିବା କଷ୍ଟକର ନିଶ୍ଚୟ । ନାଟକଠାରୁ ଏକାଙ୍କିକାକୁ ଯାହା ଅଲଗା କରେ ତାହା ହେଉଛି ଏକାଙ୍କିକାର ସମୟ ସଚେତନତା । ନାଟକ ଏକାଧିକ ଅଙ୍କ ବିଶିଷ୍ଟ ହୋଇଥିବାରୁ ଏହାକୁ ଅଭିନୟ କରିବା ପାଇଁ ଏକାଧିକ ଘଣ୍ଟାର ଆବଶ୍ୟକତା ପଡ଼ିଥାଏ; କିନ୍ତୁ ଏକାଙ୍କିକାରେ ଏକ ଅଙ୍କ ଥିବାରୁ ଏହା କମ୍ ସମୟରେ ସମ୍ଭବ ହୋଇଥାଏ । ଏକାଙ୍କିକାର ଏହି ସମୟ ସଚେତନତା ସମ୍ପର୍କରେ J. M. Synge କହନ୍ତି—"a play which takes less than half an hour in performance." ଅଧଘଣ୍ଟା ଭିତରେ ଅଭିନୟ ଶେଷ କରି ପାରୁଥିବା ଏହା ଏକ ଅଭିନବ ନାଟ୍ୟକୃତି । ସମାଲୋଚକ K. J. Pess ଏକାଙ୍କିକା ସମ୍ପର୍କରେ କହିଛନ୍ତି—"All that concerns us here however is that they were one act plays ruquiring comparatively few actors and capable of being performed in twenty minutes or half an hour." ନାଟକଠାରୁ ଏକାଙ୍କିକା କମ୍ ଚରିତ୍ର ଏବଂ କୋଡ଼ିଏ ମିନିଟ୍‌ରୁ ଅଧଘଣ୍ଟାଏ ସମୟ ଭିତରେ ଅନୁଷ୍ଠିତ ହେବାପାଇଁ ସକ୍ଷମ । ଏକାଙ୍କିକା ପାଞ୍ଚଅଙ୍କ ନାଟକ ନୁହେଁ । ଏହା କାହାଣୀଭାଗ ବିଷୟରେ ସିଧାସଳଖ ସୂଚନା ଦେଇ କ୍ଲାଇମାକ୍ସ ଆଡ଼କୁ ଗତି କରିଥାଏ । ଏକାଧିକ ଚରିତ୍ର ଓ ପାର୍ଶ୍ୱ କାହାଣୀ ଏଥିରେ ଦେଖାଯାଏ ନାହିଁ । ସିଧାସଳଖ ବକ୍ତବ୍ୟ ପ୍ରଦାନ ଓ ଭାବୋଦ୍ଦୀପକ ସଂଳାପ ପ୍ରୟୋଗ କରି ଅଳ୍ପ ଭିତରେ ଅନେକର ସନ୍ଧାନ ଦେବାପାଇଁ ଏଥିରେ ଉଦ୍ୟମ କରାଯାଇ ଥାଏ । ନାଟକର ପଞ୍ଚସନ୍ଧି ସୂତ୍ର ଏଥିରେ ଗ୍ରହଣ କରାଯାଇ ନ ଥାଏ । ଏକାଙ୍କିକା ମଣିଷ ଜୀବନର ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥାକୁ ନେଇ ସୃଷ୍ଟି ହୋଇଥାଏ । ନାଟକଠାରୁ ଏକାଙ୍କିକାକୁ ଅଲଗା ବିଚାର କରିବାକୁ ହେଲେ ନାଟକର ସଙ୍ଗୀତ, ସଂଳାପ, ଚରିତ୍ର, କାହାଣୀପରି ଅନେକ ବିଭାଗକୁ ସଂକ୍ଷିପ୍ତ ଏବଂ ଆବଶ୍ୟକ ହେଲେ ପରିତ୍ୟାଗ କରିବାକୁ ହୋଇଥାଏ । 'ଏକାଙ୍କିକା ମଣିଷ ଜୀବନର ଏକ ମୁହୂର୍ତ୍ତର ପରିପ୍ରକାଶ ଯାହାକୁ ସ୍ୱଳ୍ପ ସମୟ ଭିତରେ ପ୍ରକାଶ କରାଯାଇଥାଏ ।' ସାମ୍ପ୍ରତିକ ସମୟରେ ପଥପ୍ରାନ୍ତ ନାଟକ, ବେତାର ନାଟକ ଆଦି ଅନୁଷ୍ଠିତ ହୋଇ ଏକାଙ୍କିକାର ସଂଜ୍ଞା ଓ ସ୍ୱରୂପକୁ ଅନେକାଂଶରେ ପ୍ରଭାବିତ କରିଛନ୍ତି ।

## ନାଟକ ଓ ଏକାଙ୍କିକା—

ନାଟକ ଓ ଏକାଙ୍କିକା ଭିତରେ ସାଦୃଶ୍ୟତା ପରିଲକ୍ଷିତ ହେଉଥିଲେହେଁ ଅନେକ ବୈସାଦୃଶ ଦେଖାଯାଇ ଥାଏ । ଅନେକ ନାଟକୀୟ କଳା ଏକାଙ୍କିକା ଭିତରେ ପ୍ରକାଶ ପାଇଥାଏ; କିନ୍ତୁ ଏକାଙ୍କିକା ନିଜର କ୍ଷୁଦ୍ରାୟତନ ଭିତରେ ଏସବୁକୁ ଗ୍ରହଣ କରିପାରି ନ ଥାଏ । ଏକାଙ୍କିକା ଓ ନାଟକର ଏକୀକରଣ ଓ ବିଭେଦକୁ ନିମ୍ନରେ ଆଲୋଚନା କରାଗଲା ।

(କ) ନାଟକ ଦୀର୍ଘାୟତନ ବିଶିଷ୍ଟ । ପ୍ରାଚ୍ୟ ନାଟ୍ୟକଳାରେ ପ୍ରଥାଙ୍କ ନାଟକକୁ ଅଭିନୟ ପାଇଁ ଗୁରୁତ୍ୱ ଦିଆଯାଇ ଥାଏ । କିନ୍ତୁ ଏକାଙ୍କିକା ଏକ ଅଙ୍କ ବିଶିଷ୍ଟ । ନାଟକଠାରୁ ଆକାରରେ କ୍ଷୁଦ୍ର ହୋଇଥିବାରୁ ଏହାର ଗୁରୁତ୍ୱ ବୃଦ୍ଧି ପାଇଛି ।

(ଖ) ଅନେକ ଏକାଙ୍କିକା ଏକତ୍ର ହେଲେ ନାଟକ ହୋଇ ପାରିବ; କିନ୍ତୁ ନାଟକର ଗୋଟିଏ ଗୋଟିଏ ଦୃଶ୍ୟ ଏକାକୀ ଏକାଙ୍କିକା ହୋଇ ପାରିବେ ନାହିଁ ।

(ଗ) ନାଟକରେ ଏକାଧିକ କାହାଣୀ ଅବତାରଣା କରାଯାଇଥାଏ; କିନ୍ତୁ ଏକାଙ୍କିକାରେ ଗୋଟିଏ କାହାଣୀ ଥାଏ ।

(ଘ) ନାଟକରେ ଅନେକ ଚରିତ୍ରର ସମାହାର ଘଟିଥାଏ । ମୁଖ୍ୟ ଚରିତ୍ର, ଗୌଣ ଚରିତ୍ର, ବିଦୂଷକ, ଦୁଷ୍ଟ ଚରିତ୍ର ଆଦି ବିଭିନ୍ନ ଚରିତ୍ର ନାଟକର ବିଳିଷ୍ଟ କାହାଣୀକୁ ଆଗେଇ ନେଇଯାଇ ଥାଆନ୍ତି; କିନ୍ତୁ ଏକାଙ୍କିକାରେ କେତୋଟି ନିର୍ଦ୍ଦିଷ୍ଟ ଚରିତ୍ର ଥାଆନ୍ତି । ଦୁଇଟି ଚରିତ୍ରକୁ ନେଇ ଏକାଙ୍କିକା ଅଭିନୀତ ହୋଇପାରେ । ଚରିତ୍ର ଗ୍ରହଣରେ କୃପଣ ଭାବ ପୋଷଣ କରିବା ଏକାଙ୍କିକାର ପ୍ରଧାନ ପ୍ରାଣ ଧର୍ମ ।

(ଙ) ନାଟକ ଦୀର୍ଘ ସମୟ ଧରି ଅନୁଷ୍ଠିତ ହୋଇଥାଏ । ତିନି ଘଣ୍ଟାରୁ ଚାରିଘଣ୍ଟା ପର୍ଯ୍ୟନ୍ତ ନାଟକର କାହାଣୀ ଗଢ଼ି କରିଥାଏ । ଏକାଙ୍କିକା ଅଧ ଘଣ୍ଟାରେ କିମ୍ବା ଅତି ବେଶୀରେ ଗୋଟିଏ ଘଣ୍ଟା ଭିତରେ ଶେଷ ହୋଇଥାଏ ।

(ଚ) ନାଟକରେ ସଙ୍ଗୀତ ଗ୍ରହଣ ଆବଶ୍ୟକ ହୋଇଥାଏ; କିନ୍ତୁ ଏକାଙ୍କିକାରେ ସଙ୍ଗୀତକୁ ଗୁରୁତ୍ୱ ଦିଆଯାଏ ନାହିଁ ।

(ଛ) ନାଟକ ପଞ୍ଚସନ୍ଧି ଦେଇ ଗଢ଼ି କରିଥାଏ । କାହାଣୀର ଆରମ୍ଭ କ୍ଲାଇ-ମାକ୍ସ ଓ ଉପସଂହାର ଆଦି ପର୍ଯ୍ୟାୟକୁ ନାଟକରେ ଧୀରେ ଧୀରେ ଅତିକ୍ରମ କରାଯାଇଥାଏ; କିନ୍ତୁ ଏକାଙ୍କିକାରେ ଏସବୁ କାହାଣୀ ଖୁବ ସିଧାସଳଖ ଗତି କରିଥାଏ । କାହାଣୀ ଆରମ୍ଭ କରି ତାକୁ କ୍ଲାଇମାକ୍ସରେ ପହଞ୍ଚାଇବା ଏକାଙ୍କିକାର ଉଦ୍ଦେଶ୍ୟ ।

ଏସବୁ ବୈସାଦୃଶ ସତ୍ତ୍ୱେ ଏକାଙ୍କିକା ଓ ନାଟକ ଭିତରେ ଅନେକ ସାମଞ୍ଜସ୍ୟତା ରହିଛି । ନାଟକର ଅନେକ ବିଭାଗ ଏକାଙ୍କିକା ଭିତରେ ପ୍ରକାଶ ପାଇଥାଏ । ନାଟକର ଗଠନ କଳା ଆଲୋଚନା କଲେ ଏହି ସାମଞ୍ଜସ୍ୟତା ଅଧିକ ସ୍ପଷ୍ଟ ହୋଇଉଠେ ।

## ଏକାଙ୍କିକାର ଗଠନ କଳା—

ଏକାଙ୍କିକାର ଗଠନ ପାଇଁ କେତୋଟି ଉପାଦାନର ଆବଶ୍ୟକତା ହୋଇଥାଏ । ଯେଉଁ ଉପାଦାନ ନାଟକ ପାଇଁ ଆବଶ୍ୟକ ସେହି ଉପାଦାନ ଏକାଙ୍କିକା ପାଇଁ ଦରକାର ହୋଇଥାଏ; କିନ୍ତୁ ଏକାଙ୍କିକାର ବ୍ୟବହୃତ ହେଲା-ବେଳେ ସେହି ବିଭାଗଗୁଡ଼ିକର ବ୍ୟବହାରିକତାରେ କେତେକ ପରିବର୍ତ୍ତନ ଆସିଥାଏ । ଉକ୍ତ ବିଭାଗଗୁଡ଼ିକୁ ନିମ୍ନରେ ଆଲୋଚନା କରାଗଲା ।

## (କ) କାହାଣୀ ଭାଗ—

ଏକାଙ୍କିକାରେ ଅଭିନୟ ମାଧ୍ୟମରେ ଗୋଟିଏ କାହାଣୀ ପରିବେଷଣ କରାଯାଇଥାଏ । ନାଟକର କାହାଣୀ ପରି ଏଥିରେ ଜଟିଳ କାହାଣୀ ପରିବେଷଣ କରାଯାଇ ନ ଥାଏ । ଏକାଙ୍କିକାରେ ଗୌଣ କାହାଣୀର ବର୍ଣ୍ଣନା ନ ଥାଏ । ଏକ ସୀମିତ ପରିସର ଭିତରେ ଏକାଙ୍କିକାର କାହାଣୀ ପ୍ରକାଶ ପାଇଥାଏ । ଅନେକ ସମୟରେ କୌଣସି ଆବଶ୍ୟକତାକୁ ଆଖି ଆଗରେ ରଖି ଏକାଙ୍କିକା ରଚନା କରା-ଯାଉଥିବାରୁ ଏଥିରେ ଶିକ୍ଷଣୀୟ ଓ ସମାଜର ସାଂପ୍ରତିକ ସମସ୍ୟାକୁ ନେଇ କାହାଣୀମାନ ପ୍ରକାଶ ପାଇଥାଏ । ଏକାଙ୍କିକାର କାହାଣୀରେ ଦ୍ୱନ୍ଦ ପରିବେଷଣ କରାଯାଇଥାଏ । ଶୀର୍ଷବିନ୍ଦୁରେ ବା ଶେଷ ଅଭିନୟରେ କାହାଣୀର ରହସ୍ୟ ଉନ୍ମୋଚିତ ହୋଇଥାଏ । ଏକାଙ୍କିକାରେ କାହାଣୀ ପରିବେଷଣକରିବା ଏକ ସ୍ୱତନ୍ତ୍ର ଶୈଳୀ ।

## (ଖ) ଚରିତ୍ର—

କାହାଣୀକୁ ପରିପୁଷ୍ଟ କରିବାପାଇଁ ଚରିତ୍ରର ଆବଶ୍ୟକତା ପଡ଼ିଥାଏ । ଏକାଙ୍କିକାରେ ଅଧିକ ଚରିତ୍ର ଦେଖାଯାଏ ନାହିଁ ! ଏକାଙ୍କିକା ସ୍ୱଳ୍ପ ସମୟ ଭିତରେ ସମ୍ଭବ ହେଉଥିବାରୁ ଏଥିରେ ଖୁବ୍ କମ୍ ଚରିତ୍ର ଦେଖାଯାଇ ଥାଆନ୍ତି । ନାଟକ ପରି ଅନେକ ଚରିତ୍ର ଓ ଅବାଞ୍ଛିତ ଚରିତ୍ର ଏଥିରେ ଦେଖା ଯାଆନ୍ତି ନାହିଁ । ଚରିତ୍ରମାନଙ୍କୁ କାହାଣୀଧର୍ମୀ କରି ଚିତ୍ରଣ କରିବାରେ ଏଥିରେ ପ୍ରୟାସ କରାଯାଇଥାଏ । ଚରିତ୍ର-ମାନଙ୍କୁ ସିଧାସଳଖ ଉପସ୍ଥାପନା କରିବା ଏକାଙ୍କିକାର ବିଶେଷତ୍ୱ । କୌଣସି ସ୍ୱତନ୍ତ୍ର ଆବଶ୍ୟକତା ନ ଥିଲେ ଚରିତ୍ର ସୃଜନର ଆବଶ୍ୟକତା ଅନୁଭବ କରାଯାଏ ନାହିଁ ।

## (ଗ) ସଂଳାପ—

ପାତ୍ରୋଚିତ ସଂଳାପ ବ୍ୟବହାର କରିବା ସଫଳ ଏକାଙ୍କିକାର ଲକ୍ଷଣ । ନାଟକରେ ଚରିତ୍ରମାନେ ସଂଳାପ କହିବା ପୂର୍ବରୁ ଗୌର ଚନ୍ଦ୍ରିକା ଗ୍ରହଣ କରିଥାଆନ୍ତି; କିନ୍ତୁ ଏକାଙ୍କିକାରେ ନିରୂପିତ ଶବ୍ଦ ମାଧ୍ୟମରେ ସଂଳାପ ସୃଷ୍ଟି କରି ଚରିତ୍ରମାନଙ୍କୁ ହୃଷ୍ଟପୁଷ୍ଟ ଭାବରେ ସୃଷ୍ଟି କରାଯାଇଥାଏ । 'Dramatic dielouge must be direct and to the point ' ହେବା ଉଚିତ୍ ବୋଲି ଯେଉଁ ମତାମତ ପ୍ରଦାନ କରାଯାଇଥାଏ ତାହା ଏକାଙ୍କିକା ପାଇଁ ଅଧିକ ଗ୍ରହଣୀୟ । ଖୁବ୍ କମ୍ ସମୟ ଭିତରେ ଏକାଙ୍କିକା ଉଦ୍ଦେଶ୍ୟ ଅଭିମୁଖୀ ହୋଇଥାଏ । ଫଳତଃ ଏହାର ସଂଳାପ କାହାଣୀକୁ ଆଗେଇ ନେବାରେ ସହାୟକ ହୋଇଥାଏ । ଅଳ୍ପରେ ଅନେକ ଓ ଗିରିକୁ ଗୋଡ଼ ଭିତରେ ଖୋଜି ପାଇବାର ସୂତ୍ର ଏକାଙ୍କିକାର ସଂଳାପ ଭିତରେ ନିହିତ ଥାଏ । ଏକାଙ୍କିକାର ସଂଳାପ ବ୍ୟଞ୍ଜନାଧର୍ମୀ, ଇଙ୍ଗିତମୟ ଆଳଙ୍କାରିକ ଭାଷା ବ୍ୟବହୃତ ହୋଇ ଏକାଙ୍କିକାର ସଂଳାପକୁ ଅଧିକ ମନଗ୍ରାହୀ କରିଥାଏ । ଅନେକ ଏକାଙ୍କିକାର ସଂଳାପ କାବ୍ୟଧର୍ମୀ, ଗୀତିମୟ, ସଂଳାପ ଏକ ସଫଳ ଏକାଙ୍କିକା ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ।

## (ଘ) ନାଟକୀୟତା—

ଏକାଙ୍କିକାର କାହାଣୀ ଏମିତି ପରିକଳ୍ପନା କରାଯାଇଥାଏ, ଯେଉଁଥିରେ ନାଟକୀୟତା ପ୍ରକାଶ ପାଇଥାଏ । କାହାଣୀ ଭାଗ ସିଧାସଳଖ ଆରମ୍ଭ ହେଉଥିଲେ ମଧ୍ୟ ପ୍ରକୃତରେ କାହାଣୀ ଏକ ନାଟକୀୟ ପରିବେଶ ମଧ୍ୟ ଦେଇ ଗତି କରିଥାଏ । ନାଟକୀୟତା ପାଇଁ ଦ୍ୱନ୍ଦ୍ୱ (conflict)ର ଆବଶ୍ୟକତା ପଡ଼ିଥାଏ । ନାଟ୍ୟକାର ଅନ୍ତର୍ନିହିତ ଦ୍ୱନ୍ଦ୍ୱକୁ ଏକାଙ୍କିକାରେ ଗୁରୁତ୍ୱ ଦେଇଥାଏ । ତାହାରକୁ ଚରିତ୍ରମାନଂକର ବ୍ୟବହାର, ସମ୍ପର୍କ ଏତେଟା ଜଣାପଡ଼ୁନ ଥିଲେ ମଧ୍ୟ ଚେତନା ସ୍ତରରେ ସେମାନେ ମାନସିକ ସଂଘର୍ଷରେ ଲିପ୍ତ ଥାଆନ୍ତି । ଏହି ମାନସିକ ଦ୍ୱନ୍ଦ୍ୱର ସ୍ତରକୁ ନାଟ୍ୟକାର ଅତି ସଫଳ ଭାବରେ ପରିବେଷଣ କରିଥାଏ । ଏକାଂକିକାର ଉପସଂହାରରେ ସବୁ ରହସ୍ୟର ଉନ୍ମୋଚନ ହୋଇଥାଏ ଏବଂ ଭୁଲ୍ ବୁଝାମଣାର ଶେଷ ହୋଇଥାଏ । ନାଟକୀୟତା ଯୋଗୁ ଦର୍ଶକ ଶେଷ ପର୍ଯ୍ୟନ୍ତ ବ୍ୟାକୁଳ ହୋଇ ଅପେକ୍ଷା କରିଥାଏ । ନାଟକୀୟତା ଏକାଂକିକା ପାଇଁ ନିହାତି ଆବଶ୍ୟକ । ଯେଉଁ ଏକାଂକିକାରେ ନାଟକୀୟତା ନ ଥାଏ ତାହା ଏକାଂକିକା ଦୃଷ୍ଟିରୁ ସଫଳ ହୋଇପାରେ ନାହିଁ ।

## (ଙ) ଅଭିନୟ—

ଅଭିନୟ ଚରିତ୍ରର ଏକ ପ୍ରଧାନ ଅଂଶ । ନାଟକରେ ଅଭିନୟ କରିବା ଓ ଏକାଂକିକାରେ ଅଭିନୟ କରିବା ସାଧାରଣତଃ ଏକା କଥା ନୁହେଁ । ନାଟକରେ ଅଭିନୟ ସମୟରେ ଅଭିନେତାର ଅନେକ ସୁଯୋଗ ଓ ପରିସର ଥାଏ । ଆବଶ୍ୟକ ହେଲେ ନିଜ ସଂଳାପକୁ ଗୁଡ଼ିଯାଇ ଘଟଣାବଶତଃ ଅନ୍ୟ ସଂଳାପ ଉଚ୍ଚାରଣ କରି ଦେଇଥାଏ; କିନ୍ତୁ ଏକାଂକିକାରେ ଅଭିନୟ ସମୟରେ ସ୍ୱାଧୀନଚେତା ହେବାପାଇଁ କଳାକାର ପାଖରେ କମ୍ ସୁଯୋଗ ଥାଏ । ଏକାଂକିକା ନିର୍ଦ୍ଦିଷ୍ଟ ଓ ନିରୂପିତ ହୋଇଥିବାରୁ ଯଦି ଏଥିରୁ ଗୋଟିଏ ସଂଳାପକୁ ଗୁଡ଼ି ଦିଆଯାଏ ବା ଅଭିନେତା ଅଭିନୟରେ ଅଧିକ ଭାବପ୍ରବଣ ହୋଇଉଠେ ତାହେଲେ ଏକାଂକିକାର ଉଦ୍ଦେଶ୍ୟ ବ୍ୟାହତ ହୋଇଥାଏ । ଏକାଙ୍କିକା ଦର୍ଶକଙ୍କୁ ସିଧାସଳଖ ପ୍ରଭାବିତ କରୁଥିବାରୁ ଏହାର ଅଭିନୟରେ କଳ୍ପନା ନ ଥାଏ ।

## ଏକାଙ୍କିକାର ପ୍ରକାରଭେଦ

ନାଟକ ପରି ଏକାଙ୍କିକାକୁ ମଧ୍ୟ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଥାଏ । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଅଭିପ୍ରାୟଂପୋଷଣ କରି ଏକାଙ୍କିକା ରଚନା କରାଯାଇ ଥାଏ । ସାମାଜିକ, ରାଜନୈତିକ ଏବଂ ଇତିହାସ ଭିତ୍ତିକ କାହାଣୀକୁ ନେଇ ଏକାଙ୍କିକାର ପରିକଳ୍ପନା କରାଯାଇଥାଏ । ନିମ୍ନରେ ବିଭିନ୍ନ ପ୍ରକାର ଏକାଙ୍କିକା ସମ୍ପର୍କରେ ଆଲୋଚନା କରାଗଲା ।

### (କ) ସାମାଜିକ ଏକାଙ୍କିକା—

ସମାଜରେ ଘଟୁଥିବା ବିଭିନ୍ନ ଘଟଣା ଓ ସାମ୍ପ୍ରତିକ ସମସ୍ୟାବଳୀକୁ ନେଇ ସାମାଜିକ ଏକାଙ୍କିକା ସୃଷ୍ଟି ହୋଇଥାଏ । ପରିମାଣାତ୍ମକ ଦୃଷ୍ଟିରୁ ଦେଖିବାକୁ ଗଲେ ସାମାଜିକ ଏକାଙ୍କିକାର ସଂଖ୍ୟା ଅଧିକ । ଗୋଟିଏ ପରିବାରର କାହାଣୀ, ଆଧୁନିକ ଉଦ୍‌ଭ୍ରାନ୍ତ ଜୀବନ, କୌଣସି ଲୁକ୍‌କାୟିତ ରୋଗ ରହସ୍ୟ ବା ପ୍ରେମଜନିତ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱକୁ ନେଇ ସାମାଜିକ ଏକାଙ୍କିକା ପ୍ରକାଶ ପାଇଥାଏ । ସାମାଜିକ ଏକାଙ୍କିକାରେ ଗୋଟିଏ ସମାଜ ବ୍ୟବସ୍ଥାର ସ୍ଥିରଚିତ୍ର ପ୍ରକାଶ ପାଇଥାଏ । ଓଡ଼ିଆ ଏକାଙ୍କିକା ସାହିତ୍ୟରେ ପ୍ରାଣବନ୍ଧୁ କର, ଗୋପାଳ ଛୋଟରାୟ, ବିଶ୍ୱଜିତ୍ ଦାସ ସାମାଜିକ ଏକାଙ୍କିକା ରଚନା କରିବାରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି ।

## (ଖ) ଐତିହାସିକ ଏକାଙ୍କିକା—

ଇତିହାସ ଭିତ୍ତିକ କାହାଣୀକୁ ଆଶ୍ରୟ କରି ଐତିହାସିକ ଏକାଙ୍କିକା ପରିପୁଷ୍ଟ ହୋଇଥାଏ । ନାଟ୍ୟକାର ଇତିହାସର କୌଣସି ଅଂଶ ବା ଚରିତ୍ରକୁ ଯଦି ଆଜି ଯୁଗପୋଯୋଗୀ ବୋଲି ଭାବିଥାଆନ୍ତି, ତାହେଲେ ସେପରି ବିଷୟରେ ସାମ୍ପ୍ରତିକତା ବିନିଯୋଗ କରି ତାକୁ ନାଟ୍ୟରୂପ ପ୍ରଦାନ କରିଥାଆନ୍ତି । ସାମ୍ପ୍ରତିକ ଏକାଙ୍କିକା କ୍ଷେତ୍ରରେ ଯଦିଓ ଇତିହାସର କାହାଣୀକୁ ଗୁରୁତ୍ୱ ଦିଆଯାଉ ନାହିଁ ତଥାପି ଇତିହାସ ମିଥ୍ ଭାବରେ ଆମ ଏକାଙ୍କିକାରେ ଆତ୍ମପ୍ରକାଶ କରୁଛି । ମିଥିକ୍ ଚେତନା ଭିତରେ ସାମ୍ପ୍ରତିକ ସମସ୍ୟାକୁ ରୂପ ଦେବାରେ ଏକାଙ୍କିକା ସମର୍ଥ ହୋଇଛି ।

## (ଗ) ପୌରାଣିକ ଏକାଙ୍କିକା—

ପୌରାଣିକ ଏକାଙ୍କିକାରେ ପୁରାଣର କାହାଣୀକୁ ଗ୍ରହଣ କରାଯାଇ ଥାଏ । ଧର୍ମପ୍ରାଣ ଜନତା ମନରେ ଧାର୍ମିକ ଭାବ ସଞ୍ଚାର କରିବା ଯଦିଓ ପୌରାଣିକ ଏକାଙ୍କିକାର ପ୍ରଧାନ ଲକ୍ଷ୍ୟ ନୁହେଁ ତଥାପି ପୁରାଣ ଭିତରେ ଥିବା ନାଟକୀୟ ବିଷୟବସ୍ତୁ ବିବାଚନ କରି ତାକୁ ସଂକ୍ଷିପ୍ତ ନାଟ୍ୟରୂପ ପ୍ରଦାନ ମାଧ୍ୟମରେ ଆଧ୍ୟାତ୍ମିକ ମନୋରଞ୍ଜନ ଯୋଗାଇ ଦେବାରେ ପୌରାଣିକ ଏକାଙ୍କିକା ସମର୍ଥ ହୋଇଥାଏ । ପୌରାଣିକ ଏକାଙ୍କିକାରେ ଈଶ୍ୱର, ଈଶ୍ୱରୀ, ଯମଯମୀ, ରାକ୍ଷସ, ଋଷି, ନାରଦ ଆଦି ଚରିତ୍ର ଅବତାରଣା କରାଯାଇ ଥାଏ । ସାମ୍ପ୍ରତିକ ସମୟରେ ପୌରାଣିକ ଏକାଙ୍କିକା ରଚନାର ପ୍ରାବଲ୍ୟତା ଲକ୍ଷ୍ୟ କରାଯାଏ ନାହିଁ ।

## (ଘ) ମନସ୍ତାତ୍ତ୍ୱିକ ଏକାଙ୍କିକା—

ଏକାଙ୍କିକାର କ୍ଷୁଦ୍ର ପରିସର ଭିତରେ ନାଟକୀୟତା ସୃଷ୍ଟି କରିବା ନାଟ୍ୟକାରର ପ୍ରଧାନ ଧର୍ମ । ନାଟକୀୟତା ପାଇଁ ଦ୍ୱନ୍ଦର ଆବଶ୍ୟକତା ପଡ଼ିଥାଏ । ଯେଉଁ ଏକାଙ୍କିକାରେ ନାଟ୍ୟକାର ଦ୍ୱନ୍ଦର ପ୍ରୟୋଗ କରିଥାଏ ସେଥିରେ ନନ୍ଦନତତ୍ତ୍ୱ ଅଧିକ ଫୁଟି ଉଠିଥାଏ । ଏକାଙ୍କିକାରେ ସାଧାରଣତଃ ମନସ୍ତାତ୍ତ୍ୱିକ ଦ୍ୱନ୍ଦ ଅବତାରଣା କରାଯାଇ ଥାଏ । ବାହ୍ୟିକ ଦ୍ୱନ୍ଦ ପାଇଁ ଏକାଙ୍କିକାରେ ପରିବେଶ ପ୍ରସ୍ତୁତ ନ ଥାଏ । ଦୁଇଟି ଚରିତ୍ର ବା ଏକାଧିକ ଚରିତ୍ର ଭିତରେ ମାନସିକ ମନ୍ଥନ ମାଧ୍ୟମରେ ନାଟ୍ୟକାର କାହାଣୀକୁ ଆଗେଇ ନେଇ ଯାଇଥାଏ । ପ୍ରେମଭିତ୍ତିକ ଏକାଙ୍କିକା ମାନଙ୍କରେ ଏହି ଦ୍ୱନ୍ଦ ଅଧିକ ତୀବ୍ର । ବିନା ଦ୍ୱନ୍ଦରେ ଏକାଙ୍କିକା ପରିକଳ୍ପନା କରିବା ଅସାର । ମନସ୍ତାତ୍ତ୍ୱିକ ଏକାଙ୍କିକାରେ ଚରିତ୍ର ମାନଙ୍କର ମନସ୍ତାତ୍ତ୍ୱିକ ଦିଗକୁ ଗୁରୁତ୍ୱ ଦିଆଯାଇ ଥାଏ ।

## (ଙ) କିମ୍ବଦନ୍ତୀ ମୂଳକ ଏକାଙ୍କିକା—

କିମ୍ବଦନ୍ତୀ ମୂଳକ ଏକାଙ୍କିକାରେ ପ୍ରଚଳିତ ଏକ କିମ୍ବଦନ୍ତୀକୁ ଗୁରୁତ୍ୱ ଦେଇ ଏକାଙ୍କିକା ରଚନା କରାଯାଇଥାଏ । ଓଡ଼ିଶାର ପୁରପଲ୍ଲୀରେ ଅଗଣିତ ପରମ୍ପରା କାହାଣୀ ଆଜି ମଧ୍ୟ ଲୋକ ମୁଖରେ ଗଢି କରୁଛି । ଏହିସବୁ କାହାଣୀର ଗୁରୁତ୍ୱ ଉପଲବ୍ଧି କରି ନାଟ୍ୟକାର ଏକାଙ୍କିକାର ପରିକଳ୍ପନା କରିଥାଏ ।

## (ଚ) ପ୍ରଚାରଧର୍ମୀ ଏକାଙ୍କିକା—

ପ୍ରଚାରଧର୍ମୀ ଏକାଙ୍କିକା, ଏକାଙ୍କିକାର ସାମ୍ପ୍ରତିକତମ ରୂପ । କୌଣସି ଏକ ଉଦ୍ଦେଶ୍ୟ ରଖି ତାକୁ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇବା ପାଇଁ ଏକାଙ୍କିକାର ପରିକଳ୍ପନା କରାଯାଇଥାଏ । ପଲ୍ସପୋଲିଓ ଟୀକା, ଏଡ୍ସ ସଚେତନତା, ପରିବେଶ ସୁରକ୍ଷା, ଖାଉଟି ଆନ୍ଦୋଳନ, ପୌଢ଼ଶିକ୍ଷା, ସମସ୍ତଙ୍କପାଇଁ ଶିକ୍ଷା ଆଦି କାର୍ଯ୍ୟକ୍ରମକୁ ଜନାଭିମୁଖୀ କରିବା ପାଇଁ ଏକାଙ୍କିକା ମଞ୍ଚସ୍ଥ କରାଯାଇ ଥାଏ । ପଥପ୍ରାନ୍ତର ନାଟକ (Street play) କୁ ପ୍ରଚାରଧର୍ମୀ ଏକାଙ୍କିକାର ପରିସରରେ ଗ୍ରହଣ କରାଯିବ । ଓଡ଼ିଆ ଏକାଙ୍କିକା ସାହିତ୍ୟରେ ଅନେକ ସଫଳ ପ୍ରଚାରଧର୍ମୀ ଏକାଙ୍କିକା ସୃଷ୍ଟି ହୋଇପାରିଛି ।

## (ଛ) ଚରିତ୍ରଧର୍ମୀ ଏକାଙ୍କିକା—

ଅନେକ ସମୟରେ ଗୋଟିଏ ଚରିତ୍ରକୁ ଗୁରୁତ୍ୱ ଦେଇ ଏକାଙ୍କିକା କଳ୍ପନା କରାଯାଇଥାଏ । ଏପରି ଏକାଙ୍କିକାରେ ବର୍ଣ୍ଣିତ ଚରିତ୍ରର ବିଭିନ୍ନ ଦିଗ ସମ୍ପର୍କରେ ଅଭିନୟ ହୋଇଥାଏ । ପୁରାଣ, ଇତିହାସର କୌଣସି ଗୁରୁତ୍ୱପୂର୍ଣ୍ଣ ଚରିତ୍ରକୁ ଏଥିରେ ବିଶ୍ଳେଷଣ କରାଯାଇଥାଏ । ସଂପ୍ରତି କୌଣସି ବିଶିଷ୍ଟ ଜନନାୟକ-ମାନଙ୍କ ଜୀବନକୁ ଏକାଙ୍କିକା ମାଧ୍ୟମରେ ଅଭିନୟ କରି ସାଧାରଣ ଜନତା ନିକଟରେ ପହଞ୍ଚାଇ ଦିଆଯାଉଛି । ଚରିତ୍ରମୂଳକ ଏକାଙ୍କିକାରେ ଗୋଟିଏ କେନ୍ଦ୍ରିସ୍ଥ ଚରିତ୍ର ଥାଏ ଓ ଉକ୍ତ ଚରିତ୍ରର ଆବଶ୍ୟକତା ଅନୁଯାୟୀ ଅନ୍ୟ ଚରିତ୍ରମାନେ ସୃଷ୍ଟି ହୋଇ ଥାଆନ୍ତି ।

## (ଜ) ହାସ୍ୟରସଧର୍ମୀ ଏକାଙ୍କିକା—

ଏକାଙ୍କିକା ଅଭିନୟ କରିବାପାଇଁ ସମ୍ପ୍ରତି ଅନେକ ସୁଯୋଗ ସୃଷ୍ଟି ହୋଇଛି । କୌଣସି ଉତ୍ସବରେ ସାଧାରଣ ସଭାପରେ ଦର୍ଶକମାନଙ୍କ ମନୋରଞ୍ଜନ ପାଇଁ ଏକାଙ୍କିକା ଅନୁଷ୍ଠିତ ହୁଏ । ଏସବୁ ଏକାଙ୍କିକାର ଆୟୁଷ ସ୍ୱଳ୍ପ ଓ ଉଦ୍ଦେଶ୍ୟ

ମନୋରଞ୍ଜନ ହୋଇଥିବାରୁ ହାସ୍ୟରସଧର୍ମୀ ଏକାଙ୍କିକା ପ୍ରାୟତଃ ଅଭିନୀତ ହୋଇଥାଏ । ଚରିତ୍ରମାନେ ପରସ୍ପର ମଧ୍ୟରେ କଥୋପକଥନ ଦ୍ୱାରା ହାସ୍ୟରସ ସୃଷ୍ଟି କରିଥାଆନ୍ତି । ସମାଜରେ ଘଟୁଥିବା ରାଜନୈତିକ, ସାମାଜିକ ଘଟଣାବଳୀକୁ ଏଥିରେ ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ ପ୍ରକାଶ କରାଯାଇ ଥାଏ । ହାସ୍ୟରସ ମାଧ୍ୟମରେ ଚରିତ୍ରମାନେ ଗୋଟାଏ କ୍ଷୁଦ୍ର ବିଷୟବସ୍ତୁ ପରିବେଷଣ କରି ଥାଆନ୍ତି । ବିଭିନ୍ନ କ୍ଲବ୍ ମାନଙ୍କର ବାର୍ଷିକ ଉତ୍ସବ ପରେ ଦର୍ଶକମାନଙ୍କୁ ଆକୃଷ୍ଟ କରିବା ପାଇଁ ହାସ୍ୟରସ ସମ୍ବଳିତ ଏକାଙ୍କିକା ପରିବେଷଣ କରାଯାଇ ଥାଏ ।

•

ଏକାଙ୍କିକା ମଣିଷ ଜୀବନର ଆବେଗ, ଅନୁଭୂତି ସହ ଏକାତ୍ମ ହୋଇ ଯାଇଥିବାରୁ ଏହା ବ୍ୟକ୍ତି ଜୀବନର ବିବିଧ ଦିଗକୁ ସଞ୍ଚରି ଯାଇଥାଏ । ଏକାଙ୍କିକା ମୁଖ୍ୟତଃ ଏକ ଆତ୍ମିକ କଳା । ମଣିଷର ମନ ରାଜ୍ୟର ଅନେକ ଅନ୍ଧାରି ଇଲାକାର ସନ୍ଧାନ ଦେବା ଏକାଙ୍କିକାର ଲକ୍ଷ୍ୟ । ମଣିଷର ଜୀବନର ବିଭିନ୍ନ ପ୍ରବୃତ୍ତିକୁ ଏକାଙ୍କିକା ଅତି ସଫଳତାର ସହ ଗ୍ରହଣ କରିଥାଏ । ଏକାଙ୍କିକା ବାହ୍ୟିକ ନୁହେଁ ବରଂ ଆତ୍ମିକ ଦୃଷ୍ଟିରୁ ବିଭିନ୍ନ ଭାଗରେ ବିଭକ୍ତ ହୋଇ ଆଧୁନିକ ଜୀବନର ପରିଭାଷା ପ୍ରଦାନ କରୁଛି ।

## ଏକାଙ୍କିକା ଉତ୍ପତ୍ତିର ପ୍ରାଚୀନତା—

ଏକାଙ୍କିକାର ପ୍ରାଚୀନତା ପ୍ରାଚ୍ୟ ସାହିତ୍ୟରେ ଦେଖାଯାଏ । ସଂସ୍କୃତ ସାହିତ୍ୟରେ ନାଟକର ବିଭାଗୀକରଣ ପ୍ରକ୍ରିୟାରେ କ୍ଷୁଦ୍ର ନାଟିକାମାନଙ୍କୁ ଏକାଙ୍କିକାରେ ନାମିତ କରାଯାଇଥିଲା । ସାଧାରଣତଃ ପଞ୍ଚାଙ୍କ ବିଶିଷ୍ଟ ରଚନାକୁ ନାଟକ ଓ ଅବଶିଷ୍ଟ କ୍ଷୁଦ୍ର ରଚନା ପ୍ରହସନ, ବୀଥି, ଇହାମୃଗ, ବିଳାସିକା ଆଦି ରଚନାକୁ ଏକାଙ୍କିକା ନାମରେ ନାମିତ କରାଯାଇଥିଲା । ଏକାଙ୍କିକାମାନଙ୍କରେ ଗୋଟିଏ ବିଷୟବସ୍ତୁକୁ ଅଳ୍ପ ପରିହାସ ଭିତରେ ପ୍ରକାଶ କରାଯାଉଥିଲା । ଏହାର ଗଠନ ମଧ୍ୟ ଏତେ ଦୃଢ଼ ନ ଥିଲା । ଏହି ପରିପ୍ରେକ୍ଷୀରେ ନାଟକକୁ ଶାସ୍ତ୍ରୀୟ ମତରେ ସୃଷ୍ଟି କରାଯାଉଥିଲା । ସଂସ୍କୃତ ସାହିତ୍ୟରେ ଅଙ୍କ ବଳ ଉତ୍କର୍ଷ ସୃଷ୍ଟିକୁ ନାଟକ ଓ କ୍ଷୁଦ୍ର ଲଘୁ ରସାତ୍ମକ ସୃଷ୍ଟିକୁ ଏକାଙ୍କିକା ଭାବରେ ଗ୍ରହଣ କରାଯାଉଥିଲା । ସାଂପ୍ରତିକ ଏକାଙ୍କିକାଠାରୁ ଏସବୁ ଏକାଙ୍କିକା ଭିନ୍ନ ଥିଲା । ରାଜାମାନଙ୍କ ବିଳାସପୂର୍ଣ୍ଣ ଜୀବନ ଚର୍ଚ୍ଚା ସାଧାରଣ ଚରିତ୍ରମାନଙ୍କ ଦ୍ୱାରା ହେଉଥିଲା । ଏ ସବୁଥିରେ ସଙ୍ଗୀତ ଓ ନୃତ୍ୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହୁଥିଲା । ସଂସ୍କୃତ ସାହିତ୍ୟରେ ଯାହାକୁ ଏକାଙ୍କିକା ଭାବରେ ଗ୍ରହଣ କରାଯାଇଛି ସାଂପ୍ରତିକ ପରିପ୍ରେକ୍ଷୀରେ ସେସବୁ ଏକାଙ୍କିକା ପଦବାଚ୍ୟ ହୁଅନ୍ତି

ନାହିଁ । ଆଧୁନିକ ଏକାଙ୍କିକା ସୃଷ୍ଟି ହେବା ପୂର୍ବରୁ ଏକାଙ୍କିକାର ଏହି ପ୍ରାଚୀନ କଳାକୁ ଗ୍ରହଣ କରିହେବ ।

ଏକାଙ୍କିକାର ଉତ୍ପତ୍ତି ଓ ପ୍ରାଚୀନତା ସମ୍ପର୍କରେ ନିଜର ମତାମତ ପ୍ରକାଶ କରି ଜନ୍ ହମ୍ପଟେନ କହିଛନ୍ତି—"It is not that the one act play is a new thing. × × Wandering players found it indispensable for centuries and folk drama has always had a place for it, it mummers of chipping compden· Still go the rounds with a one act comedy with which derives from the fertility rites and human sacrifies of a dim prehistoric past·" (24 one act plays introduction) ଏହି ଦୃଷ୍ଟିରୁ ଦେଖିଲେ ଖ୍ରୀ.ପୂ. ୩୦୦ରେ ଦକ୍ଷିଣ ବିହାର ରାମଗଡ଼ ପର୍ବତର ଯୋଗୀମରା ଶିଳାଲେଖରେ ସୂତନୁକା ଓ ରୂପଦକ୍ଷର ଅଭିନୟ ଅଥବା ଯମଯମୀ ଉପାଖ୍ୟାନ, ପୁରୁରବା ଉର୍ବଶୀ କାହାଣୀ, ସରମାପଣି ବୃତ୍ତାନ୍ତ ପରି ବୈଦିକ ଉପାଖ୍ୟାନରେ ମଧ୍ୟ ଏହି ଏକାଙ୍କିକାର ଜୀବନଧାରା ସଞ୍ଚରିତ । * ଏକାଙ୍କିକାର ପ୍ରାଚୀନ ରୂପ ଲୋକନାଟକ ଭିତରେ ରହିଅଛି । ନାଟକ ମଞ୍ଚସ୍ଥ ହେବା ପୂର୍ବରୁ ସଙ୍ଗୀତ ଓ ନୃତ୍ୟ ସମ୍ବଳିତ ଯେଉଁ ନାଟିକା ପରି-ବେଷଣ କରାଯାଇଥାଏ, ସେଥିରୁ ଏକାଙ୍କିକାର ଉଦ୍‌ଭବ ହୋଇଛି । ପାଶ୍ଚାତ୍ୟ ଦେଶମାନଙ୍କରେ ଶିଳ୍ପ ବିପ୍ଳବ, ନବଜାଗରଣ ମଣିଷକୁ ଉତ୍ପାଦନଶୀଳ ଯନ୍ତ୍ରରେ ପରିଣତ କଲାପରେ ଏକାଙ୍କିକା ସୃଷ୍ଟି ପାଇଁ ପରିବେଶ ସୃଷ୍ଟି ହୋଇଛି । ଗ୍ରୀକ୍ ନାଟକରେ 'Satyr Play'କୁ ଏକାଙ୍କିକା ଜନ୍ମର କାରଣ ଭାବରେ ଗ୍ରହଣ କରାଯାଇଥାଏ । ଆମ ସଂସ୍କୃତ ସାହିତ୍ୟରେ Satyr Play ପରି 'ପ୍ରହସନ' ପ୍ରଚଳିତ ଥିଲା । ଇଂରେଜ ସାହିତ୍ୟରେ Hey wood, R·S· Shersdan, John Bale ପ୍ରମୁଖ ସ୍ରଷ୍ଟାମାନେ ଏକାଙ୍କିକା ରଚନା କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଏକାଙ୍କିକା ସାହିତ୍ୟକୁ ନୂତନ ରୂପ ପ୍ରଦାନ କଲେ । ଏକାଙ୍କିକାକୁ ବିଶ୍ୱବ୍ୟାପୀ ମହତ୍ତ୍ୱ ଦେବାରେ ଆମେରିକାର 'Little theatre movement'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଇଉରୋପୀୟ ଦେଶମାନଙ୍କରେ ଏକାଙ୍କିକା ସଫଳତାର ସହ ରଚନା ହେବାପରେ ଭାରତୀୟ ପାଣି ପାଗରେ ତା'ର ପ୍ରୟୋଗ କରାଯାଇଛି । ଓଡ଼ିଆ ସାହିତ୍ୟରେ ଏକାଙ୍କିକା ରଚନା କରିବାର ଯଥାର୍ଥ ଅବକାଶ ସ୍ୱାଧୀନତା ପରବର୍ତ୍ତୀ ସମୟଠାରୁ ଦେଖାଯାଏ ।

---

* ସାହିତ୍ୟ ତତ୍ତ୍ୱ ପ୍ରାଚ୍ୟ ପାଶ୍ଚାତ୍ୟ—ଜ୍ୟୋତ୍ସ୍ନାମୟୀ ପ୍ରଧାନ, ପୃ—୧୩୬ ।

## ଓଡ଼ିଆ ସାହିତ୍ୟରେ ଏକାଙ୍କିକା—

ଓଡ଼ିଆ ସାହିତ୍ୟରେ ଏକାଙ୍କିକା ଆଲୋଚନା ଅବସରରେ ଆମ ପ୍ରାଚୀନ ଫାର୍ସ ପ୍ରହସନକୁ ଗୁରୁତ୍ୱ ଦେଇ ବିଚାର କରିବାକୁ ହେବ । ସଂସ୍କୃତ ସାହିତ୍ୟରେ ପ୍ରହସନକୁ ଏକାଙ୍କିକାର ମର୍ଯ୍ୟାଦା ଦିଆଯାଇଛି । ଗ୍ରୀକ୍ ସାହିତ୍ୟରେ ମଧ୍ୟ ପ୍ରହସନକୁ ଏକାଙ୍କିକାର ଉତ୍ପତ୍ତି ଓ ଆରମ୍ଭ ଭାବରେ ଗ୍ରହଣ କରାଯାଇଛି । ଆମ ପ୍ରାଚୀନ ଲୋକନାଟକମାନଙ୍କରେ ଅନେକ ପ୍ରହସନ ଦେଖାଯାଇ ଥାଏ । ଚଇତି-ଘୋଡ଼ା ନାଚ, ଚଢ଼େୟା ନାଚ, ଉପରକେଳି ନୃତ୍ୟ ଆଦିରେ ହାସ୍ୟରସ ମାଧ୍ୟମରେ ବହୋକ୍ତିକୁ ଗ୍ରହଣ କରାଯାଇ ଥାଏ । ଏସବୁକୁ ଏକାଙ୍କିକା କୁହାଯାଇ ପାରିବ ନାହିଁ । ଲୋକସାହିତ୍ୟରେ ବହୁ ବଳିଷ୍ଠ ଲୋକନାଟକ ପରିଦୃଷ୍ଟ ହେଉଥିଲେହେଁ ଏକାଙ୍କିକାର ମହତ୍ତ୍ୱ ଓ କଳା ଗୌରବ ଦୃଷ୍ଟିରୁ ଏସବୁ ଗ୍ରହଣୀୟ ନୁହେଁ ।

ଆମ ନାଟ୍ୟ ସାହିତ୍ୟର ପ୍ରଥମ ପର୍ଯ୍ୟାୟରେ କେତୋଟି ସାର୍ଥକ ପ୍ରହସନ ଦେଖାଯାଏ । ରାମଶଙ୍କର ରାୟଙ୍କର କଳିକାଳ, ବୃନ୍ଦାବନ ପ୍ରହସନ ଦୁଇଟି ଅନ୍ୟତମ । ଏ ଦୁଇଟି ପ୍ରହସନ ଏକାଙ୍କିକା ନ ହେଲେ ମଧ୍ୟ ଓଡ଼ିଆ ଏକାଙ୍କିକା ସୃଷ୍ଟିର ପ୍ରାରମ୍ଭିକ ପ୍ରୟାସ ଭାବରେ ଗ୍ରହଣ କରାଯାଇ ପାରିବ । ଆଲୋଚ୍ୟ ସମୟରେ ବୈଷ୍ଣବ ପାଣି ଅନେକ ଫାର୍ସ, ଗୀତିନାଟ୍ୟ, ତାମସା ରଚନା କରିଛନ୍ତି । ଓଡ଼ିଶାରେ ରଙ୍ଗମଞ୍ଚମାନଙ୍କରେ ଏ ସବୁକୁ ଅଭିନୀତ କରି ଦର୍ଶକ ମନରେ ହାସ୍ୟରସ ସୃଷ୍ଟି କରିବା ଏ ସବୁର ଉଦ୍ଦେଶ୍ୟ ଥିଲା । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ସୌମ୍ୟା' ଏ ସମୟର ଅନ୍ୟତମ ହାସ୍ୟରସାତ୍ମକ କାବ୍ୟ ନାଟିକା । ଓଡ଼ିଆ ନାଟକର ପ୍ରଥମ ପର୍ଯ୍ୟାୟରେ ଏକାଙ୍କିକା ରଚନା କରିବା ପାଇଁ କୌଣସି ସଫଳ ପ୍ରୟାସ ହୋଇଥିବା ଲକ୍ଷ୍ୟ କରାଯାଏ ନାହିଁ ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓଡ଼ିଆ ସାହିତ୍ୟରେ ଏକାଙ୍କିକା ସୃଷ୍ଟି କରିବାରେ ପ୍ରାରମ୍ଭିକ ପ୍ରୟାସ କରି ସଫଳ ହୋଇଛନ୍ତି । 'ଜୀବନ ତର୍ପଣ' ୧୯୩୭ ମସିହାରେ ଅଭିନୀତ କରିସାରିବା ପରେ ନାଟ୍ୟକାର 'ପଞ୍ଚରଙ୍ଗ' ନାମକ ଏକ ଏକାଙ୍କିକା ସଙ୍କଳନ କଳାନାହିଁ, ମନ୍ଦିର ପ୍ରବେଶ, ଦେବତାର ଭଲୋ, ଦଳ-ବେହେରା, ଛିନ୍ନପତ୍ର ପ୍ରକାଶ କଲେ । ଏସବୁ ଏକାଙ୍କିକାରେ କବିଚନ୍ଦ୍ର ସାମାଜିକ କାହାଣୀ ସହ ଇତିହାସର କାହାଣୀକୁ ଗ୍ରହଣ କଲେ । ଏକାଙ୍କିକାକୁ ଜନାଭିମୁଖୀ କରିବାରେ କାଳୀଚରଣଙ୍କ ଉଦ୍ୟମ ପ୍ରଶଂସନୀୟ । କବିଚନ୍ଦ୍ର 'ଷଡ଼ରସ' ନାମକ ଅନ୍ୟ ଏକ ସଙ୍କଳନ ଦଳବେହେରା, ଭଙ୍ଗାଡଙ୍ଗା, ନୂଆବୁଢ଼ିଆ, ପ୍ରତିନିଧି, ପୋଷ୍ୟପୁତ୍ର, କଳଙ୍କ ଜେମା, ଆଦି ଶୀର୍ଷକରେ ପ୍ରକାଶ କରିଛନ୍ତି । ଷଡ଼ରସ ସଙ୍କଳନରେ ସଙ୍କଳିତ

ଏକାଙ୍କିକାମାନଙ୍କରେ ସମସ୍ୟାମୂଳକ ଏକାଙ୍କିକା ରଚନା କରିବାରେ ନାଟ୍ୟକାର ମନସ୍କ ହୋଇଛନ୍ତି । ଦର୍ଶକଙ୍କୁ ବାନ୍ଧି ରଖିବା ପାଇଁ ହାସ୍ୟରସର ପରିବେଷଣ ମାଧ୍ୟମରେ କାଳୀଚରଣ ସମସ୍ୟାଟିକୁ ତାଙ୍କ ଉପରେ ନଦ୍ଦେଇ ଥାଆନ୍ତି । କାଳୀଚରଣଙ୍କ ପ୍ରତିଭାବନ୍ତ ସୃଷ୍ଟିରେ ଓଡ଼ିଆ ଏକାଙ୍କିକା ସାହିତ୍ୟର ଗୁରୁତ୍ୱ ବୃଦ୍ଧି ପାଇଛି ।

ଅଶ୍ୱିନୀକୁମାର ଘୋଷ 'ସୁନାଭଉଜ' ଓ 'ମାଲୁଣୀ' ଏକାଙ୍କିକା ରଚନା କରି ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ଅଶ୍ୱିନୀ କୁମାର ଅନେକ ସଫଳ ନାଟକ ସୃଷ୍ଟି କରିଛନ୍ତି; କିନ୍ତୁ ଏକାଙ୍କିକା ପାଇଁ ଅଧିକ ପ୍ରଯତ୍ନ କରି ନ ଥିବା ତାଙ୍କ ଦୁଇଟି ଏକାଙ୍କିକାରୁ ଜଣା ପଡ଼ିଥାଏ । ସରଳା ଦେବୀଙ୍କ ଏକାଙ୍କିକା ସଙ୍କଳନ 'ପଞ୍ଚପ୍ରଦୀପ' ହରେକୃଷ୍ଣ ମହତାବଙ୍କ 'ଯୁଗସଙ୍କେତ' ଯଜ୍ଞାନ ଦାସଙ୍କ 'ବେତାର ବଚନା' ଆଦି ଏକାଙ୍କିକାମାନଙ୍କରେ ସ୍ୱାଧୀନତ୍ୱର ଜୀବନ ଚଳ ଓ ସମାଜ ଚଳ ଅତି ସଫଳତାର ସହ ପ୍ରକାଶ ପାଇଛି ।

ନାଟ୍ୟକାର ପ୍ରାଣବନ୍ଧୁ କର ଅନେକ ଏକାଙ୍କିକା ରଚନା କରି ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । 'ଏକାଙ୍କିକା-ଏକ' ଏବଂ 'ଏକାଙ୍କିକା-ଦୁଇ'ରେ ତାଙ୍କର ଏକାଙ୍କିକାଗୁଡ଼ିକ ସଙ୍କଳିତ ହୋଇଛି । ପ୍ରାଣବନ୍ଧୁ କର ସମାଜ ଜୀବନକୁ ତାଙ୍କ ସୃଷ୍ଟି ଭିତରେ ମୂଲ୍ୟାୟନ କରିଥାଆନ୍ତି । କାହାଣୀ ଭାଗରେ ମାନବିକତା ଓ ସମ୍ବେଦନଶୀଳ ହେବା ତାଙ୍କ ଚରିତ୍ରମାନଙ୍କର ବିଶେଷତ୍ୱ । ପେଟ୍ରୁ, ବିପ୍ଳବୀ, ବାପୁଜୀ, ମହୁୟା, ସ୍ନାୟୁବିଭ୍ରାଟ, କିଛିନାହିଁ ସେଥିରେ, ଶ୍ୱେତପଦ୍ମ ଆଦି ଏକାଙ୍କିକା ମାନଙ୍କରେ ତାଙ୍କ ପ୍ରତିଭାର ପରିଚୟ ମିଳିଥାଏ ।

ଗୋପାଳ ଛୋଟରାୟ ସାମାଜିକ ସମସ୍ୟାକୁ ନେଇ ପାରିବାରିକ ଏକାଙ୍କିକା ରଚନା କରିବାରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । ସାମନ୍ତ ଝିଅ, ଶୋଷ, ସମୁଦ୍ର ମନ୍ଥନ, ଅନାଗତ, ବାନ୍ଧବୀ ଆଦି ଏକାଙ୍କିକାମାନଙ୍କରେ ତାଙ୍କର କଳାତ୍ମକ ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ । ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କର ଆବିଷ୍କାର, ପ୍ରବାସୀ, ପଡ଼ୋଶୀ ଆଦି ଗୋଟିଏ ଗୋଟିଏ ସାର୍ଥକ ଏକାଙ୍କିକା । ନାଟ୍ୟକାର ରାଜକିଶୋର ରାୟଙ୍କ 'ପଞ୍ଚପଲ୍ଲବ' ବସନ୍ତକୁମାର ଶତପଥୀଙ୍କ 'ପିଲ୍‌ସନ' ବିରୂପାକ୍ଷ ପ୍ରହରାଜଙ୍କ 'ଜନ୍ମମାଟି' ଅଦ୍ୱୈତ ଚନ୍ଦ୍ର ମହାନ୍ତିଙ୍କର 'ଦୃଶ୍ୟପରେ ଦୃଶ୍ୟ' ସୁରେନ ମହାନ୍ତିଙ୍କ 'ସପ୍ତସ୍ୱର' ସଙ୍କଳନସ୍ଥ 'ପାହାଡ଼ର ଆତ୍ମକଥା' ରଘୁନାଥ ଦାସଙ୍କର 'ଝିଙ୍କ' ଭଞ୍ଜକିଶୋର ପଟ୍ଟନାୟକଙ୍କର ବାଣହରଣ, ଜାଗରଣ, ଉଦାରମନା, ଭୁବନେଶ୍ୱର ମହାପାତ୍ରଙ୍କ ମନଦେଉଳ, ଫୁଲାଣିକୁଳ, ବସନ୍ତ କୁମାର ମହାପାତ୍ରଙ୍କର 'ଏଇମାଟିର ଶିଶୁ' ଗୋପାଳଚନ୍ଦ୍ର ମିଶ୍ରଙ୍କ 'ସତ୍ୟାଗ୍ରହୀ' ଆଦି ଗୋଟିଏ ଗୋଟିଏ ସଫଳ ଏକାଙ୍କିକା ଭାବରେ ଆଦୃତ ।

ପାରମ୍ପରିକ ଏକାଙ୍କିକା ସୃଷ୍ଟିର ଧାରାକୁ ରୋଧ କରି ନାଟ୍ୟକାର ମନୋରଞ୍ଜନ ଦାଶ ନୂଆ ଆଙ୍ଗିକ ଓ ଆତ୍ମିକ ଚେତନା ପ୍ରୟୋଗ କରି ଏକାଙ୍କିକା ରଚନା କଲେ । ତାଙ୍କ ଏକାଙ୍କିକାମାନଙ୍କ ମଧ୍ୟରେ ସଙ୍କଳନ ଶ୍ରେଷ୍ଠନାଟକ, ଅବବାହିକାର ସ୍ୱପ୍ନ, ଆଧୁନିକ ଏକାଙ୍କିକା ସାହିତ୍ୟରେ ନୂତନ ପ୍ରବୃତ୍ତିଗତ ଚିନ୍ତା ପ୍ରଦାନ କରିବାରେ ସମର୍ଥ ହୋଇଛି । ମନୋରଞ୍ଜନ ମଣିଷର ମନସ୍ତତ୍ତ୍ୱକୁ ତାଙ୍କ ଏକାଙ୍କିକାର ପ୍ଲଟ୍ ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ଏକାଙ୍କିକାରେ ଆବେଦନ ଅପେକ୍ଷା ବିଶ୍ଳେଷଣ ଏବଂ ସଂଳାପରେ ରହସ୍ୟଭେଦ ଉଚ୍ଚାରଣ ଦେଖାଯାଏ । ଆଧୁନିକ ଏକାଙ୍କିକା ରଚନା କରିବାରେ ମନୋରଞ୍ଜନଙ୍କ ଉଦ୍ୟମ ପ୍ରଶଂସନୀୟ ।

ପ୍ରୟୋଗବାଦୀ ନାଟକର ସ୍ରଷ୍ଟାମାନେ ଏକାଙ୍କିକା ରଚନାରେ ନିଜକୁ ନିୟୋଜିତ କରିଛନ୍ତି । ଆଲୋଚ୍ୟ ସମୟର ପ୍ରଖ୍ୟାତ ନାଟ୍ୟକାର ବିଜୟ ମିଶ୍ରଙ୍କର ଲେଭେଲ୍ କ୍ରସିଙ୍ଗ, ତାଆରିଲାଗି, କୌଣସି ଏକ ନାଟକ ପାଇଁ ସାର୍ଥକ ଓ ସଫଳ ଏକାଙ୍କିକାର ଗୌରବ ବହନ କରିଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଚରିତ୍ରମାନଙ୍କୁ ଏକାଠି କରି ସେମାନଙ୍କର ବିଭିନ୍ନ ଭୂମିକା ମଧ୍ୟରେ କାହାଣୀର ଚରମ ପରିସମାପ୍ତି ଆଣିବା ବିଜୟ ମିଶ୍ରଙ୍କ ନାଟ୍ୟକଳାର ଲକ୍ଷଣ ।

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଅନ୍ତରୀ, ଗ୍ରୀନ୍‌ରୁମ୍, କଲେଜ କ୍ୟାଣ୍ଟିନ୍, ପ୍ରବେଶପ୍ରସ୍ଥାନ, ଶେଷଦୃଶ୍ୟ ଆଦି କେତୋଟି ସଫଳ ଏକାଙ୍କିକା । ନାଟ୍ୟକାର ପ୍ରସନ୍ନ କୁମାର ମିଶ୍ର ସ୍ୱପ୍ନମୃଗୀ, କଦଳୀଗଛର ଗାଥା, ସେଇ ପୁରୁଣା ମାଣ ପୁରୁଣା, ଉଠରେ ପୂତା ଉଠ, ଅନାଟକ, ଗୋଟିଏ ଛିନ୍ନ ମୂର୍ତ୍ତିକୁ ନେଇ ଆଦି ଏକାଙ୍କିକା ମାଧ୍ୟମରେ ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ପ୍ରସନ୍ନଙ୍କ ଏକାଙ୍କିକା ଯୁକ୍ତି ସମ୍ବଳିତ । ଗୋଟିଏ ଘଟଣାକୁ ଭିନ୍ନ ଭିନ୍ନ ଦିଗରୁ ବ୍ୟାଖ୍ୟାକରି ସେ ତାହା ପ୍ରୟୋଗ କରି ଥାଆନ୍ତି ।

ନାଟ୍ୟକାର ରତ୍ନାକର ଚଇନି ଅନେକ ସଫଳ ଏକାଙ୍କିକା ସୃଷ୍ଟି କରିଛନ୍ତି । ଚଇନିଙ୍କ ଏକାଙ୍କିକା ଆଧୁନିକ ମଣିଷର ମନନଶୀଳ ବିଶ୍ଳେଷଣରେ ପରିବ୍ୟାପ୍ତ, ଯନ୍ତ୍ରଣାକ୍ତ ମଣିଷର ଫମାଲିଟି ଜୀବନକୁ ସେ ତାଙ୍କର କାହାଣୀ ଭିତରେ ଗ୍ରହଣ କରିଛନ୍ତି । ଆଧୁନିକ ମଣିଷର ଅସହାୟତାକୁ ବାରମ୍ବାର ପଦାରେ ପକାଇ ଦେବାପରି ସାହସ ତାଙ୍କ ଏକାଙ୍କିକା ଭିତରେ ନିହିତ ଥାଏ । ଅନେକ କାକ୍‌ଟସ, ରଙ୍ଗତରଙ୍ଗ, କଳଙ୍କିତ ସୂର୍ଯ୍ୟ ଆଦି ଏକାଙ୍କିକା ସଙ୍କଳନମାନଙ୍କରେ ନାଟ୍ୟକାର ବ୍ୟକ୍ତି ଜୀବନର ବିରୋଧାଭାସକୁ ସଫଳତାର ସହ ପ୍ରୟୋଗ କରିଛନ୍ତି ।

ବିଭିନ୍ନ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ଚରିତ୍ରମାନଙ୍କୁ ପରିପୃଷ୍ଟ କରିବାରେ ନାଟ୍ୟକାର ରମେଶ ପ୍ରସାଦ ପାଣିଗ୍ରାହୀଙ୍କ ଉଦ୍ୟମ ପ୍ରଶଂସନୀୟ । ନାଟ୍ୟକାର 'ଉତ୍ତପ୍ତ ପାହାଡ଼ର ଦର୍ଜା' ଏକାଙ୍କିକା ସଙ୍କଳନରେ ସ୍ଥାନ ଦେଇଥିବା ବିଶ୍ୱାମିତ୍ରର ସେନାପତି ଓ ଦର୍ପଣ ଉପାଖ୍ୟାନ, ଶ୍ରୀ ମହାଲକ୍ଷ୍ମୀ ପୂଜା ଏବଂ ପରେ ରଚନା କରିଥିବା ଅଭିଜାତ ମାନଙ୍କ ପାଇଁ, ଏବଂ ପୃଥିବୀ ଅନ୍ଧାର ହେଲା, କେଜାଣି କାହିଁକି କେଉଁଠି, ତାଙ୍କ ସୂକ୍ଷ୍ମ ବିଚାରଧାରା ଓ ନୂତନ ମନଭୂମିର ଉପଯୁକ୍ତ ପରିଚୟ ପ୍ରଦାନ କରିଥାଏ । ଶ୍ରୀଯୁକ୍ତ ପାଣିଗ୍ରାହୀ ଜଣେ ଶକ୍ତିଶାଳୀ ପ୍ରତିଭା । ତାଙ୍କ ଗୁଣପୂର୍ଣ୍ଣ ସୃଷ୍ଟିରେ ଓଡ଼ିଆ ଏକାଙ୍କିକା ଭୂଙ୍କିମନ୍ତ ହୋଇଛି ।

ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ ଶୁକସାରୀ କଥା, ସଂସାର ଫୁଲ, ଅଶ୍ରୁ ଅର୍ଘ୍ୟ, ଦର୍ପଣ ଆଦି ଏକାଙ୍କିକା ମାଧ୍ୟମରେ ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ମୀଥିଧର୍ମୀ ଏକାଙ୍କିକା ଓ ଦୁଃଖକୁ ସାବଜନୀନ କରିବାରେ ଶ୍ରୀ ରଥଙ୍କ କଳାତ୍ମକ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆଲୋଚ୍ୟ ସମୟରେ ଆନନ୍ଦଚନ୍ଦ୍ର ପଣ୍ଡାଙ୍କ ଦୁଇ ଦିଗନ୍ତ, ରତିରଞ୍ଜନ ମିଶ୍ରଙ୍କ 'ଜାଗରଣର ମୁହୂର୍ତ୍ତ' ଦୁଇଟି ସାର୍ଥକ ଏକାଙ୍କିକା ଭାବରେ ସ୍ୱୀକୃତ ।

ନାଟ୍ୟକାର ଅକ୍ଷୟ କୁମାର ମହାନ୍ତି ରୋମାଣ୍ଟିକ୍ ମାନସିକତା ନେଇ ଅନେକ ଏକାଙ୍କିକା ସୃଷ୍ଟି କରିଛନ୍ତି । ଏସବୁ ଏକାଙ୍କିକାରେ ରୋମାଣ୍ଟିକ୍ ବାସ୍ତବବାଦ ଅଧିକ ପ୍ରତିଫଳିତ ହୋଇଥାଏ । ପ୍ରେତର ସମାଧି, ସ୍ୱେଚ୍ଛାଚାରୀ, କାଳିଆଦେଖା, ବନ୍ୟା, ପୂର୍ଣ୍ଣଚ୍ଛେଦ, ହୁଏତ ହୋଇପାରେ, ଜଗତଗୁରୁ, କହିଇମନଆରେ ଏକାଙ୍କିକାମାନଙ୍କରେ ଅକ୍ଷୟଙ୍କ ନାଟ୍ୟପ୍ରତିଭାର ପରିଚୟ ମିଳିଥାଏ । ସାମାଜିକ, ରାଜନୈତିକ ଓ ମନସ୍ତାତ୍ତ୍ୱିକ ବ୍ୟାଖ୍ୟା ମାଧ୍ୟମରେ ଅକ୍ଷୟ ମହାନ୍ତି ତାଙ୍କ ଏକାଙ୍କିକା ଗୁଡ଼ିକୁ ପରିପୁଷ୍ଟ କରିଛନ୍ତି ।

ନାଟ୍ୟକାର ହେମନ୍ତ କୁମାର ଦାସଙ୍କ ଘରଘରଣୀ, ଶୀତାର ସଂସାର, ପରୀକ୍ଷକର ପଦେ, ସୁନା ହରିଣ ଆଦି ଉଲ୍ଲେଖନୀୟ ସୃଷ୍ଟି । ବେତାର ମାଧ୍ୟମରେ ନାଟ୍ୟକାର ଏକାଙ୍କିକାକୁ ଲୋକପ୍ରିୟ କରି ପାରିଛନ୍ତି । ହରିହର ମିଶ୍ରଙ୍କର ଏ ଅମୃତ କାହାର, ସିଗ୍‌ନାଲ, ଭଙ୍ଗାସିଡ଼ି, ମରିବା ପୂର୍ବରୁ ଆଦି ଗୋଟିଏ ଗୋଟିଏ ସଫଳ ପରୀକ୍ଷାଧର୍ମୀ ଏକାଙ୍କିକା । ନାଟ୍ୟକାରଙ୍କ ବନାଗ୍ନି ସଙ୍କଳନରେ ଉକ୍ତ ଏକାଙ୍କିକା ମାନ ସ୍ଥାନ ପାଇଛି ।

ସାମ୍ପ୍ରତିକ ସମୟରେ ଅନେକ ପ୍ରତିଭାବନ୍ତ ତରୁଣ ଏକାଙ୍କିକା ରଚନା କରୁଛନ୍ତି । ଏକାଙ୍କିକା ଆଜି ମନୋରଞ୍ଜନର ଶ୍ରେଷ୍ଠ ଓ ଶୀଘ୍ରତମ ସହଜମାର୍ଗ ହୋଇଯାଇ ଥିବାରୁ ଗ୍ରାମାଞ୍ଚଳରୁ ସହର ପର୍ଯ୍ୟନ୍ତ ଭାଗବତ ଟୁଙ୍ଗୀରୁ କ୍ଲବ ପର୍ଯ୍ୟନ୍ତ ସବୁଠି ଏକାଙ୍କିକା ପାଇଁ ପରିବେଶ ସୃଷ୍ଟି ହୋଇଯାଇଛି । ରମେଶ ଦାସ, ସୁବୋଧ ପଟ୍ଟନାୟକ, ରବିନାୟକ, ହିମାଂଶୁଭୂଷଣ ସାବତ୍, କୃଷ୍ଣପ୍ରିୟ, ଦାଶରଥି ପ୍ରସାଦ ଦାସ, ସାରଦା ପ୍ରସନ୍ନ ନାୟକ ପ୍ରମୁଖ ସ୍ରଷ୍ଟାମାନେ ଓଡ଼ିଆ ଏକାଙ୍କିକାକୁ ପରିପୁଷ୍ଟ କରିଛନ୍ତି । ଓଡ଼ିଆ ଏକାଙ୍କିକାର ଭବିଷ୍ୟତ ପ୍ରାଚୁର୍ଯ୍ୟପୂର୍ଣ୍ଣ ଏକଥା ଶ୍ରଦ୍ଧାର ସହ କୁହାଯାଇ ପାରିବ ।



# କ୍ଷୁଦ୍ରଗଳ୍ପ

୧

କ୍ଷୁଦ୍ରଗଳ୍ପ ସାହିତ୍ୟର ମନୋରମ କଳା ବିଭାଗ । କ୍ଷୁଦ୍ରଗଳ୍ପ ଏପରି ଏକ ସାହିତ୍ୟ ଯେଉଁଥିରେ ଜୀବନର ଖଣ୍ଡିତ ଭାବାବେଗକୁ କଳାତ୍ମକ ଶୈଳୀରେ ପରିବେଷଣ କରାଯାଇଥାଏ । ଜୀବନ ଘଟଣାପୂର୍ଣ୍ଣ । ବିଭିନ୍ନ ସମୟରେ ପରିବେଶ ଓ ପରିସ୍ଥିତିରେ ମଣିଷର ଜୀବନଯାପନ ଭିନ୍ନ ହୋଇପଡ଼େ । ପ୍ରାଚୀନ ମଣିଷ ବଣ ଜଙ୍ଗଲରେ ବାସ କରୁଥିଲା । ଗିରିବନ ପ୍ରାନ୍ତରରେ ସେ ନିଜର ଜୀବିକା ନିର୍ବାହ କରିବା ଭିତରେ ଗୋଷ୍ଠୀବଦ୍ଧ ଜୀବନ ଯାପନ କରୁଥିଲା । ନିଜର ପରିବାର ସହ ଯାଯାବର ଜୀବନଯାପନ ସହ ବିଭିନ୍ନ ପ୍ରାନ୍ତର ବୁଲିବୁଲି ବିଭିନ୍ନ ପରିବେଶରେ ସେ ବିପୁଳ ଅନୁଭୂତି ସଂଗ୍ରହ କରୁଥିଲା ୍ କାଳକ୍ରମେ ସେ ଅନୁଭବ ଲୋକଗଳ୍ପ ଭାବରେ ଆମର ମୌଖିକ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଆଧୁନିକ କ୍ଷୁଦ୍ରଗଳ୍ପ ଆଧୁନିକ ଜୀବନର ପରିଚାୟକ । ଜୀବନର ଭଗ୍ନାଂଶମାନଙ୍କୁ କ୍ଷୁଦ୍ରଗଳ୍ପର ପରିଧି ଭିତରେ ଆବିଷ୍କାର କରାଯାଏ । ସାଂପ୍ରତିକ ମଣିଷ ବିଭିନ୍ନ ଜଟିଳ ସମସ୍ୟା ଓ ଜୀବନବୋଧ ଭିତରେ ଗତି କରୁଛି । ନିଜ ଜୀବନର ଶାଶ୍ୱତ ମୂଲ୍ୟବୋଧ ଓ ମୌଳିକ ଲକ୍ଷ୍ୟ ହରାଇ ବଞ୍ଚୁଥିବା ମଣିଷର ମାନଚିତ୍ର କ୍ଷୁଦ୍ରଗଳ୍ପ ଭିତରେ ଆବିଷ୍କାର କରାଯାଇ ପାରିବ । କ୍ଷୁଦ୍ରଗଳ୍ପ ଯେ କେବଳ ମଣିଷର କଥା କହିବ ଏମିତି ନୁହେଁ, ସାମାଜିକ ପ୍ରାଣ ସ୍ପନ୍ଦନ ଆଜିର କ୍ଷୁଦ୍ରଗଳ୍ପର ଆଦର୍ଶ ଭାବରେ ପ୍ରତିଷ୍ଠା ପାଇଛି । ମୋଟାମୋଟି ଭାବରେ ବ୍ୟକ୍ତି ଜୀବନ ଓ ସମାଜ ଜୀବନ କ୍ଷୁଦ୍ରଗଳ୍ପରେ ପ୍ରକାଶ ପାଇଥାଏ । ଓଡ଼ିଆ କ୍ଷୁଦ୍ରଗଳ୍ପର ପରିସର ବ୍ୟାପକ । ଫକୀରମୋହନଙ୍କ 'ରେବତୀ' ଗଳ୍ପଠାରୁ ଆରମ୍ଭ କରି ଆଜିର ସାଂପ୍ରତିକତମ ଗଳ୍ପ ପର୍ଯ୍ୟନ୍ତ ଓଡ଼ିଆ କ୍ଷୁଦ୍ରଗଳ୍ପ ବିଭିନ୍ନ ଦୃଷ୍ଟିକୋଣରୁ ନିଜକୁ ଋଦ୍ଧିମନ୍ତ କରି ପାରିଛି ।

## କ୍ଷୁଦ୍ରଗଳ୍ପର ଜନ୍ମ ଇତିହାସ—

ଗାଳ୍ପିକ ସମରସେଟମମ (Somerset Maugham) କ୍ଷୁଦ୍ରଗଳ୍ପର ସୃଷ୍ଟି ପ୍ରସଙ୍ଗକୁ ବିସ୍ତୃତ କରିବାକୁ ଯାଇ କହନ୍ତି—"The desire to listen

to stories appears to be as deeply rooted in the human animal as the sense of property. From the beginning of history Men have gathered round the camp fire orina group in the market place, to listen to the telling of a story.'' ସମରସେଟମମଙ୍କ ଉକ୍ତିକୁ ଏସ୍ୱର କଲେ ଗଳ୍ପ ସୃଷ୍ଟି ହେବାର ଆଦିମ ଅବସ୍ଥା ପ୍ରତି ଆଲୋକପାତ ହୋଇଥାଏ । ପ୍ରାଚୀନ ମଣିଷ ବଣ ଜଙ୍ଗଲରେ ବାସ କରୁଥିଲା । ଏହି ଯାଯାବର ଜୀବନ ଭିତରେ ମୁଖ୍ୟତଃ ପଶୁ ଶିକାର ଓ ପରେ ପରେ ପଶୁ ପାଳନ ତା'ର ଏକମାତ୍ର ବଞ୍ଚିବାର ଦାୟିତ୍ୱବୋଧ ଓ ମାଧ୍ୟମ ଭାବରେ ଗୃହୀତ ହୋଇଛି । ବଣରେ ବାସ କରୁଥିବା ସମୟରେ ବଣର ଜନ୍ତୁମାନଙ୍କ କବଳରୁ ନିଜକୁ ଓ ନିଜର ପରିବାରଙ୍କୁ ରକ୍ଷା କରିବାପାଇଁ ସେ ଏକ ଅଭିନବ ପନ୍ଥା ଗ୍ରହଣ କରିଥିଲା । ଦଳେ ମଣିଷ ଏକାଠି ହୋଇ ବଣରେ ନିଆଁ ଜାଳି ବସି ରହୁଥିଲେ ଓ ରାତିକୁ ରାତିପରି କମ୍ପା ଆଉ ଜଣେ କଏ ଏମାନଙ୍କୁ ନିଦ ନ ଲାଗିବାପାଇଁ ମନୋରଞ୍ଜନର ମାଧ୍ୟମ ରୂପେ ନିଜ ଶିକାରୀ ଜୀବନର କୌଣସି ରୋମାଞ୍ଚକାରୀ କାହାଣୀ ବର୍ଣ୍ଣନା କରିଥିବ କମ୍ବା ସେମାନଙ୍କ ଉପରେ ପ୍ରକୃତି ମାତା, ଅଦୃଷ୍ଟ (ଈଶ୍ୱର)ଙ୍କ ରାଗରୁ ଶିକାର ନ ମିଳିବା, ବର୍ଷା ନ ହେବା ଆଦି ବିଷୟ ବର୍ଣ୍ଣନା କରିଥିବ । ପ୍ରାଚୀନ ମଣିଷ ଏକାଠି, ଗୋଷ୍ଠୀବଦ୍ଧ ଭାବରେ ବାସ କରୁଥିଲା, ପରସ୍ପର ପରସ୍ପରର ଦୁଃଖ ସୁଖରେ ଭାଗି ହେଉଥିଲେ, ଏବଂ ମନୋରଞ୍ଜନ ପାଇଁ ଗୋଟିଏ ଜାଗାରେ ଏକାଠି ହୋଇ ନିଜର ଅନୁଭୂତ ବର୍ଣ୍ଣନା କରୁଥିଲେ ଏବଂ ଶୁଣୁଥିଲେ । କ୍ରମେ ପ୍ରାଚୀନ ମଣିଷର ଏହି ମାନସିକତା ଏକ ଅଭ୍ୟାସରେ ପରିଣତ ହୋଇଯାଇଥିବ । କିଛି କହିବାକୁ ଓ ଶୁଣିବାର ଇଚ୍ଛାରୁ କ୍ରମଶଃ କାହାଣୀ ପରି ଏକ କଳାର ସୃଷ୍ଟି ହୋଇଥିବ । କ୍ରମେ ଏହି ଅନୁଭୂତିମାନ ଗୋଟିଏ ପୁରୁଷର ଆଉ ପୁରୁଷ ପର୍ଯ୍ୟନ୍ତ ଲୋକ ମୁଖରେ ଗଡ଼ି ଗ୍ଭଲିଥିବା ଏହି ବର୍ଣ୍ଣିତ ଅନୁଭୂତି କାହାଣୀର ରୂପ ନେବା ସହ ଅତି ପ୍ରାଞ୍ଜଳ ଭାବରେ ନିଜର ସୃଜନଶୀଳତା ଜଣାଇ ଯିଏ ଏହି କାହାଣୀମାନଙ୍କୁ ବ୍ୟାଖ୍ୟା କରୁଥିବ, ସେହିପରି କେତେକ ଲୋକ କାହାଣୀ କହିବା ପାଇଁ ସୃଷ୍ଟି ହୋଇଥିବେ । ଓଡ଼ିଆ ସମାଜରେ ଏହି ଗପ କହୁଥିବା ଲୋକମାନେ 'ଗପ ସାଗର' ନାମରେ ପରିଚିତ । 'ଚକୁଳିଆ ପଣ୍ଡା'ମାନେ ଯେମିତି ଭିକ୍ଷା ମାଗିବା ଛଳରେ ଗୀତ ଗାଇ ଥାଆନ୍ତି । ସେହିପରି ଏହି ଗପ ସାଗରମାନେ ଗାଁ ରୁ ଗାଁ ଯାଇ ଗପ ଶୁଣାଇ ଥାଆନ୍ତି ଓ ପାରିଶ୍ରମିକ ଆଦାୟ କରି ଥାଆନ୍ତି । ବ୍ରଜନାଥ ବଡ଼ଜେନା 'ଚତୁର ବିନୋଦ'ରେ ଏପରି ଗପସାଗରମାନଙ୍କର ବର୍ଣ୍ଣନା ଦେଇଛନ୍ତି ଏବଂ ଚତୁର ବିନୋଦ ସେହି ଗପସାଗରମାନଙ୍କର ଗପରୁ ହିଁ ଆରମ୍ଭ କରିଛନ୍ତି । ପଞ୍ଚ ପର୍ବାଣୀ,

ବିବାହ ବ୍ରତରେ ଲୋକଗୀତ, ନାଚ ସହ କାହାଣୀ ଶ୍ରବଣ ପ୍ରାଚୀନ ମଣିଷମାନଙ୍କର ମନୋରଞ୍ଜନର ସାମଗ୍ରୀ ଭାବରେ ଗୃହୀତ ହୋଇଥିଲା ।

ଲୋକମାନଙ୍କ ଭିତରେ ଥିବା ପ୍ରଚଳିତ ଧାରଣା ଭିତରୁ କାହାଣୀ କଳାର ଜନ୍ମ । ବିଶ୍ୱର ଯେ କୌଣସି ଭାଷାର ସାହିତ୍ୟ ଓ ସଂପ୍ରଦାୟର ମଣିଷ ଆଦିମ ଜୀବନ ଧାରାର ବିବର୍ତ୍ତିତ ନବ ବନ୍ୟାସରେ ବଞ୍ଚିଥିଲେ ମଧ୍ୟ ନିଜର ଅଗ୍ରାଚଳତାକୁ ଅବିଶ୍ୱାସ କରନ୍ତି ନାହିଁ । ଆଧୁନିକ କ୍ଷୁଦ୍ରଗଳ୍ପ ପ୍ରାଚୀନ ପୃଥିବୀର ଲୋକ ସ୍ମୃତିର ଅଂଶ-ବିଶେଷ । ଇଟାଲୀ ଦେଶର ମହାନ୍ ଗଦ୍ୟକାର ବୋକାସିଓ କ୍ଷୁଦ୍ରଗଳ୍ପର ଭିତ୍ତି ପ୍ରସ୍ତୁତ କରିଥିବା ଜଣାଯାଏ । ବୋକାସିଓ (Boccacio)ଙ୍କ 'ଡେକାମେରନ' (Decamegon) ବିଶ୍ୱ ସାହିତ୍ୟରେ ଗଳ୍ପ ସୃଷ୍ଟି କରିବାର ଅବଲୁପ୍ତ ଧାରଣାକୁ ପ୍ରଥମ କରି ଉନ୍ମୋଚନ କରିଥିଲା, ଯଦିଓ ପ୍ରାଚୀନ ଲାଟିନ୍ ଭାଷାରେ ଅନେକ ପକ୍ଷୀ-ଗଳ୍ପ, ଭୂତଗଳ୍ପ ଏବଂ କୃଷିଗଳ୍ପ ପ୍ରଚଳିତ ଥିଲା । ଏହି ଗଳ୍ପଗୁଡ଼ିକ ଗ୍ରୀସ୍ ଓ ଇଟାଲୀରେ ପ୍ରାଚୀନ ମାନବୀୟ ଲୋକ ବିଶ୍ୱାସ ଭାବରେ ଗୃହୀତ ହୋଇଥିଲା । ବୋକାସିଓ ବିଧିବଦ୍ଧ ଭାବରେ ଗଳ୍ପ ରଚନା କରିବାର ପ୍ରସ୍ତୁତି ପର୍ବ ଆରମ୍ଭ କଲେ । ଇଂରାଜୀ ଭାଷା ସାହିତ୍ୟରେ chaucer Aeso'p Fables ଓ old Testamentକୁ ଗଳ୍ପ ସୃଷ୍ଟିର ଇତିହାସ ଭିତରେ ଗ୍ରହଣ କରାଯାଇ ପାରିବ । ଚସରଙ୍କ 'କାଣ୍ଟରବରୀ କାହାଣୀ' (The canter burg Tales) ଗଳ୍ପ ସୃଷ୍ଟିର ପରମ୍ପରାରେ ଏକ ବିଧିବଦ୍ଧ ପ୍ରୟାସ ଭାବରେ ଗଳ୍ପ ସୃଷ୍ଟିକୁ ସୁଗମ କରିଛି ।

ପ୍ରାଚୀନ ଇଉରୋପରେ ପ୍ରଚଳିତ ଅନେକ ଲୋକକଥା ଓ ରାଜାରାଜୁଡ଼ାଙ୍କ କାହାଣୀ ଗଳ୍ପ ସୃଷ୍ଟି ପାଇଁ କଞ୍ଚାମାଲ ଯୋଗାଡ଼ କରିଛି । ଜାପାନର ଲୋକକଥା, ଚୀନ ଦେଶର ଲୋକ କାହାଣୀ, ପାରସ୍ୟର ହାତମ୍‌ତାଇକୁ ନେଇ ଅନେକ ଫାଣ୍ଟାସି (Fantacy) ଓ 'ଆରବ୍ୟ ରଜନୀର କାହାଣୀ' ଗଳ୍ପ ସୃଷ୍ଟିର ଏକ ବିଧିବଦ୍ଧ ପ୍ରୟାସ । ପାଶ୍ଚାତ୍ୟ ଗ୍ରନ୍ଥମାନଙ୍କରେ ଓ ଏସିଆରେ ଈଶ୍ୱର ବିଶ୍ୱାସ ଓ ଲୋକ ବିଶ୍ୱାସକୁ ଆୟୁଧ କରି ଗଳ୍ପ ସୃଷ୍ଟି ହୋଇଛି ।

ଗଳ୍ପ ସୃଷ୍ଟିର ଇତିହାସରେ ମହାଭାରତୀୟ ପରଂପରାର ମହାନ୍ ଅବଦାନ ଗଳ୍ପ ସୃଷ୍ଟି ପାଇଁ ଦେଖିବାକୁ ମିଳେ । ଭାରତ ତା'ର ସଂସ୍କୃତି, ଜୀବନଧାରା, ଧର୍ମ ଓ ଈଶ୍ୱରଙ୍କୁ ନେଇ ପ୍ରାଚ୍ୟର ପ୍ରଭୁ ଭାବରେ ସମଗ୍ର ବିଶ୍ୱ ବିଦିତ । ଏହାର ବିପୁଳ ଜୀବନଧାରା, ଐଶୀ ବିଭୂତି ସର୍ବୋପରି ଲୋକ ବିଶ୍ୱାସ ଗଳ୍ପ ସୃଷ୍ଟି ପାଇଁ ଅନାଦି କାଳରୁ ପ୍ରୟାସ ଆରମ୍ଭ କରିଛି । ପ୍ରାଚୀନ ଭାରତରେ ଏପରି କେତେକ ସାର୍ଥକ ସଂସ୍କୃତ ସୃଷ୍ଟି ଅଛି, ଯେଉଁଥିରେ କାହାଣୀ କଳାର ଲକ୍ଷଣ ପ୍ରକାଶ ପାଇଛି ।

ବେଦ, ବେଦାନ୍ତ ସମୟରୁ ସମଗ୍ର ଭାରତର ଜୀବନ ଓ ଚିନ୍ତାଧାରା ଥିଲା ସମ୍ପୃକ୍ତି ନିର୍ଭର । ଏକ ବିରାଟ ଭୂଖଣ୍ଡର ଅଧିବାସୀ ଭାବରେ ଭାରତରେ ଅନେକ କାବ୍ୟ, ଧର୍ମ ଦର୍ଶନ ବିଶିଷ୍ଟ ସନ୍ନ୍ୟାସୀମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା । ବେଦର ସୂକ୍ତ-ମାନଙ୍କରେ କାହାଣୀର ଆଂଶିକ ପ୍ରକାଶ ସମ୍ଭବ ହୋଇଛି । 'ଗୀତା'ରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କ ଆଗରେ ବିଶ୍ୱ ଦର୍ଶନ ଓ ଜୀବର ମୃତ୍ୟୁ, ଆତ୍ମା ପରମାତ୍ମା ଆଦି ତତ୍ତ୍ୱ ବ୍ୟାଖ୍ୟାକୁ ଗୀତାକାର କାହାଣୀ ଭାବରେ ବର୍ଣ୍ଣନା କରିଛନ୍ତି । ବେଦର ଅନେକ ସିଦ୍ଧାନ୍ତ କାହାଣୀ ଭାବରେ ଗୃହୀତ ହୋଇଛି । କାହାଣୀକୁ ଯେମିତି ଶୁଣିଶୁଣି ମନେ ରଖାଯାଏ, ବେଦକୁ ମଧ୍ୟ ଶୁଣି ଶୁଣି ମନେ ରଖାଯାଏ ବୋଲି ଏହାର ଅନ୍ୟ ନାମ 'ଶ୍ରୁତି' । ପ୍ରାଚୀନ ଭାରତୀୟ ସମାଜରେ 'ବେଦ' କାହାଣୀ ଭାବରେ ଗୃହୀତ ହୋଇଥିଲା ।

ପାଲି-ପ୍ରାକୃତ ଭାଷାରେ ରଚନା କରାଯାଇଥିବା ଅନେକ ସୃଷ୍ଟିମାନଙ୍କରେ କାହାଣୀ କଳା ପ୍ରକାଶ ପାଇଥିଲା । ବୌଦ୍ଧ ଓ ଜୈନ ଧର୍ମ ଦର୍ଶନ ଧର୍ମଭିକ୍ଷୁମାନଙ୍କ ଦ୍ୱାରା ଓ ସଂଘ ଦ୍ୱାରା କାହାଣୀ ମାଧ୍ୟମରେ ବର୍ଣ୍ଣନା କରାଯାଉଥିଲା । ଏହାପରେ ଏକ ଧାରାବାହିକ ପ୍ରୟାସରୁ ବୁଦ୍ଧଙ୍କୁ ବୋଧିସତ୍ତ୍ୱ ରୂପକୁ ନେଇ ଅନେକ କାହାଣୀ ପରବର୍ତ୍ତୀ ସମୟରେ ସୃଷ୍ଟି ହୋଇଛି । ପ୍ରାକୃତ ଭାଷାରେ ଗୁଣାଢ୍ୟଙ୍କ 'ବୃହତ କଥା' ଓ କ୍ଷେମେନ୍ଦ୍ରଙ୍କ 'ବୃହତ କଥା ମଞ୍ଜରୀ' ଗପ ସୃଷ୍ଟିର ପାଖାପାଖି ହେବାର ସୁଯୋଗ ସୃଷ୍ଟି କରିଛନ୍ତି । 'ବୃହତ୍ କଥା ମଞ୍ଜରୀ'ର ସନ୍ନିହିତ କଥା ଓ କାହାଣୀ ପ୍ରାକୃତ ଭାଷାର କାହାଣୀ ସୃଷ୍ଟିର ପରମ୍ପରା ଆରମ୍ଭ କରିଛି ।

ସଂସ୍କୃତ ଭାଷାରେ ରଚନା କରାଯାଇଥିବା ଭାରତୀୟ ସୃଜନମାନଙ୍କରେ ପ୍ରାଚୀନ ଅବିକଶିତ କାହାଣୀ କଳା ଲକ୍ଷ୍ୟ କରାଯାଇ ପାରିବ । ମହାଭାରତ, ରାମାୟଣ ଏବଂ ପୁରାଣମାନଙ୍କରେ ସ୍ଥାନେ ସ୍ଥାନେ କାହାଣୀ ଆକାରରେ ଅନେକ ବୃତ୍ତାନ୍ତ ବର୍ଣ୍ଣନା କରାଯାଇଛି । କୌଣସି ଅସୁର ବଧ ବା ଭଗବାନଙ୍କ ଅଲୌକିକ ଲୀଳା ବର୍ଣ୍ଣନା ବେଳେ ସ୍ରଷ୍ଟା ଏହି କାହାଣୀ ଭାଗକୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେ ସମୟରୁ ସୃଷ୍ଟିର ତାଳ, ଲୟ, ଗତି, ଛନ୍ଦ ବିଶେଷ ଭାବରେ ପ୍ରବେଶ ନ ଥିବାରୁ ଅନେକ ସମୟରେ କାବ୍ୟର ବର୍ଣ୍ଣନା ଆଂଶିକ ଗଦ୍ୟ ଓ ପଦ୍ୟର ଅସାମଞ୍ଜସ୍ୟତାରୁ କାହାଣୀ-ଧର୍ମୀ ହୋଇଯାଏ । ସାରଳା ଦାସଙ୍କ ମହାଭାରତରେ ଏହି ଲକ୍ଷଣରୁ ଅନେକ କାହାଣୀ ସୃଷ୍ଟି ହୋଇଛି ।

ସୋମଦେବଙ୍କ 'କଥା ସରିତ ସାଗର' ଦଣ୍ଡୀଙ୍କ 'ଦଶ କୁମାର ଚରିତ' ବିଷ୍ଣୁ ଶର୍ମାଙ୍କ 'ପଞ୍ଚତନ୍ତ୍ର' କାହାଣୀ କଳାର ପରିଚୟ ପ୍ରଦାନ କରିଥାଏ । ସଂସ୍କୃତ ଭାଷାର ଏ ସୃଷ୍ଟିମାନଙ୍କରେ ବର୍ଣ୍ଣିତ କାହାଣୀ ଏବଂ ଏମାନଙ୍କର କଳାଗତ ସଫଳତା ବାସ୍ତବିକ୍ ଗପ ସୃଷ୍ଟି କରିବାର ପ୍ରୟାସ ପାଇଁ ଧନ୍ୟବାଦଯୋଗ୍ୟ । ବିଷ୍ଣୁ ଶର୍ମା 'ପଞ୍ଚତନ୍ତ୍ର'ରେ

ଅନେକ ସାର୍ଥକ କାହାଣୀର ବର୍ଣ୍ଣନା ଦେଇଛନ୍ତି । ଏହି କାହାଣୀର ତା'ର କଳା-ଗୌରବ ଓ ଜନପ୍ରିୟତା ଆଜିଯାଏ ବଜାୟ ରଖିଛି । ସଂସ୍କୃତ ସାହିତ୍ୟର ଅନେକ ସୃଷ୍ଟି ପରବର୍ତ୍ତୀ ସମୟରେ ଏହି ସୃଷ୍ଟିମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛି । ଭାରତର ଯେ କୌଣସି ଭାଷାର ଆଧୁନିକ କାହାଣୀ ସଂସ୍କୃତ ଭାଷାର ଏହି ମହାନ୍ କଥା ସାଗରମାନଙ୍କୁ ଭିତ୍ତିଭୂମି ଭାବରେ ଗ୍ରହଣ କରି ନେଇଛନ୍ତି । ପାଲି-ପ୍ରାକୃତ-ସଂସ୍କୃତ ଭାଷାରେ ରଚିତ କାବ୍ୟ, କବିତା, ଚରିତ କାହାଣୀ ଓ ମନ୍ତ୍ର, ସୂକ୍ତ ଦେଇ କାହାଣୀ ନିଜର ସ୍ୱତନ୍ତ୍ର ପରିଚୟ ପାଇଁ ପ୍ରୟାସ କରିଛି ।

ଗଳ୍ପ ସୃଷ୍ଟିର ପରମ୍ପରା ଓଡ଼ିଆ ଭାଷା ସାହିତ୍ୟର ପ୍ରାଚୀନତା ଓ ଲୋକକଥାରୁ ମଧ୍ୟ ଗ୍ରହଣ କରାଯାଇ ପାରେ । ସମଗ୍ର ଭାରତୀୟ ପରିବେଶ ପରିପ୍ରେକ୍ଷୀରେ ଓଡ଼ିଶା ଓ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ସବୁ ସମୟରେ ରହିଛି । ସଂସ୍କୃତ ଭାଷା ସାହିତ୍ୟର ପ୍ରଭାବରେ ଆମ ଭାଷା ସାହିତ୍ୟ ସମୃଦ୍ଧ ହୋଇଛି ସତ କିନ୍ତୁ ଓଡ଼ିଶାର ପ୍ରାଚୀନ ମୌଖିକ ସାହିତ୍ୟରେ ଏମିତି କେତେକ ଐଶ୍ୱର୍ଯ୍ୟ ଅଛି, ଯାହା ଓଡ଼ିଆ ଭାଷାରେ କାହାଣୀ ସୃଷ୍ଟି କରିବାର କାରଣ ରୂପେ ପରିଗଣିତ ହୋଇଥାଏ । ଓଡ଼ିଶାର ପ୍ରାଚୀନ ବୌଦ୍ଧ ଦର୍ଶନ ବଜ୍ରଯାନ ଓ ସହଜ ଯାନ ଇନ୍ଦ୍ରଭୂତି, ଲକ୍ଷ୍ମୀଙ୍କରାଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା । ମଣିଷର ମୋକ୍ଷ କାମନା କରି ଏଥିରେ ଦୁଇ ବିପରୀତ ମାର୍ଗର ବର୍ଣ୍ଣନା ରହିଛି । ନିଜର ତତ୍ତ୍ୱକୁ ପ୍ରମାଣସିଦ୍ଧ ଓ ବହୁଜନ ପ୍ରସାରୀ କରିବାପାଇଁ ଏଥିରେ କାହାଣୀ ଉଦାହରଣ ରୂପେ ଗ୍ରହଣ କରାଯାଉଛି । ଚର୍ଯ୍ୟାକାର କାହ୍ନୁପାଦ, ଲୁଇ-ପାଦ ଏବଂ ଶବରୀ ପାଦଙ୍କ ଚର୍ଯ୍ୟାପଦମାନଙ୍କରେ ମଧ୍ୟ ଶବରୁଣୀ, ଡୋମ୍ବୀମାନଙ୍କର ଜୀବନଚର୍ଯ୍ୟାର କାହାଣୀକୁ ଆଶ୍ରୟ କରି ଜୀବନ ଦର୍ଶନ ବ୍ୟାଖ୍ୟା କରାଯାଇଛି ।

ସାରଳା ଦାସଙ୍କ ମହାଭାରତର ମୌଳିକତା ହେଉଛି ନୂତନ କାହାଣୀ ସଂଯୋଜନା । ସାରଳା ଦାସ ବ୍ୟାସକୃତ ମହାଭାରତକୁ ଅନୁବାଦ ବା ପୂର୍ଣ୍ଣ ଗ୍ରହଣ ନ କରି ସେଥିରୁ କିମ୍ବଦନ୍ତୀ ଆଣି ଏକ ବିଧିବଦ୍ଧ ଉତ୍କଳୀୟ ମହାଭାରତ ରଚନା କରିଛନ୍ତି । ସାରଳା ଦାସଙ୍କ ଦ୍ୱାରା ଉତ୍କଳର ବିଭିନ୍ନ ସ୍ଥାନ ଓ ଘଟଣା ବର୍ଣ୍ଣିତ ହୋଇ ଆଜି ଗର୍ବ ଓ ଗୌରବର କୀର୍ତ୍ତି ଭାବରେ ପୂଜା ପାଇଛନ୍ତି । ମହାଭାରତର ଶେଷ ଆଡ଼କୁ ସ୍ୱର୍ଗାରୋହଣ ପର୍ବ ବର୍ଣ୍ଣନା କଲାବେଳେ ସାରଳା ଦାସ, ଯୁଧିଷ୍ଠିରଙ୍କୁ ଯାଜପୁର ହରି ସାହୁର ସିଂହାଣୀନାକ କନ୍ୟା ସହ ବିବାହ କରିଛନ୍ତି । ଏହି ମୌଳିକ କାହାଣୀ ଛଡ଼ା ଅନେକ କାହାଣୀ ସାରଳା ଦାସ ମହାଭାରତରେ ବର୍ଣ୍ଣନା କରିଛନ୍ତି । ଓଡ଼ିଶାରେ ସେ ସମୟରେ ପ୍ରଚଳିତ ଥିବା ଅନେକ ଲୋକ ଗପ ଓ ଲୋକ ବିଶ୍ୱାସକୁ ସାରଳା ଦାସ ମହାଭାରତରେ ସ୍ଥାନ ଦେଇଛନ୍ତି । ବଳରାମ

ଦାସଙ୍କ 'ଜଗମୋହନ ରାମାୟଣ'ରେ ମଧ୍ୟ ଏହି କାହାଣୀ ପରମ୍ପରା ଅନୁସୃତ ହୋଇଛି । ପରବର୍ତ୍ତୀ ସମୟର କଥାକାରମାନେ ନିଶ୍ଚୟ ଏହିସବୁ କାବ୍ୟଧର୍ମୀ କାହାଣୀରୁ ଉପକୃତ ହୋଇଥିବେ ।

ସାଧାରଣ ଜନ ଜୀବନରେ ଅନେକ ଓ୍ଵାସା ବ୍ରତର ଉତ୍ପତ୍ତି କାହାଣୀ ପ୍ରଭାବ ବିସ୍ତାର କରିଛି । ଉତ୍କଳର ପୁରପଲ୍ଲୀ କାହାଣୀର ଗନ୍ତାଘର । ଲିଖିତ ସାହିତ୍ୟ ଏହି ପ୍ରାଚୀନ ଜୀବନଧାରାକୁ ନେଇ ସମୃଦ୍ଧ ହୋଇଛି । କବି ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବ ସିନ୍ଧୁ'ରେ ଅନେକ ନୀତି ବଚନ ଓ ଉପଦେଶର ସମନ୍ୱୟ ଘଟିଛି । ଏପରି ଏକ କଥା ପ୍ରୟାସକୁ ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ସଫଳତାର ସହ ପ୍ରକାଶ କରିଛି । ଓଡ଼ିଆ ସାହିତ୍ୟରେ କାହାଣୀ ସୃଷ୍ଟିର ପରମ୍ପରା 'ଚତୁର ବିନୋଦ'ରୁ ହିଁ ଆରମ୍ଭ ହୋଇଛି । ଚତୁର ବିନୋଦର କାହାଣୀକୁ ମର୍ଯ୍ୟାଦା ଦିଆ ଯାଇଥାଏ ଏବଂ ଏହାର ଭାବନା ଗର୍ଭ, କଳାଧର୍ମ ଏହାର ଗୌରବ ବୃଦ୍ଧି କରିବାରେ ସହାୟକ ହୋଇଥାଏ । ଅଷ୍ଟାଦଶ ଶତାବ୍ଦୀର ପ୍ରୟାସ ଭିତରୁ ଊନବିଂଶ ଶତାବ୍ଦୀରେ ଗପ ସୃଷ୍ଟି ହୋଇଛି ।

ସାଂପ୍ରତିକ କ୍ଷୁଦ୍ରଗଳ୍ପ ଏହିପରି ଏକ ଅତୀତର ଉର୍ବର ଭୂମିରୁ ନିଜକୁ ନିଗାଡ଼ି ଆଣି ବର୍ତ୍ତମାନ ଗୋଟାଏ ବିକାଶ ଭୂମିରେ ଛିଡ଼ା ହୋଇଛି । ଆଜିର ପରମାର୍ଜିତ କ୍ଷୁଦ୍ରଗଳ୍ପ ଭିତରେ ଅତୀତର ଜୀବନଧାରା, ରହସ୍ୟ ରୋମାଞ୍ଚମୟ ଆଦିମ ଜୀବନ, ଆଦିମ ସଂସ୍କୃତି ଓ ଧର୍ମ ଧାରଣାକୁ ଚିହ୍ନିହେବ । ପର୍ବତର ପୃଷ୍ଠଦେଶରୁ ଝରଣା ଭିତର ଦେଇ ଗଡ଼ି ଆସୁଥିବା ବୃହତ୍ ଶିଳଖଣ୍ଡ ସର୍ବଶେଷରେ ଗୋଡ଼ିରେ ପରିଣତ ହୋଇଗଲା ପରି ଅତୀତର ବିସ୍ତୃତ ଲୋକ କାହାଣୀ ଆଜି ଗପ, କ୍ଷୁଦ୍ରଗପ ଏବଂ ଶେଷରେ ଅଣୁଗପ ଭାବରେ ପରୀକ୍ଷାମାଣ ଅବସ୍ଥାରେ ପହଞ୍ଚିଛି । ଗପ ସାହିତ୍ୟର ସୃଷ୍ଟି ଉତ୍ସ ପୃଥିବୀର ଯେ କୌଣସି ଭାଷା ବା ଜାତିରେ ଏକାପରି ଅନୁଭୂତ ହୋଇଥାଏ । କାହାଣୀ ସୃଷ୍ଟିର ପ୍ରଧାନ ଉତ୍ସ ଭାବେ ଲୋକକଥାକୁ ଗ୍ରହଣ କରାଯାଏ । ଲୋକକଥା ଓ କାହାଣୀର ସମ୍ପର୍କ ନିବିଡ଼ ଓ ପୁରାତନ । ଓଡ଼ିଆ ଲୋକକଥା ଓ କାହାଣୀ ମଧ୍ୟରେ ଅନେକ ସାଦୃଶ୍ୟ ପରିଲକ୍ଷିତ ହୁଏ । କ୍ଷୁଦ୍ରଗଳ୍ପର ସୃଷ୍ଟି ଓ ବିକାଶରେ ଲୋକ କଥାର ଗୁରୁତ୍ୱକୁ ଅସ୍ୱୀକାର କରି ହେବନାହିଁ ।

## ଲୋକଗଳ୍ପ ଓ କ୍ଷୁଦ୍ରଗଳ୍ପ—

କ୍ଷୁଦ୍ରଗଳ୍ପ ଲୋକଗଳ୍ପ ଦ୍ୱାରା ଅନେକ ସମୃଦ୍ଧ । ପ୍ରଥମେ କାହାଣୀ ଲୋକମାନଙ୍କ ଦ୍ୱାରା ସେମାନଙ୍କର ଅନୁଭୂତିକୁ ନେଇ ସୃଷ୍ଟି ହେଉଥିଲା । ଏଥିରେ ମଣିଷ ସମାଜର ବିପୁଳ ଅନୁଭୂତି ଓ ବିସ୍ତୃତ ଅଭିଜ୍ଞତା ଆତ୍ମପ୍ରକାଶ କରୁଥିଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ମଣିଷର ଜୀବନର ଖଣ୍ଡିତାଂଶ ଓ ଆବେଗକୁ ସୃଷ୍ଟି କରି କ୍ଷୁଦ୍ରଗଳ୍ପ ଆତ୍ମପ୍ରକାଶ କଲା । 'ଓଡ଼ିଆ ଲୋକ କାହାଣୀ' ଓଡ଼ିଆ ଭାଷାର ଉନ୍ମେଷ କାଳରୁ ଲୋକ ସମାଜରେ ଗତିକରି ଆସୁଛି । ସେହି କାହାଣୀ କେତେବେଳେ ଓଡ଼ିଆ ପୁରାଣ ଓ କାବ୍ୟ ଭିତରେ ନୂତନ ରୂପ ନେଇ ଆତ୍ମପ୍ରକାଶ କରିଛି । କେତେବେଳେ ସଂସ୍କୃତ ପଞ୍ଚତନ୍ତ୍ର ହିତୋପଦେଶ, ବେତାଳ ପଞ୍ଚବିଂଶତି, ଦଶକୁମାର ଚରିତ ପ୍ରଭୃତିର କାହାଣୀଗୁଡ଼ିକ ଭିନ୍ନ ଭାବରେ ଲୋକ କାହାଣୀ ଭିତରେ ରୂପ ନେଇ ଯାଇଛି । ମୂନଷ୍ଟ ରାମାୟଣ, ମହାଭାରତ, ଜାତକଗଳ୍ପ ପ୍ରଭୃତି ମଧ୍ୟ ବିବର୍ତ୍ତିତ ହୋଇ ଲୋକଗଳ୍ପ ଭିତରେ ନୂତନ ରୂପରେ ଆସନ ଜମେଇଛି । (୧)

କ୍ଷୁଦ୍ରଗଳ୍ପ ଲୋକଗଳ୍ପର ଆଧୁନିକ ଅବସ୍ଥା । ଆଧୁନିକ କ୍ଷୁଦ୍ରଗଳ୍ପ ଆଧୁନିକ ଜୀବନର ବାର୍ତ୍ତାବହ । ସମୟ, ସମୟ ନିରପେକ୍ଷତା ଓ ଜୀବନ ଜିଜ୍ଞାସା ଏହି କ୍ଷୁଦ୍ରଗଳ୍ପର ପରିସର ମଧ୍ୟରେ ଦେଖିବାକୁ ମିଳିଥାଏ । କ୍ଷୁଦ୍ରଗଳ୍ପ ଓ ଲୋକଗଳ୍ପ ବୈଜ୍ଞାନିକ ବିଚାରବୋଧରେ ପରସ୍ପରଠାରୁ ଅଲଗା ହେଲେହେଁ ଦୁହିଁଙ୍କ ମଧ୍ୟରେ ଏକ କଳାତ୍ମକ କୌଶଳ ଓ ସମ୍ପର୍କ ନିହିତ ଥିବା ଲକ୍ଷ୍ୟ କରାଯିବ । ଲୋକଗଳ୍ପ କ୍ଷୁଦ୍ରଗଳ୍ପର ଜନନୀ । କ୍ଷୁଦ୍ରଗଳ୍ପର ଅତୀତକୁ ଲୋକଗଳ୍ପ ମାଧ୍ୟମରେ ଦେଖାଯିବ । ଲୋକଗଳ୍ପ ପ୍ରକାରାନ୍ତରେ କ୍ଷୁଦ୍ରଗଳ୍ପକୁ ସମୃଦ୍ଧ କରେ ଓ ଗଳ୍ପ ଭିତରେ ଲୋକ ଉପାଦାନ ସୃଷ୍ଟି କରେ । ସାମ୍ପ୍ରତିକ ସମୟରେ ଆଧୁନିକ ଗଳ୍ପ ମାନଙ୍କଠାରେ ଲୋକଶୈଳୀ, ଲୋକ ଉପାଦାନ, ଲୋକ ସଂସ୍କୃତି, ଲୋକ ଜୀବନଧାରା ଓ ଲୋକ ଭାଷାର ବ୍ୟବହାର କରାଯାଉଛି । ହୃଷିକେଶ ପଣ୍ଡାଙ୍କ 'ନସ୍ୟସ୍କଙ୍କ ପାଇଁ ନୀତିକଥା' ପଞ୍ଚତନ୍ତ୍ର ଶୈଳୀରେ ଏକ ଏକ ମୌଳିକ ଲୋକଗଳ୍ପ ସାର୍ଥକ ନମୁନା । ଗଳ୍ପ ସବୁଦିନେ ଗଳ୍ପ । ସମୟକ୍ରମେ ଏଥିରେ ଚରିତ୍ର, ପ୍ରବୃତ୍ତି ଓ ଜୀବନବୋଧ ବଦଳି-ଯାଏ । କ୍ଷୁଦ୍ରଗଳ୍ପ ଓ ଲୋକଗଳ୍ପ ମଧ୍ୟରେ ପରିସର ଓ ପ୍ରବୃତ୍ତିଗତ ପାର୍ଥକ୍ୟ ପରିଦୃଶ୍ୟ ହେଉଥିଲେହେଁ ଉଭୟ ଏକ ଓ ଅଭିନ୍ନ । (୨) ଅନେକ ସମୟରେ ଲୋକଗଳ୍ପ ଭିତରେ ଅନେକ କ୍ଷୁଦ୍ରଗଳ୍ପ ଏବଂ କ୍ଷୁଦ୍ରଗଳ୍ପ ଭିତରେ ଅନେକ ସାର୍ଥକ ଲୋକଗଳ୍ପ ଦେଖିବାକୁ ମିଳେ ।

## କ୍ଷୁଦ୍ରଗଳ୍ପର ସଂଜ୍ଞା ଓ ସ୍ୱରୂପ—

କ୍ଷୁଦ୍ରଗଳ୍ପ ସାହିତ୍ୟର ଆବେଗମୟ କଳାତ୍ମକ ପ୍ରତିରୂପ, ଆଧୁନିକ କ୍ଷୁଦ୍ରଗଳ୍ପ ମଣିଷର ଆଧୁନିକତମ ସମସ୍ୟାର ବ୍ୟାଖ୍ୟାକାର, ମଣିଷର ସଚେତନ-

୧ । ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ବୈଷ୍ଣବ ଚରଣ ସାମଲ—୧୦୦

୨ । ଲୋକ ଜୀବନ ଓ ଲୋକ ସାହିତ୍ୟ—ଦିଲ୍ଲୀପ କୁମାର ସ୍ୱାଇଁ
ଚୌଧୁରୀ ଅଜୟ ପ୍ରଧାନ—ପୃ-୧୨ ।

ଅଚେତନ-ଅବଚେତନ ସ୍ତର କ୍ଷୁଦ୍ରଗଳ୍ପ ଉଦ୍‌ଘାଟନ କରିଥାଏ । ଆଧୁନିକ କଂକ୍ରିଟ୍ ଜୀବନର ବାସ୍ତବ ସମସ୍ୟା କ୍ଷୁଦ୍ରଗଳ୍ପ ମାଧ୍ୟମରେ ପ୍ରକାଶ ପାଇଥାଏ । ମଣିଷ ଜୀବନର ଏକ ବୃହତ୍ତ ପରିଣତିକୁ କ୍ଷୁଦ୍ରଗଳ୍ପ ତା'ର କ୍ଷୁଦ୍ର ପରିସର ମଧ୍ୟରେ ପ୍ରକାଶ କରିଥାଏ । ପାଣିରେ ଯେମିତି ଓ ଯେତିକ ସମସ୍ତ ଫୋଟକାଟି ସୃଷ୍ଟିହୁଏ ଓ ଆନନ୍ଦଦାନ କରେ । କ୍ଷୁଦ୍ରଗଳ୍ପ ନିଜର ସୀମିତ କଳେବର ଓ ସମୟ ମଧ୍ୟରେ ଅନୁରୂପ କାର୍ଯ୍ୟ ପୂରଣ କରିଥାଏ । କ୍ଷୁଦ୍ରଗଳ୍ପର ଏହି ମହତ୍ତ୍ୱ ପ୍ରକାଶ କରିବାକୁ ଯାଇ ରବୀନ୍ଦ୍ରନାଥ ଠାକୁର କହିଛନ୍ତି—

ଛୋଟ ପ୍ରାଣ, ଛୋଟବ୍ୟଥା ଛୋଟ ଛୋଟ ଦୁଃଖକଥା
ନିତାନ୍ତଇ ସହଜ ସରଳ
ସହସ୍ର ବିସ୍ମୃତ ରାଶି ପ୍ରତ୍ୟହ ଉଠେଛେ ଭାସି
ତାର ଦୁଟ୍ଟାରଟି ଅଶ୍ରୁଜଲ୍ ।
ନାହିଁ ବର୍ଣ୍ଣନାର ଛଟା ଘଟନାର ଘନଘଟା
ନାହିଁ ତତ୍ତ୍ୱ ନାହିଁ ଉପଦେଶ
ଅନ୍ତରେ ଅତୃପ୍ତି ରବେ ସାଙ୍ଗକରି ମନେହବେ
ଶେଷହୟେ ହଇଲା ନା ଶେଷ ।

କ୍ଷୁଦ୍ରଗଳ୍ପ ମଣିଷ ଜୀବନର ବୁଦ୍‌ବୁଦା ଲୁହ, ଅନେକ ଲହରୀମାନଙ୍କ ମଧ୍ୟରୁ କେତୋଟି ଜଳକଣା । କ୍ଷୁଦ୍ରଗଳ୍ପ ଏପରି ଏକ ସାହିତ୍ୟ, ଯେଉଁଥିରେ ବର୍ଣ୍ଣନା ପ୍ରାଧାନ୍ୟ ବିସ୍ତାର କରେନାହିଁ କିମ୍ବା ତତ୍ତ୍ୱ କି ଉପଦେଶ ଅତି ମାତ୍ରାରେ ପ୍ରକାଶ ପାଏନାହିଁ । ମାନସିକ ସ୍ତରରେ ପାଠକ ଗଳ୍ପ ପଢି ଆନନ୍ଦ ଅନୁଭବ କରିବା ସହ ଗଳ୍ପର ଉପସଂହାରରେ ସେ 'ବିସ୍ମିତ ହୋଇଉଠେ । ତାକୁ ଲାଗେ ଏଡ଼େ ସୁନ୍ଦର ଗଳ୍ପ ଏତେଶୀଘ୍ର ସରିଗଲା । ବୋଧହୁଏ ଆଉ କିଛି ସମୟ ଶୁଣିଥିଲେ, ତାକୁ ଆହୁରି ଆନନ୍ଦପ୍ରାପ୍ତ ହୋଇଥାଆନ୍ତା । ରବୀନ୍ଦ୍ରନାଥ କ୍ଷୁଦ୍ରଗଳ୍ପର ସମସ୍ତ ଲକ୍ଷଣ ଓ କଳାଗତ ବୈଶିଷ୍ଟ୍ୟ ଏହି ସଂଜ୍ଞା ମାଧ୍ୟମରେ ପ୍ରକାଶ କରିଛନ୍ତି । କ୍ଷୁଦ୍ରଗଳ୍ପର ପରିସର ଅତ୍ୟନ୍ତ ସୀମିତ କିନ୍ତୁ ଏହାର ପରିସର ଅତ୍ୟନ୍ତ ବ୍ୟାପକ । ମାଟିଠାରୁ ଆକାଶ ପର୍ଯ୍ୟନ୍ତ ନର୍କରୁ ନିମାଳୀ କ୍ଷୁଦ୍ରଗଳ୍ପ ଭିତରେ ପ୍ରକାଶ ପାଇଥାଏ । କ୍ଷୁଦ୍ର-ଗଳ୍ପର ପ୍ରଧାନ ଲକ୍ଷ୍ୟ ହେଉଛି ପାଠକୀୟ ଆନନ୍ଦ ଦାନ କରିବା । ସେଇଥିପାଇଁ କ୍ଷୁଦ୍ରଗଳ୍ପ ସମ୍ପର୍କରେ କୁହାଯାଇ ଥାଏ—

'କ୍ଷୁଦ୍ରଗଳ୍ପ ହେଉଛି ଏକ ଲଘୁପକ୍ଷ ପ୍ରଜାପତି । ଯାହା ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ନୀରବ ପାଠକର ମସ୍ତିଷ୍କ ଭେଦକରେ ।' ଆଉ କେହି କେହି କ୍ଷୁଦ୍ର-ଗଳ୍ପର ସଂଜ୍ଞା ଦେବାକୁ ଯାଇ କହନ୍ତି—

'ନିରୂପିତ ସମୟ ଭିତରେ ଏକମୁଖୀ ଲକ୍ଷ୍ୟ ନେଇ ଯେଉଁ ସୃଜନଶୀଳ ସାହିତ୍ୟ କର୍ମ ଜୀବନର ଗୋଟିଏ ସମସ୍ୟାକୁ ଲଘୁ ଓ ଗୁରୁ ଶବ୍ଦ ଯୋଜନା ଓ ଭାବ ବିନ୍ୟାସ ମାଧ୍ୟମରେ ବ୍ୟକ୍ତ କରିଥାଏ, ତାହାକୁ କ୍ଷୁଦ୍ରଗଳ୍ପ କୁହାଯାଏ ।'

କ୍ଷୁଦ୍ରଗଳ୍ପରେ ପ୍ରକାଶ ପାଉଥିବା କାହାଣୀର ଏକମୁଖୀନତା ଥାଏ । ଉପନ୍ୟାସ ପରି ଅନେକ କାହାଣୀ ଏଥିରେ ପ୍ରକାଶ ପାଏନାହିଁ । ଗୋଟିଏ ମୁଖ୍ୟ ଲକ୍ଷ୍ୟ ନେଇ ଏହା ଶୀର୍ଷବିନ୍ଦୁରେ ପହଞ୍ଚିଥାଏ । ଆଲୋଚକ Hodson, 'An Introduction to the study of literature'ରେ ଏ ସମ୍ପର୍କରେ କହିଛନ୍ତି—'Singleness of aim and singleness of effect are, therefore, the two great canons by which we have to try the value of a short story as pieces of art.'

କ୍ଷୁଦ୍ରଗଳ୍ପର ଶିରୋନାମାରୁ ହିଁ ଏହାର ସୀମିତ କଳେବର ବିଷୟରେ ଧାରଣା ସୃଷ୍ଟି ହୋଇଥାଏ । ଅନେକସମାଲୋଚକ ଏହାର ସ୍ୱଳ୍ପ ସମୟ ବିଶେଷଣକୁ ଗ୍ରହଣ କରିଛନ୍ତି । ଗୋଟିଏ ପାଠକ ପାଇଁ କ୍ଷୁଦ୍ରଗଳ୍ପ ଅଧଘଣ୍ଟା, ଘଣ୍ଟାଏ କମ୍ବା ଅତି ବେଶୀରେ ଦୁଇଘଣ୍ଟାର ମନୋଜ୍ଞ ବର୍ଣ୍ଣନା, ଏଡ଼ଗାର ଆଲାନପୋ (Edgar Allanpoe) କ୍ଷୁଦ୍ରଗଳ୍ପର ସଂଜ୍ଞା ଦେବାକୁ ଯାଇ କହନ୍ତି—

'A short story is a prose narrative requring from half an hour to one or two hours in its perusal'. ସାମ୍ପ୍ରତିକ ସମୟରେ କ୍ଷୁଦ୍ରଗଳ୍ପର ସମୟସୀମା ଆହୁରି ସୀମିତ ହୋଇଯାଇଛି । ଜୀବନର ଛୋଟ ଛୋଟ ଜ୍ଞାତ ଅଜ୍ଞାତ ଘଟଣାମାନଙ୍କୁ ପ୍ରକାଶ କରିବାକୁ ଯାଇ କ୍ଷୁଦ୍ରଗଳ୍ପ ତା'ର କଳେବରକୁ ଆହୁରି ସୀମିତ କରିଛି । କ୍ଷୁଦ୍ରଗଳ୍ପରୁ ଅଣୁଗଳ୍ପ ଆବିଷ୍କାର ଫଳରେ ଏହା ପାଠକ ପାଇଁ ପାଞ୍ଚରୁ ପନ୍ଦର ମିନିଟ୍ ସମୟ ମଧ୍ୟରେ ଶେଷ ହେବାରେ ସମ୍ଭବ ହୋଇ ପାରିଛି । କ୍ଷୁଦ୍ରଗଳ୍ପ ଜୀବନର କେତୋଟି ଆବେଗମୟ ମୁହୂର୍ତ୍ତକୁ ନେଇ ପ୍ରକାଶ ପାଇଥାଏ । ଉପନ୍ୟାସ ପରି ଏହା ସମ୍ପୂର୍ଣ୍ଣ ଜୀବନ (Total life)ର ପୂର୍ଣ୍ଣକଳା (Total art) ନୁହେଁ । କେତୋଟି ଆବେଗକୁ ଶବ୍ଦ ମାଧ୍ୟମରେ ଗୁନ୍ଥାଯାଉଥିବାରୁ ଏହା ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ, ନିରୂପିତ ଚରିତ୍ର ଓ ମପାଚୁପା ସମୟ ଭିତରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଥାଏ । A.J.J. Ratcliffଙ୍କ ବିଚାରଧାରାକୁ ଗ୍ରହଣ କରି କୁହାଯାଇ ପାରେ—

'A Short Story proper that is deliberately finished work of art and not just a straight forward tale

of one or more events, belongs to modern times.' କ୍ଷୁଦ୍ରଗଳ୍ପ ଏକ ସ୍ଥାୟୀରୂପ ନେଇ ପ୍ରକାଶିତ ହୁଏନାହିଁ । ଲୋକ କାହାଣୀ-କାହାଣୀ-ଗଳ୍ପ କ୍ଷୁଦ୍ରଗଳ୍ପ-ମିନିଗଳ୍ପ-ଅଣୁଗଳ୍ପ-ଆଖ୍ୟଗଳ୍ପ ଆଦି ବିଭିନ୍ନ ଭାବରେ ନିଜଠାରେ ସବୁବେଳେ ପରୀକ୍ଷା କରି ଆସିଛି । ଏଥିପାଇଁ କୌଣସି ସମୟରେ ଏହାର ସଂଜ୍ଞା ସ୍ୱୟଂସମ୍ପୂର୍ଣ୍ଣ ହୁଏନାହିଁ । କ୍ଷୁଦ୍ରଗଳ୍ପ ସାହିତ୍ୟର ଏପରି ଏକ ମନୋରମ କଳା, ଯାହା ସବୁଶ୍ରେଣୀର ପାଠକଙ୍କୁ ତତ୍‌କ୍ଷଣାତ୍ ଆନନ୍ଦଦେବାରେ ସହାୟକ ହୋଇଥାଏ ।

## ସ୍ୱରୂପ ବିଚାର--

କ୍ଷୁଦ୍ରଗଳ୍ପକୁ ଏହାର ପରିସର ଓ ପୃଷ୍ଠଭୂମି ଦୃଷ୍ଟିରୁ ଆଲୋଚନା କଲେ ଏଥିରେ କେତେକ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ଗଳ୍ପକଳାର ଏକ ସ୍ୱତନ୍ତ୍ର ଆବେଦନ ଓ ସୃଷ୍ଟି କର୍ମରେ ସୃଜନଶୀଳତାକୁ ପାଥେୟ କରି କ୍ଷୁଦ୍ରଗଳ୍ପର ଆତ୍ମପ୍ରକାଶ, କ୍ଷୁଦ୍ରଗଳ୍ପ ସୃଷ୍ଟିର ଲକ୍ଷ୍ୟସାଧନର ମାଧ୍ୟମ । ସ୍ରଷ୍ଟା ଯାହା କାବ୍ୟ କବିତା, ଉପନ୍ୟାସ ମାଧ୍ୟମରେ ସିଧାସଳଖ କହିପାରି ନ ଥାଏ, ଯାହାକୁ ବର୍ଣ୍ଣନା କରିବାକୁ ଯାଇ ସେ ଅବହେଳା ପ୍ରଦର୍ଶନ କରିଥାଏ, ସେହିସବୁ ଆବେଗକୁ ପୂର୍ଣ୍ଣ ଭାବରେ ପ୍ରକାଶ କରିବାରେ କ୍ଷୁଦ୍ରଗଳ୍ପ ସହାୟକ ହୋଇଥାଏ । ସାମ୍ପ୍ରତିକ କ୍ଷୁଦ୍ରଗଳ୍ପ ସାମ୍ପ୍ରତିକ ମଣିଷର ଅନ୍ତଃଚେତନାର ପ୍ରତିଲିପି । ଆଜିର ବସ୍ତୁବାଦୀ ମଣିଷ ନିଜେ ପାଖରେ ନିଜେ ଦୁର୍ବୋଧ । ଏପରି ଏକ ପାହାଡ଼ ସମ ମଣିଷ ଭିତରେ ପ୍ରବେଶ କରି ରସର ଝରଣା ସୃଷ୍ଟି କରିବା କ୍ଷୁଦ୍ରଗଳ୍ପର ଆଦର୍ଶ । ଆଧୁନିକ ସମାଜ କଳା ଓ ବିଜ୍ଞାନର ସମାଜ । ଏକ ପକ୍ଷରେ ଆଇନଷ୍ଟାଇନଙ୍କ ପରମାଣୁ ତତ୍ତ୍ୱକୁ ସମାଜ ଗ୍ରହଣ କରିବା ପରେ ଗୀତାର ଆତ୍ମତତ୍ତ୍ୱକୁ ମଧ୍ୟ ଗ୍ରହଣ କରିଛି ଆଇନଷ୍ଟାଇନ ଓ ବିବେକାନନ୍ଦ ଗୋଟିଏ ସ୍ୱରରେ ଉଦ୍‌ବୋଧନ ଦେଉଛନ୍ତି । ଏପରି ସମାଜ ବ୍ୟବସ୍ଥା ପରିପ୍ରେକ୍ଷୀରେ ମଣିଷର ଚିନ୍ତା ରାଜ୍ୟରେ ଆସିଛି ବ୍ୟାପକ ମାନସିକ ଅଶାନ୍ତି ଓ ଆନ୍ଦୋଳନ । ଡାରଉଇନ, କାମ୍ୟୁ, କାଫକାଙ୍କ ଜୀବନଦର୍ଶନ, ଫ୍ରଏଡଙ୍କ ଯୌନତତ୍ତ୍ୱ ଓ ମଣିଷର ମାନସିକ ସ୍ତର ଉଦ୍‌ଘାଟନ, ସମସ୍ତ ପୁରୁଷପଣିଆ ଓ ସ୍ତ୍ରୀର ଧବଳ ସତୀତ୍ୱକୁ ପଦାରେ ପକାଇବା ସହ ମଣିଷର ଯୌନ ଦମ୍ଭ ଭାଙ୍ଗିଦେଇଛି । ଗୋଟିଏ ଅପାରଗ ସମାଜ ଓ ଅନ୍ୟାୟ ବିକଳାଙ୍ଗ ମହାନ୍ ଦେବଶିଶୁ ମଣିଷକୁ ନେଇ ଆଜିର କ୍ଷୁଦ୍ରଗଳ୍ପ ବୈଚିତ୍ର୍ୟମୟ ହୋଇ ପାରିଛି । କ୍ଷୁଦ୍ରଗଳ୍ପରେ ଆଧୁନିକ ସମାଜ ଓ ଆଧୁନିକ ମଣିଷର ଚିତ୍ର ମାର୍ମିକ ଭାବରେ ପ୍ରକାଶ ପାଇଛି । ଏହି ପରିପ୍ରେକ୍ଷୀରେ କ୍ଷୁଦ୍ରଗଳ୍ପର ଅନ୍ତଃସତ୍ତ୍ୱା ଓ ବାହ୍ୟସତ୍ତ୍ୱାକୁ ବିଚାର କଲେ ଏହାର ବୈଶିଷ୍ଟ୍ୟ ନିରୂପିତ ହୁଏ ।

## (କ) ସଂକ୍ଷିପ୍ତ କଳେବର—

କ୍ଷୁଦ୍ରଗଳ୍ପ ଏକ ସଂକ୍ଷିପ୍ତ କଳେବର ଭିତରେ ଆତ୍ମପ୍ରକାଶ କରେ । ଗୋଟିଏ ଶ୍ରେଷ୍ଠ ଘଟଣା ବା ଗୁରୁ ଘଟଣାକୁ ଲଘୁକରି ଏଥିରେ ପ୍ରକାଶ କରାଯାଇ ଥାଏ । କାବ୍ୟର ବର୍ଣ୍ଣନାବିଳାସ ବା ଉପନ୍ୟାସର ଘଟଣାବିନ୍ୟାସ ଚରିତ୍ର ଚିତ୍ରଣ ଏଥିରେ ପରିଦୃଷ୍ଟ ହୁଏନାହିଁ । ଏଗୁଡ଼ିକୁ ଅଧଘଣ୍ଟା ଠାରୁ ଘଣ୍ଟାକରେ ପଢ଼ାଯାଇ ପାରିବ ବୋଲି ଆଲୋଚକମାନେ କହିଥାଆନ୍ତି । ବିନ୍ଦୁ ମଧ୍ୟରେ ସିନ୍ଧୁ ଦର୍ଶନ କ୍ଷୁଦ୍ରଗଳ୍ପର ଅଭିମୁଖ୍ୟ, ଶ୍ରେଷ୍ଠ ନୁଶ୍ରେଷ୍ଠ କଥାରେ ବୃହତ୍ତ ଭାବ ସୃଷ୍ଟି କରିବାକୁ କ୍ଷୁଦ୍ରଗଳ୍ପରେ ଗୁରୁତ୍ୱ ଦିଆଯାଇଥାଏ । ନାରିକେଳ ବୃକ୍ଷପରି ଏହାର କାହାଣୀ, ଚରିତ୍ର ସିଧାସଳଖ କ୍ଲାଇମାକ୍ସରେ ପହଞ୍ଚି ଥାଆନ୍ତି । ଏଥିରେ ଦୃଶ୍ୟ, ଅଧ୍ୟାୟ, ପର୍ବ ଆଦିର ବର୍ଣ୍ଣନା ନ ଥାଏ । ସଂକ୍ଷିପ୍ତ କଳେବର ଭିତରେ ବ୍ୟାପକତାର ସନ୍ଧାନ ଦେଇ ପାରୁଥିବା ହେତୁ କ୍ଷୁଦ୍ରଗଳ୍ପର ଗୁରୁତ୍ୱ ବୃଦ୍ଧିପାଏ । ଯଶୋଦା, କୃଷ୍ଣଙ୍କ ଛୋଟିଆ ପାଟିରେ ବିଶ୍ୱରୂପ ଦର୍ଶନ କଲାଭଳି କ୍ଷୁଦ୍ରଗଳ୍ପର ସଂକ୍ଷିପ୍ତ କଳେବର ଭିତରେ ପାଠକ ମହାନନ୍ଦର ସନ୍ଧାନ ପାଇଥାଏ ।

## (ଖ) ଆକସ୍ମିକତା—

ଆକସ୍ମିକତା କ୍ଷୁଦ୍ରଗଳ୍ପର ଅନ୍ୟତମ ବୈଶିଷ୍ଟ୍ୟ । ଏହା ଆକସ୍ମିକ ଭାବରେ ଆରମ୍ଭ ହୁଏ, ସମସ୍ତଙ୍କୁ ବିସ୍ମୟ ପ୍ରଦାନ କରି ସେହି ପୂର୍ବ ଚମକରେ ଶେଷ ପର୍ଯ୍ୟାୟରେ ଉପନୀତ ହୁଏ । ପୂର୍ବେ କାହାଣୀ ସବୁ ଗୋଟିଏ ନିର୍ଦ୍ଦିଷ୍ଟ ଧାରା (form)ରେ ଆରମ୍ଭ ହେଉଥିଲା । ଯେମିତି ଅମୁକ ଦେଶରେ ଜଣେ ରାଜା ଥିଲେ । ତାଙ୍କର ଅନେକଗୁଡ଼ି ରାଣୀ ଥିଲେ । କେଉଁ ରାଣୀଙ୍କର ପିଲାଟିଏ ହେଲାନାହିଁ । ଠାକୁର ସ୍ୱପ୍ନରେ ଆସିଲେ ଇତ୍ୟାଦି ଏବଂ ଉପସଂହାରରେ ନାୟକ ନାୟିକାର ବିବାହ, ଭୋଜି ଓ ମଧୁଶଯ୍ୟାର ବର୍ଣ୍ଣନାରେ ଗପ ଶେଷ ହେଉଥିଲା । ବ୍ୟାଖ୍ୟାକାର ଶେଷରେ କହୁଥିଲା—ରାଜା ପୁଅ ଝିଅ ବାହା ହୋଇ ସୁଖରେ ରହିଲେ, ମୁଁ ଗଲି ମୋତେ ପାନଖଣ୍ଡେ ବି ଦେଲେ-ନାହିଁ କିମ୍ବା 'ମୋ କଥାଟି ସରିଲା ଫୁଲ ଗଛଟି ମରିଲା' ଆଦି ବର୍ଣ୍ଣନା ଭିତରେ ଗପ ଶେଷ ହେଉଥିଲା । ଏହି ଲୋକଗପ ଶୈଳୀକୁ କ୍ଷୁଦ୍ରଗଳ୍ପ ବର୍ଜନ କରିଛି । ଯାହାକିଛି ଏଥିରୁ ଗ୍ରହଣ କରିଛି ତାକୁ ଏହାର ପରିବର୍ତ୍ତିତ ମାର୍ଜିତ ସଂସ୍କରଣ ଭାବରେ ଦେଖିବାକୁ ମିଳୁଛି । କ୍ଷୁଦ୍ରଗଳ୍ପ କିନ୍ତୁ ଆକସ୍ମିକତାକୁ ଗ୍ରହଣ କରି ନିଜର ମହତ୍ତ୍ୱକୁ ବୃଦ୍ଧି କରିଛି । ଆକାଶରେ ଯେମିତି ହଠାତ୍ ଉଲ୍କାପାତ ହୁଏ ଏବଂ ଅଳ୍ପ ସମୟ ପରେ ତାହା ଅଦୃଶ୍ୟ ହୋଇଯାଏ । କ୍ଷୁଦ୍ରଗଳ୍ପ ସେହିପରି ଆକସ୍ମିକ ଭାବରେ ଗୋଟିଏ ଘଟଣାର ସୂଚନା ଦିଏ । ପରବର୍ତ୍ତୀ ସମୟରେ ଏହା ପରିବର୍ତ୍ତିତ ହୋଇ-ଯାଏ ଏବଂ ପାଠକ ଆଶା କରି ନ ଥିବା ଉପସଂହାର ପ୍ରଦାନ କରିଥାଏ ।

## (ଗ) ଗୀତିମୟତା—

ଗୀତିମୟତା କ୍ଷୁଦ୍ରଗଳ୍ପର ଅନ୍ୟତମ ବୈଶିଷ୍ଟ୍ୟ ଭାବରେ ଗୃହୀତ । ଜୀବନର ଖଣ୍ଡିତ ଆବେଗ ଏଥିରେ ସ୍ଥାନ ପାଉଥିବାରୁ ସୃଜନଶୀଳ ସ୍ରଷ୍ଟା ଅନୁଭବପ୍ରବଣ ଭାବରେ ଏହାକୁ ବ୍ୟାଖ୍ୟା କରିଥାଏ । ଜୀବନ ଗୀତିମୟ । ତେଣୁ ଜୀବନକୁ ଯିଏ ଯଥାସମ୍ଭବ ଉପସ୍ଥାପନ କରୁଥିବା ସାହିତ୍ୟର ଏହି ମନୋରମ ବିଭାଗଟି ଗୀତିମୟ ହୋଇଥାଏ । କ୍ଷୁଦ୍ରଗଳ୍ପକୁ 'କଥା କବିତା' Lyric in Prose କୁହାଯାଏ । କାବ୍ୟ ଯୁଗର ଅନେକ କବି କାହାଣୀକୁ ଗଦ୍ୟ ଆକାରରେ ବର୍ଣ୍ଣନା କରିଥାଆନ୍ତି । ଲୋକ ଗଳ୍ପମାନଙ୍କରେ ଏ ଶୈଳୀ ବିଶେଷ ଭାବରେ ଆଦୃତ । ଆଧୁନିକ କ୍ଷୁଦ୍ରଗଳ୍ପରେ ବର୍ଣ୍ଣନା ଧର୍ମ ଏବଂ ଶବ୍ଦ ଚୟନ ଏହାର କଳେବରକୁ ସଙ୍ଗୀତମୟ କରିବାରେ ସାହାଯ୍ୟ କରିଛି ! ଓଡ଼ିଆ ଗଳ୍ପ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ଅଧିକ ଉଦାର । ଅନେକ କବି ଗଳ୍ପ ରଚନା କରୁଥିବାରୁ ଗଳ୍ପର ବର୍ଣ୍ଣନାରେ କାବ୍ୟିକତା ଓ ସୃଜନଶୀଳତା ଅଧିକ ଭାବରେ ଆତ୍ମପ୍ରକାଶ କରିଛି । କବି ସଚ୍ଚି ରାଉତରାୟଙ୍କ 'ମଶାଣିର ଫୁଲ' 'ମାଟିର ତାଜ' 'ଅନ୍ଧାରୁଆ' ଆଦି ଗଳ୍ପ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଂସର ବିଳାପ' ଗଳ୍ପରେ କାବ୍ୟିକତା ଓ ଗୀତିମୟତା ପ୍ରକାଶ ପାଇଛି । ପ୍ରୟୋଗବାଦୀ କ୍ଷୁଦ୍ରଗଳ୍ପରେ ମଧ୍ୟ ଗୀତିମୟତାକୁ ଆମ୍ଭା ଭାବରେ ଗ୍ରହଣ କରାଯାଇଛି ।

## (ଘ) ଇଙ୍ଗିତଧର୍ମିତା—

କ୍ଷୁଦ୍ରଗଳ୍ପ କୌଣସି ଘଟଣାର ଆମୂଳଚୂଳ ବ୍ୟାଖ୍ୟାକାରୀ ନୁହେଁ, ଏହା ଇଙ୍ଗିତ ପ୍ରଧାନ । ଏହା ସୂକ୍ଷ୍ମ ଭାବେ ରସପିପାସୁ ପାଠକ ତାକୁ ଗ୍ରହଣ କରି, କ୍ଷୁଦ୍ରଗଳ୍ପ ତା'ର ଲଘୁ ପକ୍ଷ ବିସ୍ତାର କରି ନୀରବ ପାଠକର ହୃଦୟ ଛୁଇଁଯାଏ । ଗୋଟିଏ ଗଳ୍ପରେ ସ୍ରଷ୍ଟା ଯାହା କହିଥାଏ ତାହାଠାରୁ ଅନେକ କିଛି ସେ କହିବାକୁ ଚାହିଁଥାଏ ବା ସେହି ଶବ୍ଦମାନଙ୍କ ଭିତରେ କହି ଦେଇଥାଏ, ଯାହାକୁ ପାଠକ ତା'ର ସମସ୍ତ ବୋଧଶକ୍ତି ଖଟାଇ ବୁଝିବାରେ ସମର୍ଥ ହୋଇଥାଏ । ଆଖୁ ରସକୁ ଗ୍ଲାସରେ ପିଇଲେ ମଜା ଲାଗେ; କିନ୍ତୁ ସେହି ଆଖୁ ଆଣି ତାକୁ ଦାନ୍ତରେ ଛଡ଼ାଇ ଚୋବାଇ ଖାଇଲେ ତା'ର ଆନନ୍ଦ ଅନ୍ୟକୁ ବଳି ଯାଇଥାଏ । ପାଠକ ଯେତେବେଳେ ଏହି ଇଙ୍ଗିତ ଇଲାକାର ସୂଚନା ପାଏ, ସେତେବେଳେ ସେ ଠିକ୍ ଭାବରେ ଗଳ୍ପର ଆସ୍ୱାଦନ କରି ପାରିଥାଏ । ଗାଳ୍ପିକ ଯେମିତି କଟକେ ଗଳ୍ପ ପଛରେ ଠିଆହୋଇ ଅନେକ କଥା କହୁଥାଏ । ପ୍ରୟୋଗବାଦୀ ସାହିତ୍ୟରେ ପରୀକ୍ଷାମୂଳକ ଆଭାସ ଗଳ୍ପ ଏବଂ ଅଣୁ ଗଳ୍ପଗୁଡ଼ିକ ଅଧିକ ଇଙ୍ଗିତମୟ । ମଣିଷର ମନ ଗହନର କଥା ଉନ୍ମୋଚନ କରିବା ସହ ସମାଜ ବ୍ୟବସ୍ଥାକୁ ବିଦ୍ରୂପ କରାଯାଉ ଥିବାରୁ ଗାଳ୍ପିକ ଅନେକ ମିଥ୍, ମେଟାଫର ଓ ପ୍ରତୀକର ବ୍ୟବହାର କରିଥାଏ । ପ୍ରତୀକର ବହୁଳ ବ୍ୟବହାର

ଆଧୁନିକ କ୍ଷୁଦ୍ର ଗଳ୍ପରେ ଦେଖାଯାଏ । ପାଠକକୁ ଏକ ଅଦୃଶ୍ୟ ଇଲାକାର ସନ୍ଧାନ ଦେବାପାଇଁ ଗାଳ୍ପିକ ପ୍ରୟାସ କରିଥାଏ । ଇଙ୍ଗିତ ଗଳ୍ପରେ ରହସ୍ୟ ଓ ରସ ସୃଷ୍ଟି କରିଥାଏ । ବକ୍ତବ୍ୟରେ ଇଙ୍ଗିତ ଓ ଇଚ୍ଛାରେ ଆତୁରତା ପ୍ରକାଶ କରି କ୍ଷୁଦ୍ର ଗଳ୍ପ ନିଜକୁ ଆହୁରି ବୈଚିତ୍ର୍ୟମୟ କରି ପାରିଛି ।

## (ଙ) ଶୃଙ୍ଖଳା—

କ୍ଷୁଦ୍ର ଗଳ୍ପ ସାହିତ୍ୟର ସବୁଠାରୁ ଶୃଙ୍ଖଳିତ ବିଭାଗ । କାହାଣୀ ଚୟନ, ଶବ୍ଦ ସଂଯୋଜନା, ଚରିତ୍ର ଚିତ୍ରଣ, ବର୍ଣ୍ଣନା ବିଳାସ, ଭାଷାଶୈଳୀ ସର୍ବୋପରି ସ୍ଥାନ-କାଳ-ପାତ୍ର ଚିତ୍ରଣରେ ଏଥିରେ ଏକ ଶୃଙ୍ଖଳିତ ପ୍ରକ୍ରିୟାକୁ ଲକ୍ଷ୍ୟ କରାଯିବ। ଗାଳ୍ପିକ ଅନାବଶ୍ୟକ ବର୍ଣ୍ଣନା ଓ ଚରିତ୍ରକୁ ଏଥିରୁ ବାଦ୍ ଦେଇଥାଏ । ସେ ଜାଣିଥାଏ ଏକ ନିର୍ଦ୍ଦିଷ୍ଟ କଳେବର ଭିତରେ ଏହାକୁ ସମାପ୍ତ କରିବାକୁ ପଡ଼ିବ । ସେଇଥିପାଇଁ କାହାଣୀର ଗତିକୁ ଶୀଘ୍ର କ୍ଲାଇମାକ୍ସରେ ପହଞ୍ଚାଇ ଥାଏ । ଆବଶ୍ୟକୀୟ ବକ୍ତବ୍ୟ ପ୍ରକାଶ କରି ଶୃଙ୍ଖଳିତ ଭାବରେ ସ୍ରଷ୍ଟା ଉପସଂହାରରେ ପହଞ୍ଚିଥାଏ ।

କ୍ଷୁଦ୍ର ଗଳ୍ପ ଆୟତନରେ କ୍ଷୁଦ୍ର ହେଲେ ମଧ୍ୟ ଏହା ସାହିତ୍ୟରେ ଅଧିକ ପାଠକ ସୃଷ୍ଟି କରିଥାଏ । କାହାଣୀର ବିବିଧତା ଓ ଭିନ୍ନ ଭିନ୍ନ ସ୍ରଷ୍ଟାମାନଙ୍କର ପରିବେଷଣ କୌଶଳ ଏହାକୁ ମନୋଜ୍ଞ କରିଥାଏ । କ୍ଷୁଦ୍ରଗଳ୍ପର ଗଠନରୀତି ଓ ଆଭିମୁଖ୍ୟ ଏହାକୁ ଅନ୍ୟ ସୃଜନଶୀଳ ସୃଷ୍ଟିମାନଙ୍କଠାରୁ ପୃଥକ ପରିଚୟ ପ୍ରଦାନ କରିଥାଏ ।

## କ୍ଷୁଦ୍ର ଗଳ୍ପର ନିର୍ମାଣ କୌଶଳ—

କ୍ଷୁଦ୍ରଗଳ୍ପ ସୃଷ୍ଟି ପାଇଁ ବିଭିନ୍ନ କଳାଗତ ବିଭାଗମାନଙ୍କର ଆବଶ୍ୟକତା ରହିଛି । କ୍ଷୁଦ୍ରଗଳ୍ପର ପରିସର ମଧ୍ୟରେ ଉପନ୍ୟାସ ନିର୍ମାଣ କୌଶଳ ଦେଖିବାକୁ ମିଳେ । ଉପନ୍ୟାସରେ ଯେମିତି କାହାଣୀ, ଚରିତ୍ରମାନଙ୍କର ସମାହାର ଦେଖାଯାଇ ଥାଏ, କ୍ଷୁଦ୍ରଗଳ୍ପ ଆହୁରି ସଂକ୍ଷିପ୍ତ ଅଥଚ ଭାବମୟ ମାର୍ଗରେ ଏହାକୁ ପ୍ରକାଶ କରିଥାଏ । କ୍ଷୁଦ୍ରଗଳ୍ପ ଭାବନାର ଗଳ୍ପ । ଭାବୁକ ହୃଦୟର ଶବ୍ଦମୟ ରୂପ କ୍ଷୁଦ୍ରଗଳ୍ପରେ ପ୍ରକାଶ ପାଇଥାଏ । ମଣିଷର ଗୋଟିଏ ଗୋଟିଏ ମୁହୂର୍ତ୍ତି କ୍ଷୁଦ୍ର ଗଳ୍ପରେ ଉଦ୍‌ଭାସିତ ହୁଏ । କାହାଣୀ ଆକାରରେ ସ୍ରଷ୍ଟାର ଅନୁଭବ ପ୍ରକାଶ ପାଉଥିବାରୁ ଏଥିରେ ବିଭିନ୍ନ ଚରିତ୍ରମାନଙ୍କର ଆବଶ୍ୟକତା ପଡ଼ିଥାଏ । ନାଟକ ବା ଉପନ୍ୟାସ ପରି ଯଦିଓ ଏଥିରେ ଅନେକ ଚରିତ୍ର ଓ ଗୋଟିଏ ବଡ଼ କାହାଣୀର ଆବଶ୍ୟକତା ପଡ଼େନାହିଁ, ତଥାପି କାହାଣୀ କ୍ଷୁଦ୍ର ଗଳ୍ପର ମୁଖ୍ୟ ଉଦ୍ଦେଶ୍ୟ, ଏକଥା ବାରହୋଇ ପଡୁଥାଏ । ଯେହେତୁ କ୍ଷୁଦ୍ର ଗଳ୍ପ କ୍ଷଣଭଙ୍ଗୁର ମଣିଷ

ଜୀବନ୍ତର ବ୍ୟାଖ୍ୟା କରିବ । ଗୋଟିଏ ସମସ୍ତ ଭିତରେ ଘଟିଯାଇଥିବା ଘଟଣାର ବର୍ଣ୍ଣନା ଦେବ ସେଥିରେ ସ୍ଥାନ-କାଳ-ପାତ୍ରର ବହୁମୂଲ୍ୟ ସମନ୍ୱୟର ଆବଶ୍ୟକତା ଅନୁଭବ କରିହେବ । କ୍ଷୁଦ୍ରଗଳ୍ପ ସାହିତ୍ୟର ସବୁଠାରୁ ମନୋରମ ସୂକ୍ଷ୍ମ କଳା-ବିଭାଗ । ବାହୁଲ୍ୟ ବର୍ଣ୍ଣନା ଓ ଅଯଥା ଶବ୍ଦ ଚୟନ ଗଳ୍ପକଳାର ସୌନ୍ଦର୍ଯ୍ୟ ନଷ୍ଟ କରିଥାଏ । ଗୋଟିଏ ରେଖାରେ ସୃଷ୍ଟି ହୋଇ ଗତିକରି ସେହି ରେଖାର ଶେଷ ମୁଣ୍ଡରେ ଶୀଘ୍ର ପହଞ୍ଚିବାରେ କ୍ଷୁଦ୍ରଗଳ୍ପ ବିଶ୍ୱାସ କରେ । ପାଠକ ଏକା ନିଃଶ୍ୱାସରେ ଏହାକୁ ଶେଷ କରୁଥିବାରୁ ବା ଘଣ୍ଟାଏ ସମୟ ଭିତରେ ଏହାର ସମସ୍ତ ଚୟ ପ୍ରଦାନ କରୁଥିବାରୁ ପାଠକ ନିଜ କର୍ମମୟ ଜୀବନ ଭିତରୁ ସମୟ କାଢ଼ି ଏହାକୁ ଉପଭୋଗ କରିଥାଏ । ଏହି ସରଳରୈଖିକ ଗତି ପ୍ରଦାନପାଇଁ ସ୍ରଷ୍ଟା ଏହାର ସୂକ୍ଷ୍ମ ପରିପାଟିକୁ ଯତ୍ନର ସହ ନିର୍ମାଣ କରିଥାଏ । ଗଳ୍ପ ନିର୍ମାଣର ଗୋଟିଏ ବିଭାଗ ଅବହେଳା ହେଲେ ଏହା ଏକ ପୂର୍ଣ୍ଣ ପରିଭାଷା ପ୍ରଦାନ କରିବାରେ ଅକ୍ଷମ ନୁହେଁ । ଗଳ୍ପ ନିର୍ମାଣର ଆନୁଷଙ୍ଗିକ ବିଭାଗ ଉପରେ ନିମ୍ନରେ ଆଲୋଚନା କରାଗଲା ।

## (କ) କାହାଣୀକଳା --

କ୍ଷୁଦ୍ରଗଳ୍ପ ଭିତରେ ଏକ ମାର୍ଜିତ କାହାଣୀକଳା ଆତ୍ମପ୍ରକାଶ କରିଥାଏ । କାହାଣୀ କ୍ଷୁଦ୍ରଗଳ୍ପର ଅଂଶ । ଉପନ୍ୟାସ ପାଇଁ ଗୋଟିଏ ବିସ୍ତୃତ କାହାଣୀର ଆବଶ୍ୟକତା ଥାଏ; କିନ୍ତୁ କ୍ଷୁଦ୍ରଗଳ୍ପ ପାଇଁ ପୂର୍ଣ୍ଣାଙ୍ଗ କାହାଣୀର ଆବଶ୍ୟକତା ଏତେ ମାତ୍ରାରେ ଅନୁଭୂତ ହୁଏନାହିଁ । ଯେତେବେଳେ ଗଳ୍ପସାହିତ୍ୟର ଆରମ୍ଭ ସେତେବେଳେ କାହାଣୀ ହିଁ ଗଳ୍ପର ମୁଖ୍ୟ ଆଧାର ଥିଲା । ଗୋଟିଏ ଘଟଣାର ଆରମ୍ଭ କରି ଘଟଣାକୁ ସାନ୍ତ୍ୱନାମୂଳକ ଶେଷ କରିବା ଥିଲା ପ୍ରାଥମିକ ଗଳ୍ପମାନଙ୍କର ବୈଶିଷ୍ଟ୍ୟ । ପାଠକ ପୂର୍ଣ୍ଣ କାହାଣୀ ପଠନ କରୁଥିଲା । ପ୍ରାଚୀନ କାହାଣୀର ଗଳ୍ପ-ଲିପ୍ସୁ ଶ୍ରୋତା ଓ ପାଠକପାଇଁ ଏହା ଅପରିହାର୍ଯ୍ୟ ଥିଲା । ବୋକାସିଓଙ୍କ କାହାଣୀ ଏହି ଧରଣର । ବିଭିନ୍ନ ଲୋକକଥା ଓ କିମ୍ବଦନ୍ତୀକୁ ପୂର୍ଣ୍ଣଭାବରେ ସେ ବ୍ୟାଖ୍ୟା କରିଛନ୍ତି । ଓଡ଼ିଆ ସାହିତ୍ୟର ପାରମ୍ପରିକ ଗଳ୍ପରେ ଅନୁରୂପ କାହାଣୀ ଦେଖା ଯାଇଥିଲା । ଫକୀରମୋହନଙ୍କ 'ରେବତୀ' ହେଉ ବା ଗୋଦାବରୀଶ ମହାପାତ୍ରଙ୍କ 'ନୀଳମାଷ୍ଟ୍ରାଣୀ' ନାୟୀ ଜୀବନର ପୂର୍ଣ୍ଣ ପ୍ରତିବିମ୍ବକୁ ପ୍ରକାଶ କରିଛନ୍ତି । ଏହି ପ୍ରାଚୀନ କାହାଣୀକଳା ଗୋଦାବରୀଶଙ୍କ 'ନୀଳମାଷ୍ଟ୍ରାଣୀ' ଗଳ୍ପରେ ଅଧିକ ସ୍ପଷ୍ଟ । ନୀଳର ବାଲ୍ୟ-ଯୌବନ-ବିଧବା ନାୟୀ ଜୀବନର ଅଶ୍ରୁଳ କାହାଣୀ ସମଗ୍ର ଗପରେ ପ୍ରକାଶ ପାଇଛୁ । ପ୍ରତ୍ୟେକ ଭାଷାରେ ଗଳ୍ପସୃଷ୍ଟିର ପାରମ୍ପରିକ ଆଧାର ଉକ୍ତ ଶୃଙ୍ଖଳସମ୍ପନ୍ନ କାହାଣୀରୁ ହିଁ ଆରମ୍ଭ ହୋଇଥିଲା ।

ଗଳ୍ପ ପରମ୍ପରାର ବିକାଶ ସହିତ ଏହାର କାହାଣୀକଳାରେ ପରୀକ୍ଷା କରାଯାଇଛି । ଜୀବନର ଛୋଟ ଛୋଟ ସାଧାରଣ ଅନୁଭବକୁ ନେଇ ଗପ ସୃଷ୍ଟି କରିବାର ପ୍ରୟାସରୁ କାହାଣୀର ପାରମ୍ପରିକତା ନଷ୍ଟ ହୋଇଛି । କ୍ଷୁଦ୍ରଗଳ୍ପ ସାଧାରଣତଃ ଗୋଟିଏ ମୁହୂର୍ତ୍ତକୁ ବାନ୍ଧି ରଖିବାର ପ୍ରୟାସ କରୁଥିବାରୁ ଏଥିରେ କ୍ଷୁଦ୍ର କାହାଣୀ ସ୍ଥାନ ପାଉଛି । 'ମାଳମାଷ୍ଟ୍ରାଣୀ' କାହାଣୀକୁ ନୂତନ ଭାବରେ ଗଳ୍ପର ରୂପ ଦେଲେ ସେଥିରୁ ଗୁଡ଼ିଏ କାହାଣୀ ସୃଷ୍ଟି ହୋଇ ପାରିବ । ସାମ୍ପ୍ରତିକ ଗଳ୍ପର ଆବେଗ ଅଧିକ, ବ୍ୟଞ୍ଜନା ଅଧିକ, ବର୍ଣ୍ଣନାଭଙ୍ଗୀ ଅଧିକ ।

କ୍ଷୁଦ୍ରଗଳ୍ପ ପାଇଁ ଆଜି କୌଣସି ଧରାବନ୍ଧା କାହାଣୀର ଆବଶ୍ୟକତା ନାହିଁ । ଯେ କୌଣସି ଘଟଣା ବା ବିଷୟକୁ ନେଇ, ସେ ବିଷୟରେ ଗୋଟିଏ ଗପ ଲେଖାଯାଇ ପାରେ । କେବଳ ମଣିଷ ନୁହେଁ ମାନବେତର ଚରିତ୍ର ମଧ୍ୟ କାହାଣୀ ଓ ଚରିତ୍ର ଭାବରେ ଗଳ୍ପରେ ଆତ୍ମପ୍ରକାଶ କରିଛି । ପଶୁପକ୍ଷୀଙ୍କ ସଂସାରକୁ ନେଇ ସୁନ୍ଦର କାହାଣୀମାନ ସୃଷ୍ଟି କରାଯାଉଛି । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଂସର ବିଳାପ' ଗଳ୍ପଟି ପଶୁ ଜୀବନ ସହ ମଣିଷର ପ୍ରବୃତ୍ତିକୁ ଫେଣ୍ଟିଦେଇ ସୁନ୍ଦର ପ୍ଲଟ୍‌ଟି ସୃଷ୍ଟି ହୋଇଛି । ମାନବ, ମାନବେତର ଏବଂ ଈଶ୍ୱର ଗୋଟିଏ ଗପରେ ପ୍ରକାଶ ପାଇବାର ମନୋଭୂମି କ୍ଷୁଦ୍ରଗଳ୍ପ ଭିତରେ ସୃଷ୍ଟି ହୋଇଛି ।

ଅନେକ ପରୀକ୍ଷାଧର୍ମୀ କ୍ଷୁଦ୍ରଗଳ୍ପରେ କାହାଣୀହୀନତା ଲକ୍ଷ୍ୟ କରାଯାଏ । କାହାଣୀବିହୀନ ଗଳ୍ପ ସୃଷ୍ଟି କରିବା କ୍ଷୁଦ୍ରଗଳ୍ପର ସମ୍ପ୍ରତି ଏକ ବଳିଷ୍ଠ ପ୍ରୟୋଗ । ଗାଳ୍ପିକ ଗଳ୍ପରେ ଅନେକ କିଛି କହୁଥାଏ; କିନ୍ତୁ ବାସ୍ତବରେ ସେ କିଛି କହି ନ ଥାଏ । ଯେଉଁଠୁ ଯାତ୍ରାର ପ୍ରଥମ ପାଦ ଆରମ୍ଭ ଠିକ୍ ସେଇଠି ଯାତ୍ରାର ଅନ୍ତିମ ପାଦ ସ୍ଥାପନ କରିଥାଏ । ବିଭିନ୍ନ ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ମାଧ୍ୟମରେ ଅଳ୍ପରେ ଅନେକ ପ୍ରକାଶ କରିବାରେ ସେ ସମର୍ଥ ହୁଏ । କାହାଣୀହୀନ ଗଳ୍ପ ରଚନା କରିବା କଠିନ ଅଧ୍ୟବସାୟ ଓ କଳା ବ୍ୟାୟାମ ଉପରେ ନିର୍ଭର କରିଥାଏ । ସାଂପ୍ରତିକ କାହାଣୀ କଳାରେ ଏ ଦିଗଟିର ପ୍ରୟୋଗ ଦେଖିବାକୁ ମିଳିଥାଏ ।

ମିନିଗଳ୍ପ ପାଇଁ ମିନି କାହାଣୀର ଆବଶ୍ୟକତା ରହିଛି । ମିନି କାହାଣୀ କହିଲେ ଗୋଟିଏ ମୁହୂର୍ତ୍ତ । ଜହ୍ନ ଆକାଶରେ କାହିଁକି ଉଇଁଲା ? ଫୁଲ କାହିଁକି ଫୁଟିଲା ? ତୁମେ କାହିଁକି ହସିଲ ? ଆଦି ସୂକ୍ଷ୍ମ ମନସ୍ତାତ୍ତ୍ୱିକ ଭାବକୁ ଏଥିରେ ପ୍ରକାଶ କରାଯାଇ ଥାଏ । କ୍ଷୁଦ୍ରଗଳ୍ପର କାହାଣୀର ପରିସର ବ୍ୟାପକ । ଏହା ସବୁବେଳେ ପରୀକ୍ଷାତ୍ମକ ଓ ପ୍ରୟୋଗାତ୍ମକ । ଯେ କୌଣସି ନୂତନ କାହାଣୀ କଳାକୁ କ୍ଷୁଦ୍ରଗଳ୍ପରେ ସ୍ୱାଗତଯୋଗ୍ୟ ।

ପ୍ରଥମେ କ୍ଷୁଦ୍ରଗଳ୍ପରେ ଘଟଣାମୂଳକ କାହାଣୀର ଗୁରୁତ୍ୱ ଥିଲା । ପରବର୍ତ୍ତୀ ସମୟରେ ଆବେଗ ପ୍ରଧାନ କାହାଣୀର ପ୍ରୟୋଗ ଦେଖିବାକୁ ମିଳିଲା । ସାମ୍ପ୍ରତିକ କ୍ଷୁଦ୍ରଗଳ୍ପରେ ମନସ୍ତାତ୍ତ୍ୱିକ କାହାଣୀର ଗୁରୁତ୍ୱ ଦେଖାଯାଏ । ଆଧୁନିକ ମଣିଷର ଚିନ୍ତାରାଜ୍ୟରେ ବିସ୍ମୃତ ପରିବର୍ତ୍ତନ ଦେଖାଦେଇ ଥିବାରୁ ସାମ୍ପ୍ରତିକ କାହାଣୀ ମଣିଷର ସେଇ ଭାବବୋଧକୁ ଆଙ୍କିବାରେ ପ୍ରୟାସ କରୁଛି । ମଣିଷର ଅବଚେତନ ସ୍ତରର ପ୍ରକୃତି ପରିବେଶ ଓ ପରିସ୍ଥିତିରେ ନିଜକୁ ଏକାତ୍ମ କରି ଭାସ୍ୱିତ୍ୱବାନ ବ୍ୟକ୍ତି ଜୀବନ ଓ ସମାଜ ଜୀବନକୁ ପ୍ରକାଶ କରୁଛି । ଯେ କୌଣସି ସଙ୍ଗଠିତ କାହାଣୀ କ୍ଷୁଦ୍ରଗଳ୍ପ ଭିତରେ ପ୍ରକାଶ ପାଇ ପାରିବ । ପାଶ୍ଚାତ୍ୟ ସମାଲୋଚକମାନେ କ୍ଷୁଦ୍ରଗଳ୍ପରେ କାହାଣୀ ପ୍ରୟୋଗ ସମ୍ପର୍କରେ କହିଛନ୍ତି—

"The plot is always of secondary importance, and what matters is situation or atmosphere or sensuous evocations of nature."

ସମ୍ପ୍ରତି କୌଣସି ଘଟଣାକୁ ଆଖି ଆଗରେ ରଖି ଗଳ୍ପ ସୃଷ୍ଟି ହେଉଥିବାରୁ ବା ଏକ ଅଞ୍ଚଳର ସମସ୍ୟାକୁ ନେଇ ଗପ ରଚନା କରାଯାଉ ଥିବାରୁ ଏଥିରେ ଏକ ସ୍ୱତନ୍ତ୍ର କାହାଣୀ ସୃଷ୍ଟି କରାଯାଇ ଥାଏ । ଗାଳ୍ପିକ କାହାଣୀ ସୃଷ୍ଟି କରିବାରେ ସ୍ୱାଧୀନ । ଯେ କୌଣସି କାହାଣୀ କ୍ଷୁଦ୍ରଗଳ୍ପ ଭିତରେ କଳାତ୍ମକ ଭାବରେ ଆତ୍ମ-ପ୍ରକାଶ କରିଥାଏ ।

କ୍ଷୁଦ୍ରଗଳ୍ପର କାହାଣୀ କଳା ଏହାର ସୃଜନର ପ୍ରମୁଖ ଅଂଶୀଦାର, କାହାଣୀ ଗଳ୍ପ ସୃଜନର ପ୍ରଥମ ଓ ପ୍ରଧାନ ଭିତ୍ତିସ୍ତମ୍ଭ ।

## (ଖ) ଚରିତ୍ର—

କାହାଣୀକୁ ସଫଳ ଭାବରେ ଚିତ୍ରଣ କରିବା ପାଇଁ ଚରିତ୍ରର ଆବଶ୍ୟକତା ଅନୁଭୂତ ହୁଏ । ଚରିତ୍ର କାହାଣୀକୁ ଗତିଶୀଳ କରିବାର ମୁଖ୍ୟ ମାର୍ଗ । କ୍ଷୁଦ୍ରଗଳ୍ପ ଭିତରେ ବିଭିନ୍ନ ପ୍ରକାରର ଚରିତ୍ର ଦେଖାଯାଆନ୍ତି । ଗଳ୍ପ ସୃଷ୍ଟିର ପ୍ରଥମ ପର୍ବରେ ଯେତେବେଳେ ଗୋଟିଏ ବଳିଷ୍ଠ କାହାଣୀ ପ୍ରକାଶ ପାଉଥିଲା ସେତେବେଳେ ଅନେକ ଚରିତ୍ର ଦେଖା ଦେଉଥିଲେ । ମୁଖ୍ୟ ଚରିତ୍ର ଓ ଗୌଣ ଚରିତ୍ରମାନଙ୍କୁ ନେଇ କାହାଣୀ ସୃଷ୍ଟି ହେଉଥିଲା । ପ୍ରାଚୀନ କାହାଣୀମାନଙ୍କରେ ଈଶ୍ୱର ଈଶ୍ୱରୀ, ଯମଯମୀ, ଅପ୍ସରା, ଯକ୍ଷ ଆଦି ଚରିତ୍ରମାନେ ପରିଦୃଷ୍ଟ ହେଉଥିଲେ । ପରବର୍ତ୍ତୀ ସମୟରେ ଲୋକଗପର ଚରିତ୍ର ଯଥା ବାଘମାମୁଁ, ଜହ୍ନମାମୁଁ, ବୁଢ଼ୀଅସୁରୁଣୀ ଆଦି ଚରିତ୍ରମାନଙ୍କୁ କାହାଣୀ ଭିତରେ ଗ୍ରହଣ କରାଯାଇ ଥିଲା ।

ଗଳ୍ପ ସାହିତ୍ୟର ବିକାଶ ସହିତ ଚରିତ୍ର ପ୍ରଧାନ ଗଳ୍ପ ଲେଖିବା ଶୈଳୀର ବିକାଶ ହୋଇଛି । ଗୋଟିଏ ମୁଖ୍ୟ ଚରିତ୍ରକୁ ଗପର ଅବଲମ୍ବନ ଭାବରେ ଗ୍ରହଣ କରି ଗପ ସୃଷ୍ଟି ହୋଇଛି । ସମଗ୍ର କାହାଣୀରେ ଗୋଟିଏ ଚରିତ୍ରର ପ୍ରାଧାନ୍ୟ ଏପରି ଗପରେ ଦେଖାଯାଏ । 'ଆକାଶଦୀପ' 'ଗପର ରେଣୁ' 'ସୁରଭି' ହୁଅନ୍ତୁ ବା 'ନୀଳମାଷ୍ଟାଣୀ' ଗଳ୍ପର ନାମ ହୋଇ ଗୋଟିଏ ପ୍ରଧାନ ଚରିତ୍ରକୁ ଗୁରୁତ୍ୱ ଦେଇ କାହାଣୀ ଗଢ଼ କରିଥିଲେ, କାହାଣୀରେ ଚରିତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ଗୋଟିଏ ଚରିତ୍ର କାହାଣୀ ସୃଷ୍ଟି କରି ପାରନ୍ତି ।

ସାମ୍ପ୍ରତିକ କାହାଣୀକୁ ଲକ୍ଷ୍ୟକରି କ୍ଷୁଦ୍ରଗଳ୍ପରେ ଅନେକ ନୂତନ ଚରିତ୍ର ସୃଷ୍ଟି ହୋଇଛି । ମଣିଷର ସୂକ୍ଷ୍ମ ମାନସିକ ବୃତ୍ତିର ଆକର ଗଳ୍ପର ମାନସ କର୍ମ । ମଣିଷର ଅନ୍ତର୍ଜଗତକୁ ଆଲୋକିତ କରିବା କ୍ଷୁଦ୍ରଗଳ୍ପର ପ୍ରଧାନ କର୍ତ୍ତବ୍ୟରେ ପରିଗଣିତ ହେଉଛି । ମଣିଷର ମନଗହନର ସନ୍ଧାନ ପାଇଁ ସ୍ରଷ୍ଟା ବିଭିନ୍ନ ପ୍ରତୀକ ଓ ମିଥ୍ର ବ୍ୟବହାର କରୁଛି । ସେହି ଦୃଷ୍ଟିରୁ 'ନଚିକେତା' 'ଧର୍ମପଦ' 'ବାରୁଣୀ' 'ଚନ୍ଦ୍ରସେଣା' 'ପିଙ୍ଗଳା''ଶ୍ରୀରାଧା' 'ଚଣ୍ଡାଶୋକ' ନୂଆ ନୂଆ ଅର୍ଥରେ ନୂତନ ଅବତାର ଗ୍ରହଣ କରିଛନ୍ତି । ମାନବେତର ଚରିତ୍ରମାନଙ୍କର ବହୁଳ ବ୍ୟବହାର ମଣିଷର ପ୍ରବୃତ୍ତିଗତ ଚିତ୍ରଦେବା ପାଇଁ କରାଯାଉଛି । ବାଘ, ପେଚା, ହଂସ, ସାପ, ହାଇଦାବିଶ୍ୱଭିନ୍ନ ବିଭିନ୍ନ ପ୍ରବୃତ୍ତି ଓ ପରିବେଶରେ କ୍ଷୁଦ୍ରଗଳ୍ପରେ ବ୍ୟବହୃତ ହେଉଛନ୍ତି ।

ସ୍ଥିର ବସ୍ତୁରେ ଜୀବନ୍ୟାସ କରି ତାକୁ ଗୋଟିଏ ଚରିତ୍ରରେ ପରିଣତ କରିବାର କଳା ସାମ୍ପ୍ରତିକ କ୍ଷୁଦ୍ରଗଳ୍ପରେ ଦେଖାଯାଏ । ଏହି ଅର୍ଥରେ ଜନ୍ମଗ୍ରାମ ହସେ, ମହାନଦୀ ଫୁଲେଇ ହୁଏ । ଆକାଶରୁ ତାରାମାନେ ଗଙ୍ଗଶିଉଳି ଫୁଲପରି ଝଡ଼ି ପଡ଼ନ୍ତି । ଗୋଟିଏ ଦୃଶ୍ୟଚିତ୍ର ବା ସାମୂହିକ ଦୃଶ୍ୟବୋଧକୁ ଚରିତ୍ରରେ ରୂପାନ୍ତରିତ କରିବାର କଳା କ୍ଷୁଦ୍ରଗଳ୍ପରେ ନିହିତ । ପଙ୍ଗୁକୁ ଦୌଡ଼ାଇବା, ବଧିର ତୁଣ୍ଡରେ ବଂଶୀର ମଧୁର ମୂର୍ଚ୍ଛନା ସୃଷ୍ଟି କରିବାର ଦକ୍ଷତା କ୍ଷୁଦ୍ରଗଳ୍ପର ରହିଛି ।

ସାମ୍ପ୍ରତିକ କ୍ଷୁଦ୍ରଗଳ୍ପର ନିଜର ବୃହତ ପରିସର ଦୃଷ୍ଟିରୁ ଅନେକ ଚରିତ୍ର ସୃଷ୍ଟି କରିଛି । ଚରିତ୍ର କାହାଣୀର ମୁଖ୍ୟ ଅବଲମ୍ବନ ଭାବରେ ବ୍ୟବହୃତ ହେଉଛି ।

## (ଗ) ଶୈଳୀ –

କ୍ଷୁଦ୍ରଗଳ୍ପ ଆକର୍ଷଣୀୟ ହେବାର ପ୍ରଧାନ ହେତୁ ହେଉଛି ଏହାର ଶୈଳୀ । ପ୍ରତ୍ୟେକ ଲେଖକର ଏକ ସ୍ୱତନ୍ତ୍ର ଶୈଳୀ ଥାଏ । କ୍ଷୁଦ୍ରଗଳ୍ପର ନିଜସ୍ୱ ମହକ ଅଛି । ଯେ କେହି ଗପ ଲେଖି ଦେଇପାରେ; କିନ୍ତୁ ତାହା କ୍ଷୁଦ୍ରଗଳ୍ପ ହେବନାହିଁ । ଗୋଟିଏ କଥା ବା କାହାଣୀକୁ ସମସ୍ତେ ବର୍ଣ୍ଣନା କରି ପାରିବେ । ସମସ୍ତଙ୍କ ପାଖରେ ଜୀବନର

ଗୋଟିଏ ଗୋଟିଏ ନିଜସ୍ୱ ଅନୁଭୂତି ଥାଏ, ସେହି ଅନୁଭବକୁ ସିଧାସଳଖ ବ୍ୟାଖ୍ୟା କରାଯାଏ ନାହିଁ । ସିଧାସଳଖ ଭାବରେ ପ୍ରକାଶ କଲେ, ତାହା ବିବରଣୀରେ ବଦଳିଯାଏ, ସେହି କଥାକୁ ନିଜସ୍ୱ ବାକ୍ ରୀତିରେ ଶବ୍ଦ ସୃଜନ ଭିତରେ ଯିଏ ସଫଳ ଭାବରେ ପ୍ରକାଶ କରେ, ସେତେବେଳେ ତାହା ରସସିକ୍ତ କ୍ଷୁଦ୍ରଗଳ୍ପର ମର୍ଯ୍ୟାଦା ଲାଭକରେ ।

ଲେଖକର ଶୈଳୀ ସମ୍ପର୍କରେ E.L. Lucas ଙ୍କର 'Style' ପୁସ୍ତକରେ ପ୍ରକାଶ କରିଛନ୍ତି—"Style, I repeat, is a means by which a human being gains contact with others, it is personality clothed in words, character embodied in speech". ଷ୍ଟିଭେନସନ ମଧ୍ୟ ଗଳ୍ପକଳା ସମ୍ପର୍କରେ ନିଜର ମତ ପ୍ରକାଶ କରି କହିଛନ୍ତି—"There are so for as I know three ways only if writing a story. You may take a plot and fit characters to it or you may take characters, close Incident and situation to develop them or Lastly you may take certain atmosphere and get persons and action to realise". ? ଶୈଳୀକୁ ସମାଲୋଚକମାନେ ସର୍ବଦା ଗୁରୁତ୍ୱ ପ୍ରଦାନ କରି ଆସିଛନ୍ତି । ଗୋଟିଏ କ୍ଲାସିକ୍ ଗଳ୍ପ ସୃଷ୍ଟି ଗୋଟିଏ କ୍ଲାସିକ୍ ଶୈଳୀ ଉପରେ ନିର୍ଭର କରିଥାଏ । ଯେ କୌଣସି ସ୍ରଷ୍ଟାର ଶୈଳୀ ତା'ର ସୃଜନଶୀଳତାର ପରିଚାୟକ । କାହାଣୀର ଗୁରୁତ୍ୱ ଏହାର ପରିବେଷଣ ଯୋଗୁ ବୃଦ୍ଧି ପାଏ । ଭଲ ଉପସ୍ଥାପନା ଖରାପ କାହାଣୀକୁ ନେଇ ମଧ୍ୟ ଆବେଗାତ୍ମକ ଭାବରେ ସଫଳତାର ଶୀର୍ଷରେ ପହଞ୍ଚାଇ ଦେଇଥାଏ ।

ସାଂପ୍ରତିକ କ୍ଷୁଦ୍ରଗଳ୍ପକୁ ଶୈଳୀଟେ ଗଳ୍ପ କହିଲେ ଭୁଲ୍ ହେବନାହିଁ । ପରୀକ୍ଷାତ୍ମକ କ୍ଷୁଦ୍ରଗଳ୍ପରେ ବହୁଳ ପରୀକ୍ଷାଧର୍ମୀ ଶୈଳୀ ଦେଖାଯାଇଥାଏ । ଆଜିର ଗଳ୍ପର ଶୈଳୀ ସ୍ୱତନ୍ତ୍ର । ଏ ଗଳ୍ପସବୁ କାହାଣୀକୁ ତ୍ୟାଗ କରି ଶୈଳୀକୁ ଗୁରୁତ୍ୱ ଦେଇଥାଏ । ଉପଯୁକ୍ତ ଉପସ୍ଥାପନା ଓ ଭାବପ୍ରକରଣ 'ଏହାକୁ ଗଳ୍ପର ମର୍ଯ୍ୟାଦା ପ୍ରଦାନ କରିଥାଏ । କବିତାରେ ଯେପରି ଗୋଟିଏ ଅବାନ୍ତର ଶବ୍ଦ ସମଗ୍ର କବିତାର ସୌନ୍ଦର୍ଯ୍ୟ ହାନିକରେ । ଆଜିର ଓ ମିନିଗଳ୍ପମାନଙ୍କରେ ଗାଳ୍ପିକ ଏକ ମପା-ଚୁପା ପ୍ଲଟ, ସଙ୍କୁଚିତ ଅଥଚ ଭାବଗର୍ଭିତ ଶବ୍ଦ ବିନ୍ୟାସ କରିଥାଏ । କିପରି ଭାବରେ ଆରମ୍ଭ ଓ ଶେଷ କରିବ ତାହା ଗାଳ୍ପିକର ପାଣ୍ଡିତ୍ୱ ଓ ଅଭିଜ୍ଞତା ଉପରେ

ନିର୍ଭର କରିଥାଏ । ପରୀକ୍ଷାଧର୍ମୀ ଗଳ୍ପରେ ଶୈଳୀର ମହତ୍ତ୍ୱ ଅଧିକ । ଆଜିର ଗଳ୍ପ ଶୈଳୀର ଗଳ୍ପ (Story of Style) ଭାବରେ ଗ୍ରହଣ କରାଯିବ ।

କ୍ଷୁଦ୍ରଗଳ୍ପର ଆରମ୍ଭ ଆକସ୍ମିକତାରୁ ଉପସଂହାର ମଧ୍ୟ ଶୂନ୍ୟ ମଧ୍ୟରେ । ଏପରି ଆରମ୍ଭରେ ଉପସଂହାର ଓ ଉପସଂହାରରେ ଆରମ୍ଭକୁ ଧରି ରଖିବାପାଇଁ ଅସୀମ କଳାପଣ ଓ କାରିଗରୀ ସୃଜନଶୀଳତାର ଆବଶ୍ୟକତା ରହିଛି । ଏହି ଆବଶ୍ୟକତା ହିଁ ଶୈଳୀ ।

## (ଘ) ସ୍ଥାନ-କାଳ-ପାତ୍ର—

କ୍ଷୁଦ୍ରଗଳ୍ପ ସଂକ୍ଷିପ୍ତ ସମୟ ଓ ସଙ୍କୁଚିତ କଳେବର ମଧ୍ୟରେ ଆତ୍ମ ପ୍ରକାଶ କରିଥାଏ । ବର୍ଣ୍ଣିତ କାହାଣୀର ଧାରାବାହିକତା, ପ୍ରାଞ୍ଜଳତା ସର୍ବୋପରି ବୈଜ୍ଞାନିକ ସିଦ୍ଧାନ୍ତ ଏହାକୁ ସମୃଦ୍ଧ କରେ । ସତ୍ୟ ଯୁଗର ଗୋଟିଏ ଦୃଶ୍ୟ ସହ କଳିଯୁଗର ଅନ୍ତରବୋଧ ବା ଦୀର୍ଘ ବ୍ୟବଧାନର ବର୍ଣ୍ଣିତ କାହାଣୀ କ୍ଷୁଦ୍ରଗଳ୍ପ ଭିତରେ ଗ୍ରହଣୀୟ ନୁହେଁ । ସମସ୍ତ ସାହିତ୍ୟ ସ୍ଥାନର ସିଦ୍ଧାନ୍ତମୂଳକ ପରିବେଷଣ ଏହି ସୃଜନଶୀଳତାକୁ ସ୍ୱୀକୃତି ପ୍ରଦାନ କରିଥାଏ । କାହାଣୀ ଓ ପାତ୍ର ଚୟନରେ ପ୍ରାସଙ୍ଗିକତା କ୍ଷୁଦ୍ରଗଳ୍ପ ପାଇଁ ଜରୁରୀ; ଏହା ଜୀବନର ଏକ ସଂକ୍ଷିପ୍ତ ସ୍କେଚ । ଏଥିରେ ପୂର୍ଣ୍ଣ ଜୀବନ ପ୍ରକାଶ ପାଏନାହିଁ । ଗାଳ୍ପିକ ଗଳ୍ପ ନିର୍ମାଣରେ କାହାଣୀ ବର୍ଣ୍ଣନା ଓ ଚରିତ୍ର ଚୟନରେ ସମୟୋପଯୋଗୀ ମନନଶୀଳତାର ପ୍ରୟୋଗ କରି ଗଳ୍ପ ସୃଷ୍ଟି କରିଥାଏ ।

## (ଙ) କାବ୍ୟିକ ସୂଜନ—

କ୍ଷୁଦ୍ରଗଳ୍ପକୁ ଗଦ୍ୟ କବିତା ବା ଗଦ୍ୟଗୀତ Prose in Lyric କୁହା-ଯାଇଥାଏ । କ୍ଷୁଦ୍ରଗଳ୍ପରେ ଅନେକ ସମୟରେ କବିତ୍ୱ ପ୍ରକାଶ ପାଇଥାଏ ବା ଆବଶ୍ୟକ ହୋଇଥାଏ । କବିତ୍ୱ ଶବ୍ଦ ଓ ଆବେଗକୁ ପୁଞ୍ଜି କରି କ୍ଷୁଦ୍ରଗଳ୍ପ ସୃଷ୍ଟି ହୁଏ । ଗଳ୍ପରେ ସଂଳାପ ମାଧ୍ୟମରେ ଅନେକ ସମୟରେ କାହାଣୀକୁ ଗତି ପ୍ରଦାନ କରାଯାଇଥାଏ । ଏହି କାହାଣୀ ପାଇଁ ନିୟୋଜିତ ସଂଳାପ ସିଧାସଳଖ ଲେଖା-ଯାଇଥିବା କବିତା ପରି ଅନୁଭୂତ ହୁଏ । ଶବ୍ଦରେ ରହସ୍ୟ ରଖି ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଆଜିର କାହାଣୀର ଆଉ ଏକ ବୈଶିଷ୍ଟ୍ୟ, ମପାଚୁପା ଭାଷା, ବ୍ୟାକରଣ ବହିର୍ଭୂତ ବାକ୍ୟର ବିନ୍ୟାସ, ସର୍ବୋପରି ଲୋକକଥା, ଢଗଢମାଳି, ପ୍ରବାଦ ଓ ଲୋକ-ଗୀତକୁ ପୁଞ୍ଜିକରି ଚରିତ୍ରମାନଙ୍କ ମୁହଁରେ ସଂଳାପ ଦିଆଯାଇଥାଏ । ଗାଳ୍ପିକ ଭିତରେ ସୃଜନଶୀଳତା ନ ଥିଲେ ସେ କୌଣସି ଏକ ଅନୁଭବକୁ ସଫଳ ଭାବରେ ପ୍ରକାଶ କରି ପାରିବ ନାହିଁ । କାବ୍ୟିକ ସୃଜନଶୀଳତା କ୍ଷୁଦ୍ରଗଳ୍ପ ସୃଷ୍ଟି ପାଇଁ ଆବଶ୍ୟକ ।

## (ଚ) ସଂକ୍ଷିପ୍ତତା—

ସଂକ୍ଷିପ୍ତତା ପାଇଁ କ୍ଷୁଦ୍ରଗଳ୍ପ ସାହିତ୍ୟର ମନୋରମ କଳା ବିଭବ ରୂପେ ପ୍ରସିଦ୍ଧି ଲାଭ କରିଛି । ଆଧୁନିକ ଯନ୍ତ୍ର ଯୁଗରେ ମଣିଷର ସେଉଁଠି ସମୟ ନିଅଣ୍ଟ ଓ ଅମଙ୍ଗଳ ବୋଧକୁ ନେଇ ଗଢ଼ କରୁଛି ସେଇଠି ସେ କୌଣସି ବୃହତ ସାହିତ୍ୟ ପାଇଁ ସମୟ ନ ଦେବା ସ୍ୱାଭାବିକ । ଉପନ୍ୟାସରୁ ସେଇଥିପାଇଁ ଏହି ସଂକ୍ଷିପ୍ତ କଳା ବିଭାଗଟିର ଉତ୍ପତ୍ତି । କ୍ଷୁଦ୍ରଗଳ୍ପ ମଣିଷର ସମସ୍ତ ସଙ୍କଟ ପାଇଁ ଏକ ସାର୍ଥକ ମନୋରଞ୍ଜନ ସାମଗ୍ରୀ ରୂପେ ପରିଗୃହିତ । ଗାଳ୍ପିକ ସଂକ୍ଷିପ୍ତରେ ଗଳ୍ପ ରଚନା କରିବା ସମୟରେ ଏହାର ସଂକ୍ଷିପ୍ତ କଳେବର ପ୍ରତି ସଚେତନ ଥାଆନ୍ତି ।

କ୍ଷୁଦ୍ରଗଳ୍ପ ସୃଷ୍ଟି ପ୍ରକ୍ରିୟାରେ ଏଇସବୁ ଗଳ୍ପ ଉପାଦାନ ପ୍ରତି ଦୃଷ୍ଟିପାତ କରିବାକୁ ହୁଏ । ଏଇସବୁ ଉପାଦାନକୁ ନେଇ କ୍ଷୁଦ୍ରଗଳ୍ପ ସମୃଦ୍ଧ ହୋଇ ପାରିଛି ।

## କ୍ଷୁଦ୍ରଗଳ୍ପର ପ୍ରକାରଭେଦ—

ସୃଷ୍ଟିର ଅନାଦି କାଳରୁ ଗଳ୍ପ ତା'ର କାହାଣୀ ପେଡ଼ିରୁ ଅନେକ କାହାଣୀ ତା'ର କୃତିତ୍ୱ ଶ୍ରୋତାମାନଙ୍କୁ ଶୁଣାଇ ମୁଗ୍ଧ କରିଛି । ଲୋକକଥା ହେଉ କି ପକ୍ଷୀକଥା ବିଭିନ୍ନ ସମୟରେ ସାଧାରଣ ମଣିଷମାନଙ୍କର ମନୋରଞ୍ଜନ ପାଇଁ ଗପ ବିଧିବଦ୍ଧ ପ୍ରୟାସ କରିଛି । ଈଶ୍ୱର ଈଶ୍ୱରୀ, ରାଜାରାଣୀ, ରାଜକୁମାର ରାଜକୁମାରୀ ବା ସେହିପରି କିଛି ସାମନ୍ତୀୟ ଚରିତ୍ରମାନଙ୍କୁ ସାଧାରଣ ମଣିଷ ଆଗରେ ଗପ ମାଧ୍ୟମରେ ଉପସ୍ଥାପନ କରାଯାଉଥିଲା । ସେହିମାନଙ୍କର ମାନବୀୟ ଲୀଳା ବା ଆନନ୍ଦଦାୟକ ରୋମାଞ୍ଚକର କାର୍ଯ୍ୟକଳାପ ସାଧାରଣ ମଣିଷମାନଙ୍କ ନିକଟରେ ଗପ ଆକାରରେ ପହଞ୍ଚୁଥିଲା । ପ୍ରାଚୀନ ମଣିଷ ଯେତେବେଳେ ଯାଯାବର ଜୀବନ ଯାପନ କରୁଥିଲା ସେତେବେଳେ ଗଳ୍ପକୁ ନିଜର ଅବସର ବିନୋଦନ ଭାବରେ ଗ୍ରହଣ କରିଥିଲା, ପରେ ପରେ ସେ ଯେତେବେଳେ କୃଷିକାର୍ଯ୍ୟ ସମ୍ପାଦନ କଲା ସେତେବେଳେ ରାତିରେ ନିଶାଚରମାନଙ୍କ କବଳରୁ ତା'ର ଫସଲକୁ ରକ୍ଷା କରିବାକୁ ଯାଇ କ୍ଷେତ ଜଗିଲା । ରାତିଅନିଦ୍ରା କଟାଇବା ପାଇଁ ପରସ୍ପର କଥୋପକଥନ ମାଧ୍ୟମରେ ଗପ ସୃଷ୍ଟି କଲା । କୃଷିକ୍ଷେତ୍ରରୁ ଘରକୁ କୃଷିସାମଗ୍ରୀ ଆଣି କିଛିଦିନ ଆନନ୍ଦରେ ତାକୁ ଖାଇ ଗପସପରେ ଜୀବନ ବିତାଇବାର ପନ୍ଥା ଆଦିମାନବ ଗ୍ରହଣ କରି ନେଇଥିଲା ।

ଆଦିମାନବ ଠାରୁ ଆଧୁନିକ ମଣିଷଯାଏ ସବୁ ମଣିଷ ଶ୍ରବଣପ୍ରିୟ-ଅନୁକରଣ-ପ୍ରିୟ, ଆଜିର ମଣିଷ ଆଗରେ ପୃଥିବୀ ଆହୁରି ବିସ୍ତୃତ ହୋଇ ଯାଇଛି । ସେ ଆଉ ଯାଯାବର ଜୀବନ ଯାପନ ନ କରି କଂକ୍ରିଟ୍ କୋରଡ଼ ଭିତରେ ବନ୍ଦୀ ହୋଇ

ଯାଇଛି । ସେ ଅନ୍ୟ କାହାକୁ ସୁରକ୍ଷା ଦେବାକୁ ନୁହେଁ ବରଂ ସର୍ବଦା ନିଜର ସୁରକ୍ଷା ଖୋଜି ଚାଲିଛି ଚାହୁଁଛି । ଏ ପରିପ୍ରେକ୍ଷୀରେ ତା' ନିକଟରେ ଯମଯମୀ କାହାଣୀ, କଳୁଷୀ ବେଣ୍ଟିକଥାର ଗୁରୁତ୍ୱ କମିଯାଇଛି । ଆଧୁନିକ ମଣିଷ ଅଧା ସଇତାନ ଅଧା ଭଗବାନରେ ବଦଳି ଯାଇଛି । ଏ ପରିପ୍ରେକ୍ଷୀରେ କାହାଣୀ ପାଇଁ ବ୍ୟାପକ ମନଭୂମିର ସନ୍ଧାନ ମିଳିଯାଇଛି । ସାମ୍ପ୍ରତିକ ଗଳ୍ପକୁ ଅବବୋଧ ଭିତରେ ଗ୍ରହଣ କଲେ ଏହିପରି ଏକ ଧାରଣା ସୃଷ୍ଟି ହୋଇଥାଏ । ଏହି ବିବିଧା ବିଭକ୍ତ ଗଳ୍ପଗୁଡ଼ିକୁ ମାନବୀୟ ବିବିଧ ପ୍ରବୃତ୍ତି ସହ ଗ୍ରହଣ କରିଯାଇ ପାରେ ।

ଆଧୁନିକ ମଣିଷଟି ଯେମିତି ବ୍ୟାପକ ଓ ବୈଚିତ୍ର୍ୟମୟ ସାମ୍ପ୍ରତିକ କ୍ଷୁଦ୍ରଗଳ୍ପ ସାମ୍ପ୍ରତିକ ମଣିଷର ସ୍ୱରୂପ ପ୍ରକାଶ କରିବାରେ ସେହିପରି ପ୍ରୟାସ ଜାରି ରଖିଛି । ସମାଜରେ ଦେଖାଯାଉଥିବା ବିଭିନ୍ନ ପ୍ରକାରର ମଣିଷ ପରି କ୍ଷୁଦ୍ରଗଳ୍ପ ବିଭିନ୍ନ ପ୍ରକାରର । ନିମ୍ନରେ କ୍ଷୁଦ୍ରଗଳ୍ପକୁ ପ୍ରବୃତ୍ତି ଓ ପ୍ରୟୋଗ ଦୃଷ୍ଟିରୁ ଏହାର ସୁଦୀର୍ଘ ଇତିହାସ ଅବଲମ୍ବନରେ ଆଲୋଚନା କରିବା ।

## (କ) କାହାଣୀପ୍ରଧାନ ଗଳ୍ପ—

କାହାଣୀପ୍ରଧାନ ଗପରେ କାହାଣୀ କଳାର ପୂର୍ଣ୍ଣ ପ୍ରୟୋଗ ଦେଖିବାକୁ ମିଳିଥାଏ । ଗପରେ ଗାଳ୍ପିକ ଏକ ସୁସ୍ପଷ୍ଟ କାହାଣୀ ପ୍ରକାଶ କରିଥାଏ । ପ୍ରାଚୀନ ଲୋକକଳା ପରମ୍ପରାରେ ଯେଉଁ କାହାଣୀମାନ ପ୍ରକାଶ ପାଇଥିଲା, ତା'ର ପାଠକୀୟ ପ୍ରଶସ୍ତିକୁ ଲକ୍ଷ୍ୟରଖି ଗାଳ୍ପିକମାନେ ପରବର୍ତ୍ତୀ ସମୟରେ ଗଳ୍ପମାନଙ୍କରେ କାହାଣୀ ଭାଗକୁ ଦୃଢ଼ କରିବାର ପ୍ରୟାସ ନେଇଥିଲେ । କାହାଣୀ ଗଳ୍ପକୁ ସୁଦୃଢ଼ କରେ ।

ଯେ କୌଣସି ଭାଷାର ପ୍ରଥମ ଗଳ୍ପ ରଚନା କାହାଣୀପ୍ରଧାନ । ଏହି କାହାଣୀରେ ପ୍ରଥମେ ସର୍ବଜନ ବିଶ୍ୱାସବୋଧ କାହାଣୀ ପ୍ରକାଶ ପାଇଥିବ । ଗୀତାରେ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ବା ମହାଭାରତରେ ପାଣ୍ଡବମାନଙ୍କ ପକ୍ଷରେ ଯେଉଁ କାହାଣୀ ପ୍ରକାଶ ପାଇଛି ତା'ର ଭାରତୀୟ ଆବେଦନ ଅଛି । ସମଗ୍ର ଭାରତବାସୀଙ୍କ ଏ କାହାଣୀ ଗ୍ରହଣୀୟ ହୋଇଥାଏ । ବାଇବେଲରେ ଯୀଶୁଙ୍କୁ ନେଇ କାହାଣୀ ବା କୋରାନରେ ମହମ୍ମଦଙ୍କ ସମ୍ପର୍କୀୟ ବର୍ଣ୍ଣନା ଓ ଧର୍ମଦୂତ ଗାବ୍ରିଏଲଙ୍କ ପରମେଶ୍ୱରଙ୍କ ସମ୍ପର୍କୀୟ ତତ୍ତ୍ୱ ବ୍ୟାଖ୍ୟାନକୁ ନେଇ ଅନେକ କାହାଣୀ ସୃଷ୍ଟି ହୋଇଛି । ପ୍ରଚଳିତ ଲୋକବିଶ୍ୱାସ ଓ ଲୋକକଥା କାହାଣୀପ୍ରଧାନ ଗପ ରଚନା କରିବାରେ ବିଶେଷ ସହାୟକ ହୋଇଛନ୍ତି ।

କ୍ଷୁଦ୍ରଗଳ୍ପର ସୁଦୀର୍ଘ ଇତିହାସକୁ ଅବଲମ୍ବନ କଲେ ଜଣାଯାଏ ପ୍ରଥମେ କାହାଣୀପ୍ରଧାନ ଗପରୁ ସୃଷ୍ଟି ହୋଇଛି ଯେ କୌଣସି ଭାଷାର ଗଳ୍ପ ସାହିତ୍ୟ । ଓଡ଼ିଆ ଗଳ୍ପ ସାହିତ୍ୟରେ ଫକୀରମୋହନଙ୍କ 'ରେବତୀ' ଗଳ୍ପକୁ ନିଆଯାଇପାରେ ! ଉତ୍କଳ ସାହିତ୍ୟରେ ଏ ଗପ ପ୍ରକାଶ ପାଇଲା ପରେ ପ୍ରଥମେ ଉତ୍କଳର ପାଠୁଆ ପାଠକ ପରେ ପରେ ସବୁଶ୍ରେଣୀର ଶ୍ରୋତାମାନଙ୍କ ପାଇଁ ଆଲୋଚନାର ବିଷୟ ପାଲଟି ଯାଇଥିଲା । ଶ୍ୟାମବନ୍ଧୁଙ୍କର କନ୍ୟା 'ରେବତୀ' ଶ୍ୟାମବନ୍ଧୁ ଗ୍ରାମର ଜଣେ ଥିଲାବାଲା ସଚେତନ ମଣିଷ । ନାରୀଶିକ୍ଷାର ପ୍ରସାର ପାଇଁ ବିଶେଷ କରି ଝିଅପିଲାଙ୍କ ପାଠ ପଢ଼ିବାକୁ ଆଧାର କରି ଫକୀରମୋହନ ଓ ଶ୍ୟାମବନ୍ଧୁ ଦୁହେଁ ସଫଳ ପ୍ରୟାସ କରିଛନ୍ତି । ରେବତୀର ପାଠପଢ଼ା ପାଲଟି ଯାଇଛି ଗପର ମୁଖ୍ୟ ପ୍ଲଟ୍ । ପରବର୍ତ୍ତୀ ବର୍ଣ୍ଣନାମାନଙ୍କରେ ରେବତୀର ପ୍ରେମକୁ ପାଠପଢ଼ା ସହ ଓ ପରିବାରର ଦୁର୍ଦ୍ଦଶାକୁ ପାଠପଢ଼ା ସହ ଯୋଡ଼ି ଦିଆଯାଇଛି । ଗୋଟିଏ ମୁଖ୍ୟ କାହାଣୀକୁ ବୃଦ୍ଧିମନ୍ତ କରିବା ପାଇଁ ଆଉ ଦୁଇଟି ପାର୍ଶ୍ୱ ଘଟଣାର ବର୍ଣ୍ଣନା ଦିଆଯାଇଛି । କାହାଣୀ ଭାଗର ଗୁରୁତ୍ୱ ତଳ୍ପରେ ବୃଦ୍ଧି ପାଇଥିବାରୁ ସମଗ୍ର ଗପ ଆଜିଯାଏ ପାଠକୀୟ ତୃଷ୍ଣା ମୋଚନ କରି ପାରୁଛି ।

କାହାଣୀପ୍ରଧାନ ଗପମାନଙ୍କରେ କାହାଣୀର ଗୁରୁତ୍ୱକୁ ଗ୍ରହଣ କରାଯାଇ ଥାଏ । ଓଡ଼ିଆ ଗଳ୍ପ ସାହିତ୍ୟର ପ୍ରାରମ୍ଭିକ ପର୍ଯ୍ୟାୟରେ ଏହିପରି ଅନେକ ଗପ ସୃଷ୍ଟି ହୋଇଛି ।

## (ଖ) ଚରିତ୍ରପ୍ରଧାନ ଗପ—

କାହାଣୀ ଭାଗ ଭିତରେ ଗୋଟିଏ ମୁଖ୍ୟ ଚରିତ୍ରକୁ ଭିତ୍ତିକରି କାହାଣୀ ବର୍ଣ୍ଣିତ ହେଲେ ତାକୁ ଚରିତ୍ରପ୍ରଧାନ ଗପ କୁହାଯାଏ । ସମ୍ପୂର୍ଣ୍ଣ ଗପ ଭିତରେ ଯାହା ଘଟଣା ଘଟିଥାଏ ବା ଘଟୁଥାଏ ତାହାକୁ ଉକ୍ତ ଚରିତ୍ର ନିୟନ୍ତ୍ରଣ କରିଥାଏ । ସମଗ୍ର କାହାଣୀର ଆରମ୍ଭରୁ କ୍ଲାଇମାକ୍ସ ପର୍ଯ୍ୟନ୍ତ ଉକ୍ତ ଚରିତ୍ର ପ୍ରାଧାନ୍ୟ ବିସ୍ତାର କରିଥାଏ । ନାୟକ ବା ନାୟିକା ନାମରେ ଅନେକ ଗଳ୍ପ ରଚନା କରାଯାଇ ଥାଏ । ଉକ୍ତ ଗଳ୍ପଗୁଡ଼ିକୁ ଚରିତ୍ରପ୍ରଧାନ ଗପ ରୂପେ ବିବେଚନା କରାଯାଇ ପାରିବ । ଓଡ଼ିଆ କଥା ସାହିତ୍ୟରେ ନୀଳମାଷ୍ଟ୍ରାଣୀ ଗଳ୍ପଟି ଏହି ପର୍ଯ୍ୟାୟର । ଅନେକ ଗପରେ ମୁଖ୍ୟ ଓ ଗୌଣ ଚରିତ୍ର ଭାବରେ ଅନେକ ଚରିତ୍ର ଆତ୍ମପ୍ରକାଶ କରିଥାଆନ୍ତି । ଗପକୁ ଗଢ଼ିଦେବା ପାଇଁ ବହୁଳ ଚରିତ୍ର ବ୍ୟବହୃତ ହୋଇ ଥାଆନ୍ତି । ଏଭଳି ଗଳ୍ପମାନଙ୍କରେ ସାଧାରଣତଃ କ୍ଷୁଦ୍ରଗଳ୍ପର ଭାବଧର୍ମ ନଷ୍ଟ ହୋଇଥାଏ । ସଫଳ ଗାଳ୍ପିକ ଚରିତ୍ରପ୍ରଧାନ ଗପରେ କେବଳ ସ୍ୱ ଚରିତ୍ର ଭାବରେ ଗୋଟିଏ ଚରିତ୍ର ନିର୍ବାଚିତ କରେ ଓ ସେଥିରେ ସମସ୍ତ ସୌନ୍ଦର୍ଯ୍ୟ ସୃଷ୍ଟି କରିବାରେ ସମର୍ଥ ହୋଇଥାଏ ।

## (ଗ) ଭାବ ଓ ଆବେଗ ସମ୍ବଳିତ ଗପ—

ମଣିଷର ଆବେଗ ପହିଁ ଏକନିଷ୍ଠ ହୋଇ ଅନେକ ଗପ ସୃଷ୍ଟି ହୋଇଥାଏ । କ୍ଷୁଦ୍ର ଗଳ୍ପର କ୍ଷୁଦ୍ର ପରିସର ମଧ୍ୟରେ ଶବ୍ଦକୁ ସାଥିକରି ଭାବମୟ ପରିବେଶ ଭିତରେ ଆବେଗାତ୍ମକ ବର୍ଣ୍ଣନା ପ୍ରକାଶ କରିବା ଏହିକୁ ଗଳ୍ପର କଳାଧର୍ମ ।

ଗାଳ୍ପିକ ମନୋଜ ଦାସଙ୍କ 'ଶେଷବସନ୍ତର ଚିଠି'କୁ ବିଚାର କରାଯାଉ । ବାଲ୍‌କୋନିରେ ଠିଆହୋଇ ପୋଷ୍ଟପିଅନ ଠାରୁ ଚିଠିପାଇଁ ପ୍ରତୀକ୍ଷା କରିଥିବା ଝିଅଟିର ଆବେଗ ସହ ଯେ କୌଣସି ପାଠକ ଏକ ଭାବାତ୍ମକ ପରିବେଶରେ ଏକାତ୍ମ ହୋଇଯାଏ । ପୁଣି ଯେତେବେଳେ ପାଠକ ଜାଣିପାରେ ଯେ ତା' ମା' ଆଉ ବଞ୍ଚିନାହିଁ, ଆରପାରିକୁ ଚାଲିଗଲାଣି । ସେତେବେଳେ ନିରୀହ ଝିଅଟିର ନୀରବ ପ୍ରତୀକ୍ଷାକୁ ତା'ର ନିରର୍ଥକ ଆବେଗ ଭିତରେ ପାଠକ କିଛୁକ୍ଷଣ ସ୍ତବ୍ଧ ହୋଇଯାଏ । ଆବେଗଧର୍ମୀ ଗଳ୍ପରେ ପାଠକ ଚରିତ୍ର ସହ ଏକାଠି ହୋଇଯାଏ । ଘଟଣାଗୁଡ଼ିକୁ ନେଇ ସେ ଅନୁଭବ କରେ, ଯେମିତି ଏସବୁ ଘଟଣା ତା' ଜୀବନରେ ଘଟିଯାଉଛି । କ୍ଷମତାସମ୍ପନ୍ନ ସ୍ରଷ୍ଟାମାନେ ହିଁ ଏ ପ୍ରକାର ଗପ ସୃଷ୍ଟି କରିଥାଆନ୍ତି । ଓଡ଼ିଆ ଗପ ସାହିତ୍ୟରେ ମହାପାତ୍ର ନୀଳମଣି ସାହୁ, ବୀଣାପାଣି ମହାନ୍ତିଙ୍କୁ ଏ ଦୃଷ୍ଟିକୋଣରୁ ଗ୍ରହଣ କରାଯାଇ ପାରିବ ।

## (ଘ) ଘଟଣାପ୍ରଧାନ ଗପ –

ଘଟଣାପ୍ରଧାନ ଗପମାନଙ୍କରେ ଗୋଟିଏ ମୁଖ୍ୟ ଘଟଣା ସହ ଏକାଧିକ ଘଟଣାର ସମନ୍ୱୟ ଦେଖାଯାଏ । ଚରିତ୍ର ଗୋଟିଏ ସମସ୍ୟାରୁ ମୁକ୍ତିଲାଭ ଅନ୍ୟ ଦିଗରେ ଗତି କରୁଥିବାବେଳେ ବା ଗୋଟିଏ ମୁଖ୍ୟ ଲକ୍ଷ୍ୟରେ ଧାବିତ ହେଉଥିବାବେଳେ ସେଥିରେ ଅନ୍ୟ ଘଟଣାମାନ ଦେଖା ଦିଅନ୍ତି ।

ମହାପାତ୍ର ନୀଳମଣି ସାହୁଙ୍କ 'ଅନ୍ଧ ଗଳିର ସୂର୍ଯ୍ୟ' ଗପଟି ଏ ଦିଗରୁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଅର୍ଥସଙ୍କଟ ଭିତରେ ବଡ଼ ପରିବାର ନେଇ ବାସ କରୁଥିବା ନଗର ଜୀବନ ତା' ସହିତ ବଜାର ଦର ଏବଂ କ୍ଷୀରସାଗର ବେଶ୍ୟାର ଲାଳସା ଭିତରେ ମଣିଷର ଅନ୍ତଃପ୍ରବୃତ୍ତି ସହ ବହିଃପ୍ରବୃତ୍ତିର ସଫଳ ଚିତ୍ରଣ ଗାଳ୍ପିକ ପ୍ରକାଶ କରିଛନ୍ତି । ଗଳନାୟକ ବଜାର କରିବା ଲକ୍ଷ୍ୟରେ ବାହାରି ବିଭିନ୍ନ ସମସ୍ୟାରେ ନିଜକୁ ଜଡ଼ିତ କରିଛି । ଏଠାରେ ବଜାର କରିବା ଗୋଟିଏ ମୁଖ୍ୟ ଘଟଣା ତାହା ବଜାର ଦର, କ୍ଷୀରସାଗର ବେଶ୍ୟା, ବାତୁଡ଼ି ଓ ବାତ୍ୟା ପ୍ରସଙ୍ଗ ଭିନ୍ନ ଭିନ୍ନ ଘଟଣା ରୂପେ ସ୍ଥାନ ପାଇଛନ୍ତି ।

ମନୋଜ ଦାସଙ୍କ 'ଓଟ' ଗପ ମଧ୍ୟ ଏ ଦୃଷ୍ଟିରୁ ପ୍ରଣିଧାନଯୋଗ୍ୟ । ଓଟ ଗପରେ ଅନେକ ଘଟଣା ଏକଥ ପ୍ରକାଶ ପାଇଛି । ଶ୍ରୀଯୁକ୍ତ ଦାସ ସ୍ୱାଧୀନତାକୁ କେନ୍ଦ୍ର-ବିନ୍ଦୁ ଭାବରେ ଗ୍ରହଣ କରି ପ୍ରାକ୍ ସ୍ୱାଧୀନତା ସଂଗ୍ରାମ ଓ ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ଶାସନ ବ୍ୟବସ୍ଥା ଭିତରେ ମନୋଜ୍ଞ ବିବୋଧାଭାସକୁ ବର୍ଣ୍ଣନା କରିଛନ୍ତି । ସତ୍ୟ ଓ କର୍ମଠ ଜାତିପ୍ରେମ କପଟ ପରବର୍ତ୍ତୀ ସମୟରେ ବିକଟ ଓ ବୀଭତ୍ସ ରାଜନୀତିରେ ରୂପାନ୍ତରିତ ହୋଇଛି ତାହାର ବିଭିନ୍ନ ଦୃଷ୍ଟାନ୍ତ ମାଧ୍ୟମରେ ଏଥିରେ ବର୍ଣ୍ଣନା କରାଯାଇଛି । ଅତୀତ-ବର୍ତ୍ତମାନ ଓ ଭବିଷ୍ୟତର ପ୍ରତୀକଧର୍ମୀ ଭାବରେ ବାପା-ପୁଅ-ନାତି କେହି କାହାକୁ ଆଦର୍ଶଗତ ବ୍ୟବଧାନ ହେତୁ ବୁଝିବାରେ ସକ୍ଷମ ହୋଇ ନାହାନ୍ତି । ମନୋଜ ଦାସଙ୍କ ଉକ୍ତ ଗପକୁ ଘଟଣାପ୍ରଧାନ ଗପର ସଫଳ ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇ ପାରିବ ।

ଓଡ଼ିଆ ଗଳ୍ପ ସାହିତ୍ୟରେ ଅନେକ ଘଟଣାପ୍ରଧାନ ଗପ ସୃଷ୍ଟି ହୋଇଛି । ସୁରେନ୍ଦ୍ର ମହାନ୍ତିଙ୍କ 'ପତାକା ଉତ୍ତୋଳନ' ଗୋପୀନାଥ ମହାନ୍ତିଙ୍କ 'ବାବୁ' ଗପକୁ ମଧ୍ୟ ଏହାର ବୈଚିତ୍ର୍ୟ ଦୃଷ୍ଟିରୁ ଗ୍ରହଣ କରାଯାଇ ପାରିବ । ଘଟଣାପ୍ରଧାନ ଗପରେ ଶିଳ୍ପୀର ଗଳ୍ପଗ୍ରନ୍ଥନ ଶୈଳୀ ଓ ଭାବ ବିନ୍ୟାସର ସ୍ୱତନ୍ତ୍ରତା ଜାଣି ହୋଇଥାଏ ।

## (ଙ) ସାମାଜିକ ଗପ --

ସମାଜ-ସାହିତ୍ୟ-ମଣିଷ ପରସ୍ପର ପରିପୂରକ । ସମାଜରେ ଘଟୁଥିବା ନାନା-ବିଧ ଘଟଣା ସୃଜନଶୀଳ ମଣିଷ ମାଧ୍ୟମରେ ସାହିତ୍ୟରେ ରୂପ ପାଏ । ଜଣେ ଅନ୍ୟ ଜଣଙ୍କୁ ଗ୍ରହଣ କରି ସମୃଦ୍ଧ ହୋଇଥାଏ । ସାମାଜିକ ଆବଶ୍ୟକତାରୁ କ୍ଷୁଦ୍ରଗଳ୍ପର ସୃଷ୍ଟି । କ୍ଷୁଦ୍ରଗଳ୍ପ ବ୍ୟକ୍ତି ଜୀବନର ବର୍ଣ୍ଣନାକାରୀ, କ୍ଷୁଦ୍ରଗଳ୍ପରେ ମଣିଷ ଜୀବନର ଆଂଶିକ ଅନୁଭବବୋଧ ଓ ମହନୀୟତାକୁ ପ୍ରକାଶ କରାଯାଇଥାଏ । ଅନେକ ଖଣ୍ଡିତ ଆବେଗ ଭିତରୁ ଯେମିତି ଏକ ପରିପୂର୍ଣ୍ଣ ଇଚ୍ଛାଶକ୍ତି ସୃଷ୍ଟି ହୋଇଥାଏ, ସେମିତି ଅନେକ କ୍ଷୁଦ୍ରଗଳ୍ପ ଭିତରୁ କ୍ଷଣଭଙ୍ଗୁର ଜୀବନକୁ ଅନୁଭବ କରିହୁଏ ।

କ୍ଷୁଦ୍ରଗଳ୍ପର ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯିବ କ୍ଷୁଦ୍ରଗଳ୍ପର ସମସ୍ତ ସୃଷ୍ଟି ପ୍ରାୟତଃ ସମାଜକେନ୍ଦ୍ରିକ । ଇତିହାସଭିତ୍ତିକ ଗଳ୍ପ ହେଉ କି ପୁରାଣ ଭିତ୍ତିକ ସମାଜ ଛଡ଼ା ପୁରାଣ ଓ ଇତିହାସ ସଂଘଟିତ ହେବାର କୌଣସି ସ୍ଥାନ ନାହିଁ ଏକଥା ସ୍ୱୀକାର୍ଯ୍ୟ । କିନ୍ତୁ ଏପରି କେତେକ ଗପ ଅଛି ଯାହା ସାମାଜିକ ସମସ୍ୟା ଓ ଜୀବନବୋଧକୁ ସୃଷ୍ଟି କରି ପ୍ରକାଶିତ ହୋଇଥାଆନ୍ତି । ଗୋଟିଏ ସମସ୍ତର ସମାଜ ବ୍ୟବସ୍ଥା, ବ୍ୟକ୍ତି ଜୀବନ, ଗୋଷ୍ଠୀଗତ ସମସ୍ୟା, ଧର୍ମ ସମସ୍ୟା, ଖାଦ୍ୟ ସମସ୍ୟା, ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଆଦି ଗଳ୍ପର ପ୍ଲଟ୍ ଭାବରେ ବ୍ୟବହୃତ ହୋଇଥାଆନ୍ତି ।

ଓଡ଼ିଆ ସାହିତ୍ୟର ପ୍ରଥମ ଗପ 'ରେବତୀ' ଠାରୁ ଆରମ୍ଭ କରି ଫକୀରମୋହନଙ୍କ ସମସ୍ତ କ୍ଷୁଦ୍ର ଗଳ୍ପରେ ସାମାଜିକ ସ୍ପନ୍ଦନ ପ୍ରକାଶ ପାଇଛି । 'ରାଣ୍ଡୀପୁଅ ଅନନ୍ତା' 'ଧୂଳିଆବାବା' 'ସଭ୍ୟଜମିଦାର' 'ପାଠୋଇ ବୋହୂ' 'ମାଧମହାନ୍ତିଙ୍କ କନ୍ୟାସୁନା' 'ପେଟେଣ୍ଟମେଡିସିନ୍' ଆଦି ଗଳ୍ପରେ ଫକୀରମୋହନଙ୍କ ଏହି ହୃଷ୍ଟପୁଷ୍ଟ ସାମାଜିକ ଆବେଦନକୁ ଦେଖିହୁଏ । ପରବର୍ତ୍ତୀ ସମୟରେ ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ସଚ୍ଚିଦାନନ୍ଦ ରାଉତରାୟ ପ୍ରମୁଖ ଓଡ଼ିଆ ଗଳ୍ପ ସାହିତ୍ୟରେ ସାର୍ଥକ ସମାଜ ଅବଲମ୍ବି ଗଳ୍ପ ସୃଷ୍ଟି କରିବାରେ ସକ୍ଷମ ହୋଇଛନ୍ତି ।

## (ଚ) ଇତିହାସଭିତ୍ତିକ ଗପ—

ଇତିହାସକୁ ପଞ୍ଜର ଭାବରେ ଗ୍ରହଣ କରି ଯେଉଁ ଗପ ସୃଷ୍ଟି କରାଯାଏ ତାହାକୁ ଇତିହାସଭିତ୍ତିକ କ୍ଷୁଦ୍ର ଗଳ୍ପ କହନ୍ତି । ସାମ୍ପ୍ରତିକ ସମୟରେ ଇତିହାସର ଚରିତ୍ର ଓ ଘଟଣାମାନଙ୍କୁ ମିଥ୍ ଭାବ ଧର୍ମରେ ପ୍ରକାଶ କରାଯାଉଛି । ଇତିହାସର ଅନ୍ତଃସ୍ୱର ସହ ସାମ୍ପ୍ରତିକ ସମସ୍ୟାକୁ ଏକାତ୍ମ କରି ଅନେକ ଗପ ରଚନା କରାଯାଉଛି । ଅନ୍ୟ କେତେକ ଗପରେ ଇତିହାସର କାହାଣୀକୁ ବର୍ଣ୍ଣନା କରି ଇତିହାସଭିତ୍ତିକ ଗଳ୍ପ ସୃଷ୍ଟି କରାଯାଉଛି ।

ଇତିହାସକୁ ପ୍ଲଟ୍ ଭାବରେ ନେଇ ଫକୀରମୋହନ ପ୍ରଥମେ 'କମଳପ୍ରସାଦ ଗୋରାପ' ଓ 'କାଳିକାପ୍ରସାଦ ଗୋରାପ' ନାମକ ଦୁଇଟି ଗପ ରଚନା କରିଥିଲେ । ଉତ୍କଳର ନୌବାଣିଜ୍ୟ, ବାଲେଶ୍ୱରର ଜାହାଜ ବେପାର ସମ୍ପର୍କୀୟ ଧାରଣା ଓ ଜଳଦସ୍ୟୁମାନଙ୍କର ଲୁଣ୍ଠନକୁ ଏଥିରେ ସେ ପ୍ରକାଶ କରିଛନ୍ତି । ଫକୀରମୋହନ ଏଥିରେ ଗଳ୍ପକଳାକୁ ଗୁରୁତ୍ୱ ନ ଦେଇ ଏଥିରେ ତଥ୍ୟ ପ୍ରଦାନ କରି ଏହାକୁ ପ୍ରବନ୍ଧ ସାହିତ୍ୟର ନିକଟବର୍ତ୍ତୀ କରାଇଛନ୍ତି ।

ଓଡ଼ିଆ ସାହିତ୍ୟରେ ଇତିହାସକୁ ଆଧାର କରି ଗପ ରଚନା କରିବାରେ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ଅନ୍ୟତମ । 'ପିତା ଓ ପୁତ୍ର' 'କିମ୍ବଦନ୍ତୀକା' 'ଯଦୁବଂଶ' ଆଦି ଗପରେ ସୁରେନ୍ଦ୍ରୀୟ ପ୍ରତିଭାର ପରିଚୟ ମିଳିଥାଏ । ସମଗ୍ର ଭାଗବତର ଭାବବସ୍ତୁ ଗ୍ରହଣ କରି ଶ୍ରୀଯୁକ୍ତ ମହାନ୍ତି ଯଦୁବଂଶ ଗପରେ କୋଳିଆ ଭୟଠାରୁ ଆରମ୍ଭ କରି କାଦମ୍ବରୀ ରସପାନ କରି ପ୍ରମତ୍ତ ଯଦୁବଂଶର ବୀଭତ୍ସତାକୁ ବର୍ଣ୍ଣନା କରିଛନ୍ତି । 'ପିତା ଓ ପୁତ୍ର' ଗପରେ ମାନବିକତାର ସଞ୍ଚାର କରିବାକୁ ଶ୍ରୀଯୁକ୍ତ ମହାନ୍ତି ଯେଉଁ ବ୍ୟାକୁଳ ପ୍ରୟାସ କରିଛନ୍ତି ତାହା ଇତିହାସର ପରିସର ଭିତରେ ସାମ୍ପ୍ରତିକ ଅନ୍ତବବୋଧ (ପିତାପୁତ୍ର ସମ୍ପର୍କ)କୁ ଅଧିକ ଆଲୋକିତ କରୁଛି । ଏହା ହିଁ ଐତିହାସିକ ଗଳ୍ପର ସାଫଲ୍ୟ ।

ଓଡ଼ିଆ ଗଳ୍ପ ସାହିତ୍ୟରେ ରାଜକିଶୋର ରାୟ କେତୋଟି ଇତିହାସଭିତ୍ତିକ ଗଳ୍ପ ରଚନା କରିଛନ୍ତି । ସମ୍ପ୍ରତି ଶାନ୍ତିବଳଙ୍କ ସୃଜନରେ ଅନେକ ଇତିହାସ-ଭିତ୍ତିକ ଗଳ୍ପ ସୃଷ୍ଟି ହୋଇ ପାରିଛି ।

## (ଛ) ପୌରାଣିକ ଗଳ୍ପ—

ଓଡ଼ିଆ ସାହିତ୍ୟରେ ପୌରାଣିକ ଗଳ୍ପର ପରମ୍ପରା ଏତେ ସମୃଦ୍ଧ ନୁହେଁ । ପୁରାଣର କୌଣସି କାହାଣୀ ବା ଚରିତ୍ରକୁ ନେଇ ଗଳ୍ପ ସୃଷ୍ଟି କରିବାର ନିଷ୍ଠାପର ପ୍ରୟାସ ଏଯାବତ୍ ଦେଖାଯାଏ ନାହିଁ । ପୁରାଣର କେତୋଟି ଆସ୍ଥାବାନ୍ ଚରିତ୍ର ମିଥ୍ ମାଧ୍ୟମରେ ଆଧୁନିକ ମଣିଷର କଥା କହିବାରେ ବ୍ୟବହୃତ ହୋଇଛନ୍ତି; କିନ୍ତୁ ଏହା ସନ୍ତୋଷ ଜନକ ନୁହେଁ । ପୁରାଣ ଆଧୁନିକ କ୍ଷୁଦ୍ର ଗଳ୍ପରେ ଗୋଟିଏ ପ୍ଲଟ୍ (plot) ନୁହେଁ ବରଂ ଚେତନା (concept) ଭାବରେ ବ୍ୟବହୃତ ହେଉଛି । ଗାଳ୍ପିକ ଅସିତ କବିଙ୍କର 'ରକ୍ତର ବିଳାପ' ଓ ସୁରେନ୍ଦ୍ର ମହାନ୍ତିଙ୍କର 'ଶ୍ରୀକୃଷ୍ଣଙ୍କ ହସ' 'ମଧୁମକ୍ଷିର ରାତ୍ରି' ଗଳ୍ପ ପୁରାଣ ପରମ୍ପରାରେ ସମୃଦ୍ଧ । ଓଡ଼ିଆ ଗାଳ୍ପିକମାନେ ପୁରାଣକୁ ପ୍ଲଟ୍ ଭାବରେ ଗ୍ରହଣ କରି ଅଧିକ ଗଳ୍ପ ସୃଷ୍ଟିକରି ଏ ବିଭାଗକୁ ସମୃଦ୍ଧ କରିବା ଉଚିତ ।

## (ଜ) ରାଜନୀତିଭିତ୍ତିକ ଗଳ୍ପ—

ରାଜନୈତିକ ଶାସନ ବ୍ୟବସ୍ଥା, ରାଜନୈତିକ ଚେତନା ଦ୍ୱାରା ଆପ୍ଲୁତ କୌଣସି କାହାଣୀ ଗଳ୍ପ ଆକାରରେ ଆତ୍ମପ୍ରକାଶ କଲେ ତାହାକୁ ରାଜନୀତିଭିତ୍ତିକ ଗଳ୍ପର ମର୍ଯ୍ୟାଦା ଦିଆଯାଏ । ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଏବଂ ପରେ ଅନେକ ରାଜନୈତିକ ସଂଘର୍ଷ, ମୁକ୍ତିବିପ୍ଳବ, ରାଜନୈତିକ ଚକ୍ରାଧାରା ଓ ଯୁଗ ପ୍ରବର୍ତ୍ତିକମାନଙ୍କ ଦ୍ୱାରା ସମାଜ ନିୟନ୍ତ୍ରିତ ହୋଇଛି । ମୁକ୍ତିବିପ୍ଳବର କଥା ହେଉ ବା ପରାଧୀନ ଭାରତର ବାସ୍ତବବାଦୀ ସମସ୍ୟା ହେଉ ରାଜନୀତିକୁ ଆଶ୍ରା କରି ଏସବୁ ସମସ୍ୟା ମୁଣ୍ଡ ଟେକିଛି ।

ଅନେକ କ୍ଷୁଦ୍ର ଗଳ୍ପରେ ସିଧାସଳଖ ଭାବରେ ରାଜନୀତି ଚେତନା ପ୍ରକାଶ ପାଇଥିବାବେଳେ ଆଉ କେତେକ ଗଳ୍ପରେ ପରୋକ୍ଷ ଭାବରେ ଆତ୍ମପ୍ରକାଶ କରିଛି । ମନୋଜ ଦାସଙ୍କ 'ଓଟ' ସୁରେନ୍ଦ୍ର ମହାନ୍ତିଙ୍କ 'ପତାକା ଉତ୍ତୋଳନ' 'ସାମ୍ୟବାଦର ଶେଷ' ହରେକୃଷ୍ଣ ମହତାବଙ୍କ 'ଘେରାଉ' ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଶିକାର' ଆଦି ଗଳ୍ପରେ ଏହି ରାଜନୀତି ସଚେତନତାକୁ ଲକ୍ଷ୍ୟ କରାଯିବ ।

## (ଙ) ହାସ୍ୟରସାତ୍ମକ ଗଳ୍ପ—

ହାସ୍ୟରସାତ୍ମକ ଗଳ୍ପମାନଙ୍କରେ ଗାଳ୍ପିକ ନିଜର ସମାଜ ଦୃଷ୍ଟିଭଙ୍ଗୀକୁ ଆହୁରି ସମ୍ପ୍ରସାରିତ କରିଥାଏ । ମୁଖ୍ୟତଃ ସମାଜ ବ୍ୟବସ୍ଥା ବା କୌଣସି ଗୋଟିଏ ଘଟଣାକୁ ବ୍ୟଙ୍ଗ ମାଧ୍ୟମରେ ବର୍ଣ୍ଣନା କରି ସେ ହାସ୍ୟରସ ସୃଷ୍ଟି କରିଥାଏ । କେତେକ ଗଳ୍ପରେ ପ୍ରଥମରୁ ଗାଳ୍ପିକ ହାସ୍ୟରସ ସୃଷ୍ଟି କରିବାର ଲକ୍ଷ୍ୟ ନେଇ ଗଳ୍ପ ରଚନା କରିଥାଏ । ଆଉ କେତେକ ଗଳ୍ପରେ କୌଣସି ସାମାଜିକ ସମସ୍ୟାକୁ ବର୍ଣ୍ଣନା କଲାବେଳେ ସେଥିଭିତରୁ ହାସ୍ୟରସ ଆପେ ଆପେ ପ୍ରକାଶ ପାଇଥାଏ । ହାସ୍ୟରସ ବର୍ଣ୍ଣନା କରିବା ପାରଙ୍ଗମ ସ୍ରଷ୍ଟାମାନଙ୍କ ଉପରେ ନିର୍ଭର କରିଥାଏ । ଲଘୁଶବ୍ଦ ଗ୍ରହଣ କରି ସେଥିରେ ଗୁରୁଭାବର ସଙ୍କେତ ଦେଇ ହାସ୍ୟରସ ସୃଷ୍ଟି କରିଯାଇ ଥାଏ ।

ଓଡ଼ିଆ ଗଳ୍ପ ସାହିତ୍ୟର ଜନକ ଫକୀରମୋହନ ପ୍ରଥମେ ତାଙ୍କ ଗଳ୍ପମାନଙ୍କର ପରିବେଷଣରେ ହାସ୍ୟରସକୁ ଗ୍ରହଣ କରିଥିଲେ । ସାମାଜିକ ଆଭିମୁଖ୍ୟ ପ୍ରକାଶ କରି ଫକୀରମୋହନ ପ୍ରାଚୀନ ସମାଜ ବ୍ୟବସ୍ଥା ଓ ନୀତିନିୟମକୁ ବିରୁଦ୍ଧାଚରଣ କରି ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ ହାସ୍ୟରସର ବର୍ଣ୍ଣନା ଦେଇଛନ୍ତି । 'ମାଧବ ମହାନ୍ତିଙ୍କ କନ୍ୟାସୁନା' 'ପାଠୋଇ ବୋହୂ' 'ବୋହୂରୋଗ' ଆଦି ଗପରେ ହାସ୍ୟରସିକ ଫକୀରମୋହନଙ୍କୁ ପାଇହୁଏ ।

ଓଡ଼ିଆ ଗଳ୍ପ ସାହିତ୍ୟରେ ହାସ୍ୟରସ ସମ୍ମିଳିତ ଗଳ୍ପ ସୃଷ୍ଟି କରିବାରେ 'ଫତୁରାନନ୍ଦ' ଅନ୍ୟତମ । ଜୀବନକୁ ବିବିଧ ଦୃଷ୍ଟିକୋଣରୁ ଗ୍ରହଣ କରି ସାଧାରଣ ଶବ୍ଦ ମାଧ୍ୟମରେ ଫତୁରାନନ୍ଦ ବାଛି ବାଛି ଲଘୁ ହାସ୍ୟରସାତ୍ମକ ଗଳ୍ପ ସୃଷ୍ଟି କରିଛନ୍ତି । ପରବର୍ତ୍ତୀ ସମୟରେ ମହାପାତ୍ର ନୀଳମଣି ସାହୁ ଓ ମନୋଜ ଦାସ ଗଳ୍ପର ମୁଖ୍ୟ ପ୍ଲଟ୍ ଭିତରେ ସାମୟିକ ହାସ୍ୟରସ ସୃଷ୍ଟି କରିବାରେ ସଫଳ ହୋଇଛନ୍ତି ।

## (ଛ) ରହସ୍ୟ ରୋମାଞ୍ଚ ଗଳ୍ପ—

ସାମ୍ପ୍ରତିକ ସମାଜରେ ଘଟୁଥିବା ବିଭିନ୍ନ ଉଗ୍ର କାର୍ଯ୍ୟକଳାପକୁ ପ୍ଲଟ୍ ଭାବରେ ଗ୍ରହଣ କରି ରହସ୍ୟଧର୍ମୀ ଗପଗୁଡ଼ିକ ଆତ୍ମପ୍ରକାଶ କରିଥାଆନ୍ତି । ଦସ୍ୟୁ, ତସ୍କରବୃତ୍ତି, ସନ୍ତ୍ରାସବାଦ, ଯୁଦ୍ଧ, ଦୁର୍ଗମ ପଥଯାତ୍ରା ଏବଂ ସର୍ବୋପରି ବିପଦ ଓ ବିଭୀଷିକାକୁ ଗ୍ରହଣ କରି ଏପରି କାହାଣୀ ସମୃଦ୍ଧ ହୋଇଥାଏ ।

ଅନେକ ଗାଳ୍ପିକ କ୍ଷୁଦ୍ର କଳେବର ଭିତରେ ଏ କାହାଣୀମାନଙ୍କୁ ବର୍ଣ୍ଣନା କରିଚନ୍ତି । ଏସବୁ କାହାଣୀ ଅନେକ ସମୟରେ ଗଳ୍ପକଳାରୁ ବିଚ୍ୟୁତ ହୋଇ ସାହିତ୍ୟିକ ଆବେଦନ ସ୍ୱୀକୃତି ହାସଲ କରିବାରେ ଅକ୍ଷମ ହୁଏ । ତଥାପି କେତେକଜଣ

ମୂର୍ତ୍ତିମେୟ ସ୍ରଷ୍ଟା ଏଭଳି ଡିଟେକ୍ଟିଭ କାହାଣୀ ସୃଷ୍ଟି କରିବାରେ ସକ୍ଷମ ହୋଇଛନ୍ତି । କଣ୍ଟୁରି ଚରଣ ଦାସ ଓ ଭୂପେନ ଗୋସ୍ୱାମୀ ସଫଳତାର ସହ ଅନେକ ଡିଟେକ୍ଟିଭ କାହାଣୀ ସୃଷ୍ଟି କରିଛନ୍ତି ।

## (ଝ) ଉଦ୍‌ଭଟ ଗପ (ଅବାସ୍ତବ ଗପ)—

ଆଧୁନିକ ମଣିଷ ଆପଣାଗ୍ରସ୍ତଏଁ ନିଜ ଭିତରେ କ୍ରମଶଃ ଏକ ଅବାସ୍ତବ ବ୍ୟକ୍ତିତ୍ୱରେ ପରିଣତ ହୋଇଯାଉଛି । ଯେତେବେଳେ ନିଜ ପାଦ ତଳର ଭୂମି ନିଜ ପାଖରୁ ଖସିଯାଉଛି ସେତେବେଳେ ମଣିଷ କ୍ରମଶଃ ଏକ ପରିଚିତ କ୍ଲାନ୍ତିସଙ୍ଗତା ଭିତରେ ବୌଦ୍ଧିକ ବସ୍ତୁରଶୂନ୍ୟ ମଣିଷରେ ପରିଣତ ହୋଇଯାଉଛି । ଆଧୁନିକ ମଣିଷ ଦୁଇଟି ଚେହେରାର ମଣିଷ । ଯେତେବେଳେ ସେ ମାଟିରେ ଯାହାର ପ୍ରଥମ ପାଦ ଥାପେ ତ ପୁଣି ଆରପଦ ମଟି ଆକାଶରେ, ନାଁ ସେ ହୋଇପାରେ ମାଟିର ନାଁ ଆକାଶର । ଫିଶଙ୍କୁଟିଏ ପାଲଟିଯାଏ ଆଧୁନିକ ମଣିଷ । ଗୋଟିଏ ପ୍ରକାରର ପରିପୂର୍ଣ୍ଣ ଶୂନ୍ୟତା-ବୋଧ ଭିତରେ ବଞ୍ଚୁଥିବା ମଣିଷପାଇଁ ପୃଥିବୀର ସମସ୍ତ ଘଟଣା ଅସଙ୍ଗତ ଅନୁଭବ ହୁଏ । ଏହି ଅସଙ୍ଗତ ଅନୁଭବରୁ ଉଦ୍‌ଭଟ ଗପର ସୃଷ୍ଟି ।

ଉଦ୍‌ଭଟ ଗଳ୍ପରେ ବୌଦ୍ଧିକତାର ପ୍ରୟୋଗ କରାଯାଇ ଥାଏ । ଭୂତ, ଡାହାଣୀ, କାପାଳିକମାନଙ୍କୁ ନେଇ ଲେଖାଯାଉଥିବା ଗପ ଉଦ୍‌ଭଟ ଗପର ମର୍ଯ୍ୟାଦା ହାସଲ କରିପାରିବ ନାହିଁ । ଏ ପରିପ୍ରେକ୍ଷୀରେ 'ଜହ୍ନମାମୁଁ' ପତ୍ରିକାରେ ବର୍ଣ୍ଣିତ କାହାଣୀ ମଧ୍ୟ ଉଦ୍‌ଭଟ ଗଳ୍ପ ପର୍ଯ୍ୟାୟର ନୁହେଁ । ସାମ୍ପ୍ରତିକ ସମୟରେ ଓଡ଼ିଆ ଗଳ୍ପ ସାହିତ୍ୟରେ ସଂଖ୍ୟାନ୍ୟୂନ ଉଦ୍‌ଭଟ ଗଳ୍ପର ବର୍ଣ୍ଣନା ମିଳେ । ପରୀକ୍ଷାଧର୍ମୀ କ୍ଷୁଦ୍ର ଗଳ୍ପରେ ଉଦ୍‌ଭଟ ବିଷୟବସ୍ତୁ ଗ୍ରହଣ ଓ ଏହାର କଳାତ୍ମକ ପରିବେଷଣ ଲକ୍ଷ୍ୟ କରାଯାଇ ଥାଏ ।

## (ଠ) ମନସ୍ତାତ୍ତ୍ୱିକ ଗଳ୍ପ—

ସାମାଜିକ ଗଳ୍ପର ଏହା ଏକ ପର୍ଯ୍ୟାୟ । ଯେଉଁ ସାମାଜିକ ଗଳ୍ପମାନଙ୍କରେ ଚରିତ୍ରମାନଙ୍କର ସନ୍ତୁଳନ ଓ ମାନସିକ ବିବର୍ତ୍ତନକୁ ଅଧିକ ଗୁରୁତ୍ୱ ଦିଆଯାଇ ଥାଏ । ସେ ପରିସ୍ଥିତିରେ ମନସ୍ତାତ୍ତ୍ୱିକ ଗଳ୍ପର ସୃଷ୍ଟି ହୋଇଥାଏ । ଆଧୁନିକ ମଣିଷର ମନନଶୀଳତା ପାଇଁ କଳା ଓ ବିଜ୍ଞାନର ମିଳିତ ସମବାୟରେ ନୂତନ ପୃଥିବୀର ସନ୍ଧାନ ମିଳିଛି । ୟୁରୋପରେ ପଞ୍ଚଦଶ ଶତକରେ ନବଜାଗରଣ (ରେନେସା) ପ୍ରଥମ କରି ମଣିଷର ଚଲ୍ଲାଚଳ୍ୟକୁ ଦୋହଲାଇ ଦେଇଥିଲା । ପରବର୍ତ୍ତୀ ସମୟରେ କିର୍କେଗାର୍ଡ଼ କାମ୍ୟୁ-କାଫକାଙ୍କ ପରି ସ୍ଥିତିବାଦୀ ଦାର୍ଶନିକ, ଡାରଉଇନ୍‌ଙ୍କ ପରି 'ବିବର୍ତ୍ତନ ବାଦ'ର ପ୍ରଚାରକମାନେ ମଣିଷର ଖରସାମ୍ୟ ଓ ସ୍ଥିତି ସଂଘର୍ଷକୁ ନେଇ

ନୂତନ ପରିଭାଷା ପ୍ରଦାନ କଲେ । ବିଶେଷ କରି ସିଗ୍‌ମଣ୍ଡ ଫ୍ରଏଡ଼ଙ୍କ ଯୌନତତ୍ତ୍ୱ ମଣିଷର ମନଗହନର ଚିତ୍ର ପ୍ରଦାନ କରିବା ସହ, ବିବେକ ଓ ବ୍ୟକ୍ତିତ୍ୱକୁ ପଦାରେ ପକାଇଦେବାରେ ସକ୍ଷମ ହେଲା । ମଣିଷର ମନକୁ ସଚେତନ-ଅଚେତନ-ଅବଚେତନ ଆଦି ତିନୋଟି ପର୍ଯ୍ୟାୟରେ ଭାଗ କରିଦେଇ ମଣିଷର ଯୌନଲାଳସାକୁ ଉନ୍ମୁକ୍ତ ଭାବରେ ପ୍ରକାଶ କଲେ । ସମାଜରେ ବିଭିନ୍ନ ଦାର୍ଶନିକ ଅନୁଚିନ୍ତାକୁ ନେଇ ଜୀବନତତ୍ତ୍ୱ ପ୍ରକାଶ ପାଇଲା ତାହା ଏକ ପକ୍ଷରେ ସମାଜ ବ୍ୟବସ୍ଥାକୁ ଦୋହଲାଇ ଦେବା ସହ ମଣିଷର ମନ ରାଜ୍ୟକୁ ମଧ୍ୟ ବ୍ୟାପିଗଲା । ଆଧୁନିକ ମଣିଷ ସବୁବେଳେ ଏହି ମାନସିକ ରୋଗର ଶିକାର ହୋଇଛି । ଯାମ୍ପ୍ରତିକ କ୍ଷୁଦ୍ରଗଳ୍ପରେ ମଣିଷ ମନର ଅସଂଖ୍ୟ ପ୍ରତିଲିପି ଆତ୍ମପ୍ରକାଶ କରିଛି ।

ଓଡ଼ିଆ ଗଳ୍ପ ସାହିତ୍ୟର ଇତିହାସରେ ମନସ୍ତାତ୍ତ୍ୱିକ ଗଳ୍ପ ରଚନାର ଏକ ସୁଦୀର୍ଘ ପରମ୍ପରା ଦେଖାଯାଏ । ପ୍ରତିଭାବାନ ଗଳ୍ପସ୍ରଷ୍ଟା ମାନସିକ ସ୍ତରର ବିଭିନ୍ନ ପ୍ରକାର ବର୍ଣ୍ଣନାକୁ ଗଳ୍ପ ମାଧ୍ୟମରେ ପ୍ରକାଶ କରିଛନ୍ତି । ଆଧୁନିକ ଜୀବନର ସଙ୍କଟକୁ ନେଇ ମନୋଜ ଦାସ, ସୁରେନ୍ଦ୍ର ମହାନ୍ତି, ଅଖିଲମୋହନ ପଟ୍ଟନାୟକ, କିଶୋରୀ ଚରଣ ଦାସ, ଶାନ୍ତନୁକୁମାର ଆଚାର୍ଯ୍ୟ ପ୍ରମୁଖଙ୍କ ଉଦ୍ୟମ ପ୍ରଶଂସନୀୟ ।

ମନସ୍ତାତ୍ତ୍ୱିକ ଗଳ୍ପ ପରମ୍ପରାରେ କିଶୋରୀ ଚରଣ ଦାସଙ୍କର 'ଭଙ୍ଗା ଖେଳନା' ଗପଟିକୁ ଗ୍ରହଣ କରାଯାଇ ପାରେ । ଧାରାବର୍ଷର ଝିଅ ଗୀତା ଚରିତ୍ର ମାଧ୍ୟମରେ ଗାଳ୍ପିକ ଦାସ ସମଗ୍ର ଗଳ୍ପଟିକୁ ବର୍ଣ୍ଣନା କରିଛନ୍ତି । ଆଧୁନିକ ନଗର ଜୀବନର ବ୍ୟର୍ଥ ପାରିବାରିକ ଜୀବନର ଏକ ସାର୍ଥକ ଚିତ୍ର ଉକ୍ତ ଗପରେ ପ୍ରକାଶ ପାଇଛି । ବାପା-ବୋଉ ଭିତରେ ଆଉ ଆଗ ସମ୍ପର୍କ ନାହିଁ, କାହିଁକି ବନୁଦାଦା ଆସି ବୋଉ ହୃଦୟରେ କେଉଁଦିନୁ ବସିଗଲଣି । ବନୁଦାଦା ଆସିଲେ ବୋଉ ଖୁସି ହେଉଛି । ତା'ର ମୁଣ୍ଡ ବାନ୍ଧି ଦେଉଛି । ବନୁଦାଦାଙ୍କ ସହ ବାଡ଼ିରେ ବୁଲୁଛି, କଞ୍ଚା ଲଙ୍କା ତୋଳୁଛି । ବୋଉ ବନୁଦାଦାକୁ ବାଇଗଣ ଭଲ ପାଆନ୍ତି ବୋଲି ଖାଇବାକୁ ଦେଉଛି । ବାପା ଗମ୍ଭୀର ହୋଇ ପଡ଼ୁଛନ୍ତି । ବାପାମାନେ ଏମିତି ଗମ୍ଭୀର ହେବାକୁ ବାଧ୍ୟ । ପ୍ରେମର ସ୍ରୋତରେ ସେ ଏକ ଅବାଞ୍ଛିତ ପଥର, ବାପା-ବୋଉ-ବନୁଦାଦାର ବୃତ୍ତକୁ ଗାଳ୍ପିକ ଗୀତାର ମନସ୍ତତ୍ତ୍ୱ ଭିତରେ ପ୍ରକାଶ କରି କହିଛନ୍ତି—

ବୋଉ ଲଙ୍କାମରିଚ ତୋଳୁଛି । ବନୁଦାଦା ଛିଡା ହୋଇଛନ୍ତି ସେଠି । ହସୁଛନ୍ତି । ବୋଉ ମୁହଁ ଟେକି କ'ଣ କହିଲା । ବନୁଦାଦା ଆହୁରି ହସୁଛନ୍ତି । ବୋଉ ହସି ହସି ପଛକୁ ଘୁଞ୍ଚିଗଲା ।

ପଛଆଡ଼ୁ କାହା ଘରୁ ବତକ ଦି'ଟା କାଁ-କାଁ କରି ଧାଇଁ ଧାଇଁ ଆସୁଛନ୍ତି । ତାଙ୍କ ଅଣ୍ଟା ହଳଦିଆ, ଆଙ୍ଗୁଠିରେ ଜାଲ ବନ୍ଧା ହୋଇଛି । ପଛରେ ଗୋଟାଏ ବୁଢ଼ୀ ଦୌଡ଼ୁଛି ।

ଯୋଡ଼ାଏ ବଉକ, ଏକାଠି ପଳାଇ ଆସୁଛନ୍ତି । ଏକାଠି କାଁ-କାଁ କରୁଛନ୍ତି । ଭାଇ-ଭଉଣୀ । ନାହିଁ ବାପା, ବୋଉ । ବାପା-ବୋଉ । ଉହୁଁ, ନ ହେଲେ—ବଳୁଦାଦା, ବୋଉ ? ନାଇଁ, ନାହିଁ-ଟି ।

(ଭଙ୍ଗା ଖେଳନା, କାହାଣୀ ବାଚାସ୍ୱନ, ସଂ-ଡଃ ଆଶୁତୋଷ ପଟ୍ଟନାୟକ ପୃ—୭୧୦)

କଣୋଗ୍ନ ଚରଣ ଓଡ଼ିଆ ଗଳ୍ପ ସାହିତ୍ୟରେ ଜଣେ ମନସ୍ତାତ୍ତ୍ୱିକ ଗାଳ୍ପିକ ଭାବରେ ବେଶ୍ ଜଣାଶୁଣା । ଗାଳ୍ପିକଙ୍କ ଅନେକ ଗପରେ ମନଃସମୀକ୍ଷଣର ବିବଧ ଚଟ ବେଶ୍ ସୁରକ୍ଷିତ ।

ଓଡ଼ିଆ ମନସ୍ତାତ୍ତ୍ୱିକ ଗଳ୍ପ ରଚନାରେ ଗାଳ୍ପିକ ମନୋଜ ଦାସ ଜଣେ ସ୍ୱୟଂସିଦ୍ଧ ପ୍ରତିଭା । ଗାଳ୍ପିକ ଶ୍ରୀଯୁକ୍ତ ଦାସ 'ଆରଣ୍ୟକ', 'ସମୁଦ୍ରର କ୍ଷୁଧା', 'ଲକ୍ଷ୍ମୀର ଅଭିସାର' ଆଦି ଗଳ୍ପମାନଙ୍କରେ ଚରିତ୍ର ଓ ଘଟଣାର ବେଶ୍ ମନସ୍ତାତ୍ତ୍ୱିକ ଗୁରୁତ୍ୱ ଉପଲବ୍ଧି କରିଛନ୍ତି । 'ଆରଣ୍ୟକ' ଗଳ୍ପରେ ମଣିଷର ଅରଣ୍ୟ ପ୍ରବୃତ୍ତିକୁ ସଫଳତାର ସହ ଉନ୍ମୋଚନ କରିଛନ୍ତି । ମଣିଷ ଜଙ୍ଗଲରୁ ଆସିଛି ସଭ୍ୟ ହେବାପାଇଁ ସହରକୁ, ପୁଣି ଜଙ୍ଗଲୀ ହେବାପାଇଁ ପଳାଇଯାଏ ସହର ଛାଡ଼ି ଜଙ୍ଗଲକୁ । ଜାଙ୍ଗଲିକ ପ୍ରବୃତ୍ତି ମାଡ଼ିବସେ ମଣିଷକୁ । ମଣିଷ ମଣିଷ ମାଂସ ଖାଏ । ରକ୍ତ ମାଂସର ମଣିଷ ବାଘ ପାଲଟିଯାଏ । ଶ୍ରୀଯୁକ୍ତ ଦାସ 'ଆରଣ୍ୟକ' ଗଳ୍ପରେ ମଣିଷର ଯୌନପ୍ରବୃତ୍ତି ସହ ଆଭିଜାତ୍ୟ ମନନଶୀଳତା ଓ ଫମ୍ପା ଜୀବନର ସାର୍ଥକ ଚିତ୍ର ପ୍ରଦାନ କରିଛନ୍ତି ।

ନାରୀ ମନକୁ ନେଇ ଗପ ରଚନା କରିବାରେ ଶ୍ରୀମତୀ ବୀଣାପାଣି ମହାନ୍ତି ଓ ପ୍ରତିଭା ରାୟ ସୁନାମ ଅର୍ଜନ କରିଛନ୍ତି । ବୀଣାପାଣିଙ୍କ ଗଳ୍ପରେ ଗ୍ରାମୀଣ ନାରୀର ସମସ୍ୟା ସ୍ଥାନ ପାଇଥିବା ସମୟରେ ଶ୍ରୀମତୀ ରାୟ ସହରୀ ଶିକ୍ଷିତ ନାରୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଗଳ୍ପ ମାଧ୍ୟମରେ କରିଛନ୍ତି । ବୀଣାପାଣି ମହାନ୍ତିଙ୍କ 'ପାଟଦେଈ' ଏବଂ ପ୍ରତିଭା ଶତପଥୀଙ୍କ 'ସାମାନ୍ୟ କଥନ' ଗଳ୍ପ ସଙ୍କଳନକୁ ଉଦାହରଣ ଭାବେ ନିଆଯାଇ ପାରେ ।

ସାମ୍ପ୍ରତିକ ଗଳ୍ପ ସାହିତ୍ୟରେ ଅନେକ ତରୁଣ ଗାଳ୍ପିକ ସଫଳତାର ସହ ମନସ୍ତାତ୍ତ୍ୱିକ ଚିତ୍ର ପ୍ରଦାନ କରିବାରେ ସକ୍ଷମ ହୋଇ ପାରିଛନ୍ତି । ଗାଳ୍ପିକ ସୁରେନ୍ଦ୍ର ମିଶ୍ର ଓ ଗିରିଦଣ୍ଡ ସେନାଙ୍କୁ ସମ୍ଭାବନା ରୂପେ ଗ୍ରହଣ କରାଯାଇପାରେ । ମନସ୍ତାତ୍ତ୍ୱିକ ଗଳ୍ପ ରଚନାରେ ଜଗନ୍ନାଥ ପାଢ଼ୀ ଏବଂ ପରେଶ ପଟ୍ଟନାୟକଙ୍କର କୃତି ପ୍ରଣିଧାନ-ଯୋଗ୍ୟ । ମନସ୍ତାତ୍ତ୍ୱିକ ଓଡ଼ିଆ ଗଳ୍ପର ଭବିଷ୍ୟତ ଉଜ୍ଜ୍ୱଳ ।

## (ଙ) ଦାର୍ଶନିକ ଗଳ୍ପ—

କେତେକ ଗଳ୍ପରେ ଏକ ସୂକ୍ଷ୍ମ ଦର୍ଶନ ପ୍ରକାଶ କରାଯାଇଥାଏ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ମତବାଦକୁ ସୃଷ୍ଟି କରି କେତେକ ଗଳ୍ପ ସୃଷ୍ଟି ହୋଇଥାଏ । ସେ ସବୁକୁ ଦାର୍ଶନିକ ଗଳ୍ପ କୁହାଯାଏ । ଓଡ଼ିଆ ସାହିତ୍ୟରେ ଦାର୍ଶନିକ ଗଳ୍ପର ପରମ୍ପରା ସୁଦୃଢ଼ ନୁହେଁ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଆ ସମାଜରେ କୌଣସି ବିଶେଷ ଦର୍ଶନ ପ୍ରଭାବ ବିସ୍ତାର କରି ପାରିନାହିଁ । ଗାଳ୍ପିକମାନେ ନିଜସ୍ୱ ଶୈଳୀରେ ଭିନ୍ନ ଭିନ୍ନ ପ୍ଲଟକୁ ନେଇ ଗଳ୍ପ ରଚନା କରୁଥିବାରୁ କୌଣସି ଗାଳ୍ପିକ ଆଭିମୁଖ୍ୟ ବା ସାମୂହିକ ଇଚ୍ଛାଶକ୍ତିର ପ୍ରକାଶ ସମ୍ଭବ ହୋଇପାରି ନାହିଁ । ଆଧୁନିକ ସମାଜରେ ପ୍ରକାଶ ପାଇଥିବା ବିଭିନ୍ନ ସମସ୍ୟା ଏ ସମସ୍ତର ଗଳ୍ପରେ ସ୍ଥାନ ପାଇଛି ।

ନବଯୁଗ ସାହିତ୍ୟ ସଂସଦ (୧୯୩୫) ପ୍ରତିଷ୍ଠା ପରେ ସାମ୍ୟବାଦର ଯେଉଁ ସମ୍ଭାବନା ପ୍ରଥମ କରି ଓଡ଼ିଆ ମାଟିରେ ପ୍ରକାଶ ପାଇଥିଲା, ସେହି ସାମ୍ୟବାଦୀ ଦର୍ଶନ କଳେବର ଧରି ଆମର ଚିନ୍ତାଶକ୍ତିକୁ ପ୍ରଭାବିତ କରିଥିଲା । ଭଗବତୀ ଚରଣ ପାଣିଗ୍ରାହୀ ଏହି ଦର୍ଶନକୁ ପାଥେୟ କରି ରଚନା କରିଥିଲେ 'ଶିକାର' ଗଳ୍ପ । ଶିକାର ଗଳ୍ପକୁ ମୋଟାମୋଟି ଭାବରେ ସାମ୍ୟବାଦ ଗଳ୍ପ ରୂପେ ଗ୍ରହଣ କରାଯାଇ ପାରିବ ନାହିଁ । ଚନ୍ଦ୍ରଶେଖର ନନ୍ଦଙ୍କ 'ଗଦା ଉଜାଏଡ଼' ଗଳ୍ପରେ ଉଗ୍ର ସାମ୍ୟବାଦ ଅନେକ ଆଗରୁ ପ୍ରକାଶ ପାଇଛି । କିନ୍ତୁ ଏହା ସାମ୍ୟବାଦର ଆଲୋଚନା ପରିସରକୁ ଆସି ପାରିନାହିଁ । ତଥାପି 'ଶିକାର' ଗଳ୍ପରେ ନବଯୁଗ ସାହିତ୍ୟ ସଂସଦର ଆଭିମୁଖ୍ୟ ଓ ଅଙ୍ଗୀକାର ପ୍ରତିଫଳିତ ହୋଇଥାଏ । ସତ୍ୟବାଦୀ ସାହିତ୍ୟରେ ସୃଷ୍ଟି ହୋଇଥିବା ଅନେକ ଜାତୀୟତାବାଦୀ ଗଳ୍ପରେ ନିର୍ଦ୍ଦିଷ୍ଟ ଭାବରେ ସମାଜ ସେବା ଓ ଗାଁକୁ ଭଲ ପାଇବାର ଆଭିମୁଖ୍ୟ ପ୍ରକାଶ ପାଇଛି । 'ମାଗୁଣିର ଶଗଡ଼', 'ବିଖ୍ୟାତ ଜନକରୁ ଅଖ୍ୟାତ ପଲ୍ଲୀ' ଆଦି ଗଳ୍ପମାନଙ୍କରେ ଗୋପବନ୍ଧୁ ଓ ଗାନ୍ଧୀଙ୍କ ଅହିଂସା, କୁଟୀର ଶିଳ୍ପ, ଆଦର୍ଶବାଦ ପ୍ରକାଶ ପାଇଛି ।

ଦାର୍ଶନିକ ଗଳ୍ପର ଅଭାବ ଓଡ଼ିଆ ଗଳ୍ପ ସାହିତ୍ୟରେ ସ୍ପଷ୍ଟ ଅନୁମେୟ । ସାମ୍ପ୍ରତିକ ସ୍ରଷ୍ଟାମାନେ ଏ ଦିଗରେ ଯତ୍ନବାନ ହେବା ବିଧେୟ ।

## (ଚ) ମାନବେତର ଗଳ୍ପ—

ମଣିଷକୁ ବାଦ ଦେଇ ମାନବେତର ଗଳ୍ପର ପରିକଳ୍ପନା କରାଯାଇଛି । ଏପରି ଗଳ୍ପରେ ପଶୁପକ୍ଷୀମାନେ ପ୍ରଧାନ ଚରିତ୍ର ଭାବେ ଆତ୍ମପ୍ରକାଶ କରିଥାଆନ୍ତି ବା ଏପରି ହୁଏ ମଣିଷ ଚରିତ୍ର ଭିତରେ ପଶୁପକ୍ଷୀ ଚରିତ୍ରର ଗୁରୁତ୍ୱ ଆରୋପ

କରାଯାଇଥାଏ । ଓଡ଼ିଆ ଲୋକକଥାରେ ପକ୍ଷୀରାଜ ଘୋଡ଼ା କଥା, କୁହୁକ ପକ୍ଷୀ କଥା, ହଳଦୀବସନ୍ତ ଓ ଡାମରାକାଆ, କୁହୁକ ଶୁଆକୁ ନେଇ ଅନେକ ଗପ ସୃଷ୍ଟି ହୋଇଛି । ଆଧୁନିକ କ୍ଷୁଦ୍ରଗଳ୍ପରେ ପଶୁପକ୍ଷୀ ଚରିତ୍ର ଭିତରେ ମାନବୀୟ ପ୍ରବୃତ୍ତିକୁ ପ୍ରୟୋଗ କରି ଗଳ୍ପ ରଚନା କରାଯାଇଛି । ଅନେକ ଗଳ୍ପରେ ମଣିଷ ଓ ପଶୁ ଭିତରେ ତୁଳନାତ୍ମକ ଅଧ୍ୟୟନ କରାଯାଇ ପଶୁକୁ ଗୁରୁତ୍ୱ ଦିଆଯାଇଛି ।

କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଂସର ଲାଲସ' ଗଳ୍ପଟି ଏ ଦୃଷ୍ଟିକୋଣରୁ କଳାଗତ ସାଫଲ୍ୟ ଦାବିକରେ । ମଣିଷର ପ୍ରବୃତ୍ତି ନିକଟରେ ପଶୁ ଜୀବନକୁ ଅତି ସୁନ୍ଦର ଭାବରେ ଗାଳ୍ପିକ ବର୍ଣ୍ଣନା କରିଛନ୍ତି । ଓଡ଼ିଆ ଗଳ୍ପ ସାହିତ୍ୟରେ ମାନବେତର ଗଳ୍ପ ସୃଷ୍ଟି ଉତ୍ସାହଜନକ ନୁହେଁ ।

## (ଣ) ପରୀକ୍ଷାଧର୍ମୀ ଗପ—

ପରୀକ୍ଷାଧର୍ମୀ ଗପର ପ୍ରୟୋଗ ଇତିହାସ ଓଡ଼ିଆ ଗଳ୍ପ ସାହିତ୍ୟରେ ମାତ୍ର ପାଞ୍ଚ ବର୍ଷର । ୧୯୧° ମସିହାରୁ କେତେକ ତରୁଣ ପ୍ରତିଭାବାନ ଓଡ଼ିଆ ଗାଳ୍ପିକ କ୍ଷୁଦ୍ରଗଳ୍ପରେ ପରୀକ୍ଷାଧର୍ମୀ ଗଳ୍ପ ସୃଷ୍ଟି କରିବାରେ ପ୍ରୟାସ କରିଛନ୍ତି ଏବଂ କେତେକାଂଶରେ ସଫଳ ମଧ୍ୟ ହୋଇଛନ୍ତି । ପରୀକ୍ଷାଧର୍ମୀ ଗଳ୍ପର ପ୍ରଧାନ ଅସୁବିଧା ହେଉଛି ଏହାର ପାଠକ ସୀମିତ । ବୌଦ୍ଧିକ ସମ୍ପନ୍ନ ଓ ଆଧୁନିକ ସଭ୍ୟତାରେ ରୁଚି ଥିବା କେତେକ ହାତଗଣତି ମଣିଷ ଏହାର ପାଠକ । ଏଥିରେ କ୍ଷୁଦ୍ରଗଳ୍ପର ମୁଖ୍ୟ ଆକର୍ଷଣ କାହାଣୀର ଅଭାବ ପରିଲକ୍ଷିତ ହେଉଥିବାରୁ ଏହା ପାଠକୀୟ ପ୍ରଶସ୍ତି ଏ ପର୍ଯ୍ୟନ୍ତ ଆଦାୟ କରିପାରି ନାହିଁ ।

କେତେକ ସାଧାରଣ ଓ ଆବଶ୍ୟକୀୟ ଆବଶ୍ୟକତାକୁ ପଛକୁ ଠେଲିଦେଇ କ୍ଷୁଦ୍ରଗଳ୍ପରେ ଏକ ନୂତନ ପରୀକ୍ଷା ଆରମ୍ଭ ହୋଇଛି । ଓଡ଼ିଆ ଗଳ୍ପ ସାହିତ୍ୟରେ ଏହି ନୂତନ ଆନ୍ଦୋଳନକୁ ପାଠକ ନିକଟରେ ପହଞ୍ଚାଇବାରେ ଓଡ଼ିଆ ଦୈନିକ ଖବରକାଗଜମାନଙ୍କର ଭୂମିକାକୁ ପ୍ରଶଂସା କରିବାକୁ ହେବ । ବିଶେଷକରି 'ଧରିତ୍ରୀ' ଦୈନିକ ରବିବାର ସାହିତ୍ୟ ପୃଷ୍ଠାରେ ପ୍ରକାଶ ପାଉଥିବା ଆକର୍ଷଣୀୟ ପରୀକ୍ଷାଧର୍ମୀ ଗଳ୍ପ ଅନେକ ସଚେତନ ପାଠକ ଓ ଗଳ୍ପକାରଙ୍କମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ପରେ ପରେ ରବିବାର ଛୁଟିଦିନ ଧରିତ୍ରୀରେ ଏ ଦିଗରେ ମଧ୍ୟ ସଯତ୍ନ ଉଦ୍ୟମ କରାଗଲା । ପ୍ରଗତିବାଦୀ ଓ ଦୈନିକ ସମ୍ବାଦ ମଧ୍ୟ ଏ ଦିଗରେ ଯଥାଯଥ ପ୍ରୟାସ କରିଛନ୍ତି । ବିଭୂତି ମିଶ୍ର, ହରପ୍ରସନ୍ନ ଦାସ ଏବଂ ଆହୁରି କେତେକ ପ୍ରତିଭାବନ୍ତ ମୁଷ୍ଟା କ୍ଷୁଦ୍ରଗଳ୍ପବାଦୀ ପରୀକ୍ଷା ଉପରେ ଗୁରୁତ୍ୱ ଦେଇ ଶ୍ରେଷ୍ଠ ଶ୍ରେଷ୍ଠ ଗଳ୍ପ ରଚନାର ପ୍ରୟାସ କରିଛନ୍ତି । ପରୀକ୍ଷାବାଦୀ ଗାଳ୍ପିକର ଆଭିମୁଖ୍ୟ ଅତି ସ୍ପଷ୍ଟ ।

ଜୀବନର ଉଙ୍ଗାଗଢ଼ା ମୂହୂର୍ତ୍ତିକୁ ତାର୍ଫିକ ଭାବରେ ଉପସ୍ଥାପନା କରିବାକୁ ସେ ଶ୍ରଦ୍ଧା ମଣେ । ଓଡ଼ିଆ ଗଳ୍ପ ସାହିତ୍ୟରେ ଏହା ଏକ ଅଭିନବ ପ୍ରୟାସ ।

## 'କ୍ଷୁଦ୍ରଗଳ୍ପବାଦୀ' ଆନ୍ଦୋଳନର ପୃଷ୍ଠଭୂମି—

କ୍ଷୁଦ୍ରଗଳ୍ପବାଦୀ ଆନ୍ଦୋଳନର ପୃଷ୍ଠଭୂମି ଗଳ୍ପ କେତେ ବର୍ଷର । ବିଗତ ପାଞ୍ଚ ବର୍ଷ ଭିତରେ ସମସାମୟିକ ସମାଜ ସୁବିଧାବାଦ ଭିତର ଦେଇ ଗତି କରୁଛି । କ୍ଷମତାରେ ଥିବା ମଣିଷମାନେ ଏହାକୁ ଉଦାସୀକରଣ ନାମରେ ନାମିତ କରିଛନ୍ତି । ଏହି ଉଦାସୀକରଣ ଆମର କଳା ସାହିତ୍ୟ, ଜୀବନଧାରା, ଚିନ୍ତାଧାରା ଏବଂ ରକ୍ଷଣଶୀଳତା ମଧ୍ୟକୁ ପ୍ରବେଶ କରିଛି । ଏ ପରିପ୍ରେକ୍ଷୀରେ ପାରିବାରିକ ଜୀବନ ଭିତରେ ବୃହତ ବ୍ୟର୍ଥତା ଆତ୍ମ ପ୍ରକାଶ କରିଛି । ସ୍ୱଷ୍ଟ ମଣିଷ ଆଗରେ ବ୍ୟବସାୟିକ ମନୋରଞ୍ଜନ ଯୋଗାଇ ଦେଇ ଯୁବକମାନଙ୍କୁ ସମାଜର ମୁଖ୍ୟ ସମସ୍ୟା ମୁଖ୍ୟ ସ୍ରୋତଠାରୁ ଅଲଗା ରଖିବାରେ ସଫଳ ହୋଇଛି । ପ୍ରତିଟି ପଦକ୍ଷେପରେ ଆମେ ଏକ ଦାୟିତ୍ୱହୀନ ଓ ବେପରୱା ଜୀବନକୁ ସାମ୍ନା କରୁଛେ । ଏହି ବେପରୱା ଓ ଅନିୟନ୍ତ୍ରିତ ଜୀବନର ସ୍ୱରଲିପି ବହୁ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରକାଶ ପାଇ ସାରିଛି । ନାଟ୍ୟକାର ମନୋରଞ୍ଜନ ଦାସଙ୍କର 'ବିତର୍କିତ ଅପରାହ୍ନ' ନାଟକର ଗୋଟିଏ ଦୃଷ୍ଟାନ୍ତ ନିଆଯାଇ ପାରିବ—

'ବୁଲୁବୁଲୁ—ବୋଉ ।
ସୁକୁମାର—ବୋଉ ଏଇଠି ଅଛି ।
ବୁଲୁବୁଲୁ—ମୁଁ ବୋଉକୁ ଡାକୁଛି ।
ସୁକୁମାର—ମୁଁ ତୋତେ ଡାକୁଛି ।
ବୁଲୁବୁଲୁ—ମୁଁ ବୋଉକୁ ଡାକୁଛି ।
ଶାଶୁଡ଼ୀ—ବାପା ପରା ତୋତେ ଡାକୁଛନ୍ତି ।
ବୁଲୁବୁଲୁ—କାହିଁକି, ମୋଠି ତାଙ୍କର କି କାମ ।
ଶାଶୁଡ଼ୀ—ମୁଁ ଯାଏ, ତାକୁ ପଠାଇ ଦେବି ।
ସୁକୁମାର—ମାନେ ! ମୁଁ ଡାକିଲେ ଆସିବନି ।'

ସଦ୍ୟ ସାଂପ୍ରତିକ ମଣିଷ ଗୋଟାଏ ହିପ୍‌ପୀ ଜୀବନକୁ ସୃଷ୍ଟି କରି ବଞ୍ଚିଛି । ସବୁ ସତ୍ତ୍ୱେ ସେ ବଞ୍ଚିଛି । ଏହି ବଞ୍ଚିବାର ବ୍ୟାକୁଳତାରୁ ପରୀକ୍ଷମାଣ ଜୀବନ ବ୍ୟବସ୍ଥାର ଆରମ୍ଭ । ପରୀକ୍ଷାଧର୍ମୀ ଗଳ୍ପମାନଙ୍କରେ ଏହି ଚିନ୍ତାଧାରାକୁ ଗ୍ରହଣ କରି ନିଆ ହୋଇଛି । ସ୍ୱଭାବବାଦ ଓ ଉଦାରବାଦ (Natureism and Liberaism) ବର୍ତ୍ତମାନର ଜୀବନ ଧାରାକୁ ବିଶେଷ

ଭାବରେ ପ୍ରଭାବିତ କରିଛି । ବିଶେଷବାଦ ଓ ବାସ୍ତବବାଦରୁ ରକ୍ଷା ପାଇବାପାଇଁ ଓ ମୁଖ୍ୟ ଜୀବନଯାପନ ପାଇଁ ଏ ଦୁଇଟି ହୃଷ୍ଟପୁଷ୍ଟ ବ୍ୟବହାରିକ ଧାରାକୁ ସାଂପ୍ରତିକ ମଣିଷ ଗ୍ରହଣ କରି ନେଇଛି ।

ସମ୍ବାଦପତ୍ରର ସମ୍ପାଦକୀୟ ଓ ଶିରୋନାମାର ପ୍ରଭାବ ପରୀକ୍ଷାଧର୍ମୀ କ୍ଷୁଦ୍ରଗଳ୍ପରେ ଦେଖାଯିବ । ପାଠକକୁ ମୁଗ୍ଧ କଲାଭଳି ଉତ୍ତେଜକ ଶିରୋନାମା ଦ୍ୱାରା ଯେପରି ଅନେକ ପାଠକ ଆକୃଷ୍ଟ ହୁଅନ୍ତି ପରୀକ୍ଷାଧର୍ମୀ ଗପରେ ସେହିପରି ଏକ କାବ୍ୟିକ ଉତ୍ତେଜନା ପାଠକ ଅନୁଭବ କରନ୍ତି । ପୁଣି ସାଂପ୍ରତିକ ମଣିଷର ସମସ୍ତ ସଙ୍କଟ ଓ ବହୁଧା ବିଭକ୍ତ ବ୍ୟକ୍ତିତ୍ୱ ପାଇଁ ଏହା ଏକ ଉପଯୁକ୍ତ ପନ୍ଥା । ସାଂପ୍ରତିକ ବ୍ୟକ୍ତି ଜୀବନ ଓ ବିସ୍ତୃତଧାରା ପରୀକ୍ଷାଧର୍ମୀ କ୍ଷୁଦ୍ରଗଳ୍ପର ପ୍ରେରଣାର ଉତ୍ସ ।

## ୧ । ମିନିଗଳ୍ପ—

କ୍ଷୁଦ୍ରଗଳ୍ପର ଆଉ ଏକ କ୍ଷୁଦ୍ର ସଂସ୍କରଣକୁ ମିନିଗଳ୍ପର ମର୍ଯ୍ୟାଦା ଦିଆଯାଏ । ମିନିଗଳ୍ପର ଏକ ଗ୍ରେଟିଆ ପ୍ଲଟ୍ ଥାଏ । ମାତ୍ର ଗୋଟିଏ ଚରିତ୍ରକୁ ଆଧାର ରୂପେ ଏଥିରେ ଗ୍ରହଣ କରାଯାଇଥାଏ । ଏହି ଚରିତ୍ରକୁ ବିଶ୍ଳେଷଣର ଭୂମି ଯୋଗାଇ ଦେବାପାଇଁ ଅନେକ ସହାୟକ ଘଟଣା ସୃଷ୍ଟି ହୋଇ ଥାଆନ୍ତି, ଯାହାକୁ ନେଇ ମିନିଗଳ୍ପ ପୂର୍ଣ୍ଣାଙ୍ଗ ପ୍ରକାଶିତ ହୁଏ । ମିନିଗଳ୍ପରେ ପରିବେଶର ଗୁରୁତ୍ୱ ଥାଏ । ଚରିତ୍ର ପାଇଁ ଦୁଇ ତିନୋଟି ଘଟଣା ଥାଏ ଏବଂ ପ୍ରତ୍ୟେକ ଘଟଣାର ସ୍ୱତନ୍ତ୍ର ଆଭିମୁଖ୍ୟ ପ୍ରକାଶ ପାଇଥାଏ । ବିଭିନ୍ନ ପରିବେଶ ଓ ପରିସ୍ଥିତିରେ ଚରିତ୍ରକୁ ବ୍ୟାଖ୍ୟା କରିବା ଏ ପ୍ରକାର ଗପର ଉଦ୍ଦେଶ୍ୟ । ଗୁଣାତ୍ମକ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ କେତେକ ମିନିଗଳ୍ପ ସୃଷ୍ଟିକୁ ଅସ୍ୱୀକାର କରି ହେବନାହିଁ ।

## ୨ । ଅଣୁଗଳ୍ପ ବା ଆଭାସ ଗଳ୍ପ—

ଅଣୁ ଗଳ୍ପ କ୍ଷୁଦ୍ରଗଳ୍ପର ଶେଷତମ ପରୀକ୍ଷାର ଫଳଶ୍ରୁତି । ଏହାକୁ ଗଳ୍ପ ନ କହି ଗଳ୍ପାଭାସ କହିଲେ ଠିକ୍ ହେବ । ଏଥିରେ ପରୋକ୍ଷ ଭାବରେ ଗୋଟିଏ କାହାଣୀର ସୂଚନା ଦିଆଯାଇଥାଏ । ଏହା ମାତ୍ର ଦଶବାର ଧାଡ଼ି ମଧ୍ୟରେ ଆରମ୍ଭ ହୋଇ ଶେଷ ହୋଇଥାଏ । ଏହାର ଭାଷା ଅତି ମାତ୍ରାରେ କାବ୍ୟିକ । ଗୋଟିଏ ଶବ୍ଦ ଏଥିରେ ଅଧିକ ଅର୍ଥ ପ୍ରକାଶ କରିବାରେ ସକ୍ଷମ । ଆଭାସ ଗଳ୍ପର ପାଠକ ସୀମିତ । ଏ ପର୍ଯ୍ୟନ୍ତ ଓଡ଼ିଆ ଗଳ୍ପ ସାହିତ୍ୟରେ ସାର୍ଥକ ଆଭାସ ଗଳ୍ପ ସୃଷ୍ଟି ହୋଇ ପାରିନାହିଁ ।

## ୩ । ପ୍ରତୀକ ଗଳ୍ପ—

ପ୍ରତୀକ ଗଳ୍ପ ପରିସର କ୍ଷୁଦ୍ରଗଳ୍ପ ପରି ବ୍ୟାପକ ହେବାରେ କୌଣସି ଅସୁବିଧା ନାହିଁ । ପ୍ରତୀକଧର୍ମୀ ଗଳ୍ପ ସାଧାରଣତଃ ମନସ୍ତାତ୍ତ୍ୱିକ ଗଳ୍ପ ପର୍ଯ୍ୟାୟର । ମଣିଷର ଅନ୍ତଃଚେତନା ସହ ଏକାତ୍ମ ହୋଇ ଏଥିରେ ଏକ କାହାଣୀ ପ୍ରକାଶ ପାଇଥାଏ । ମଣିଷର ଆବେଗ ଓ ପ୍ରବୃତ୍ତିକୁ ପ୍ରତୀକ ମାଧ୍ୟମରେ ବ୍ୟବହାର କରି-ଯାଇଥାଏ । ଓଡ଼ିଆ ଗଳ୍ପ ସାହିତ୍ୟରେ କେତେକ ପ୍ରତୀକବାଦୀ କ୍ଷୁଦ୍ରଗଳ୍ପ ସଫଳତାର ସହ ସୃଷ୍ଟି କରିଯାଇଛି ।

ପ୍ରବୃତ୍ତି ଓ ପ୍ରୟୋଗ ଦୃଷ୍ଟିରୁ ବିଭିନ୍ନ ପ୍ରକାରର କ୍ଷୁଦ୍ରଗଳ୍ପ ଦେଖା ଦେଇ ଥାଆନ୍ତି । ଆବେଦନ ଦୃଷ୍ଟିରୁ ଏହାକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରି ଆଲୋଚନା କରିଗଲି । ଉପରୋକ୍ତ ବିଭାଗ ଛଡ଼ା ବୈଜ୍ଞାନିକ କ୍ଷୁଦ୍ରଗଳ୍ପ ଶିଶୁଗଳ୍ପ ମଧ୍ୟ ଆମ ଗଳ୍ପ ସାହିତ୍ୟରେ ଦେଖାଯାଏ । ବିଭିନ୍ନ ସ୍ୱାଦର ଗଳ୍ପର ସମନ୍ୱୟରେ ଓଡ଼ିଆ ଗଳ୍ପ ଭଣ୍ଡାର ପରିପୁଷ୍ଟ ହୋଇ ପାରିଛି ।

## ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ —

ଉପନ୍ୟାସ ଜୀବନର ମହାକାବ୍ୟ । କ୍ଷୁଦ୍ରଗଳ୍ପ ଜୀବନର ସୂକ୍ଷ୍ମ ଅନୁଭବ ପରିପ୍ରକାଶ । ଉପନ୍ୟାସକୁ ଯଦି ଏକ ବୃହତ ବନସ୍ପତି ସହ କଳନା କରାଯିବ ତାହାହେଲେ କ୍ଷୁଦ୍ରଗଳ୍ପ ସେହି ଅର୍ଥରେ ଏକ ସଳଖ ନାରିକେଳ ବୃକ୍ଷର ମର୍ଯ୍ୟାଦା ହାସଲ କରିବ । ଉପନ୍ୟାସ କେବଳ ବ୍ୟକ୍ତି ଜୀବନ ନୁହେଁ ଏଥିରେ ଗୋଟିଏ ଜାତିସ୍ଥ ଜୀବନ ଆତ୍ମପ୍ରକାଶ କରିଥାଏ । ଗୋଟାଏ ଜାତିର ଐତିହ୍ୟ, ସଂସ୍କୃତି, ପରମ୍ପରା ଓ ମାନଦଣ୍ଡ ଉପନ୍ୟାସ ଭିତର ଦେଇ ଆତ୍ମପ୍ରକାଶ କରେ । ଉପନ୍ୟାସ ଗୋଟିଏ ଜାତିର ଅତୀତ ଜୀବନକୁ ପୂର୍ଣ୍ଣଭାବରେ ଅଧ୍ୟୟନ କରିବାର ସୁଯୋଗ ସୃଷ୍ଟି କରିଥାଏ । ଇତିହାସଭିତ୍ତିକ ଉପନ୍ୟାସରେ କଳା ଭିତରେ ସାହିତ୍ୟର ସତ୍ୟପାଠ କରାଯାଇ ଥାଏ । ଗୋଟାଏ ଜାତିର ଗୌରବ ଏବଂ ସୁବର୍ଣ୍ଣ ସମୟ ସହିତ ଜାତିସ୍ଥ ଅଧୋଗତି ପ୍ରକାଶ ପାଇଥାଏ । ଉପନ୍ୟାସରେ ବଳିଷ୍ଠ କାହାଣୀ ଏବଂ ବ୍ୟାପକ ଚରିତ୍ରମାନେ ପ୍ରକାଶ ପାଇଥାଆନ୍ତି । ଏଥିରେ ବ୍ୟକ୍ତିଗତ ସମସ୍ୟା ଅପେକ୍ଷା ଗୋଷ୍ଠୀ ସମସ୍ୟା ବା ସମାଜ ସମସ୍ୟା ଅଧିକ ଭାବରେ ଅଙ୍କେିତ ହୋଇଥାଏ । ଗୋଟିଏ ଉପନ୍ୟାସ ଭିତରେ ଅନେକ କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥାଏ । ଏମିତି କୁହାଯାଇ ପାରିବ ଅନେକ କ୍ଷୁଦ୍ରଗଳ୍ପ ମିଶି ଏକ ଉପନ୍ୟାସ ପ୍ରସ୍ତୁତ ହୋଇଥାଏ । ଉପନ୍ୟାସ ଏକ ପୂର୍ଣ୍ଣକଳା, ଏଥିରେ କଳା ଓ କାରିଗରି କୌଶଳର ଉତ୍କର୍ଷତା ଅନୁଭବ କରାଯାଇ ଥାଏ ।

କ୍ଷୁଦ୍ରଗଳ୍ପ କ୍ଷୁଦ୍ରାୟତନ ବଶିଷ୍ଟ । ସେ ମଣିଷ ଜୀବନର ମୁହୂର୍ତ୍ତିକାରର ଭାଷ୍ୟକାର । ସମୁଦ୍ରରେ ଉଠୁଥିବା ଅନେକ ଢେଉ ଭିତରୁ ଗୋଟିଏ ଢେଉ । ଜୀବନରେ ଅନେକ ସମସ୍ୟା ଆସେ ଓ ଆପେ ଅପେ ଗୁଳ୍ପିଯାଏ । ଉପନ୍ୟାସରେ ସେହି ସମସ୍ତ ସମସ୍ୟାର ସଳଖ ବ୍ୟାଖ୍ୟା ପ୍ରକାଶ କରାଯାଉଥିବାବେଳେ କ୍ଷୁଦ୍ରଗଳ୍ପରେ ସେହି ସମସ୍ୟା ମଧ୍ୟରୁ ବୃହତ୍ତମ ସମସ୍ୟାକୁ ଆବେଗଦୀପ୍ତ ଭାବରେ ବର୍ଣ୍ଣନା କରାଯାଇ ଥାଏ । ଗୋଟିଏ ଅନ୍ଧାର ଘରକୁ ଟର୍ଚ୍ଚ ଆଲୋକ ପକାଇଲେ ତା'ର ଯେତିକ ଅଂଶ ଆଲୋକିତ ହେବ ଏବଂ ଏଥିରେ ଆଲୋକର ମହତ୍ତ୍ୱ ଯେତେ ଫୁଟିଉଠିବ, କ୍ଷୁଦ୍ରଗଳ୍ପରେ ଅନୁରୂପ ଆନନ୍ଦ ପାଠକ ଅନୁଭବ କରିଥାଏ ।

କ୍ଷୁଦ୍ରଗଳ୍ପ ଉପନ୍ୟାସଠାରୁ ପୃଥକ ହୋଇ ପଡ଼ିଥିବା ଏକ କ୍ଷୁଦ୍ର ବିଭାଗ । କ୍ଷୁଦ୍ରକାହାଣୀ, ଜମ୍ ଚରିତ୍ର ସହୋପର ଅନାବଶ୍ୟକ ବର୍ଣ୍ଣନାକୁ ବାଦଦେଇ କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥାଏ । ସାମ୍ପ୍ରତିକ ସମୟ ସଙ୍କଟଗ୍ରସ୍ତ ମଣିଷ ପାଇଁ କ୍ଷୁଦ୍ର-ଗଳ୍ପର ଆବଶ୍ୟକତା ଦିନକୁ ଦିନ ବୃଦ୍ଧି ପାଉଛି । କ୍ଷୁଦ୍ରଗଳ୍ପ ଉପନ୍ୟାସର ଆନନ୍ଦ ଦେଇପାରିବ ନାହିଁ କି ଉପନ୍ୟାସ କ୍ଷୁଦ୍ରଗଳ୍ପର ଆବେଗକୁ ପ୍ରକାଶ କରିପାରିବ ନାହିଁ । ଉପନ୍ୟାସ କଥା ସାହିତ୍ୟର କ୍ଲାସିକ୍ ବିସ୍ତୃତଧାରା, କ୍ଷୁଦ୍ରଗଳ୍ପ ଏହି ବିସ୍ତୃତ-ଧାରାର ସଙ୍କ୍ଷିପ୍ତ ସଂସ୍କରଣ ।

## ଓଡ଼ିଆ କ୍ଷୁଦ୍ରଗଳ୍ପର ବିକାଶଧାରା—

ଓଡ଼ିଆ ସାହିତ୍ୟରେ ବିଧିବଦ୍ଧ କ୍ଷୁଦ୍ରଗଳ୍ପ ସୃଷ୍ଟି ହେବା ପୂର୍ବରୁ ଗଳ୍ପର ପ୍ରାଚୀନତା ଲୋକଗପମାନଙ୍କରେ ଦେଖା ଯାଇଥାଏ । ଓଡ଼ିଆ ଭାଷାରେ ଅନେକ ସମୃଦ୍ଧ ଲୋକଗପ ରହିଛି, ଯାହା ଓଡ଼ିଶାର ଅଗଣିତ ଶ୍ରୋତାମାନଙ୍କୁ ମନୋରଞ୍ଜନ ଯୋଗାଇ ଦେବାରେ ଅକୁପଣ ସାହାଯ୍ୟ କରି ଆସିଛି । କଳୁଷାବେଣ୍ଟ କଥା, କତେଇ ଧୋବଣୀ କଥା, ବୁଢ଼ୀ ଅସୁରୁଣୀ କଥା, ମଣ୍ଡାଖିଆ ଅସୁର କଥା ଆଦି ଗପମାନଙ୍କର ସୌନ୍ଦର୍ଯ୍ୟ ଓ ଗୁରୁତ୍ୱ ଆଜି ମଧ୍ୟ ଶ୍ରୋତା ଉପଲବ୍ଧି କରି ଥାଆନ୍ତି । କେବଳ ସମୃଦ୍ଧ ଲୋକଗପ ନୁହେଁ, ବୌଦ୍ଧ ଜାତକ ଗପମାନଙ୍କରେ ମଧ୍ୟ ଗପକଥନ କଳା ଦେଖାଯାଇ ଥାଏ । ଓଡ଼ିଆ ସାହିତ୍ୟରେ ବିଧିବଦ୍ଧ ଗଳ୍ପ ଚର୍ଚ୍ଚା ହେବା ପୂର୍ବରୁ ପ୍ରାଚୀନ ଲୋକଗପ ମାନଙ୍କର ବଳିଷ୍ଠ ଅବଦାନ ସ୍ମରଣୀୟ ।

ଫକୀରମୋହନ ସେନାପତି ୧୮୯୮ ମସିହାରେ ଉତ୍କଳ ସାହିତ୍ୟ ପତ୍ରିକାରେ 'ରେବତୀ' ଗପ ରଚନା କରି ଓଡ଼ିଆ ସାହିତ୍ୟରେ ବିଧିବଦ୍ଧ ପୂର୍ଣ୍ଣାଙ୍ଗ କ୍ଷୁଦ୍ରଗଳ୍ପ

ରଚନାର ପରିଚୟ ଦେଲେ । ଅବଶ୍ୟ ୧୮୬୮ ମସିହାରେ ଫକୀରମୋହନ 'ଲଛମନିଆ' ନାମକ ଏକ ଗପ ରଚନା କରିଥିଲେହେଁ ତା'ର ବିଲୁପ୍ତି ଯୋଗୁଁ ଏହା ଆଲୋଚନା ପରିସରଭୁକ୍ତ ହୁଏନାହିଁ । ମଧୁସୂଦନ ରାଓ 'ପ୍ରଣୟର ଅଦ୍ଭୁତ ପରିଣାମ' 'ଚନ୍ଦ୍ର ଓ ତାରା' 'ହେମମାଳା' ଗଳ୍ପ ରଚନା କରି ଗପ ଲେଖିବାର ପ୍ରାଥମିକ ପ୍ରୟାସ ଓ ପ୍ରେରଣା ସୃଷ୍ଟି କରିଥିଲେ । ଏହି ସମୟରେ ରାଧାନାଥ ରାୟ 'ଇତାଲୀୟଯୁବା' ନାମକ ରୋମାଞ୍ଚକାରୀ ଦୀର୍ଘ ଗଳ୍ପ ରଚନା କରିଥିଲେ । ଏସବୁ ସାମୟିକ ଓ ପ୍ରାଥମିକ ପ୍ରୟାସର ପୃଷ୍ଠଭୂମିରେ ଫକୀରମୋହନ ହିଁ ଓଡ଼ିଆ ଗଳ୍ପ ସାହିତ୍ୟକୁ ନୂତନ ପରିଚୟ ପ୍ରଦାନ କଲେ । ଫକୀରମୋହନ କୋଡ଼ିଏଟି ଗଳ୍ପ ରଚନା କରିଛନ୍ତି । ତାଙ୍କ ଗଳ୍ପରେ ଉତ୍କଳର ପଲ୍ଲୀଜୀବନ, ସାଧାରଣ ମଣିଷର ତତ୍କାଳୀନ ସମସ୍ୟା, ଓଡ଼ିଶାର ବୈବାଣିଜ୍ୟ ଓ ସମାଜ ଜୀବନର ବ୍ୟାପକ ପରିଚୟ ମିଳିଥାଏ । ଫକୀରମୋହନ ଉତ୍କଳର ଗାଁ ଦାଣ୍ଡକୁ ଚହଲି ଥିଲେ, ସାଧାରଣ ମଣିଷ ସହ ମାତି ହୋଇଥିଲେ, ତାଙ୍କ ଗପରେ ସେହି ମାନବିକ ମୂଲ୍ୟବୋଧ ଓ ସଂସ୍କାରଚେତନା ଏକ ଅବକ୍ଷୟଗାମୀ ପୃଷ୍ଠପଟ୍ଟରେ ପ୍ରଦତ୍ତ ହୋଇଛି । ଫକୀରମୋହନ 'ରେବତୀ' 'ଗଣ୍ଡିଷ୍ଟ ଅନନ୍ତା' 'ପେଟେଣ୍ଟମେଡ଼ିସିନ୍' 'କମଳାପ୍ରସାଦ ଗୋରାପ' 'କାଳିକାପ୍ରସାଦ ଗୋରାପ' 'ମାଧମହାନ୍ତିଙ୍କ କନ୍ୟାସୂନା' 'ସଭ୍ୟଜମିଦାର' 'ପାଠୋଇବୋହୂ' 'ବୋହୂବେଗ' 'ଧୂଳିଆବାବା' 'ଝୁନାବୋହୂ' 'ଗାରୁଡ଼ିମନ୍ତ୍ର' 'ବିରେଇବିଶ୍ୱାଳ' 'ପୁନର୍ମୂଷିକୋଽଭବ' 'ବାଲେଶ୍ୱର ପଙ୍ଗାଲୁଣ' 'ଅଧର୍ମ ବିତ୍ତ' ଆଦି ଗଳ୍ପ ରଚନା କରିଛନ୍ତି । ଫକୀରମୋହନ ସର୍ବମୋଟ କୋଡ଼ିଏଟି କ୍ଷୁଦ୍ର ଗଳ୍ପ ରଚନା କରି ନିଜ ଗଳ୍ପ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ୧୯୦୭ ମସିହାରେ ଗାଳ୍ପିକ ଚନ୍ଦ୍ରଶେଖର ନନ୍ଦ ତାଙ୍କର 'ଚିଠି' ନାମକ ଗଳ୍ପ ସଙ୍କଳନ ପ୍ରକାଶ କରିଛନ୍ତି ।

ସତ୍ୟବାଦୀ ଯୁଗରେ ଅନେକ ସ୍ରଷ୍ଟା ଗପ ରଚନାରେ ବ୍ରତୀ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଗାଳ୍ପିକ ଦୟାନିଧି ମିଶ୍ର ଅନ୍ୟତମ । ଶ୍ରୀଯୁକ୍ତ ମିଶ୍ର 'ଆକର୍ଷଣ' 'ଶାନ୍ତି' 'ଅରୁଣା' 'ପ୍ରଦୀପ ନିର୍ମାଣ' ଆଦି ଗଳ୍ପ ସୃଷ୍ଟି କରିଛନ୍ତି । ରେବା ରାୟଙ୍କ ଗଳ୍ପ 'ଶକୁନ୍ତଳା' ଏ ସମୟରେ ପ୍ରକାଶ ପାଇଛି । ଗାଳ୍ପିକ ଦିବ୍ୟସିଂହ ପାଣିଗ୍ରାହୀ ନିଜ ପ୍ରତିଭାବଳ ଲେଖନୀରୁ 'ପାନବାଲୀ' 'ମାଳତୀ' 'ଅମୃତକଙ୍କଣ' 'ଗୟାଶ୍ରାଦ୍ଧ' ଆଦି ଗଳ୍ପ ସୃଷ୍ଟି କରିଛନ୍ତି । ଏ ସମୟର ଅନ୍ୟତମ ଶକ୍ତିଶାଳୀ ପ୍ରତିଭା ଲକ୍ଷ୍ମୀକାନ୍ତ ମହାପାତ୍ର ଅନେକ ସାମାଜିକ ଗପ ରଚନା କରି ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ଶ୍ରୀଯୁକ୍ତ ମହାପାତ୍ର 'ବୁଢ଼ା ଶଙ୍ଖାରି' 'ପରୀକ୍ଷା ଫଳ' 'ପ୍ରଜାପତିଙ୍କ ଅଭିଶାପ' ଆଦି ଗପ ଉଚ୍ଚକୋଟିର ଗପ ଭାବରେ ସମ୍ମାନିତ ହୋଇଛି । ବାଙ୍କନିଧି ପଟ୍ଟନାୟକ 'ପୋଷ୍ୟପୁତ୍ର' 'ଲଛମନିଆ' 'ମୂଲିଆ' ଆଦି ଗପ ରଚନା କରିଛନ୍ତି । ଓଡ଼ିଶାର ସମାଜ

ଜୀବନ ଓ ବିଭିନ୍ନ ସାମାଜିକ ସମସ୍ୟା ଓ ମାନବବାଦକୁ ପୁଷ୍ଟି କରି ଏ ସମୟର ଗପ ବୁଦ୍ଧିମନ୍ତ ହୋଇଛି ।

ପଣ୍ଡିତ ଗୋଦାବରୀଶ ମିଶ୍ର 'ପଞ୍ଚୱୀର' ଓ 'ପୁଆଣି ଘର' ଗ୍ରନ୍ଥରେ ତାଙ୍କ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । 'ପାଣ୍ଡୁ ମିଶ୍ରେ' 'ବିଧବା କନ୍ୟା' 'ସାବିତ୍ରୀ ସ୍ତ୍ରୀ' 'ବରଯାତ୍ରୀ' ଆଦି ତାଙ୍କର କେତୋଟି ସାର୍ଥକ ଗଳ୍ପ । ଉତ୍କଳର ପଲ୍ଲୀ ଜୀବନର ସାଂସ୍କୃତିକ ଚିତ୍ରର ପରିଚୟ ତାଙ୍କ ଗପମାନଙ୍କରୁ ମିଳିଥାଏ । ଗୋଦାବରୀଶ ମହାପାତ୍ର 'ମାଗୁଣିର ଶଗଡ଼' 'ଏବେ ମଧ୍ୟ ବଞ୍ଚିଛି' 'ବିଖ୍ୟାତ କଣ୍ଟକରୁ ଅଖ୍ୟାତ ପଲ୍ଲୀ' 'ନୀଳ ମାଷ୍ଟ୍ରାଣୀ' ଆଦି କାଳଜୟୀ ଗପମାନ ସୃଷ୍ଟି କରିଛନ୍ତି । 'ମୁଁ ଦିନେ ମନ୍ତ୍ରୀ ଥିଲି' 'ଶ୍ରୁତି ସଞ୍ଚୟନ' ଆଦି ସଙ୍କଳନରେ ତାଙ୍କ ଗପଗୁଡ଼ିକ ସ୍ଥାନ ପାଇଛି ।

ସବୁଜ ଯୁଗର ସାହିତ୍ୟରେ ଗପ ରଚନା ପ୍ରତି ବିଶେଷ ଆଗ୍ରହ ପ୍ରକାଶ ପାଇ ନ ଥିଲେହେଁ କେତେଜଣ ପ୍ରତିଶ୍ରୁତିବାନ ସ୍ରଷ୍ଟା ସାର୍ଥକ ଗପ ସୃଷ୍ଟି କରି ଯାଇଛନ୍ତି । କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ମଣିଷର ପଶୁପ୍ରବୃତ୍ତି ଓ ପଶୁଭିତରେ ମାନବତ୍ୱ ସମ୍ବଳିତ ଗଳ୍ପ 'ମାଂସର ବିଳାପ'କୁ ଗ୍ରହଣ କରାଯାଇ ପାରେ । 'ଶେଷରଶ୍ମି' 'ସାଗରିକା' 'ମୋକଥାଟି ସରିନାହିଁ' 'ଗ୍ରଣିଫଳ' 'ଦ୍ୱାଦଶୀ' ଆଦି ସଙ୍କଳନରେ ଅନେକ ଗପ ଏକାଠି କରି ଗାଳ୍ପିକ ନିଜ ସ୍ୱକୀୟ ସୃଜନଶୀଳତାକୁ ପ୍ରକାଶ କରିଛନ୍ତି । ହରେକୃଷ୍ଣ ମହତାବ ରାଜନୈତିକ ଚେତନା ଓ ପାଣିପାଗକୁ ନେଇ କେତୋଟି ଗଳ୍ପ ରଚନା କରିଛନ୍ତି । 'ସ୍ୱର୍ଗରେ ଇମରଜେନ୍‌ସି' ଗାଳ୍ପିକଙ୍କର ଗଳ୍ପସତ୍ତାର ପରିଚୟ ବହନ କରେ । ଅନନ୍ତପ୍ରସାଦ ପଣ୍ଡାଙ୍କ 'ସଭ୍ୟତାର ତଳେ' 'ବାରମଜା' 'ତୃଣଗୁଚ୍ଛ' 'ମନର ଭୂତ' 'ନୈଶସୁନ୍ଦରୀ' 'ଯୁଗରହସ୍ୟ' ଆଦି ସଙ୍କଳନମାନଙ୍କରେ ଅନେକ ଗଳ୍ପ ଗୁଚ୍ଛି ଓଡ଼ିଆ ଗଳ୍ପଜଗତକୁ ପରିପୁଷ୍ଟ କରିଛନ୍ତି । ହରିଶ୍ଚନ୍ଦ୍ର ବଡ଼ାଳଙ୍କ ଗଳ୍ପ ସମାଜ ଜୀବନ ଓ ବ୍ୟକ୍ତି ଜୀବନକୁ ସଫଳତାର ସହ ଆଙ୍କିବାରେ ପ୍ରୟାସ କରିଛି । ଗାଳ୍ପିକ 'ଚଟିର ଡାକ' ସଙ୍କଳନରେ ମମତା ଓ ରକ୍ତସମ୍ପର୍କକୁ ନେଇ ସୁନ୍ଦର ବର୍ଣ୍ଣନା ବୋଧର ପରିଚୟ ପ୍ରଦାନ କରିଛନ୍ତି ।

ସାମ୍ୟବାଦୀ ଚିନ୍ତାଧାରାରେ ପ୍ରଭାବିତ ଭଗବତୀ ଚରଣ ପାଣିଗ୍ରାହୀ କେତୋଟି ଗଳ୍ପ ରଚନା କରି ନିଜକୁ ଗାଳ୍ପିକ ଭାବରେ ସାବ୍ୟସ୍ତ କରିଛନ୍ତି । 'ଶିକାର' 'ହାଡ଼ୁଡ଼ି ଓ ଦା' 'ମୀମାଂସା' 'ଝଡ଼' ଆଦି ଗପ ତାଙ୍କ ଶୋଷଣ ମୁକ୍ତ ଚିନ୍ତାଧାରାର ପରିଚୟ ବହନ କରିଥାଏ । ରାଜକିଶୋର ରାୟ ଓ ରାଜକିଶୋର ପଟ୍ଟନାୟକ ଓଡ଼ିଆ ଗଳ୍ପ ସାହିତ୍ୟରେ ଦୁଇଟି ଯଶସ୍ୱୀ ପ୍ରତିଭା । ରାଜକିଶୋର ରାୟଙ୍କ 'ବିକଚ-ଶତଦଳ' 'ବନଜ୍ୟୋତ୍ସ୍ନା' 'ଜୟଶ୍ରୀ' 'ନୀଳଲହରୀ' 'ମନର ମୃଣାଳ' 'ଜୟଗଙ୍ଗା' 'ମଧ୍ୟାହ୍ନର ମରୁପଥେ' 'ଆଦିମରୂପ' 'ଦୁର୍ବଳ ଦେବାଳୟ' ଆଦି ଗଳ୍ପ ସଙ୍କଳନରେ

ଜୀବନର ସୂକ୍ଷ୍ମ ଅନୁଭବ ଓ ଦାର୍ଶନିକ ମନନଶୀଳତାର ପରିଚୟ ପ୍ରଦାନ କରିଛନ୍ତି । ରାଜକିଶୋର ପଟ୍ଟନାୟକଙ୍କ 'ଗୁଠପଥର' 'ଶାଳଗ୍ରାମ' 'ହୃଦୟବନ୍ଧନ' 'ନିଶାଣ ଖୁଣ୍ଟ' ଆଦି ଗପ ସଙ୍କଳନ ଓଡ଼ିଆ ଗଳ୍ପ ସାହିତ୍ୟରେ ଗୁରୁତ୍ୱପୂର୍ଣ୍ଣ । ଏ ସମୟର ବିଶିଷ୍ଟ ଗାଳ୍ପିକମାନଙ୍କ ଭିତରେ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ 'ବିଷପୀୟୂଷ' 'ଅନ୍ଧଦେଶକୁ-ଗଲି' ବାମାଚରଣ ମିତ୍ରଙ୍କ 'ପରିଗ' 'ବଣ୍ଟପୁରୁଷ' 'ପାଷାଣର ପ୍ରାଣ' 'ନଇଛଞ୍ଚାଣ' ବିଭୂତିଭୂଷଣ ତ୍ରିପାଠୀଙ୍କର 'ନିଶାନ୍ତ' 'ଚନ୍ଦନା' 'ସେତୁ' ଆଦି ଗଳ୍ପ ସଙ୍କଳନ ଗ୍ରନ୍ଥକ ଓଡ଼ିଆ ଗପ ସାହିତ୍ୟକୁ ଏକ ଏକ ଅନବଦ୍ୟ ଦାନ ।

ସଚ୍ଚିଦାନନ୍ଦ ରାଉତରାୟ ପ୍ରାକ୍ ସ୍ୱାଧୀନତା କାଳରେ ଓ ପରବର୍ତ୍ତୀ ସମୟରେ ଅନେକ କ୍ଲାସିକ୍ ଗପ ସୃଷ୍ଟି କରିଛନ୍ତି । 'ମଶାଣିର ଫୁଲ' 'ମାଟିର ତାଜ' 'ହାତ' 'ଅନ୍ଧାରୁଆ' 'ମାଙ୍କଡ଼ ଓ ଅନ୍ୟାନ୍ୟ ଗଳ୍ପ'ର ଆବେଦନ ଅନନ୍ୟ । ଶ୍ରୀଯୁକ୍ତ ରାଉତରାୟଙ୍କ ସହଯୋଗରେ ଓଡ଼ିଆ ଗପ ସାହିତ୍ୟ ରୁଦ୍ଧିମନ୍ତ ହୋଇଛି । ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ସହଯୋଗରେ ଓଡ଼ିଆ ଗପ ଜଗତରେ ନୂତନ ଧାରାର ସୃଷ୍ଟି ହୋଇଛି । ଫ୍ରଏଡ଼ୀୟ ମନସ୍ତତ୍ତ୍ୱ ସହ ବାସ୍ତବ ପରିବେଶକୁ ବ୍ୟାଖ୍ୟା କରି ଶ୍ରୀଯୁକ୍ତ ମହାନ୍ତି ତାଙ୍କ ଗପରେ ନୂଆ ନୂଆ ପ୍ଲଟ୍ ସୃଷ୍ଟି କରି ପାରିଛନ୍ତି ଓ 'କାଳକାଟ' 'କବି ଓ ନର୍ତ୍ତକୀ' 'କୃଷ୍ଣଚୂଡ଼ା' 'ରୁଟି ଓ ଚନ୍ଦ୍ର' 'ମହାନଗରୀରେ ରାତ୍ରି' 'ମରାଳର ମୃତ୍ୟୁ' 'ନିଶିପଦ୍ମବତୀ' 'ଦୁଇସୀମାନ୍ତ' 'ସବୁଜ ପତ୍ର ଓ ଧୂସର ଗୋଲାପ' 'ମାଂସର କୋଣାର୍କ' 'ସୁରେନ୍ଦ୍ର ବଚନ' 'ସୁରେନ୍ଦ୍ର ସଞ୍ଚୟନ' ଆଦି ସଙ୍କଳନରେ ସୁରେନ୍ଦ୍ରୀୟ ଶୈଳୀ ଓ ଗଳ୍ପକଳାର ପରିଚୟ ମିଳିଥାଏ । ହାସ୍ୟରସକୁ ଗପର ମୁଖ୍ୟ ପ୍ରକାଶଭଙ୍ଗୀ କରି ଗାଳ୍ପିକ ମହାପାତ୍ର ନୀଳମଣି ସାହୁ ବ୍ୟକ୍ତି ଜୀବନର ଅସହାୟତାକୁ ଅତି ସୁନ୍ଦର ଭାବରେ ତାଙ୍କ ଗପରେ ଉପସ୍ଥାପିତ କରିଛନ୍ତି । ମହାପାତ୍ର ନୀଳମଣି ସାହୁଙ୍କ ଗପ ଏକ ସାଧାରଣ ପରିବେଶ ଭିତରୁ ଆରମ୍ଭ ହୋଇ ବୌଦ୍ଧିକ ସ୍ତରକୁ ଛୁଇଁଯାଇ ଥାଏ । 'ସୃମିତାର ହସ' 'ଅନ୍ଧରାତିର ସୂର୍ଯ୍ୟ' 'କପୋତ ପକ୍ଷୀ ଗୁରୁ ମୋର' 'ମିଛ ବାଘ' 'ଶୁଣନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ' 'ଅଭିଶପ୍ତ ଗନ୍ଧର୍ବ' 'ପିଙ୍ଗଳା ସେ ଅନ୍ୟ ଜଣେ' 'ସେକାଳ ପକାଳ' 'ଅନ୍ୟରୂପ ରୂପାନ୍ତର' ଆଦି ସଙ୍କଳନମାନଙ୍କରେ ଶ୍ରୀଯୁକ୍ତ ସାହୁ ନିଜକୁ ଜାହିର୍ କରିଥାଆନ୍ତି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆଧୁନିକ ମଣିଷର ଅସହାୟତାକୁ ହୃଦୟଙ୍ଗମ କରି ମଣିଷର ମାନସିକ ସ୍ଥିତି ଚିତ୍ରଣରେ ଗାଳ୍ପିକ କିଶୋରୀ ଚରଣ ଦାସ ବିବିଧ ଦୃଷ୍ଟିକୋଣରୁ ବ୍ୟାପକ ପ୍ରୟାସ କରିଛନ୍ତି । 'ନାଲିଗୁଲୁଗୁଲୁ ସାଧବ ବୋହୂ' 'ଘରବାହୁଡ଼ା' 'ଭଙ୍ଗାଖେଳନା' 'ଠାକୁରଘର' 'ଶୀତଳହରି' 'ଭିନ୍ନପାଉଁଶ' 'ସାନ୍ଧ୍ୟ ଦୁଇଟି ଘରର ସତ୍ତା' 'ଲେଉଟାଣୀ' 'ଗମନ' ଆଦି ଗାଳ୍ପିକଙ୍କର କେତୋଟି କାଳୁଷ୍ଟ ଗଳ୍ପ ସଙ୍କଳନ । ଅଖିଳମୋହନ ପଟ୍ଟନାୟକ

ମଣିଷର ସୂକ୍ଷ୍ମ ଅନୁଭବକୁ ଗ୍ରହଣ କରି ଅନେକ ସାର୍ଥକ ଗପ ସୃଷ୍ଟି କରିଛନ୍ତି । 'ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର' 'ନଦୀର ନାମ ଗଣତନ୍ତ୍ର' ଓ 'ଅନ୍ଧଗଳି' ଆଦି ଗଳ୍ପ ସଙ୍କଳନରେ ଅଖିଳ ମୋହନଙ୍କ ପ୍ରତିଭାର ଚିହ୍ନ ସ୍ପଷ୍ଟ । ଗାଳ୍ପିକ ବ୍ରହ୍ମାନନ୍ଦ ପଣ୍ଡା 'ପ୍ରାନ୍ତସମର' 'ଖେଳକକା' 'କଳା ଓ କଳନା' ସଙ୍କଳନରେ ନିଜକୁ ପ୍ରତିଷ୍ଠା ଦେଇଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ କୃଷ୍ଣ ପ୍ରସାଦ ମିଶ୍ର ଜଣେ ଶକ୍ତିଶାଳୀ ପ୍ରତିଭା ଭାବରେ ଅନେକ ଗପ ରଚନା କରିଛନ୍ତି । 'ସନାତନ ଓଁଝା ଗଳ୍ପେ କୁଆଡେ' 'ନିଜକୁ ନାୟକ ମନେକରି' 'ପଶ୍ଚିମା' 'ଭୃଗୁ ସଂହିତା' 'ପାରିଜାତକ' 'ପଲାତକ' 'ଚନ୍ଦ୍ରିତ ଗ୍ରହର' 'ନୀଳଦାସର କାବ୍ୟ' 'ନାଏଗ୍ରା ଓ ଦେବଯାନୀ' ଆଦି ସଙ୍କଳନମାନଙ୍କରେ ତାଙ୍କର ବସ୍ତୁନିଷ୍ଠ ବର୍ଣ୍ଣନା ପାଠକମାନଙ୍କୁ ଛୁଇଁଥାଏ । ଗାଳ୍ପିକ ଅଚ୍ୟୁତାନନ୍ଦ ପତି 'ଉତ୍ତେଜନ ଉତ୍ତାପ' 'ସ୍ୱାମୀ ଓ ସନ୍ନ୍ୟାସୀ' 'ଘର ସଂସାର କଥା' ଆଦି ସଙ୍କଳନ ମାଧ୍ୟମରେ ଗଳ୍ପ ଜଗତରେ ଆତ୍ମ ପ୍ରକାଶ କରିଛନ୍ତି । ଶୁକଦେବ ସାହୁଙ୍କ 'ବର୍ଣ୍ଣାଳୀ', ରବିନାରାୟଣ ବରାଳଙ୍କ 'ଶିଖଣ୍ଡିର ଆତ୍ମଲିପି' ଓଡ଼ିଆ ଗଳ୍ପ ସାହିତ୍ୟରେ ଦୁଇଟି ପାଠକୀୟ ସଙ୍କଳନ ଭାବରେ ଗୃହୀତ ହୋଇଛି । ଗାଳ୍ପିକ ରବି ପଟ୍ଟନାୟକଙ୍କ 'ବିଷୁବ ରେଖା' 'ଗଳ୍ପ ପେଡ଼ି' 'ହିରଣ୍ୟଗର୍ଭ' 'ଅସାମାଜିକ ଡାଏରି', ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ 'ଆରୋଗ୍ୟର ଗଳ୍ପ' 'ସବୁଯାକ ସ୍ୱପ୍ନ', ନନ୍ଦିନୀ ଶତପଥୀଙ୍କ 'କେତୋଟି କଥା', ଦୁର୍ଗାମାଧବ ମିଶ୍ରଙ୍କ 'ଜଉଡତି କହୁଛନ୍ତି' 'ମନ୍ଦାକ୍ରାନ୍ତା' 'ସେଇ ହସଟି ଏକ', ସାତକଡ଼ି ହୋତାଙ୍କ 'ଜଗନ୍ନାଥଙ୍କ ହସ' 'କରିଗୁରର କନ୍ୟା', ଯଦୁନାଥ ଦାଶ ମହାପାତ୍ରଙ୍କ 'ନିହତ ଚନ୍ଦ୍ରମା' 'ସୀତା ଅଭିଶାପ', କୃଷ୍ଣ ଚରଣ ବେହେରାଙ୍କ 'ନାରୀ ଏକ ନଦୀର ନାମ' ଗୋଟିଏ ଗୋଟିଏ ଉଲ୍ଲେଖନୀୟ ଗଳ୍ପ ସଙ୍କଳନ ଭାବରେ ଆଦୃତ ହୋଇଛି ।

ବ୍ୟତିକ୍ରମୀ ସ୍ରଷ୍ଟା ମନୋଜ ଦାସ ସହଜ ସ୍ୱଭାବ ଭଙ୍ଗୀରେ ଅନେକ ଗପ ରଚନା କରିଛନ୍ତି । ଉକ୍ତ ଗପଗୁଡ଼ିକ 'ମନୋଜ ଦାସଙ୍କ କଥା ଓ କାହାଣୀ' 'ଶେଷ ବସନ୍ତର ଚିଠି' 'ଆବୁ ପୁରୁଷ ଓ ଅନ୍ୟାନ୍ୟ କାହାଣୀ' 'ଭିନ୍ନ ମଣିଷ ଓ ଅନ୍ୟାନ୍ୟ କାହାଣୀ' 'ଧୂମ୍ରାଭ ଦିଗନ୍ତ ଓ ଅନ୍ୟାନ୍ୟ କାହାଣୀ'ରେ ପ୍ରକାଶ ପାଇଛି । ଓଡ଼ିଆ ଗପ ସାହିତ୍ୟରେ ମନୋଜ ଦାସ ଜଣେ ଉଚ୍ଚକୋଟିର ସ୍ରଷ୍ଟା । ମାନବିକତା ତାଙ୍କ ଗପର ମୁଖ୍ୟ ଉତ୍ସ ।

ବୀଣାପାଣି ମହାନ୍ତି ନାରୀ ମନସ୍ତତ୍ତ୍ୱକୁ ନେଇ ଅନେକ ଗପ ସୃଷ୍ଟି କରିଛନ୍ତି । 'ପାଟ ଦେଈ' 'ବସ୍ତ୍ର ହରଣ' 'କସ୍ତୁରୀ ମୃଗ ଓ ସବୁଜ ଅରଣ୍ୟ' 'ତଟିନୀର ତୃଷ୍ଣା'

'ଖେଳଣା' ଆଦି ସଙ୍କଳନରେ ସ୍ରଷ୍ଟା ବୀଣାପାଣିଙ୍କ ବିପୁଳ ସମ୍ଭାବନାକୁ ଦେଖା ଯାଇଥାଏ । ଗାଳ୍ପିକା ପ୍ରତିଭା ରାୟ ଆଧୁନିକ ଅସହାୟ ନାରୀତ୍ୱକୁ ତାଙ୍କ ଗପ-ମାନଙ୍କରେ ବିଶ୍ଳେଷଣ କରିଛନ୍ତି । 'ଚନ୍ଦ୍ରଭାଗା ଓ ଚନ୍ଦ୍ରକଳା' 'ସାମାନ୍ୟ କଥନ' 'ଗଙ୍ଗଶିଉଳି' 'ଅସମାପ୍ତ' ଆଦି ସଙ୍କଳନରେ ତାଙ୍କ ପରିପୁଷ୍ଟ ଲେଖନୀର ପରିଚୟ ମିଳିଥାଏ । ବିଭୂତି ପଟ୍ଟନାୟକ ପ୍ରେମ ପ୍ରଣୟ ଜନିତ ବ୍ୟାପାରକୁ ନେଇ ଅନେକ ଗପ ରଚନା କରିଛନ୍ତି । ସେଥି ମଧ୍ୟରୁ 'ମନ ଭଲ ନାହିଁ' 'ମନ ଦର୍ପଣ' 'କେତେ ଯେ ବସନ୍ତ' 'ଅନ୍ୟ ଏକ ଭାରତ ବର୍ଷ' 'ନୀଳ ଆଖିର ନଦୀ' 'ଅନେକ ତାରାର ରାତି' ଆଦି ସଙ୍କଳନଗୁଡ଼ିକ ତାଙ୍କୁ ଗାଳ୍ପିକର ମର୍ଯ୍ୟାଦା ପ୍ରଦାନ କରିଛି । ଗାଳ୍ପିକ ଶାନ୍ତନୁ କୁମାର ଆଚାର୍ଯ୍ୟ ସୂକ୍ଷ୍ମ ବିଚାରଧାରାର ପରିଚୟ ଦେଇ ଅନେକ ଚମତ୍କାର ଗଳ୍ପ ସୃଷ୍ଟି କରିଛନ୍ତି ।

'ଅତିନ ବଉଳ' 'ଆଦ୍ୟ ସକାଳ' 'ଏଇ ଶେଷ ପଦଟି' 'ଦୁଦ୍ୱାର' 'ଚଳନ୍ତି ଠାକୁର' ଆଦି ସଂକଳନରେ ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ପ୍ରତିଭାର ପରିଚୟ ମିଳିଥାଏ । ଗାଳ୍ପିକ ରାମଚନ୍ଦ୍ର ବେହେରା ମଣିଷର ଅନ୍ତଃପ୍ରବୃତ୍ତି ଓ ବହିଃପ୍ରବୃତ୍ତିକୁ ବିଶ୍ଳେଷଣ କରି ଅନେକ ଗପ ସୃଷ୍ଟି କରିଛନ୍ତି । 'ବନ୍ଧ୍ୟା ରନ୍ଧ୍ରବା' 'ଦ୍ୱିତୀୟ ଶ୍ମଶାନ' 'ଓଁକାର ଧ୍ୱନି' 'ଭଗ୍ନାଂଶର ସ୍ୱପ୍ନ' 'ଅବଶିଷ୍ଟ ଆୟୁଷ' 'ଅଚଳା ପୃଥିବୀ' ଆଦି ସଙ୍କଳନ-ମାନଙ୍କରେ ଗାଳ୍ପିକଙ୍କ ଚିତ୍ତବୃତ୍ତିର ପରିଚୟ ମିଳିଥାଏ । ଉତ୍ତମ କୁମାର ପ୍ରଧାନଙ୍କ 'କଳାହାଣ୍ଡିରେ କଥାକାର' 'ନଚିକେତାର ହାତ' 'ବୁଢ଼ିଆଣୀ ଓ ବୃଦ୍ଧ ପ୍ରଜାପତି' ଆଦି ସଙ୍କଳନଗୁଡ଼ିକ ଓଡ଼ିଆ ଗଳ୍ପ ସାହିତ୍ୟରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚିତ ହୋଇଛି । ଗାଳ୍ପିକ ପଦ୍ମଜ ପାଲ 'ଅପେକ୍ଷା କର ମୁଁ ଫେରୁଛି' 'ଈଗଲର ନଖ-ଦାଗ' 'ନିଶୀଥ ଅରଣ୍ୟ' ସଂକଳନମାନଙ୍କରେ ଏକ ନୂତନ କଥନ ଶୈଳୀର ପରିଚୟ ଦେଇଛନ୍ତି ।

ଗାଳ୍ପିକ ଚନ୍ଦ୍ରଶେଖର ଦାସବର୍ମାଙ୍କ 'ଅନ୍ୱେଷଣ' 'ଭୂତ ନୂଆ ପୁରୁଣା' 'ଅନ୍ୟ ମଣିଷ', ଆନନ୍ଦ ଚନ୍ଦ୍ର ପତିଙ୍କ 'ଅନ୍ୟ ଅରଣ୍ୟ' 'ଷ୍ଟାଚ୍ୟୁ', ଅନାଦି ସାହୁଙ୍କ 'ଏଣ୍ଡୁଅ', ସହଦେବ ସାହୁଙ୍କ 'ଆକାଶକନ୍ୟାଁ', ତରୁଣକାନ୍ତି ମିଶ୍ରଙ୍କର 'କୋମଳ ଗାନ୍ଧାର' 'ବହୁବ୍ରୀହି', ସୁରେନ୍ଦ୍ର ମିଶ୍ରଙ୍କର 'ଯୁଦ୍ଧ ଓ ଅନ୍ୟାନ୍ୟ ଗଳ୍ପ', ରମେଶ ପଟ୍ଟନାୟକଙ୍କ 'ସ୍ୱପ୍ନ ସିଂହାସନରେ ପ୍ରିୟତମା', ଫଟୁରାନନ୍ଦଙ୍କ 'ମଙ୍ଗଳବାରିଆ ସାହିତ୍ୟ ସଂସଦ' 'ବିଦୂଷକ', ରତ୍ନାକର ଚଇନିଙ୍କ 'ରତ୍ନର ନାମ ପ୍ରିୟା' 'ତଥାପି ରାବଣ' ଆଦି ସଙ୍କଳନଗୁଡ଼ିକ ଓଡ଼ିଆ ଗଳ୍ପ ସାହିତ୍ୟକୁ ପରିପୁଷ୍ଟ କରିବାରେ ସାହାଯ୍ୟ କରିଛନ୍ତି ।

ଗାଳ୍ପିକ ଜଗଦୀଶ ମହାନ୍ତି, ହରେକୃଷ୍ଣ ଦାଶ, ଦେବରାଜ ଲେଙ୍କା, ଯଶୋଧାର ମିଶ୍ର, ଜଗନ୍ନାଥ ପାତ୍ର, ଅନ୍ନଦା ପ୍ରସାଦ ରକ୍ଷିତ୍, ଦେବବ୍ରତ ମଦନ ରାୟ, ବିଜୟପ୍ରସାଦ ମହାପାତ୍ର, ନାରୁ ମହାନ୍ତି, ହୃଷିକେଶ ପଣ୍ଡା, ଅଜାମୁର ମଲ୍ଲ, ଭୀମ ପୃଷ୍ଟି, ଆର୍ଯ୍ୟ ଯଜ୍ଞଦତ୍ତ, ଗୌରହରି ଦାସ, ଅଧ୍ୟାପକ କିଶୋରଞ୍ଜନ, ଭବାନୀ ପାଢ଼ୀ ଯୋଶୀ, ଅଭୟ ବାରିକ, ଗିରୀଶ ସାହୁ, କବିତା ବାରିକ, ରାମଚନ୍ଦ୍ର ସାହୁ (ରୂଢ଼), ରବି ସ୍ୱାଇଁ, ଗିରିଦଣ୍ଡସେନା, ଅକ୍ଷୟ ମହାନ୍ତି (ବିଚରା), ଜଗନ୍ନାଥ ପ୍ରସାଦ ଦାସ ପ୍ରମୁଖ ସ୍ରଷ୍ଟା-ମାନେ ଉତ୍ତର ଅର୍ଦ୍ଧୀକାଳରେ ଅନେକ କାଳଜୟୀ ଗପମାନଙ୍କରେ ଜନକ ହେବାର ଗୌରବ ହାସଲ କରିଛନ୍ତି । ଅନେକ ବୟସ୍କ ଗାଳ୍ପିକଙ୍କ ସହ ଅନେକ ପ୍ରତିଭାବନ୍ତ ତରୁଣ ଗାଳ୍ପିକଙ୍କ ସମନ୍ୱୟରେ ସାମ୍ପ୍ରତିକ ଗଳ୍ପ ସାହିତ୍ୟ ଋଦ୍ଧିମନ୍ତ ହୋଇଛି । ଗଳ୍ପପ୍ରତି ପାଠକମାନଙ୍କର ଆଦର ସବୁ ସମୟରେ ଥିବାରୁ ଗଳ୍ପ ପ୍ରତି ଅଧିକ ଲେଖକ ସଚେତନ ହୋଇ ଉନ୍ନତମାନର ଗପ ସୃଷ୍ଟି କରୁଛନ୍ତି । ଓଡ଼ିଆ ଗଳ୍ପ ସାହିତ୍ୟର ଭବିଷ୍ୟତ ଉଜ୍ଜ୍ୱଳ କରିବା ପାଇଁ ଅନେକ ତରୁଣ ବ୍ରତୀହେବା ଗୁରୁତ୍ୱପୂର୍ଣ୍ଣ ।

# ଉପନ୍ୟାସ

୮        ୨

ଉପନ୍ୟାସ ସାହିତ୍ୟର ଆଧୁନିକତମ ବିଭାଗ । ମଣିଷ ତା'ର ସ୍ୱାଭାବିକ ଅନୁଭବକୁ ପ୍ରଥମେ ଲୋକଗୀତ, ଲୋକ କାହାଣୀ ଏବଂ ପରେ କାବ୍ୟକବିତା ମାଧ୍ୟମରେ ପ୍ରକାଶ କରିଛି । ସାହିତ୍ୟ ଯେତେବେଳେ ବିକଶିତ ଅବସ୍ଥାରେ ମଣିଷର ବିଭିନ୍ନ ସମସ୍ୟାକୁ ନେଇ ପ୍ରକାଶ ପାଇଛି, ସେତେବେଳେ ସ୍ରଷ୍ଟା ଉପନ୍ୟାସ ସୃଷ୍ଟିର ଆବଶ୍ୟକତା ଅନୁଭବ କରିଛି । ଏକଦା ଗପ କହିଲେ 'ଆଇମା' କାହାଣୀ, ପରୀରାଇଜର କାହାଣୀ, ଲୋକ କଥାର ବିଭିନ୍ନ କିମ୍ବଦନ୍ତୀକୁ ଗ୍ରହଣ କରାଯାଉଥିଲା । କିନ୍ତୁ ପରେ ପରେ ଏସବୁ କାହାଣୀ ସ୍ଥାନରେ ନୂତନ କାହାଣୀ ଜନ୍ମନେଲା । ଆଧୁନିକ ମଣିଷର ସୁଖଦୁଃଖସମସ୍ୟାକୁ ନେଇ ସାମାଜିକ କାହାଣୀ ସୃଷ୍ଟିହେଲା । ଏହି କାହାଣୀମାନ ମଣିଷର ଗୋଟିଏ ଅବସ୍ଥା, ଗୋଟିଏ ମାତ୍ର ଆବେଗ ପ୍ରକାଶ କରିବାରେ ସମର୍ଥ ହେଲେ । ମଣିଷର ପୂର୍ଣ୍ଣ ପ୍ରତିବିମ୍ବ ଏହି କାହାଣୀ ଭିତରେ ଦେଖିବାକୁ ମିଳିଲା ନାହିଁ । ଏହିଭଳି ଏକ ସମସ୍ୟା ଭିତରୁ ଉପନ୍ୟାସର ସୃଷ୍ଟି । ଉପନ୍ୟାସ ମଣିଷ ଜୀବନର ପ୍ରତିଛବି । ଜନ୍ମରୁ ଜରାଯାଏ ଗୋଟିଏ ମଣିଷର ଜୀବନ ସଂଗ୍ରାମ ଏହା ଭିତରେ ଆତ୍ମପ୍ରକାଶ କରିଥାଏ । ପାଶ୍ଚାତ୍ୟ ଜଗତର ଶିଳ୍ପବିପ୍ଳବ ବାସ୍ତବିକ୍ ଉପନ୍ୟାସ ସୃଷ୍ଟି ପାଇଁ ମାର୍ଗ ପ୍ରସ୍ତୁତ କରି ସାରିଥିଲା । ଏକ କର୍ମମୟ ଜୀବନର କାହାଣୀ ପଢ଼ିବା ପାଇଁ, ମଣିଷର ସମସ୍ୟା ସହ ଏକୀଭୂତ ହେବାପାଇଁ ଯେଉଁ ଅଧିକାର ପ୍ରସ୍ତାବ ଏ ସମୟରେ ଆରମ୍ଭ ହେଲା, ସେଥିରେ ଦୀର୍ଘ ସ୍ତୁଜନରେ ସ୍ରଷ୍ଟା ମନୋନିବେଶ କରିବା ଜଣାଗଲା । ମହାକାବ୍ୟ ରଚନା କରିବା ପାଇଁ ସ୍ରଷ୍ଟାର ପ୍ରଚଣ୍ଡ ଧୀଶକ୍ତି, ପାଣ୍ଡିତ୍ୟ ଏବଂ ସୃଜନଶୀଳତା ପରି ଉପନ୍ୟାସିକ ତା'ର ସମସ୍ତ କଳାଗତ ଗୁଣ ପ୍ରୟୋଗ କରି ଉପନ୍ୟାସ ସୃଷ୍ଟି କରିଥାଏ । ଉପନ୍ୟାସ ସାହିତ୍ୟର ସାମ୍ପ୍ରତିକ ରୂପ ହେଲେ ମଧ୍ୟ, ତା' ଭିତରେ ଏକ ମାର୍ଜିତ କଳା ବ୍ୟାପ୍ୟାମ ପରିଲକ୍ଷିତ ହୋଇଥାଏ ।

ଉପନ୍ୟାସ କାହାକୁ କୁହାଯିବ ? ଏପରି ଏକ ପ୍ରଶ୍ନକୁ ସାମ୍ନା କରିବାପାଇଁ ଯେ କୌଣସି ଉତ୍ତର ଅପର୍ଯ୍ୟାପ୍ତ ପଡ଼ିବ । ଉପନ୍ୟାସ ପରି ଏକ ବିସ୍ତୃତ ବନସ୍ପତିର

ନିରୂପିତ ସଂଜ୍ଞା ପ୍ରଦାନ କରିବା କଷ୍ଟସାଧ୍ୟ ନିଶ୍ଚୟ । ଉପନ୍ୟାସ ଆଧୁନିକ ବ୍ୟକ୍ତି ଜୀବନର ଜଟିଳତମ ଦଲିଲ । ଏହାର ପୃଷ୍ଠା ପରିଧିରେ ମଣିଷ ମନର ଅନେକ ରହସ୍ୟ ବୁଢ଼ିଆଣୀ ଜାଲପରି ଘେରି ହୋଇଥାଏ । ଉପନ୍ୟାସରେ କଳ୍ପନା କମ ଥାଏ ଏବଂ ବାସ୍ତବତା ବ୍ୟାପକ ଭାବରେ ଉପନ୍ୟାସକୁ ଧରି ରଖିଥାଏ । ଏହା ଏକ ଜୀବନଧର୍ମୀ କଳା । ମୋଟାମୋଟି ଭାବରେ ଜୀବନର କଥା ପ୍ରକାଶ କରିବାପାଇଁ ସ୍ରଷ୍ଟାର ଇଏ ଏକ ନୂତନତମ ପ୍ରୟାସ । ଦୀର୍ଘକାୟ ବସ୍ତୁବିଶିଷ୍ଟ ଏହି ରସାତ୍ମକ ଗଦ୍ୟ ସୃଷ୍ଟିକୁ ଉପନ୍ୟାସ କୁହାଯିବ ନା କ୍ଷୁଦ୍ର ଆୟତନ ସତ୍ତ୍ୱ କୌଣସି ରସଘନ ଗଦ୍ୟ କାବ୍ୟକୁ ଉପନ୍ୟାସ କୁହାଯିବ ତାହା ଏକ ପ୍ରଶ୍ନ । ଯେଉଁ ଭାବରେ ରିଚାର୍ଡ଼ସନ୍ଙ୍କ 'ପାମେଲା'କୁ ଉପନ୍ୟାସର ମର୍ଯ୍ୟାଦା ଦିଆଯାଉଛି, ସେହି ଅର୍ଥରେ ଉମେଶ ଚନ୍ଦ୍ର ସରକାରଙ୍କର 'ପଦ୍ମମାଳୀ' ଉପନ୍ୟାସ ହୋଇ ପାରିବ କି ? ଓଡ଼ିଆ କଥା ସାହିତ୍ୟର ପ୍ରାଚୀନତମ ଐଶ୍ୱର୍ଯ୍ୟ 'ବୁଦ୍ଧସୁଧାନିଧି', 'ଚତୁର ବିନୋଦ' ଉପନ୍ୟାସ ରୂପ ଗ୍ରହଣ କରାଯିବ କି ? ଯାହାକୁ ଆମେ 'ଉପନ୍ୟାସ' ବୋଲି ଆଜିପର୍ଯ୍ୟନ୍ତ ଧରିନେଇଛୁ ତାହା ଏକ ବୃହତ ସୃଷ୍ଟି, ଯା ଭିତରେ ଏକ ବୃହତ ଗପ ବା ଅନେକ କ୍ଷୁଦ୍ରଗପ (ଗୋଟିଏ ମୁଖ୍ୟ ଓ ଅନ୍ୟମାନେ ଗୌଣ) ଆତ୍ମପ୍ରକାଶ କରି ଥାଆନ୍ତି । ଏଭଳି ଏକ ସଂଜ୍ଞାର ସମସ୍ତ ସର୍ତ୍ତ 'ଚତୁର ବିନୋଦ' ପୂରଣ କରିଥାଏ । କିନ୍ତୁ 'ଚତୁର ବିନୋଦ' ଓଡ଼ିଆ ଭାଷା ସାହିତ୍ୟର ପ୍ରଥମ ଉପନ୍ୟାସ ରୂପେ କି ସ୍ଥା ଭିତରେ ଉପନ୍ୟାସ କଳା ନିହିତ ଏକଥା ସମାଲୋଚନା ସ୍ତରକୁ ଏପର୍ଯ୍ୟନ୍ତ ଆସିନାହିଁ । ମୋଟାମୋଟି ଭାବରେ ଉପନ୍ୟାସ କ'ଣ, ଏକଥା ବୁଝିବା ପାଇଁ ଆମ ପାଖରେ ସ୍ୱଦେଶୀ କାରିଗରୀ ନାହିଁ ବରଂ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତକୁ ଆମେ ଏହି ପାଶ୍ଚାତ୍ୟ ସାହିତ୍ୟ ସୃଷ୍ଟି ସହ ଯୋଡ଼ିଦେଇଛୁ ।

## ପାଶ୍ଚାତ୍ୟ ଦୃଷ୍ଟି—

ଇଂରାଜୀ ଶବ୍ଦ Novelର ଓଡ଼ିଆ ଶବ୍ଦରୂପ ଭାବରେ ଉପନ୍ୟାସକୁ ଗ୍ରହଣ କରାଯାଇଅଛି । Novel ଶବ୍ଦଟି ମୂଳ ଲାଟିନ ଶବ୍ଦ 'Novles'ରୁ ଆସିଅଛି । 'The word novel itself is ultimately derived from the latin 'novles' meaning 'new' viathe Italian word for a short story 'novella' which tended to mean not only as original as opposed to a traditional story, but also one that wat, pretenaedlg at last, of recent occurrence.' (Encyclopaedia Britanicca, vol-16, p-679)

ଲଟିନ ଭାଷାରେ ଯେ କୌଣସି ନୂତନ ଗପକୁ, ନୂତନ ଶୈଳୀର ବର୍ଣ୍ଣନା-ଧର୍ମୀ କଥାକୁ 'novles' କୁହାଯାଉଥିଲା । ପରେ ପରେ ଇଂରାଜୀ Novel ଶବ୍ଦ ଏକ ବ୍ୟାପକ ଅର୍ଥରେ ପ୍ରୟୋଗ ହୋଇ ଏହାର ପରିସରକୁ ବିସ୍ତୃତ କରିପାରିଛି । ଫରାସୀ ଭାଷାରେ Novel କହିଲେ ବୀରତ୍ୱପୂର୍ଣ୍ଣ କାହାଣୀ, ରହସ୍ୟ ରୋମାଞ୍ଚ କାହାଣୀକୁ ବୁଝାଉଥିଲା । ଯେଉଁଥିରେ ବୀରମାନଙ୍କର ଯୁଦ୍ଧ ବିଜୟ ବର୍ଣ୍ଣନା, ଈଶ୍ୱର ଈଶ୍ୱରୀଙ୍କର ଅଲୌକିକ ଆବିର୍ଭାବ, ପରୀକନ୍ୟାମାନଙ୍କର ମର୍ତ୍ତ୍ୟପ୍ରୀତି ସହ ଅଶରୀରୀ ମାନଙ୍କର କାହାଣୀକୁ ପ୍ରକାଶ କରାଯାଉଥିଲା । ଫରାସୀ ଭାଷାରେ ଏହାକୁ 'Roman' ବା 'ରମ୍ୟା' ନାଁବରେ ପ୍ରକାଶ କରାଯାଉଥିଲା । ଏହି Roman ଶବ୍ଦ Romance ଶବ୍ଦରୁ ଗ୍ରହଣ କରାଯାଇଛି, ଯାହାକି ବୀରତ୍ୱପୂର୍ଣ୍ଣ କାହାଣୀ ବା ସେହିପରି ରହସ୍ୟ ରୋମାଞ୍ଚମୟ ଗାଥା ବର୍ଣ୍ଣନା କରିବାରେ ସକ୍ଷମ ହୋଇଛି । ପାଶ୍ଚାତ୍ୟ ସାହିତ୍ୟରେ ଏକ ଦୃଢ଼ ଏବଂ ଦୀର୍ଘ ଗଦ୍ୟ ରଚନାପାଇଁ ଏପରି ଏକ ପ୍ରୟାସ ଆରମ୍ଭ ହୋଇଥିଲା । ବିଭିନ୍ନ ଭାଷା ସାହିତ୍ୟରେ ଏହାର ପରିସର ବିଭିନ୍ନ ପ୍ରକାରର ଥିଲେ ମଧ୍ୟ ଏହାର ପ୍ରବୃତ୍ତିର ସାମ୍ୟ ପରିଲକ୍ଷିତ ହୋଇଥାଏ । ମୂଳ ଲଟିନ୍ ଶବ୍ଦ Novles କୁ ହିଁ Novel ଶବ୍ଦ ଉତ୍ପତ୍ତିର ଆଧାର ରୂପେ ଗ୍ରହଣ କରାଯାଇ ପାରିବ ।

ଓଡ଼ିଆ ଭାଷାରେ Novelର ପ୍ରତି ଶବ୍ଦ ଭାବରେ ଉପନ୍ୟାସକୁ ଗ୍ରହଣ କରାଯାଇଥାଏ । ଏପରି ଏକ ପ୍ରତି ଶବ୍ଦ ପାଇବା ଦ୍ୱାରା Novelର ଶବ୍ଦର ମୂଳ ମୌଳିକ ଲକ୍ଷ୍ୟ ନଷ୍ଟ ହୋଇଥାଏ । 'ଉପନ୍ୟାସ' ସାଧାରଣ ଅର୍ଥରେ Novies କିମ୍ବା 'Romans' ଶବ୍ଦର ଆବଶ୍ୟକତା ପୂରଣ କରିପାରେ ନାହିଁ ପରନ୍ତୁ ଉପନ୍ୟାସ ଏକ ବିସ୍ତୃତ ସଂଜ୍ଞା ବହନ କରିବା ସହ ଏସବୁ ମୂଳ ପାଶ୍ଚାତ୍ୟ ଶବ୍ଦଠାରୁ ବ୍ୟାପକ ଅର୍ଥରେ ବ୍ୟବହୃତ ହୋଇଥାଏ । ଶବ୍ଦତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ଉପନ୍ୟାସକୁ 'ଉପ' ଓ 'ନ୍ୟାସ' ଏହିପରି ଦୁଇଟି ଖଣ୍ଡରେ ବୁଝିବାକୁ ହେବ । ସାଧାରଣତଃ 'ଉପ' ଶବ୍ଦକୁ ପ୍ରସ୍ତାବନ ? ମୁଖବନ୍ଧ ଏବଂ କଥନକାର ଆରମ୍ଭ ଭାବରେ ଗ୍ରହଣ କରାଯାଇଥାଏ । ଯେକୌଣସି ବିଷୟବସ୍ତୁ ସହ ଆରମ୍ଭରେ ବା ଶେଷରେ ଯେଉଁ ଗୌର ଚନ୍ଦ୍ରିକା ଦିଆଯାଇଥାଏ ତାହାକୁ 'ଉପ' ଭାବରେ ଗ୍ରହଣ କରାଯାଏ । 'ନ୍ୟାସ' କହିଲେ ସାଧାରଣ ଭାବରେ ଗଠନମୂଳକତାକୁ ହିଁ ବୁଝାଇଥାଏ । ଏକ କାହାଣୀ ବର୍ଣ୍ଣନା ବା କୌଣସି ଘଟଣା ବିଷୟରେ ସୂଚନା ପ୍ରଦାନ କରିବା ଏଥିରେ ଦେଖାଯାଇଥାଏ । ତେଣୁ ଉପନ୍ୟାସ ଶବ୍ଦଟିକୁ ମିଳାଇ ଦେଖିଲେ ଏହା ଏକ ବର୍ଣ୍ଣନାତ୍ମକ କାହାଣୀ ବା ଗଦ୍ୟରଚନା, କୌଣସି କଥାର ଆମୂଳଚୂଳ ବର୍ଣ୍ଣନା ଭାବରେ ପ୍ରକାଶ ପାଇଥାଏ । 'ଉପନ୍ୟାସ' ଶବ୍ଦରୁ ଗୋଟିଏ ତଥ୍ୟ ସ୍ପଷ୍ଟ ଜଣାପଡ଼େ ଯେ ଏହା ଏକ ବର୍ଣ୍ଣନାତ୍ମକ ରଚନା ପ୍ରକ୍ରିୟା । ଓଡ଼ିଆ ଉପନ୍ୟାସ ଶବ୍ଦ ପ୍ରାଚୀନ

ଲଟିନ୍ ଭାଷାନୁଯାୟୀ କୌଣସି ନୂତନ ଗପ ନୁଭେଁ କ ଫରାସୀ ଶବ୍ଦ ଅନୁଯାୟୀ ରୋମାଞ୍ଚମୟ ବର୍ଣ୍ଣନା ନାହିଁ । ଉପନ୍ୟାସ ଏକ ଶୁଦ୍ଧ ବର୍ଣ୍ଣନା ବିଳାସି ଶବ୍ଦ ଛନ୍ଦ, ଯେଉଁଥିରେ କାହାଣୀ ସହ ଅନ୍ୟାନ୍ୟ ପ୍ରସଙ୍ଗ ସମାନ ଭାବରେ ଆଲୋଚିତ ହୋଇଥାଏ । ସେଇଥିପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ସଂଜ୍ଞା ବଦଳରେ ଯେ କୌଣସି ଲଘୁ ବର୍ଣ୍ଣନାତ୍ମକ ସୃଷ୍ଟିକୁ ଆମ ଭାଷାରେ ଉପନ୍ୟାସ ଭାବରେ ଗ୍ରହଣ କରାଯାଇ ଥାଏ ।

ଉପନ୍ୟାସ ସୃଷ୍ଟି କରିବାପାଇଁ କୌଣସି ଧରାବନ୍ଧା ଫର୍ମୁଲା ନାହିଁ । ଉପ-ନ୍ୟାସିକ ଏକ କାହାଣୀ ଚୟନ କରି ସେଥିରେ ନାନା ରଙ୍ଗର ସମନ୍ୱୟ କରି ଏକ ମୋହନ ମୂର୍ତ୍ତି ତିଆରି କରେ । ଉପନ୍ୟାସ ଜୀବନର ବୋଧିଦ୍ରୁମ, ଏଥିରେ ବ୍ୟକ୍ତି ଜୀବନର ପୂର୍ଣ୍ଣ ପ୍ରତିବିମ୍ବ ପ୍ରକାଶ ପାଇଥାଏ । ସେଇଥିପାଇଁ ଅନ୍ୟ ଯେ କୌଣସି ସାହିତ୍ୟ ସୃଷ୍ଟିଠାରୁ ଉପନ୍ୟାସର ପରିସର ବ୍ୟାପକ ଏବଂ ଏଥିରେ ନାନାବିଧ ପ୍ରୟୋଗ ଏବଂ ପ୍ରାବିଧିକ କଳା ପରିଦୃଷ୍ଟ ହୋଇଥାଏ । ସେଇଥିପାଇଁ ବିଭିନ୍ନ ଆଲୋଚକମାନେ ନିଜସ୍ୱ ଦୃଷ୍ଟିକୋଣରୁ ଗୋଟିଏ ଗୋଟିଏ ସଂଜ୍ଞା ନିରୂପଣ କରିଛନ୍ତି ।

Huttonଙ୍କ ଅନୁଯାୟୀ—'A novel is a work or fiction contuining a good story and well-drawn character.'

Marthew Arnoldଙ୍କ ଅନୁଯାୟୀ—'Novel is the inter-pretation of human life by means of fictitious narrative in prose.'

H. G. Wellsଙ୍କ ଅନୁଯାୟୀ—'A novel is a kind of lucky bag into which anything may be poured.'

Ralph Foxଙ୍କ ଅନୁଯାୟୀ—'The novel is not merely fictional prose, it is the prose of man's life, the first art to attempt to take the whole man and give him expression.'

Henerey Jamesଙ୍କ ଅନୁଯାୟୀ—'A novel is a personal a direct impression of life.'

ଉପନ୍ୟାସ ସମ୍ପର୍କିତ ଏସବୁ ତତ୍ତ୍ୱକୁ ଆଲୋଚନା କଲେ ସାଧାରଣତଃ ଉପନ୍ୟାସ ଯେ ଜୀବନର କଳା ଏହି ଧାରଣା ସୃଷ୍ଟି ହୋଇଥାଏ । ଏହା ମଣିଷ

ଜୀବନର ଭାଷ୍ୟ, ହିସକାହିର ତୀର୍ଥକ୍ଷେତ୍ର ଏବଂ ବର୍ଣ୍ଣିବାର ବିପୁଳ ସମସ୍ୟା ଭିତରୁ ଏହାର ପରିସର ଆରମ୍ଭ । ରେନେସାର ଆରମ୍ଭ ଫଳରେ ପାଶ୍ଚାତ୍ୟ ସମାଜରେ ବ୍ୟକ୍ତି ଜୀବନରେ ଯେଉଁ ସାମାଜିକ, ରାଜନୈତିକ ପରିବର୍ତ୍ତନ ଦେଖାଦେଲା, ଏହି ପରିବର୍ତ୍ତନ ସହି ତାଳ ଦେଇ ମଣିଷର ବ୍ୟକ୍ତିତ୍ୱ ଏବଂ ମୂଲ୍ୟବୋଧ ବଦଳିବାକୁ ଲାଗିଲା । ଶିଳ୍ପ ବିପ୍ଳବ ତା' ପାଇଁ ନୂତନତା ଆଣିଦେଲା । ଯେଉଁ ବିଲରେ ସୋରିଷ ଫୁଲ ଲହଡ଼ି ଭାଙ୍ଗୁଥିଲା ସେଇଠୁ କାରଖାନାର ଧୂଆଁ ଉଠିଲା । ଯେଉଁ ପଲ୍ଲୀ ସୁନ୍ଦରୀର ମାୟାରେ ସେ ଗାଁ ଛାଡ଼ି ବାହାରକୁ ଯାଇ ନ ଥିଲା କ୍ରମଶଃ ସହରର ଡାକରାରେ ସେ ଗାଁ ଛାଡ଼ି ଯିବାକୁ ବାଧ୍ୟ ହେଲା । ମଣିଷର ପୁରୁଣା ବିଶ୍ୱାସ, ଚଳଣି ଏବଂ ପାରମ୍ପରିକ ଭଗବତବୋଧ ପ୍ରତି କୁଠାରଘାତ କରି ରେନେସା ମଣିଷର ଭିତରେ ଓ ବାହାରେ ଏକ ନୂତନ ପରିବର୍ତ୍ତନ ସୃଷ୍ଟି କଲା । ଇଉରୋପରେ ଜ୍ଞାନବିଜ୍ଞାନର ଦ୍ରୁତ ବିକାଶ, କାରିଗରୀ କୌଶଳ ଏବଂ ଆଧୁନିକ ଟେକ୍‌ନୋଲୋଜିର ଉଦ୍‌ଭାବନ ଫଳରେ ଭଗବତ୍ ବିଶ୍ୱାସୀ ମଣିଷ ଯନ୍ତ୍ର ହେବାକୁ ବାଧ୍ୟ ହେଲା । ମଣିଷ ପାଲଟିଗଲା ଯନ୍ତ୍ର ମଣିଷ । ସେ ଆଧୁନିକ ମଣିଷ, ଅସହାୟ ମଣିଷ, ଦ୍ରୁତ ସହରୀ-କରଣ-ଶିଳ୍ପ, ଶିଳ୍ପ ସଭ୍ୟତା, ନଗର ଜୀବନ, ଗ୍ରାମ ବୃତ୍ତିରୁ ପଳାୟନ, ଯୋଗା-ଯୋଗର ବିକାଶ, ପରିବହନ ବ୍ୟବସ୍ଥାର ଉନ୍ନତି, ଛାପାକଳ ଓ କାଗଜର ବହୁଳ ପ୍ରୟୋଗ, ମଣିଷର ମାନସିକ ଅଭିବୃଦ୍ଧିକୁ ପୁଞ୍ଜି କରି ସମଗ୍ର ଇଉରୋପରେ ଏକ ନୂତନ ଜୀବନଧର୍ମୀ ମୃଦୁ ବିପ୍ଳବ ମୁଣ୍ଡ ଟେକିଲା । ଉପନ୍ୟାସ ସେହି ଜୀବନର ପରିଭାଷା, ସଂଘର୍ଷ ଓ ସଂଘାତର କାହାଣୀ, ଅସହାୟତା ଓ ଅନିକେତତାର କାହାଣୀ । ଉପନ୍ୟାସ (Novel)ର ପାଶ୍ଚାତ୍ୟ ଉତ୍ପତ୍ତି ମୂଳରେ ଏ ତତ୍ତ୍ୱକୁ ଗ୍ରହଣ କରିବାକୁ ପଡ଼ିବ ।

## ଉପନ୍ୟାସ ଉତ୍ପତ୍ତିରେ ଭାରତୀୟତା—

ଭାରତବର୍ଷ କଳାର ଦେଶ । ସମସ୍ତ କଳାର ଆଦିମ ତୀର୍ଥକ୍ଷେତ୍ର ହେଉଛି ଭାରତ । ଉପନ୍ୟାସ ପରି ସାହିତ୍ୟର ଏହି ନ୍ରାମାଟିକ ବିଭାଗଟି ଯେ ସମ୍ପୂର୍ଣ୍ଣ ଭାବରେ ବିଦେଶାଗତ ଏକଥା ସ୍ୱୀକାର କରିବା ପୂର୍ବରୁ ଆମ ଭାରତବର୍ଷର ପ୍ରାଚୀନ ସାହିତ୍ୟ-ପ୍ରତି ଆସ୍ଥା ସ୍ଥାପନ କରିବା ଅଧିକ ଆବଶ୍ୟକ ମନେହୁଏ । ସଂସ୍କୃତ ସାହିତ୍ୟରେ ଉପନ୍ୟାସର ସୃଷ୍ଟି ଲଗ୍ନ ସମ୍ପର୍କରେ ପର୍ଯ୍ୟାପ୍ତ ସୂଚନା ମିଳିଥାଏ । ଯଦିଓ ସେ ସବୁକୁ ସେ ସମୟରେ ଉପନ୍ୟାସ ନାମରେ ଗ୍ରହଣ କରାଯାଇ ନ ଥିଲା, ଆଜିର ଉପନ୍ୟାସକୁ ଆଲୋଚନା କଲାବେଳେ ସେହିସବୁ ପ୍ରାଚୀନ ପଦ୍ଧତି ମଧ୍ୟରେ ପର୍ଯ୍ୟାପ୍ତ ଭାବରେ ଉପନ୍ୟାସ କଳା ନିହିତ ଅଛି, ଏକଥା ଗ୍ରହଣ କରିବାକୁ ପଡ଼ିଥାଏ । ଯେ କୌଣସି ସୃଜନଶୀଳ ସୃଷ୍ଟି ପାଇଁ ଉପଯୁକ୍ତ ପାଣିପାଗ ଏବଂ ପରିସ୍ଥିତି ଆବଶ୍ୟକ ହୋଇଥାଏ ।

ଆମ ପ୍ରାଚୀନ ସମାଜରେ ଇଉରୋପୀୟ ପରସ୍ଥିତି ସୃଷ୍ଟି ହୋଇ ନ ଥିବାରୁ ଆମେ ବୋଧହୁଏ ଏ ଆଧୁନିକ ସାହିତ୍ୟ କଳା ସୃଷ୍ଟିରେ ଅଭାବ ଅନୁଭବ କରିଥାଉ । ଆଲୋଚକ ସୁରେନ୍ଦ୍ର ମହାନ୍ତି ଏ ସମ୍ପର୍କରେ କହିଛନ୍ତି, 'ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ବିଶେଷ ପରିସ୍ଥିତିରେ ଅଷ୍ଟାଦଶ ଶତାବ୍ଦୀରେ ଉପନ୍ୟାସର ଅଙ୍କୁରୋଦ୍‌ଗମ ହୋଇଥିଲା, ସେ ପରିସ୍ଥିତି ପ୍ରାକ୍-ମଧ୍ୟଯୁଗୀୟ ଭାରତରେ ନ ଥିବାରୁ, ଉପନ୍ୟାସ ସୃଷ୍ଟି ସମ୍ଭବ ହୋଇପାରି ନ ଥିଲା । ସାହିତ୍ୟର ଫର୍ମ ବା ଆଙ୍ଗିକ ସବୁବେଳେ ସମାଜ ଭିତ୍ତିକ । (ଆଧୁନିକ ଓଡ଼ିଆ କଥା ସାହିତ୍ୟ-ଭୂମିକା-ଓଡ଼ିଶା ସାହିତ୍ୟ ଏକାଡେମୀ) ଭାରତର ଅଷ୍ଟାଦଶ ଶତାବ୍ଦୀ ବିଭିନ୍ନ ରାଜନୈତିକ ଏବଂ ଧାର୍ମିକ ଅନିଶ୍ଚିତତା ମଧ୍ୟରେ ଗତି କରୁଥିଲେ ମଧ୍ୟ ଏହାର ପ୍ରଦେଶମାନଙ୍କ ଭିତରେ ଐକ୍ୟର ଅଭାବ ଏବଂ ବିଭିନ୍ନ ଭାଷା ଓ ସଂସ୍କୃତି ମୋଟାମୋଟି ଭାବରେ ଏକ ମୂଳ ମାର୍ଗରୁ ଅଲଗା ରହିଥିଲା ଏବଂ ଏକଥା ସ୍ୱୀକାର କରିବାକୁ ହେବ, ଏପରି ଏକ ସମୟରେ ଉପନ୍ୟାସ ସୃଷ୍ଟି କରିବାପାଇଁ ଆମ ନିକଟରେ ପର୍ଯ୍ୟାପ୍ତ ସମସ୍ୟା ନ ଥିଲା । ସଂସ୍କୃତ ଆଳଙ୍କାରିକମାନେ ଗଦ୍ୟରଚନାକୁ ଆଖ୍ୟାୟିକା ଏବଂ କଥା ଏହିପରି ଦୁଇ ଭାଗରେ ବିଭକ୍ତ କରିଛନ୍ତି । ପ୍ରାଚୀନ ଭାରତୀୟ ସାହିତ୍ୟରେ ଅନେକ ଆଖ୍ୟାୟିକାର ସମନ୍ୱୟ ଘଟିଥିବା ଲକ୍ଷ୍ୟ କରାଯାଏ । ଏଥିରେ ଅନେକ କ୍ଷୁଦ୍ର କାହାଣୀ ଛଡ଼ା ସ୍ଥାନେ ସ୍ଥାନେ ବୃହତ କାହାଣୀ ମଧ୍ୟ ଦେଖିବାକୁ ମିଳେ ।‌ଅନେକ ସ୍ଥାନରେ ଏକ ମୂଳ କାହାଣୀ ସହ ଅନେକ କ୍ଷୁଦ୍ର କାହାଣୀ ପ୍ରକାଶ ପାଇଥାଏ । ଏସବୁ କାହାଣୀ ସୃଷ୍ଟି ଏବଂ ପ୍ରୟୋଗର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ହୋଇଛି ଜନସାଧାରଣଙ୍କ ମଧ୍ୟରେ ନୀତିଶିକ୍ଷାର ପ୍ରୟୋଗ କରିବା । ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର'ରେ ରାଜକୁମାର ମାନଙ୍କୁ ନେଇ ଏହିପରି ଅନେକ ଉପଦେଶ ମୂଳକ କାହାଣୀ, ସମସ୍ୟା ଓ ତାହାର ଦାୟିତ୍ୱପୂର୍ଣ୍ଣ ସମାଧାନ ପ୍ରସଙ୍ଗ ଆଲୋଚିତ ହୋଇଛି । 'ବୌଦ୍ଧ ଜାତକ ଗପ' ମାନଙ୍କରେ ବୁଦ୍ଧଦେବଙ୍କର ଜନ୍ମ ଓ ନିର୍ବାଣକୁ ନେଇ ଅନେକ ହିତୋପଦେଶମୂଳକ ଗପମାନ ସୃଷ୍ଟି ହୋଇଛି, ଯାହାର ଆବେଦନ ସମାଜରେ ବୁଦ୍ଧଦେବଙ୍କ ବାଣୀ ପ୍ରଚାର କରିବା ସହ ଏକ ନୈତିକ ଧର୍ମଧାରଣା ମଣିଷ ମନରେ ସୃଷ୍ଟି କରିବା । ଏ ସମୟରେ ଭାରତୀୟ ଜୀବନଧାରଣ ତନ୍ତ୍ରମୟ । ବିଭିନ୍ନ ଧର୍ମରେ ତନ୍ତ୍ର ସାଧନା ଯୋଗୁ ସାଧାରଣ ମଣିଷ ଭଗବାନଙ୍କୁ ପାଇବା ପାଇଁ ତନ୍ତ୍ର-ମନ୍ତ୍ର-କାୟାଯୋଗ ଉପରେ ସବୁବେଳେ ଗୁରୁତ୍ୱ ଦେଇ ଆସୁଥିଲା । ଏହି ସୁଯୋଗରେ ଅନେକ କାପାଳିକ, ସାଧକ, ପଣ୍ଡା ଏବଂ ବାବାଜୀମାନେ ତନ୍ତ୍ରସାଧନା ମାଧ୍ୟମରେ ଉଦ୍‌ଭଟ ଏବଂ ଅଲୌକିକ କାହାଣୀମାନ ବର୍ଣ୍ଣନା କରୁଥିଲେ । ଏମାନେ ଏହି କାହାଣୀକୁ ମଣିଷର ଧର୍ମଧାରଣା ସହ ଯୋଡ଼ି ଦେଉଥିଲେ, ଯାହାଦ୍ୱାରା ଧର୍ମଭୀରୁ ମଣିଷ ପୁରୁଷ ପରେ ପୁରୁଷ ଏହି ତତ୍ତ୍ୱକୁ ଗପଭାବେ ବା ଭଗବାନଙ୍କ ଲୀଳା ରୂପେ ମନେ ରଖୁଥିଲେ । ଏପରି ଏକ ମାନସିକ

ଅବସ୍ଥା ପରବର୍ତ୍ତୀ ସମୟରେ କାଳ୍ପନିକ କାହାଣୀମାନ ସୃଷ୍ଟି କରିବାରେ ସହାୟକ ହୋଇଛି । ଦଣ୍ଡୀଙ୍କ 'ଦଶକୁମାର ଚରିତ' ବାଣଭଟ୍ଟଙ୍କ 'କାଦମ୍ବରୀ' ଏବଂ ସୁବନ୍ଧୁଙ୍କର 'ବାସବଦତ୍ତା' ଆଦି ଦୀର୍ଘ ଗପମାନଙ୍କରେ ଅନେକ ରହସ୍ୟଭରା କାହାଣୀର ସମନ୍ୱୟ ଦେଖିବାକୁ ମିଳେ । ଆମ ସମାଜରେ ଗଢ଼ି ଆସୁଥିବା ଅନେକ କ୍ଷୁଦ୍ର କାହାଣୀ ଓ ମାନସିକ ପରିପକ୍ୱତା ମୋଟାମୋଟି ଭାବରେ ଏକ ବଡ଼ ଗପ ଲେଖିବାର ପ୍ରୟାସ ପ୍ରଥମ କରି 'ଦଶ କୁମାର ଚରିତ' ଏବଂ କାଦମ୍ବରୀରୁ ଆରମ୍ଭ ହୋଇଛି । ଭାରତୀୟ ଭାଷାରେ କୌଣସି ଏକ ଦୀର୍ଘ କାହାଣୀ ସୃଷ୍ଟି ପାଇଁ ଜନସାଧାରଣଙ୍କର ମାନସିକତାକୁ ଅବଜ୍ଞା କରି ହେବନାହିଁ । ଅନେକ ପ୍ରଚଳିତ ଲୋକ ବିଶ୍ୱାସ, ଲୋକ କାହାଣୀ ଏବଂ ପରମ୍ପରାର ପୃଷ୍ଠପଟ୍ଟରେ ଅନେକ ବଡ଼ ଗପ ସୃଷ୍ଟି ହେବାର ସମ୍ଭାବନା ସୃଷ୍ଟି ହୋଇଛି ।

ଓଡ଼ିଆ ଭାଷା ସାହିତ୍ୟରେ ଉପନ୍ୟାସ କଳାର ଉତ୍ପତ୍ତି ମହାଭାରତରୁ ହିଁ ଦେଖିବାକୁ ମିଳିଥାଏ । ସାରଳା ଦାସ ମହାଭାରତରେ ଅନେକ ପ୍ରସଙ୍ଗ କବିତାରେ ବର୍ଣ୍ଣନା କରିଥିଲେହେଁ ତାହା ଗପ ପରି ମନେହୁଏ । ଗାଥା କବିତା ଶୈଳୀରେ ମହାଭାରତର ଅନେକ ଅଂଶରେ (ସନ୍ଧ୍ୟାମ୍ବ-ସ୍ୱର୍ଗାରୋହଣ-ସିଂଘାଣୀ କନ୍ୟା ପ୍ରସଙ୍ଗ) ଗପର ବର୍ଣ୍ଣନା କରିଛନ୍ତି । ବଳରାମ ଦାସ ତାଙ୍କ ଜଗମୋହନ ରାମାୟଣରେ ମଧ୍ୟ ନିଜକୁ ଜାତିପୁରର ପରିଚୟ ଦେଇ ନିଜର ଅତୀତ ପରିଚୟ ଉଲ୍ଲେଖ କଲାବେଳେ ଏକ ବୃହତ ଗପକୁ କେଇପଦ ଗୀତି କବିତା ମଧ୍ୟରେ ଶେଷ କରିଛନ୍ତି । ଏସବୁ ମହାନ୍ ସ୍ରଷ୍ଟାମାନଙ୍କରେ ଉପନ୍ୟାସିୟ ଭାବନା ପରିଦୃଷ୍ଟ ହେଉଥିଲେହେଁ, ବାସ୍ତବିକ ଏସବୁ ଉପନ୍ୟାସ ନୁହେଁ । ପ୍ରାଚୀନ ଉପନ୍ୟାସର କଳାଧର୍ମ ଏବଂ ଭାବଧର୍ମ 'ରୁଦ୍ର ସୁଧାନିଧି' ଏବଂ 'ଚତୁର ବିନୋଦ'ରେ ଦେଖିବାକୁ ମିଳେ । ଚତୁର ବିନୋଦର ରଲଗୁଂଫନ ଶୈଳୀ ଆଧୁନିକ ଉପନ୍ୟାସଠାରୁ କୌଣସି ଗୁଣରେ କମ୍ ନୁହେଁ । ଭାରତୀୟ ସାହିତ୍ୟ ପରି ପ୍ରାଚୀନ ଓଡ଼ିଆ ସାହିତ୍ୟର ପରିସର ବ୍ୟାପକ ନୁହେଁ । ତଥାପି ଆଧୁନିକ ଉପନ୍ୟାସ ରଚନା ପାଇଁ ଯେ ଏକ ଭିତ୍ତି ପର୍ବ ଆରମ୍ଭ ହେଉଥିଲା, ଏକଥା ସ୍ୱୀକାର କରିବାକୁ ହେବ ।

ଉପନ୍ୟାସ ସୃଷ୍ଟିରେ ଭାରତୀୟ ଦୃଷ୍ଟିକୋଣ ଉଦାରଶୀଳ ନୁହେଁ । ପ୍ରାଚୀନ ଭାରତୀୟ ଧର୍ମଭିତ୍ତିକ ସମାଜ ବ୍ୟବସ୍ଥାରେ କୌଣସି ସାମାଜିକ ଚରିତ୍ରକୁ ନେଇ କାହାଣୀ ସୃଷ୍ଟି କରିବାର ଅବସ୍ଥା ସେ ସମୟର ସାହିତ୍ୟରେ ସୃଷ୍ଟି ହୋଇ ନ ଥିଲା । ଯକ୍ଷ, କିନ୍ନର, ଈଶ୍ୱର ଈଶ୍ୱରୀ ଏବଂ ମହାପୁରୁଷମାନେ ଥିଲେ ଯେ କୌଣସି ଚିନ୍ତା ଚେତନାର ମୂଳ ଆଧାର । ଯେଉଁ ମଣିଷ ହାତରେ ତମ୍ବୁରା ଧରି ଚଇତା ଚୈତନ କାଟି 'ହରେକୃଷ୍ଣ ହରେରାମ' କୀର୍ତ୍ତନ କରୁଛି, ସେହି ମଣିଷ ଅସହାୟତା,

ଅମଙ୍ଗଳତା ଭଳି ଆଧୁନିକ ବ୍ୟାଧିର ଶିକାର ହେବା କଷ୍ଟକର । ଊନବିଂଶ ଶତକ ପର୍ଯ୍ୟନ୍ତ ଆମର ସମାଜ ଥିଲା ଈଶ୍ୱର ଓ ଧର୍ମଧାରଣାର ସମାଜ । ଯେଉଁଠି ଅନ୍ୟ-କୌଣସି ବାହ୍ୟସତ୍ତାର ସ୍ଥାନ ନ ଥିଲା । ଇଂରେଜମାନେ ଭାରତବର୍ଷକୁ ଆସିବା ପରେ ଆମର ମାନସିକ ଅବସ୍ଥାର ଯେଉଁ ପରିବର୍ତ୍ତନ ଆସିଲା, ଯେ କୌଣସି ଆଧୁନିକ ସାହିତ୍ୟ ତା'ର ଫଳଶ୍ରୁତି ରୂପେ ସୃଷ୍ଟି ହେଲା । ଭାରତୀୟ ଭାଷାରେ ଉପନ୍ୟାସ ସେହିପରି ଏକ ଅବସ୍ଥା, ଗାଳ୍ପ ଗପ ବା ବୌଦ୍ଧ ଜାତକ ଗପ ଉପନ୍ୟାସ ସୃଷ୍ଟିର ପ୍ରେରଣା ବା ପୃଷ୍ଠଭୂମି ହୋଇପାରେ; କିନ୍ତୁ ଉପନ୍ୟାସ ହୋଇ ପାରିବ ନାହିଁ । ଆମର ଶିକ୍ଷା ସଂସ୍କୃତି ଏବଂ ଜୀବନଧାରଣ ମାନ ବଦଳିବା ପରେ ଆମ ଭାଷାରେ ଉପନ୍ୟାସ ସୃଷ୍ଟି ହୋଇଛି ।

## ଉପନ୍ୟାସର ସଂରଚନା ପ୍ରକ୍ରିୟା—

ଉପନ୍ୟାସ ରଚନା ପାଇଁ କୌଣସି ଧରାବନ୍ଧା ଫର୍ମୁଲାର ଦରକାର ହୁଏନାହିଁ । ମହାକାବ୍ୟ ରଚନା କରିବା ସମୟରେ କବି ଯେପରି ମହାକାବ୍ୟର ବିଭିନ୍ନ ଲକ୍ଷଣ ନିୟମମାନଙ୍କ ପ୍ରାଧାନ୍ୟ ଦେଇ ରଚନା କରିଥାଏ, ଉପନ୍ୟାସରେ ସେଭଳି କୌଣସି ସୂତ୍ର ଦରକାର ହୁଏନାହିଁ । ଏହା ଆକାରରେ ଦୀର୍ଘ ହୋଇଥିବା ହେତୁ ଏଥିରେ ବର୍ଣ୍ଣନା ଧର୍ମିତା ପ୍ରାଧାନ୍ୟ ବିସ୍ତାର କରିଥାଏ । ସମୟେ ସମୟେ ବର୍ଣ୍ଣନାର ଆତିଶଯ୍ୟତା ଯୋଗୁ ଏହା ଅନୁପଯୋଗୀ ସାବ୍ୟସ୍ତ ହୋଇଥାଏ; କିନ୍ତୁ ଉପନ୍ୟାସ ବର୍ଣ୍ଣନାକୁ ପରିହାର କରି ସମ୍ଭବ ହୋଇ ପାରିବ ନାହିଁ । ଉପନ୍ୟାସ ଏକ ସ୍ୱୟଂ ସମ୍ପୂର୍ଣ୍ଣ କଳା, ମହାକାବ୍ୟର ସମସ୍ତ ଗୌରବ ଏବଂ କ୍ଷୁଦ୍ର କବିତାର ସମସ୍ତ ଆବେଗ ଉପନ୍ୟାସ ଭିତରେ ଆତ୍ମପ୍ରକାଶ କରିଥାଏ । ଉପନ୍ୟାସରେ ମଧ୍ୟ ନାଟକର ବିଭିନ୍ନ ବିଭାଗକୁ ଧରିହୁଏ । ବିଷୟବସ୍ତୁରେ ନାଟକୀୟତା, କଥନଭଙ୍ଗୀ ଏବଂ ଆବଶ୍ୟକ ସ୍ଥଳେ ସଙ୍ଗୀତ ଚର୍ଚ୍ଚା ମଧ୍ୟ କରାଯାଇ ଥାଏ । ଗୋପିନାଥ ମହାନ୍ତିଙ୍କର 'ପରଜା', 'ଦାଦିବୁଢ଼ା', 'ଅମୃତର ସନ୍ତାନ' ଆଦି ଉପନ୍ୟାସମାନଙ୍କରେ ଆଦିବାସୀ ନୃତ୍ୟ ଓ ସଙ୍ଗୀତର ଚର୍ଚ୍ଚା କରାଯାଇଛି । ନାଟକରେ ଯେପରି ନୃତ୍ୟ ଗୀତର ସମନ୍ୱୟ ଦେଖିବାକୁ ମିଳିଥାଏ, ଉପନ୍ୟାସରେ ମଧ୍ୟ ନାଟକର ଏହିସବୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ପ୍ରକାଶ ପାଇଥାଏ । ଉପନ୍ୟାସ ଏକ ମିଶ୍ରକଳା, ଅନେକ ନାଟକ ଗୋଟିଏ ଉପନ୍ୟାସ ଭିତରେ ପ୍ରକାଶ ପାଆନ୍ତି; କିନ୍ତୁ ନାଟକ ଭିତରେ ଉପନ୍ୟାସ ପ୍ରକାଶ ପାଇପାରେ ନାହିଁ । ରାଗସଙ୍ଗୀତ, ତାଣ୍ଡବନୃତ୍ୟ ଯେ କୌଣସି ସାଂସ୍କୃତିକ ନୃତ୍ୟ-ଗୀତକୁ ଉପନ୍ୟାସ ପ୍ରକାଶ କରିଥାଏ । ଉପନ୍ୟାସକୁ ଅନେକ ଗପମାନଙ୍କର ସମାହାର କହିଲେ ଭୁଲ୍ ହେବନାହିଁ । ଅନେକ ଛୋଟ ଛୋଟ ଗପ ବା ଗୋଟିଏ ମୁଖ୍ୟ ଗପ ଏବଂ ଆଉ କେତୋଟି ଗୌଣ ଗପ ମିଶି ଉପନ୍ୟାସ ସୃଷ୍ଟି କରିଥାଆନ୍ତି ।

ଉପନ୍ୟାସିକ କେତେକ ଚରିତ୍ରର ମାନସିକତାକୁ ନେଇ ଯୁକ୍ତିନିଷ୍ଠ ବାକ୍ୟ ପ୍ରୟୋଗ କରିଥାଏ । ଉକ୍ତ ବର୍ଣ୍ଣନାଂଶଗୁଡ଼ିକ ଚରିତ୍ରର ମହତ୍ତ୍ୱ ବୃଦ୍ଧି କରିବା ସହ ଉପନ୍ୟାସରେ ଦର୍ଶନ ସୃଷ୍ଟି କରିଥାଆନ୍ତି । ଏହି ଗଦ୍ୟଧର୍ମୀ ବର୍ଣ୍ଣନା ଭିତରେ ଉପନ୍ୟାସିକ ନିଜର ମନନ୍ତାବକ ବର୍ଣ୍ଣନା ପାଇଁ ସୁଯୋଗ ପାଇଥାଏ । ଉପନ୍ୟାସ ଭିତରେ କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, ରମ୍ୟରଚନା, କବିତା, ନାଟକ ଏବଂ ଲୋକନାଟକ ଓଡ଼ିଶାର ପଟ୍ଟପଟ୍ଟାଣୀ, ପ୍ରବାଦ ପ୍ରବଚନ, ଲୋକଗୀତ ଓ ସଙ୍ଗୀତର ସୁବୃଦ୍ଧ ପରମ୍ପରାକୁ ଧରିହେବ । ସାହିତ୍ୟର ସମସ୍ତ ବିଭାଗର ପ୍ରାଚୁର୍ଯ୍ୟକୁ ନେଇ ଉପନ୍ୟାସ ସାହିତ୍ୟ ନିଜକୁ ଋଦ୍ଧିମନ୍ତ କରିଛି ।

ଉପନ୍ୟାସ ଏକ ଦୀର୍ଘ କାହାଣୀକୁ ଧରି ରଖିଥାଏ । ସୃଜନଶୀଳ ସ୍ରଷ୍ଟା ମାନସିକ ସ୍ତରରେ ଉପନ୍ୟାସ ସୃଷ୍ଟି କରିବା ପାଇଁ ନିଜକୁ ପ୍ରସ୍ତୁତ କରିନେବା ସମୟରେ ସେ କେତେକ ଆନୁଷଙ୍ଗିକ ବ୍ୟବସ୍ଥା ପ୍ରତି ନଜର ରଖିଥାଏ । କୌଣସି ଏକ ଉପନ୍ୟାସ ରଚନା କରିବା ପାଇଁ ମୁଖ୍ୟତଃ କେତୋଟି ଉପାଦାନ ଆବଶ୍ୟକ ମନେ ହୋଇଥାଏ ।

(କ) କାହାଣୀ, (ଖ) ଚରିତ୍ର, (ଗ) ଆଭିମୁଖ୍ୟ, (ଘ) ରସପ୍ରସଙ୍ଗ, (ଙ) ଭାଷା ଓ ସଂଳାପ, (ଚ) ବର୍ଣ୍ଣନା କଳାକୃତି, (ଛ) ଉପନ୍ୟାସିକ ଶୈଳୀ, (ଜ) ସ୍ଥାନ ଓ କାଳ-ପାତ୍ର ବର୍ଣ୍ଣନା ।

## (କ) କାହାଣୀ—

କାହାଣୀ ଉପନ୍ୟାସର ପ୍ରଧାନ ଅଙ୍ଗ । ବିନା କାହାଣୀରେ ଅନ୍ୟ କୌଣସି ସୃଜନଶୀଳ ବିଭାଗକୁ ସୃଷ୍ଟି କରାଯାଇ ପାରେ; କିନ୍ତୁ କାହାଣୀ ଛଡ଼ା ଉପନ୍ୟାସର ପରିକଳ୍ପନା ଅସମ୍ଭବ ମନେହୁଏ । ଭଲ ଉପନ୍ୟାସ ପାଇଁ ଭଲ କାହାଣୀ ଆବଶ୍ୟକ ହୋଇଥାଏ । ପୂର୍ବକାଳରେ ମନୋରଞ୍ଜନ କହିଲେ ଲୋକ କାହାଣୀ ଓ ପ୍ରଚଳିତ ଲୋକ ବିଶ୍ୱାସକୁ ବୁଝାଉଥିଲା ।

ପୁରାଣ ସାହିତ୍ୟର ବିକାଶ ଫଳରେ ଜନସାଧାରଣଙ୍କ ଅନେକ ଆବଶ୍ୟକତା ଏହି ପୁରାଣମାନଙ୍କରୁ ମେଣ୍ଟି ଯାଉଥିଲା । ଲୋକ ନାଟକର ନୃତ୍ୟ ଗୀତ ସହ ସମାନ୍ତରାଳ ଭାବରେ ଏକ କାହାଣୀ ଗତିକରି ଚାଲେ । ଉପନ୍ୟାସ ଭିତରେ ଅନେକ ଲୋକନୃତ୍ୟ ପ୍ରକାଶ ପାଇଥାଏ । ଉପନ୍ୟାସରେ ଯେଉଁ କାହାଣୀ ପ୍ରକାଶ ପାଇଥାଏ, ତାହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରିବ । ପ୍ରଧାନ କାହାଣୀ ଓ ଗୌଣ କାହାଣୀ । ପ୍ରଧାନ କାହାଣୀ ଉପନ୍ୟାସର ଆଭିମୁଖ୍ୟକୁ ପ୍ରକାଶ କରିବା ସହ ମୁଖ୍ୟ ଚରିତ୍ରମାନଙ୍କୁ ସଂଯୋଜିତ କରିଥାଏ । ଗୌଣ କାହାଣୀ ପ୍ରଧାନ କାହାଣୀର

ସହାୟକ ଭାବରେ ସୃଷ୍ଟି ହୋଇଥାଏ । ପ୍ରଧାନ କାହାଣୀକୁ କ୍ରିୟାଶୀଳ କରାଇ ତାହାକୁ ଶୀର୍ଷବିନ୍ଦୁ (climax) ଆଡ଼କୁ ଆଗେଇନେବା ଏ କାହାଣୀର ଧର୍ମ । 'ଶାନ୍ତି' ଉପନ୍ୟାସରେ କାହ୍ନୁଚରଣ 'ସନିଆ-ଧୋବା'ର ଜୀବନ ଚର୍ଯ୍ୟାକୁ ନେଇ ଯେଉଁ ମୁଖ୍ୟ କାହାଣୀ ସୃଷ୍ଟି କରିଛନ୍ତି ତାହା ସହ 'ପୂନି ଓ ମଧୁସୋଇ', 'ଚେମି-ଗୋବରା' ପ୍ରସଙ୍ଗ ପ୍ରକାଶ କରି ସେଥିରେ ଗୌଣ କାହାଣୀ ସଯୋଜନା କରିଛନ୍ତି । ସାଧାରଣତଃ ଉପନ୍ୟାସମାନଙ୍କରେ ଏକାଧିକ କାହାଣୀ ପରିଦୃଶ୍ୟ ହୋଇଥାଏ । କିନ୍ତୁ ଏମାନେ ମୂଳ କାହାଣୀଠାରୁ ଅଲଗା ହୁଅନ୍ତି ନାହିଁ । ଫକୀରମୋହନ ସେନାପତି ତାଙ୍କର ଉପନ୍ୟାସମାନଙ୍କରେ ଯେଉଁ ସଂଯୋଜନା ଓ ଶୈଳୀ ପ୍ରକାଶ କରିଛନ୍ତି ତାହା ଏକ ସ୍ୱତନ୍ତ୍ର କାହାଣୀ କଳାର ନମୁନା ପ୍ରକାଶ କରିଛି । ଫକୀରମୋହନ ତାଙ୍କ ଉପନ୍ୟାସର ପ୍ରତ୍ୟେକ ପରିଚ୍ଛେଦକୁ ଏକ ସ୍ୱତନ୍ତ୍ର ନାମରେ ପ୍ରକାଶ କରି ଥାଆନ୍ତି । ଏହି ଫକୀରମୋହନୀୟ ଶୈଳୀ କାହାଣୀକୁ ଉପନ୍ୟାସରେ ଗୁରୁତ୍ୱ ଦେଇ ଆସିଛି । ଉପନ୍ୟାସର ଆଭିମୁଖ୍ୟ ଦୃଷ୍ଟିରୁ କାହାଣୀ ବିଭିନ୍ନ ପ୍ରକାରର ହୋଇପାରେ । ଇତିହାସର ବୀରଗାଥାକୁ ନେଇ ଇତିହାସଭିତ୍ତିକ ଉପନ୍ୟାସ ସୃଷ୍ଟି ହୁଏ ତ ପୁଣି କାଳ୍ପନିକ କାହାଣୀକୁ ନେଇ କାଳ୍ପନିକ ଉପନ୍ୟାସ ସୃଷ୍ଟି ହୋଇଥାଏ । ପୁରାଣ ଆଖ୍ୟାନ, ସମାଜ ସମସ୍ୟା ସମ୍ବଳିତ କାହାଣୀ, ଲଘୁ ହାସ୍ୟାତ୍ମିକ କାହାଣୀର ବର୍ଣ୍ଣନା ମଧ୍ୟ ଉପନ୍ୟାସରେ ଦେଖିବାକୁ ମିଳେ । ସମୟେ ସମୟେ ଈଶ୍ୱର ଈଶ୍ୱରୀଙ୍କ ସହ ସାଧାରଣ ମଣିଷ ମଧ୍ୟ ଆତ୍ମପ୍ରକାଶ କରି ଥାଆନ୍ତି । ଉପନ୍ୟାସ ଏପରି ଏକ ସାହିତ୍ୟିକ ସ୍ୱର୍ଗ, ଯେଉଁଠି ଏକାବେଳକେ ଦେବତା, ଯକ୍ଷ, କିନ୍ନର, ମଣିଷମାନଙ୍କର ସମନ୍ୱୟ ଦେଖିବାକୁ ମିଳିଥାଏ । ଉପନ୍ୟାସର ଆଲୋଚକମାନେ କାହାଣୀର ଗୁରୁତ୍ୱକୁ ଉପଲବ୍ଧି କରିଛନ୍ତି । E.M. Forster କାହାଣୀର ଗୁରୁତ୍ୱ ସ୍ୱୀକାର କରି କହନ୍ତି, 'A plot is also a narrative of events, the emphosis is falling on causalipy । କାହାଣୀବିହୀନ ଉପନ୍ୟାସ ମସ୍ତିଷ୍କ ବିହୀନ ମଣିଷ ପରି । ଗୋଟିଏ କାହାଣୀ କେତେ ବିସ୍ତୃତ ହେବ ତାହା ଉପନ୍ୟାସିକ ଉପରେ ନିର୍ଭର କରିଥାଏ । ନିଜର ଉଦ୍ଦେଶ୍ୟ ପୂରଣ ହେବା ପର୍ଯ୍ୟନ୍ତ ସ୍ରଷ୍ଟା କାହାଣୀକୁ କ୍ରିୟାଶୀଳ କରାଇଥାଏ । କାହାଣୀର ପରିସରକୁ ବିସ୍ତୃତିକୁ ନେଇ ଉପନ୍ୟାସର କଳେବରକୁ Forster ପଚାଶ ହଜାର ଶବ୍ଦ ପର୍ଯ୍ୟନ୍ତ ଟାଣି ନେଇଛନ୍ତି । 'A novel is a fiction in prose to a certain extent, the extent should be not less than fifty thousand words.'

କାହାଣୀ ଉପନ୍ୟାସର ପ୍ରଥମ ଏବଂ ପ୍ରଧାନ ଉପାଦାନ । ଏକ ମନମୁଗ୍ଧକର କାହାଣୀକୁ ଭିତ୍ତିପ୍ରସ୍ତର କରି ଉପନ୍ୟାସର କଳା କୋଣାର୍କ ଠିଆ ହୁଏ । ବଳିଷ୍ଠ

ଉପନ୍ୟାସ ବଳିଷ୍ଠ କାହାଣୀକୁ ପ୍ରକାଶ କରେ । ଉପନ୍ୟାସର ସାମଗ୍ରିକ ସଫଳତା ବା ବିଫଳତା କାହାଣୀ ଉପରେ ନିର୍ଭର କରେ । କାହାଣୀରୁ ଉପନ୍ୟାସକୁ ଅଲଗା କରିହେବ ନାହିଁ ବରଂ କାହାଣୀ ଓ ଉପନ୍ୟାସ ଏକ ଓ ଅଭିନ୍ନ ।

## (ଖ) ଚରିତ୍ର—

ଚରିତ୍ର ଚିତ୍ରଣ କରିବା ଗୋଟିଏ ସଫଳ କଳାତ୍ମକ ବ୍ୟାୟାମ । ସମାଜର ପ୍ରତ୍ୟେକ ମଣିଷର ଚରିତ୍ର ଅନ୍ୟ ମଣିଷଠାରୁ ଅଲଗା । ଉପନ୍ୟାସିକ ଯେତେବେଳେ କାହାଣୀ ସ୍ଥିର କରନ୍ତିର ସେତିକିବେଳେ ଏହି କାହାଣୀକୁ ରୂପଦେଲାଭଳି ଚରିତ୍ର ସେ ବାଛିଥାଏ । ଚରିତ୍ର କାହାଣୀକୁ ବୁଦ୍ଧିମନ୍ତ କରିବା ସହ ଉପନ୍ୟାସିକର ଆଭିମୁଖ୍ୟ ପୁରଣ କରିବାରେ ସହାୟକ ହୋଇ ଥାଆନ୍ତି । ଉପନ୍ୟାସକୁ ଚରିତ୍ରର ଚିତ୍ରଶାଳା ବୋଲି କୁହାଯାଏ । ଏଥିରେ ଅନେକ ରଙ୍ଗର ବର୍ଣ୍ଣର ଚରିତ୍ରମାନଙ୍କର ମନୋଜ୍ଞ ସମାବେଶ ସୃଷ୍ଟି ହୋଇଥାଏ । ଯେଉଁ ଉପନ୍ୟାସମାନଙ୍କରେ ବୃହତ୍ତମ କାହାଣୀ ଥାଏ ବା ଏକାଧିକ କାହାଣୀ ବର୍ଣ୍ଣନା କରାଯାଇ ଥାଏ ସେହିଭଳି ଉପନ୍ୟାସରେ ଅନେକ ଚରିତ୍ର ଦେଖାଯାଇ ଥାଆନ୍ତି । ସାଧାରଣତଃ ଚରିତ୍ରମାନଙ୍କୁ ବାଛିବା ସମୟରେ ସ୍ରଷ୍ଟା କେତେକ ଚରିତ୍ରକୁ ମୁଖ୍ୟ ଚରିତ୍ରର ମର୍ଯ୍ୟାଦା ଦେବା ସମୟରେ ଆଉ କେତେକ ଚରିତ୍ରକୁ ଗୌଣ ଚରିତ୍ରର ମର୍ଯ୍ୟାଦା ପ୍ରଦାନ କରିଥାଏ । ସମଗ୍ର ଉପନ୍ୟାସରେ କାହାଣୀକୁ ଆଗେଇ ନେବାରେ ମୁଖ୍ୟ ଚରିତ୍ରମାନେ ସହାୟକ ହୁଅନ୍ତି । ଗୌଣ ଚରିତ୍ରମାନେ ଘଟଣାର ଗୁରୁତ୍ୱ ଦୃଷ୍ଟିରୁ ଆତ୍ମପ୍ରକାଶ କରି ଥାଆନ୍ତି । ଅନେକ ଗୌଣ ଚରିତ୍ରର ସାମୟିକ ଗୁରୁତ୍ୱପୂର୍ଣ୍ଣ ଉପସ୍ଥିତି ତାକୁ ମୁଖ୍ୟ ଚରିତ୍ରର ମର୍ଯ୍ୟାଦା ପ୍ରଦାନ କରିଥାଏ । ଫକୀରମୋହନଙ୍କ ଅନେକ ଉପନ୍ୟାସରେ ଗୌଣ ଚରିତ୍ରମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଇ ଥାଆନ୍ତି । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ 'ଗୋବରା', 'ମଙ୍ଗୁଆ', 'ଚୌକିଦାର' ଆଦି ଚରିତ୍ର ଏସବୁ ଦୃଷ୍ଟିକୋଣରୁ ଗୁରୁତ୍ୱ-ପୂର୍ଣ୍ଣ ମନେ ହୁଅନ୍ତି । ଅନେକ ସମୟରେ କୌଣସି ନାୟକ ବା ନାୟିକାକୁ ପ୍ରାଧାନ୍ୟ ଦେଇ ଉପନ୍ୟାସ ରଚନା କରାଯାଇ ଥାଏ । ଏପରି କ୍ଷେତ୍ରରେ ଶିରୋନାମାରେ ଥିବା ଚରିତ୍ରକୁ କେନ୍ଦ୍ର କରି ସମଗ୍ର ଉପନ୍ୟାସର ଚରିତ୍ରମାନେ କକ୍ଷ ପଥରେ ବୁଲି ଥାଆନ୍ତି । ମନେ କରାଯାଉ 'ଲଛମା' ଉପନ୍ୟାସରେ ଲଛମା ସମଗ୍ର ଉପନ୍ୟାସର ନାୟିକା । ଫକୀରମୋହନ ଉପନ୍ୟାସରେ ଅନ୍ୟ ଚରିତ୍ରମାନଙ୍କ ଅପେକ୍ଷା 'ଲଛମା' ଚରିତ୍ରକୁ ଗୁରୁତ୍ୱ ଦେଇ ବିସ୍ତାର କରିଛନ୍ତି ଏବଂ ବର୍ଣ୍ଣନା କରିଛନ୍ତି । ମନେହୁଏ ଲଛମା ପାଇଁ ଅନ୍ୟ ଚରିତ୍ରମାନେ ସୃଷ୍ଟି ହୋଇଛନ୍ତି । ଓଡ଼ିଆ ଉପନ୍ୟାସ ସୃଷ୍ଟିର ପ୍ରଥମ ପର୍ବରେ 'ସୌଦାମିନୀ', 'ବିବାସିନୀ', 'ପଦ୍ମମାଳୀ' ଆଦି ଉପନ୍ୟାସକୁ ଅଧ୍ୟୟନ କଲେ ଉପରୋକ୍ତ ଚରିତ୍ରମାନଙ୍କର ଗୁରୁତ୍ୱ ଉପରେ ସମଗ୍ର ଉପନ୍ୟାସକୁ ନିୟନ୍ତ୍ରଣ କରିଛି,

ତାହା ଜଣା ପଡ଼ିଥାଏ । ଅନେକ କ୍ଷେତ୍ରରେ କଥାକାର ନିଜ ମନମୁତାବକ ଏକ ଚରିତ୍ର ବାଛି ସାରିବା ପରେ ସେହି ଚରିତ୍ରକୁ ବର୍ଣ୍ଣନା କରିବାକୁ ଯାଇ ସମଗ୍ର ଉପନ୍ୟାସକୁ ରୂପ ଦେଇଥାଏ । ଗୋପାଳବଲ୍ଲଭ ଦାସଙ୍କ 'ଭୀମା ଭୂୟାଁ' ଉପନ୍ୟାସ ସେହିପରି ଏକ ଚରିତ୍ରପ୍ରଧାନ ଉପନ୍ୟାସ । ଓଡ଼ିଆ ଉପନ୍ୟାସ ସାହିତ୍ୟର ପ୍ରଥମ ପର୍ଯ୍ୟାୟରେ ନାୟକ ବା ନାୟିକା ଚରିତ୍ରକୁ ମୁଖ୍ୟ ସ୍ଥାନ ଦେଇ, ସେହି ଚରିତ୍ର ଚିତ୍ରଣ କରିବା ସହ ଉପନ୍ୟାସ ଆରମ୍ଭ ଓ ଶୀର୍ଷବିନ୍ଦୁ ଦେଇ ଶେଷ ପାଦରେ ପହଞ୍ଚୁଥିଲା । ଇଂରେଜ ସାହିତ୍ୟରେ ରିଚ୍ଚାର୍ଡ଼ସନ୍‌ଙ୍କ 'ପାମେଲା' ଉପନ୍ୟାସ ମଧ୍ୟ ଏକ ଚରିତ୍ରପ୍ରଧାନ ଉପନ୍ୟାସ । ଚରିତ୍ର ଉପନ୍ୟାସର ଅବିଚ୍ଛେଦ୍ୟ ଅଙ୍ଗ । ବଳିଷ୍ଠ କାହାଣୀ ପାଇଁ ବଳିଷ୍ଠ ଚରିତ୍ରର ଆବଶ୍ୟକତା ରହିଛି । ଉପନ୍ୟାସିକ କାହାଣୀକୁ ଆଖି ଆଗରେ ରଖି ଅବଶ୍ୟକୀୟ ଚରିତ୍ର ଚୟନ କରିଥାଏ ।

ଗୋଟିଏ କାହାଣୀ ଭିତରେ ଅନେକ ଚରିତ୍ର ଆତ୍ମପ୍ରକାଶ କରିଥାନ୍ତି । ଏହି ଚରିତ୍ରମାନଙ୍କୁ ସାଧାରଣତଃ ପୁରୁଷ ଓ ନାରୀ ଏହିପରି ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ପୁରୁଷ ଚରିତ୍ର ଭିତରେ ଆଦର୍ଶ ଓ ମୁଖ୍ୟ ଚରିତ୍ର କଥାର ନାୟକ ଏବଂ ଆଉ କେତେକ ସହଯୋଗୀ ଚରିତ୍ର ସୃଷ୍ଟି ହୋଇ ଥାଆନ୍ତି । ଅନେକ ସମୟରେ ଗୋଟିଏ କାହାଣୀରେ ଏକାଧିକ ନାୟକ ବର୍ଣ୍ଣନା କରାଯାଇ ଥିଲେହେଁ, ବସ୍ତୁତଃ ଗୋଟିଏ ନାୟକ ସମଗ୍ର ଉପନ୍ୟାସକୁ ନିୟନ୍ତ୍ରଣ କରୁଥାଏ । ନାୟକ ପାଇଁ ନାୟିକା ଚରିତ୍ର ସୃଷ୍ଟି ହୋଇଥାଏ । ଉପନ୍ୟାସର କଥାବସ୍ତୁ ଅନୁଯାୟୀ ଉଭୟ ଚରିତ୍ରର ବିକାଶ ଘଟିଥାଏ । ଯେ କୌଣସି କଥାବସ୍ତୁ ପାଇଁ ପ୍ରତିନାୟକ (Antihero) ଚରିତ୍ରର ଆବଶ୍ୟକତା ରହିଥାଏ । ଗ୍ରାମ ଜୀବନ ଭିତ୍ତିକ କାହାଣୀ ପାଇଁ ଗାଁ ଟାଉଟର, ସାହୁକାର, ଜମାଦାର, ସରପଞ୍ଚ ଏବଂ ଠିକାଦାର ଆଦି ଚରିତ୍ର ବ୍ୟବହୃତ ହେବାବେଳେ ନଗର ଭିତ୍ତିର କାହାଣୀ ପାଇଁ ଶାସକବର୍ଗମାନଙ୍କ ଭିତରୁ ଯେ କୌଣସି ଜଣେ କ୍ଷମତାଶାଳୀ ବ୍ୟକ୍ତିଙ୍କୁ ପ୍ରତିନାୟକ ଭୂମିକାରେ ପହଞ୍ଚିବାକୁ ହୋଇଥାଏ । ନାୟକ ଏବଂ ପ୍ରତିନାୟକ ବ୍ୟତିରେକ ଅନ୍ୟ କେତେକ ଚରିତ୍ର ଥାଆନ୍ତି, ଯେଉଁମାନେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନିଜର ଅପରିବର୍ତ୍ତିତ ଭୂମିକା ଏବଂ ଅଭିମୁଖ୍ୟରୁ ଓହରି ଆସନ୍ତି ନାହିଁ । ସାଧୁ ଚରିତ୍ର ନିଜର ବ୍ୟକ୍ତିତ୍ୱ ଏବଂ ଆଦର୍ଶ ଦ୍ୱାରା ଅନ୍ୟକୁ ଅନୁପ୍ରାଣିତ କରେ ଏବଂ ଶେଷ ପର୍ଯ୍ୟନ୍ତ ନିଜ ନୀତି ଓ ନିଷ୍ଠାରେ ଅଟଳ ରୁହେ, ସେହିପରି ଖଳ ଚରିତ୍ର ନିଜର ମନ୍ଦ ବୃତ୍ତି ଶେଷ ପର୍ଯ୍ୟନ୍ତ ପରିତ୍ୟାଗ ନ କରି ସେହିପରି ରହିଥାଏ । ଏପରି ଚରିତ୍ରକୁ type character ବା plat character କୁହାଯାଏ । କାହାଣୀ ଭିତରେ କେତେକ ମନ୍ତ୍ରଣାକାରୀ ଚରିତ୍ର ଥାଆନ୍ତି, ଯେଉଁମାନେ କୌଣସି ଘଟଣାର ମୋଡ଼ ବଦଳାଇ ଦେଇ ପାରନ୍ତି,

ଏପରି ଚରିତ୍ରକୁ ବିଷମ ଚରିତ୍ର ବା round character କୁହାଯାଏ । ଉପନ୍ୟାସିକ ଏସବୁ ଚରିତ୍ରକୁ ଗ୍ରହଣ କରି ନିଜ ସୃଷ୍ଟି ଆରମ୍ଭ କରେ । ବିଭିନ୍ନ ଚରିତ୍ରର ସମାବେଶରେ ଉପନ୍ୟାସ ଉଜ୍ଜ୍ୱଳିତ ହୁଏ ।

## (ଗ) ଆଭିମୁଖ୍ୟ—

ଉପନ୍ୟାସ ରଚନା କରିବାକୁ ଯାଇ ସ୍ରଷ୍ଟା କାହାଣୀର କଙ୍କାଳ ଭିତରେ ଏକ ପୃଷ୍ଠଭୂମିର ଚୟନ କରିଥାଏ । ଯେତେବେଳେ କାହାଣୀ ବିଷୟରେ ସ୍ରଷ୍ଟା ଥରେ ମନ ସ୍ଥିର କରିପକାଏ, ସେତେବେଳେ ସେ କାହିଁକି ଏପରି କାହାଣୀ ଚୟନ କରିଛି, ସେ ବିଷୟରେ ସଚେତନ ହୋଇଯାଏ । ପ୍ରତ୍ୟେକ ସୃଜନଶୀଳ ସୃଷ୍ଟିରେ ସ୍ରଷ୍ଟାର ଆବେଦନ ପ୍ରକାଶ ପାଇଥାଏ । ସାହିତ୍ୟ ସମାଜର ଦର୍ପଣ ସଦୃଶ । ସାମାଜିକ ସମସ୍ୟା, ଜୀବନବୋଧ ଓ ବଞ୍ଚିବାର ନାନାବିଧ କୌଶଳ, ଯନ୍ତ୍ରଣା ଓ ଅମଙ୍ଗଳବୋଧକୁ ସ୍ରଷ୍ଟା ସାହିତ୍ୟ ମାଧ୍ୟମରେ ପ୍ରକାଶ କରିଥାଏ । ମୋଟାମୋଟି ଭାବରେ ସମାଜ ଓ ତା'ର ପରିବେଶକୁ ପରିଧି କରି ବ୍ୟକ୍ତି ଚେତନା ଓ ଜୀବନବୋଧକୁ କେନ୍ଦ୍ର କରି ଯେଉଁ ସୃଜନ ଚିନ୍ତା କବି ପ୍ରକାଶ କରେ ତାହା ସେ ସ୍ରଷ୍ଟାର ଅଙ୍ଗୀକାର ବା ଆଭିମୁଖ୍ୟ ଭାବରେ ପରିଚୟ ଲାଭ କରିଥାଏ ।

ସ୍ରଷ୍ଟା କାହିଁକି ସୃଜନଶୀଳତାରେ ତା'ର ଆଭିମୁଖ୍ୟ ବ୍ୟକ୍ତ କରିବ । ଆଭିମୁଖ୍ୟ ବିହୁନେ ସାହିତ୍ୟ ସୃଷ୍ଟି ହୋଇ ପାରିବ କି ? ଯେତେବେଳେ ପୁରାଣ ସାହିତ୍ୟ ସୃଷ୍ଟି ହେଉଥିଲା ସେତେବେଳେ ଭଗବାନଙ୍କ ନାମଗୁଣ ଗାନ ଥିଲା ସ୍ରଷ୍ଟାର ଉଦ୍ଦେଶ୍ୟ । ଏକପକ୍ଷରେ ସେ ଭଗବାନଙ୍କ ଲୀଳା ରଚନା କରି ପରମ ଆନନ୍ଦ ଅନୁଭବ କରୁଥିବାବେଳେ ଅପରପକ୍ଷରେ ଅଗଣିତ ଶ୍ରୋତା, ପାଠକ ତାକୁ ଗ୍ରହଣ କରି ମୋକ୍ଷପ୍ରାପ୍ତ ହେଉଥିଲେ । ସମସ୍ତ ଓ ସମାଜର ପ୍ରାଣ ସ୍ପନ୍ଦନକୁ ନେଇ ସାହିତ୍ୟ ସୃଷ୍ଟି ହୋଇଥାଏ । କ୍ଷୁଦ୍ର କବିତା ବା ଗପର କୌଣସି ଆଭିମୁଖ୍ୟ ନ ଥାଇପାରେ; କିନ୍ତୁ ଉପନ୍ୟାସ ପରି ଏକ ବୃହତ ସୃଷ୍ଟିର ଆଭିମୁଖ୍ୟ ଆବଶ୍ୟକ । ଉପନ୍ୟାସ ମୁହୂର୍ତ୍ତିକର ସୃଷ୍ଟି ନୁହେଁ, ଦୀର୍ଘଦିନର ମାନସିକ ଓ ଶାରୀରିକ ବ୍ୟାୟାମ ପରେ ଉପନ୍ୟାସ ଆଲୋକକୁ ଆସେ । ସେଇଥିପାଇଁ ଉପନ୍ୟାସରେ ଆଭିମୁଖ୍ୟର ଆବଶ୍ୟକତା ପଡ଼େ । ଲକ୍ଷ୍ୟହୀନ ଉପନ୍ୟାସ ପାଠକକୁ ସାମୟିକ ଆନନ୍ଦ ଦେଇପାରେ ସତ; କିନ୍ତୁ କାଳଜୟୀ (classic) ହୋଇପାରେ ନାହିଁ । ଏକ କ୍ଲାସିକ୍ ଉପନ୍ୟାସ ପାଇଁ ଆଭିମୁଖ୍ୟ ନିହାତି ଆବଶ୍ୟକ । କାହାଣୀ, ଚରିତ୍ର ପରି ଆଭିମୁଖ୍ୟ ଏକ ବାହ୍ୟିକ ଆବଶ୍ୟକତା ନୁହେଁ, ଏହା ଉପନ୍ୟାସର ଆତ୍ମା, ଅନ୍ତଃସଲିଳ ଫଲ୍‌ଗୁ ।

## (ଘ) ରସ ପ୍ରସଙ୍ଗ—

ରସଚେତନା ସାହିତ୍ୟର ମୁଖ୍ୟ ଆକର୍ଷଣ । ରସାତ୍ମକ ବାକ୍ୟ ଓ ଭାବ ମାଧ୍ୟମରେ ପାଠକୀୟ ଆନନ୍ଦ ପ୍ରସ୍ତୁତ କରିବା ରସର ଧର୍ମ । ଯେ କୌଣସି ସତ୍ସାହିତ୍ୟ ରସ ବହନ କରିଥାଏ । ସ୍ରଷ୍ଟା ତା'ର ସୃଷ୍ଟିରେ ରସପ୍ରକରଣ ପାଇଁ ଏକ ନକ୍ସା ପ୍ରସ୍ତୁତ କରିଥାଏ । ଜ୍ଞାତସାରରେ ହେଉ ବା ତା' ଅଗୋଚରରେ ହେଉ ତା'ର ସର୍ଜନା ଭିତରେ ବିଭିନ୍ନ ରସ ପ୍ରକାଶ ପାଇଥାଏ । ଉପନ୍ୟାସ ଜୀବନର ମହାଭାଷ୍ୟ । ଜୀବନର ହର୍ଷ-ବିଷାଦ, ଲବ୍ଧ-ଲୁବ୍ଧ, ମୋହ-ମୋହଭଙ୍ଗ, ଅଶ୍ରୁ-ଆଶିଷର ଚିତ୍ର ଉପନ୍ୟାସରେ ପ୍ରକାଶ ପାଇଥାଏ । ଯେହେତୁ ଏହାର କଳେବରରେ ଅନେକ ଚରିତ୍ରମାନଙ୍କର ସମନ୍ୱୟ ଦେଖିବାକୁ ମିଳିଥାଏ । ଏମାନଙ୍କର ସନ୍ଧିସ୍ଥ ସହଯୋଗରେ ଅନେକ ରସ ସୃଷ୍ଟି ହୋଇଥାଏ । ଗ୍ରୀକ୍ ଉପନ୍ୟାସମାନଙ୍କରେ ଯୁଦ୍ଧକୁ କେନ୍ଦ୍ର କରି ରୋମାଞ୍ଚ କାହାଣୀ ବର୍ଣ୍ଣନା କରାଯାଇଥାଏ । ଏସବୁ ଉପନ୍ୟାସରେ ବୀରରସକୁ ପ୍ରାଧାନ୍ୟ ଦିଆଯାଇ ଥାଏ । ଓଡ଼ିଆ ଉପନ୍ୟାସମାନଙ୍କରେ ପ୍ରାଥମିକ ଅବସ୍ଥାରେ ଯୁଦ୍ଧ ଓ ପ୍ରେମକୁ ନେଇ କାହାଣୀ ଗଢ଼ା କରିଛି । ଯୁଦ୍ଧକୁ ନେଇ ବୀରରସ ପ୍ରକାଶ ପାଇଥିବାବେଳେ ପ୍ରେମ, ସମଗ୍ର ଉପନ୍ୟାସରେ ଶୃଙ୍ଗାର ରସ ସୃଷ୍ଟି କରିଛି । ଉପନ୍ୟାସରେ ଶୃଙ୍ଗାର, ବୀର, କରୁଣାରସର ପ୍ରାଧାନ୍ୟ ଦେଖିବାକୁ ମିଳେ । ଉପନ୍ୟାସକୁ ସରସ ସୁନ୍ଦର କରିବା ପାଇଁ ରସ ପ୍ରବେଶ କରାଇବା ଆବଶ୍ୟକ । ରସ ଉପନ୍ୟାସର ଆଭ୍ୟନ୍ତର ସୌନ୍ଦର୍ଯ୍ୟ ଭାବରେ ପ୍ରକାଶ ପାଇଥାଏ ।

## (ଙ) ଭାଷା ଓ ସଂଳାପ—

ଭାଷା ଭାବର ବାହକ । ଉପନ୍ୟାସର କାହାଣୀ ସଂଳାପ ଭିତ୍ତିକ । ଜଣେ ଆଉ ଜଣକୁ ସମ୍ବୋଧନ କରି ବା ଜଣକ ପରେ ଜଣକର ସଂଳାପ ବର୍ଣ୍ଣନା କରାଯାଇ ଥାଏ । ବର୍ଣ୍ଣନା ଧର୍ମୀ ଉପନ୍ୟାସମାନଙ୍କରେ ଭାଷା କାବ୍ୟିକ ଆବେଗରେ ପ୍ରକାଶ ପାଇଥାଏ । ସକାଳ-ସନ୍ଧ୍ୟା ଏବଂ ପଲ୍ଲୀ ପ୍ରକୃତିର ଦୃଶ୍ୟ ବର୍ଣ୍ଣନା କଲାବେଳେ ଔପନ୍ୟାସିକ ଭାବୁକ ପରି କବିତାର ଭାଷାରେ ବର୍ଣ୍ଣନା କରିଥାଏ । ମନସ୍ତାତ୍ତ୍ୱିକ ଉପନ୍ୟାସମାନଙ୍କରେ କେତେକ ବଡ଼ ବଡ଼ ଅର୍ଥପୂର୍ଣ୍ଣ ଓ ଗୁରୁଭାବ ପ୍ରକାଶ କରି ପାରୁଥିବା ଶବ୍ଦକୁ ପ୍ରୟୋଗ କରାଯାଇ ଥାଏ । ଔପନ୍ୟାସିକ ସଚେତନ ଭାବରେ ଗ୍ରାମ୍ୟବୃତ୍ତ ଧର୍ମୀ ଉପନ୍ୟାସମାନଙ୍କରେ ଆଞ୍ଚଳିକ ଭାଷା ଓ ସଙ୍ଗୀତ ପ୍ରୟୋଗ କରିଥାଏ । ଗୋପିନାଥ ମହାନ୍ତି ଆଦିବାସୀ ସମ୍ପ୍ରଦାୟକୁ ଆଧାର କରି ଅନେକ ଉପନ୍ୟାସ ରଚନା କରିଛନ୍ତି । ସେହି ଉପନ୍ୟାସମାନଙ୍କରେ ଗୋଟିଏ ଉପଜାତିର ଭାଷା, ସଙ୍ଗୀତ ଓ ଲୋକନୃତ୍ୟକୁ ଗ୍ରହଣ କରିଛନ୍ତି । ପରିବେଶ ଓ ପରିସ୍ଥିତିକୁ

ଯଦି ଉପନ୍ୟାସିକ ଭାଷା ମାଧ୍ୟମରେ ଅବିକଳ ପ୍ରକାଶ କରିପାରେ ନାହିଁ; ତାହେଲେ ହକ୍ତ ଉପନ୍ୟାସ ନିଜ ଆଭିମୁଖ୍ୟ ଓ ଚରିତ୍ର ଉନ୍ମୋଳନରେ ଅସାମର୍ଥ ହୋଇଥାଏ । ପ୍ରତ୍ୟେକ ଚରିତ୍ରର ଭାଷା ଓ ସଂଳାପ ଭିନ୍ନ ଧରଣର । ନାୟକ ଯେମିତି ପ୍ରତି-ନାୟକର ଭାଷା କହିବ ନାହିଁ ସେହିପରି ଗାଁ ଗହଳର ସାଧାରଣ ମଣିଷ ମଧ୍ୟ ସହରୀ ମଣିଷର ଭାଷା ପ୍ରକାଶ କରିବ ନାହିଁ । ଉପନ୍ୟାସିକର ଭାଷା ଦକ୍ଷତା, ଅଭିଜ୍ଞତା ଓ ସାଂସ୍କୃତିକ ଅବବୋଧ ଉପରେ ଉପନ୍ୟାସର ଭାଷା ବିଭାଗ ନିର୍ଭର କରିଥାଏ । ଉପନ୍ୟାସିକ ଜଣେ ଭାଷା ବିସ୍ତାରିଦ ଏବଂ ବହୁ ଶାସ୍ତ୍ରଦର୍ଶୀ ହେବା ଆବଶ୍ୟକ । ସୁନ୍ଦର ଭାଷା ବିନ୍ୟାସ କାହାଣୀକୁ ମନୋଜ୍ଞ ଭାବରେ ପ୍ରକାଶ କରିବାରେ ସାହାଯ୍ୟ କରିଥାଏ ।

## (ଚ) ବର୍ଣ୍ଣନା ବିଳାସ—

ଉପନ୍ୟାସ ବୃହଦାକାର କଳେବର ବେଷ୍ଟିତ । କ୍ଷୁଦ୍ରଗଳ୍ପରେ ଗାଳ୍ପିକ ବର୍ଣ୍ଣନାଶୈଳୀକୁ ବାଦ ଦେଇଥାଏ । କାରଣ ତା’ ପାଖରେ ଘଟଣାକୁ ତତ୍‌କ୍ଷଣତା ଉପସ୍ଥାପନ ଛଡ଼ା ଅନ୍ୟ ଉପାୟ ନ ଥାଏ । ଉପନ୍ୟାସିକ ଏ ଦିଗରେ ପର୍ଯ୍ୟାପ୍ତ ସୁଯୋଗ ପାଇଥାଏ । ବର୍ଣ୍ଣନା ବିଳାସ ଉପନ୍ୟାସର ଅନ୍ୟତମ ଭୂଷଣ । କୌଣସି ଗ୍ରେଷ୍ଠ ଘଟଣାକୁ ବୃହତ୍‌ଆକାରରେ ବର୍ଣ୍ଣନା କରିବାର କଳାଗତ କୌଶଳ ଉପନ୍ୟାସିକ ଅବଲମ୍ବନ କରିଥାଏ । କାଳନ୍ଦି ପାଣିଗ୍ରାହୀ, ଗୋପିନାଥ ଏବଂ କାହ୍ନୁଚରଣଙ୍କ ଉପନ୍ୟାସମାନଙ୍କରେ କାହାଣୀ ଭାଗର ଆରମ୍ଭ ପୂର୍ବରୁ ଏକ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ବର୍ଣ୍ଣନା ବିଳାସରୁ ଉପନ୍ୟାସିକର ସୃଜନଶୀଳତାର ପରିଚୟ ମିଳିଥାଏ । ସାମାଜିକ ହେଉ ବା ପୌରାଣିକ ଉପନ୍ୟାସରେ କାହାଣୀ ସହ ଅନ୍ୟାନ୍ୟ ପ୍ରସଙ୍ଗ ସମାନୁପାତରେ ବର୍ଣ୍ଣନା କରାଯାଇ ଥାଏ । ଉପନ୍ୟାସ ଭିତରେ ସଙ୍ଗୀତ, ନୃତ୍ୟ, ନାଟକ, ଲୋକକଥା, ଚଉଢମାଳ ଏବଂ ବିଭିନ୍ନ କିମ୍ବଦନ୍ତୀର ବର୍ଣ୍ଣନା କରାଯାଉଥିବାରୁ ବର୍ଣ୍ଣନା କରିବା ପାଇଁ ଉପନ୍ୟାସିକ ପାଖରେ ପର୍ଯ୍ୟାପ୍ତ ସୁଯୋଗ ଥାଏ । ବର୍ଣ୍ଣନାକୁ ବାଦଦେଇ ଉପନ୍ୟାସର ପରିକଳ୍ପନା କରାଯାଇ ପାରିବ ନାହିଁ ।

## (ଛ) ଉପନ୍ୟାସିକ ଶୈଳୀ—

ପ୍ରତ୍ୟେକ ଉପନ୍ୟାସିକର ସ୍ୱକୀୟ ଶୈଳୀ ଥାଏ । ମଣିଷ ଗପ କହେ, ଗୋଟିଏ ଗପକୁ ଅନେକ ମଣିଷ ଏକା ପ୍ରକାରରେ ବୁଝାଇ ପାରିବେ ନାହିଁ । ଯେପରି ଗୋଟିଏ ମଣିଷଠାରୁ ଆଉ ମଣିଷଟି ଭିନ୍ନେ, ସେହିପରି ଶୈଳୀ ଜଣକଠାରୁ ଅନ୍ୟ ଜଣଙ୍କ ପାଇଁ ଅଲଗା । କେହି କେହି ଉପନ୍ୟାସକୁ ଶେଷରୁ ଆରମ୍ଭ କରି କାହାଣୀର ସୂଚନା ସୃଷ୍ଟି କରନ୍ତି । (False back style) ତ ଆଉ କେହି

ପୁରାଣ, ଇତିହାସ ଏବଂ କିମ୍ବଦନ୍ତୀକୁ ଆଶ୍ରୀକରି ସେଥିରେ ଆଧୁନିକତା ଆରୋପ କରି ପୁରାକଳ୍ପ ଶୈଳୀ (mythicalstyle)ରେ ସୃଷ୍ଟି କରନ୍ତି । ସାମାଜିକ ଉପନ୍ୟାସର ଆରମ୍ଭ ଭାଗ ମପାଚୁପା ଏବଂ ସିଧାସଳଖ । ଓଡ଼ିଆ ସାହିତ୍ୟରେ ପ୍ରତ୍ୟେକ ଉପନ୍ୟାସିକ ମାନଙ୍କର ଏକ ସ୍ୱତନ୍ତ୍ର ଶୈଳୀ ରହିଛି । ଫକୀରମୋହନ ତାଙ୍କ ଉପନ୍ୟାସକୁ ଏକ ଏକ ଅଧ୍ୟାୟରେ ବିଭକ୍ତ କରି କାହାଣୀକୁ ଆଗେଇ ନିଅନ୍ତି । ପାଠକ ଅନୁଭବ କରେ ସେ ଉପନ୍ୟାସ ନୁହେଁ ଅନେକ ଗୁଡ଼ାଏ ହୋଇଥିବା ଗପ ପାଠ କରୁଛି । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏହା ଫକୀରମୋହନଙ୍କର ଏକ ସ୍ୱତନ୍ତ୍ର ଶୈଳୀ, ସୁନ୍ଦର ଶବ୍ଦ ବିନ୍ୟାସ ଏବଂ ଗଳ୍ପ ଗୁମ୍ଫନ ପ୍ରକ୍ରିୟା, ପୁରସ୍କାର ଉପସ୍ଥାପନ ଏବଂ ଉପସଂହାର ସମଗ୍ର ଉପନ୍ୟାସକୁ ପାଠକ ପାଖରେ ଧରି ରଖିବାରେ ସହାୟକ ହୋଇଥାଏ । ଉପନ୍ୟାସ ରଚନା କରିବା ପାଇଁ ଶୈଳୀ ଏକ ଆବଶ୍ୟକୀୟ ବ୍ୟବସ୍ଥା ।

### (ଜ) ସ୍ଥାନ-କାଳ-ପାତ୍ର—

ସମଗ୍ର ଉପନ୍ୟାସରେ ବର୍ଣ୍ଣନା କରାଯାଇଥିବା ଘଟଣା ଯଦି ସ୍ଥାନ-କାଳ-ପାତ୍ର ଭିତରେ ସମନ୍ୱୟ ରକ୍ଷା କରିପାରେ ନାହିଁ, ତାହା ଅଯୌକ୍ତିକ ଏବଂ ସିଦ୍ଧାନ୍ତ ବର୍ଜନ ବୋଲି ପ୍ରମାଣିତ ହୋଇଯାଏ । ପୁରୁଷୋତ୍ତମଦେବ ଯଦି ହାତରେ ବନ୍ଧୁକ ଧରି ଏବଂ ସୁଟ୍‌ପ୍ୟାଣ୍ଟ ପିନ୍ଧି ଯୁଦ୍ଧ କରିବାକୁ ଆସିବେ, ତାହା ସମସ୍ତଙ୍କ ପାଇଁ ଅସଙ୍ଗତ ହେବା ଘଟଣା ଯେଉଁ ସମୟର ହେବ, ଚରିତ୍ର ସେହି ପରିବେଶର ହେବାକୁ ବାଧ୍ୟ । ଯାଦୋଚିତ ସଂଳାପ, ବର୍ଣ୍ଣନା ଏବଂ ସର୍ବୋପରି ସମୟଚେତନାକୁ ସ୍ୱୀକାର କରି ଉପନ୍ୟାସର ସମସ୍ତ କାହାଣୀ ବର୍ଣ୍ଣିତ ହେବା ଆବଶ୍ୟକ । ସ୍ଥାନ-କାଳ-ପାତ୍ର ଭିତରେ ସମନ୍ୱୟ ସ୍ଥାପିତ ହେଲେ ଉପନ୍ୟାସର ମହତ୍ତ୍ୱ ବୃଦ୍ଧି ପାଏ ।

## ଉପନ୍ୟାସର ବୈଶିଷ୍ଟ୍ୟ

ଉପନ୍ୟାସ ମଣିଷ ଜୀବନର ପୂର୍ଣ୍ଣ ପ୍ରତିବିମ୍ବ ପ୍ରକାଶ କରିଥାଏ । ମଣିଷର ବିଭିନ୍ନ ପ୍ରବୃତ୍ତି ନିବୃତ୍ତି ଉପନ୍ୟାସକୁ ଜଟିଳ-ଜଞ୍ଜାଳ-ଜ୍ୱାଳାମୟ ରୂପରେ ପ୍ରକାଶ ହେବାପାଇଁ ଅବକାଶ ସୃଷ୍ଟି କରିଥାଆନ୍ତି । ଉପନ୍ୟାସର ଅନ୍ତଃସତ୍ତ୍ୱକୁ ଗଭୀର ଭାବରେ ଅଧ୍ୟୟନ କଲେ ଏହା ଭିତରେ ପ୍ରକାଶ ପାଉଥିବା କେତେକ ସାଧାରଣ ସତ୍ୟକୁ ଧରିହୁଏ । କାହାଣୀକଳା ଓ ବର୍ଣ୍ଣନା ଦୃଷ୍ଟିରୁ ଗୋଟିଏ ଉପନ୍ୟାସ ଅନ୍ୟ ଉପନ୍ୟାସଠାରୁ ଅଲଗା ହୋଇପାରେ; କିନ୍ତୁ ପ୍ରତ୍ୟେକ ଉପନ୍ୟାସ ଭିତରେ କେତୋଟି ସାଧାରଣ ସତକଥା ଆତ୍ମପ୍ରକାଶ କରିଥାଏ, ଯାହାକୁ ଉପନ୍ୟାସର ପ୍ରାଣଧର୍ମ କୁହାଯାଇ ଥାଏ । ନିମ୍ନରେ ଉପନ୍ୟାସର ସ୍ୱରୂପ ସମ୍ପର୍କରେ ଆଲୋଚନା କରାଗଲା ।

## (କ) ବର୍ଣ୍ଣନାପ୍ରିୟ—

ଉପନ୍ୟାସ ବର୍ଣ୍ଣନାକୁ ଗୁରୁତ୍ୱ ଦେଇଥାଏ । ଏହାର ବର୍ଣ୍ଣନା ବିନ୍ୟାସ ଅନ୍ୟ ସାହିତ୍ୟ ସୃଷ୍ଟିମାନଙ୍କଠାରୁ ଅଲଗା ପରିଚୟ ସୃଷ୍ଟି କରିଥାଏ । ସାହିତ୍ୟର ଅନ୍ୟ କୌଣସି ବିଭାଗରେ ବର୍ଣ୍ଣନା କରିବା ପାଇଁ ସ୍ରଷ୍ଟା ପାଖରେ ଏତେ ସୁଯୋଗ ନ ଥାଏ । ଉପନ୍ୟାସର କାହାଣୀ ଯେଉଁ ପ୍ରକାରର ହେଉ ନା କାହିଁକି ସ୍ରଷ୍ଟା ଗୋଟିଏ ଘଟଣାର ଅମୂଳଚୂଳ ବର୍ଣ୍ଣନା କରିଥାଏ । ଉମେଶ ଚନ୍ଦ୍ର ସରକାରଙ୍କର 'ପଦ୍ମମାଳୀ' ଉପନ୍ୟାସଠାରୁ ଆରମ୍ଭ କରି ଗୋବିନ୍ଦ ଦାସଙ୍କର 'ଅମାବାସ୍ୟାର ଚନ୍ଦ୍ର' ପର୍ଯ୍ୟନ୍ତ ପ୍ରତ୍ୟେକଟି ଉପନ୍ୟାସ ବର୍ଣ୍ଣନା ବିନ୍ୟାସକୁ ପୁଞ୍ଜି କରି ସୃଷ୍ଟି ହୋଇଛନ୍ତି । ଉପନ୍ୟାସିକ ବର୍ଣ୍ଣନା ମାଧ୍ୟମରେ ଆଉ ଗୋଟିଏ ଅପରୂପ ଦୁନିଆର ଦର୍ଶନ ତା'ର ପାଠକମାନଙ୍କୁ କରାଇଥାଏ । ସୁଖଦ ବର୍ଣ୍ଣନା ସୁବର୍ଣ୍ଣ ଉପନ୍ୟାସ ସୃଷ୍ଟି କରିଥାଏ । ସେଇଥିପାଇଁ ଉପନ୍ୟାସିକଟି ଭିତରେ କବି ଆଉ ଚିତ୍ରକରପଣ ଦେଖିବାକୁ ମିଳେ ।

## (ଖ) ବକ୍ତବ୍ୟପ୍ରିୟ—

ସାହିତ୍ୟ ଭିତରେ ସନ୍ଦେଶ ଲୁଚିକରି ଥାଏ । ସଚେତନ ପାଠକ ତା'ର ଅନ୍ତର୍ଦୃଷ୍ଟି ସେହି ଚରିତ୍ରର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇଯାଏ । ଉପନ୍ୟାସ ଏକ ବୃହତ ବନସ୍ପତି, ବିନାକାରଣରେ ଉପନ୍ୟାସ ଲେଖାଯାଏ ନାହିଁ । ଉପନ୍ୟାସିକ ଉପନ୍ୟାସ ରଚନା କରିବା ପୂର୍ବରୁ ପ୍ରଥମେ ଚିନ୍ତା କରିଥାଏ ସେ କ'ଣ ଲେଖିବ ? ଏବଂ କାହିଁକି ଲେଖିବ ? ସେ ତା'ର ପାଠକମାନଙ୍କୁ ଯାହା କହିବାକୁ ଚାହେଁ, ସେହି ଅନୁଯାୟୀ କାହାଣୀ ଓ ଚରିତ୍ର ଚୟନ କରିଥାଏ । କେତେକ ଉପନ୍ୟାସର ଶବ୍ଦ ଛନ୍ଦ ମାଧ୍ୟମରେ ଉପନ୍ୟାସିକ ତା'ର ଲକ୍ଷ୍ୟ ପୂରଣ କରିଥାଏ । ଉପନ୍ୟାସର ଘଟଣା ବର୍ଣ୍ଣନା ଭିତରେ ଉପନ୍ୟାସିକର ଏକ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଲୁଚି ରହିଥାଏ । ଗର୍କିଙ୍କର 'The mother' ଉପନ୍ୟାସ ହେଉ ବା ଅମାସହାର୍ଡିଙ୍କର 'The woodlander' ସବୁଥିରେ ଏକ ଆବେଗଦୀପ୍ତ ଅନୁଭୂତି ଓ ସାମାଜିକ ସନ୍ଦେଶ ସାଇତାଥାଏ । ଉପନ୍ୟାସ, ଉପନ୍ୟାସିକର ସ୍ୱରଲିପିର ବାର୍ତ୍ତାବହ ।

## (ଗ) ଚରିତ୍ରର ଚିତ୍ରଶାଳା—

ଉପନ୍ୟାସକୁ ଚରିତ୍ରର ଚିତ୍ରଶାଳା କୁହାଯାଏ । ଏହାର କଳେବର ଓ କାହାଣୀ ବ୍ୟାପକ ହୋଇଥିବାରୁ ଏଥିରେ ଏକାଧିକ ଚରିତ୍ର ଆତ୍ମପ୍ରକାଶ କରିଥାନ୍ତି । ସମାଜ ସମ୍ପର୍କ ଦୃଷ୍ଟିରୁ ଉପନ୍ୟାସର ସମ୍ପର୍କ ଅତି ନିବିଡ଼ । ସମାଜର ସବୁଶ୍ରେଣୀର ମଣିଷମାନଙ୍କୁ ଏହା ଗ୍ରହଣ କରିଥାଏ । ଉପନ୍ୟାସ ପୁଣି ସାହିତ୍ୟର ବୃହତ୍ତମ ବିଭାଗ, ସ୍ରଷ୍ଟାର କାହାଣୀକୁ ପୂର୍ଣ୍ଣରୂପ ଦେବାପାଇଁ ଅନେକ ଚରିତ୍ର

ମାନଙ୍କର ଆବଶ୍ୟକତା ଅନୁଭୂତ ହୋଇଥାଏ । ଉପନ୍ୟାସ ଏକାଧିକ କାହାଣୀ ପ୍ରକାଶ କରୁଥିବାରୁ ସମସ୍ତ ଚରିତ୍ରକୁ ଗ୍ରହଣ କରିଥାଏ ।

## ଉପନ୍ୟାସର ପ୍ରକାରଭେଦ—

ଉପନ୍ୟାସ ମଣିଷ-ସମାଜ ଓ ସମାଜ ମଣିଷର ସ୍ୱାବଲମ୍ବନରେ ନିଜକୁ ସମୃଦ୍ଧ କରିଥାଏ । ସମାଜ ଓ ସମୟର ବଡ଼ଦାଣ୍ଡରୁ କାହାଣୀ ସାଉଁଟିବାବେଳେ ଏଥିରେ ଅନେକ ବିବିଧତା ପରିଦୃଷ୍ଟ ହୁଏ । ଆଦିମ ଯୁଗରୁ ଗୋଟିଏ ଦାୟିତ୍ୱଯୁକ୍ତ ସମାଜ ବ୍ୟବସ୍ଥା ସବୁ ସମୟରେ ପ୍ରତିଷ୍ଠିତ ହୋଇ ଆସିଛି । ମଣିଷ ସମାଜର ଜଣେ ଆଦିମ ସଭ୍ୟ । ଯେତେବେଳେ ମଣିଷ ଓ ସମାଜ ଗୋଟିଏ ବିନ୍ଦୁରେ ଏକାଠି ହୋଇ ଯାଉଛନ୍ତି, ସେତେବେଳେ ମଣିଷ ନିଜକୁ ପୂର୍ଣ୍ଣ ବିକଶିତ ହେବାର ସୁଯୋଗ ଲାଭ କରୁଛି । ଯେଉଁଠି ସମାଜର ନୀରବ ଅସହଯୋଗରେ ମଣିଷ ଅସହାୟ ହୋଇ ଉଠୁଛି ସେଠି ବୁଦ୍ଧିଙ୍କ ଭିତରେ ଅନିକେତ ମନବୃତ୍ତି ପ୍ରକାଶ ପାଉଛି । ସମାଜ ବ୍ୟବସ୍ଥା ଓ ବ୍ୟକ୍ତି ଜୀବନର ପ୍ରାଥମିକ ସମ୍ପର୍କ ସଂଘର୍ଷରୁ ହିଁ ଆରମ୍ଭ ହୋଇଥିଲା । ଯାଯାବର ଜୀବନ ଭିତରେ ଗୋଟିଏ ନଦୀ କୂଳରୁ ଆଉ ଗୋଟିଏ ନଦୀ କୂଳକୁ ସେ ଘୂରିବୁଲିବା ସମୟରେ ବଣର ଜନ୍ତୁଙ୍କୁ ପୋଡ଼ି ଖାଉଥିଲା ତ ପଶୁପାଳନ କରି ଜୀବିକା ନିର୍ବାହ କରୁଥିଲା । କ୍ରମଶଃ ମଣିଷ ଯେତେବେଳେ ବକଲ ଛାଡ଼ି କପଡ଼ା ପିନ୍ଧିଲା ଏବଂ ଆଧୁନିକ ଅସହାୟତାରେ ସେ ନିଜକୁ ସାମିଲ କରିନେଲା । ନିତସେ କହିଲେ ଭଗବାନ ମୃତ (God is dead) । ଡାରୱିନ ଯୋଗ୍ୟତମର ଅବସ୍ଥିତି (Survival of the fittest) ଘୋଷଣା କଲେ । ସ୍ପେଙ୍ଗଲରଙ୍କ ଅଭିନୟ, ମୋନାଲିସାର ହସ, କାମୁଙ୍କ ଦର୍ଶନ, କାଫକାଙ୍କ ବିସ୍ତାରଧାରା ଓ ନ୍ୟୁମାନ ପଲ୍ଲଙ୍କ କଳାକୃତି ଆଇନଷ୍ଟାଇନଙ୍କ ପରମାଣୁ ବୋମାର ତତ୍ତ୍ୱ ନିକଟରେ ନିଜକୁ ଖୁବ୍ ଅସୁରକ୍ଷିତ ଏବଂ ଅସହାୟ ଜ୍ଞାନ କଲେ ।

## (ଘ) ବୃହତ ପରିଧି—

ଉପନ୍ୟାସର ପରିସର ବ୍ୟାପକ । ଉପନ୍ୟାସର ଜୀବନର ବ୍ୟାଖ୍ୟାକାର, ବ୍ୟକ୍ତି ଜୀବନର ବିସ୍ତୃତ ବୟସ ପରି ଉପନ୍ୟାସର ମଣିଷର ଜନ୍ମ ଯୌବନ-ଜରା ବର୍ଣ୍ଣନା କରାଯାଇ ଥାଏ । କାହାଣୀ ଜନ୍ମରୁ ସୃଷ୍ଟି ହୋଇ ମଶାଣିରେ ଶେଷ ହୋଇଥାଏ । ଉପନ୍ୟାସର ଅନେକ ସମସ୍ୟା ଓ ସଂଘର୍ଷ ବର୍ଣ୍ଣନା ଭିତରେ ଥାଏ । ଅପରାଂଶ ବେଳକୁ କାହାଣୀରେ ସମାଧାନର ସୂତ୍ର ଖୋଜା ଚାଲିଥାଏ । ମଣିଷର ବହୁଧା ପ୍ରବୃତ୍ତିର ଚିତ୍ର ଏଥିରେ ପ୍ରକାଶ ପାଇଥାଏ । ମାନବିକ ଚରିତ୍ରମାନଙ୍କର ଉପଯୁକ୍ତ ମୂଲ୍ୟାୟନ ଉପନ୍ୟାସ ଭିତରେ ସମ୍ଭବ ହେଉଥିବାରୁ, ଉପନ୍ୟାସ ନିଜକୁ ବିସ୍ତୃତ କରିବାକୁ ବାଧ୍ୟ । ଉପନ୍ୟାସ ଏକ ଖଣ୍ଡିତ ଆବେଗ ନୁହେଁ, ବିନ୍ଦୁ ଭିତରେ ସିନ୍ଧୁ

ଦର୍ଶନ କରାଇବା ଉପନ୍ୟାସର ଲକ୍ଷ୍ୟ ନୁହେଁ, ବରଂ ଘଟଣାର ଆମୂଳଚୂଳ ପରି-ପ୍ରକାଶ ତା'ର ଲକ୍ଷ୍ୟ ।

## (ଙ) ମିଶ୍ରକଳା—

ଉପନ୍ୟାସ ଏକ ମିଶ୍ରକଳା । ଉପନ୍ୟାସ ଭିତରେ କବିତା, ଗଳ୍ପ, ନାଟକ, ଲୋକନାଟକ, ସଙ୍ଗୀତ, ନୃତ୍ୟ, ପ୍ରବାଦପ୍ରବଚନ, ବୋଲି, ଧର୍ମଧାରଣା, ଲୋକବିଶ୍ୱାସ, କଳା ଓ ସଂସ୍କୃତି ଆତ୍ମପ୍ରକାଶ କରିଥାଏ । ମଣିଷ ଜୀବନ ସମସ୍ୟାପୂର୍ଣ୍ଣ । ଏହି ସମସ୍ୟାପୂର୍ଣ୍ଣ ଜୀବନରୁ ଶାନ୍ତି ସାଉଁଟିବା ପାଇଁ ଉପନ୍ୟାସ ନିଜକୁ ପ୍ରସ୍ତୁତ କରିଥାଏ । ଜୀବନର ହର୍ଷବିଷାଦର ଖବର ଉପନ୍ୟାସ ଭିତରୁ ମିଳିଥାଏ । ସ୍ରଷ୍ଟା ଅତି ପ୍ରାଞ୍ଜଳ ଭାବରେ ଗୋଟିଏ ଅତୀତ ଜାତିର ଅବକ୍ଷୟ ସହ ବର୍ତ୍ତମାନକୁ ସଫଳତାର ସହ ଯୋଡ଼ି ପ୍ରକାଶ କରିଥାଏ । ଉପନ୍ୟାସକୁ ପୂର୍ଣ୍ଣରୂପ ପ୍ରଦାନ କରିବାକୁ ସାହିତ୍ୟର ସମସ୍ତ ବିଭାଗ ଓ ଜୀବନର ସମସ୍ତ ସମସ୍ୟା ଉପଲବ୍ଧ ହୁଅନ୍ତି । ଏଥିରେ ସୃଜନ-ଶୀଳତା ବୃଦ୍ଧି ପାଇଥିବାରୁ ଏହାର ସୌନ୍ଦର୍ଯ୍ୟ ଫୁଟି ଉଠିଛି ।

ପୁରୁଷ ପୁରୁଷାର୍ଥ ବିହୀନ ଏକ ପାଣ୍ଡୁର ପୃଥିବୀ ଭିତରେ ଅବିରତ ଧାବମାନ ହେଲାବେଳେ ପ୍ରେମିକା ଏକ ପରାସ୍ତ ଜୀବନର ବିଦଗ୍ଧ କବିତାରେ ରୂପାନ୍ତରିତ ହୋଇଗଲା । ଇଏ କି ଜୀବନ ସତରେ ! ପତ୍ନୀ ଏକ ପରୀରେ ରୂପଜୀବୀ ଏବଂ ସବୁ ସ୍ତ୍ରୀ ଏକ ଏଡ଼ସର ବିଜ୍ଞାପନ ଭାବରେ ପରିଗଣିତ ହେଲେ, ଦଳେ ଭଣ୍ଡ ବାବାଜୀ ଆମ ଜୀବନଧାରାକୁ ନିୟନ୍ତ୍ରଣ କଲେ । ଆମକୁ ହନୁମାନ ଚାଳିଶା, ମନବୋଧ ଚଉତିଶା ଧରାଇଦେଇ ଯାବତୀୟ ଯୌନ ଜୀବନ ନେଇ ବ୍ୟସ୍ତ ରହିଲେ, ରବୀନ୍ଦ୍ରନାଥ ପଢ଼ା ଅଧା ରହିଲା । (ମୃତ୍ୟୁରେଉ ମମଶ୍ୟାମସମ), ଅମାବସ୍ୟାରେ ଚନ୍ଦ୍ର ଉଇଁଲା, ଉଇଁବନି କେମିତି ଯେ ସବୁ ପୁରୁଷଙ୍କ ଭିତରେ 'କାଉଲ୍' ଚେଇଁ ଉଠିଲା, ଯେ କାଉଲ ପରି ବଞ୍ଚିବାକୁ ଚାହେଁ ସେ ବି 'ସନ୍ଧଆ' ସାଜି ନୂଆ ସମାଜ ଗଢିବାର ସ୍ୱପ୍ନ ଦେଖେ 'ବରଜୁ' ସାଜି ପରିବ୍ରାଜକ ପାଲଟିଯାଏ । ଦଳେ ଗଣତନ୍ତ୍ରବାଦୀ ମାଙ୍କଡ଼ ମଣିଷକୁ ବିଳାସ ବ୍ୟସନରେ ଲିପ୍ତ କରାଇ ସ୍ୱର୍ଣ୍ଣପ୍ରସୂ ଭାରତକୁ ଲୁଣ୍ଠନ କରିବା ପାଇଁ ଏକ ପଞ୍ଚବାର୍ଷିକ ଯୋଜନା ପ୍ରସ୍ତୁତ କଲେ । ଆମେସବୁ ପାଲଟିଗଲୁ ଜଣେ ଜଣେ ଆଧୁନିକ ଦ୍ରୌପଦୀ । ଦୁଃଶାସନର କଳାହାତ ଆମକୁ ଲୁଣ୍ଠନ କରିବାରେ କାର୍ପଣ୍ୟ ପ୍ରକାଶ କଲାନାହିଁ । ତଥାପି ଆମେ ବଞ୍ଚିଛେ, ଏଇ ହେଉଛି ଆମର ବିଶେଷତ୍ୱ । ଆମକୁ ନେଇ ତୁମେ ଯାହା କରୁଛ କର ଆମେ ବଞ୍ଚିବୁ, ଆମେ ବଞ୍ଚିବୁ । ଏଇ ବଞ୍ଚିବାର ବିବିଧ ରୂପ ଆଧୁନିକ କାହାଣୀର ଅବଶିଷ୍ଟାଂଶ । ଆଜିର ଉପନ୍ୟାସରେ ପ୍ରିୟା ଅଛି, ଫୁଲ ଅଛି, ଲୁହ ଅଛି, ନଈ ଅଛି । ଗୋଲାପ ବଣରେ ବସି ନାୟିକ

ଡଣ୍ଡୁଲ ତୋଳୁଛ । ଗାନ୍ଧୀ ଅଛନ୍ତି କିନ୍ତୁ ପଶୁଚମଡ଼ାର ଟୋପି ପିନ୍ଧିଛନ୍ତି । ଆଧୁନିକତା ନାଁରେ ଗୁଡ଼ାଏ ଅସଙ୍ଗାସ୍ୱଙ୍ଗାକୁ ନାମାବଳୀ କରି ପିନ୍ଧିଥିବା ଆଧୁନିକ ମଣିଷ ନିଜକୁ ବାରମ୍ବାର ଲୁଗ୍ଣଇବାକୁ ଯାଇ ପଦାରେ ପଡ଼ିଯାଇଛି । ଉପନ୍ୟାସରେ ମଣିଷର ଜୀବନ ଯାପନ ପ୍ରକ୍ରିୟା, ଶାସନ ବ୍ୟବସ୍ଥା, ମନସ୍ତତ୍ତ୍ୱ ଏବଂ ସର୍ବୋପରି ସାମ୍ପ୍ରତିକ ସମ୍ପର୍କର ବିବିଧ ରୂପ ପ୍ରକାଶ ପାଇଛି । ଫ୍ରଏଡ଼-କାମ୍ୟୁ-କାଫକା ମଣିଷମନ ଓ ମାନସିକତାର ଯେଉଁ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି, ଆଧୁନିକ ଉପନ୍ୟାସ ସେହିସବୁ ତତ୍ତ୍ୱ ଓ ଦର୍ଶନକୁ ପାଥେୟ କରି ଅନେକ କଳାତ୍ମକ କାହାଣୀ ସୃଷ୍ଟି କରିଛି । ନଗର ବୃତ୍ତିର ଜୀବନ ପ୍ରତି ବିତୃଷ୍ଣା ପ୍ରକାଶ କରି ସ୍ରଷ୍ଟା ପହଞ୍ଚିଯାଇଛି ଶିରବନ ବେଷ୍ଟିତ ସେହି ଆଦିମ ମଣିଷମାନଙ୍କ ପାଖରେ । ସେମାନଙ୍କର ଜୀବନଚର୍ଯ୍ୟା ଉପନ୍ୟାସକୁ ବଳିଷ୍ଠ କରିବାରେ ସହାୟକ ହୋଇଛି । ଖାଦ୍ୟ-ବସ୍ତ୍ର-ବାସଗୃହ ପରି ସାଧାରଣ ସର୍ବନିମ୍ନ ସମସ୍ୟାରୁ ଉପନ୍ୟାସର ଆରମ୍ଭ ହୋଇ ମଣିଷର ମାନସିକ ଲୋକ ପର୍ଯ୍ୟନ୍ତ ଉପନ୍ୟାସ ନିଜକୁ ବିସ୍ତୃତ କରି ପାରିଛି । ଉପନ୍ୟାସର ବିଭାଗୀକରଣ ଆଲୋଚନା କଲାବେଳେ ଏହାର ବିପୁଳ ବୈଚିତ୍ର୍ୟ ପ୍ରତି ସମାଲୋଚକର ଦୃଷ୍ଟିପାତ ହୋଇଥାଏ । ନିମ୍ନରେ ଉପନ୍ୟାସର ବିଭିନ୍ନ ବିଭାଗ ଉପରେ ଆଲୋକପାତ କରାଗଲା ।

## (କ) ସାମାଜିକ ଉପନ୍ୟାସ –

ଉପନ୍ୟାସ ସାହିତ୍ୟର ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯିବ, ଯେତେ ଉପନ୍ୟାସ ଆଜି ପର୍ଯ୍ୟନ୍ତ ସୃଷ୍ଟି ହୋଇଛି, ସେଥିରୁ ଅଧିକାଂଶ ସାମାଜିକ ଉପନ୍ୟାସ । ସାମାଜିକ ଉପନ୍ୟାସରେ ସମାଜରେ ଘଟୁଥିବା ନିତିଦିନିଆ ଘଟଣାକୁ କାହାଣୀ ଆକାରରେ ପ୍ରକାଶ କରାଯାଇଥାଏ । ସାମାଜିକ ଉପନ୍ୟାସ ରଚନା କରିବାପାଇଁ ଉପନ୍ୟାସିକ ପ୍ରଥମେ ଏକ ନିର୍ଦ୍ଦିଷ୍ଟ ସମସ୍ୟାକୁ ଗ୍ରହଣ କରିଥାଏ । ଏହି ପରିମିତ ସମୟ ମଧ୍ୟରେ ଘଟି ଯାଇଥିବା ମୁଖ୍ୟ ଘଟଣାବଳୀକୁ ସେ ଭଲ ଭାବରେ ଅନୁଧ୍ୟାନ କରେ । ସେ ସମୟର ସମାଜ ଜୀବନ, ବ୍ୟକ୍ତି ଜୀବନ, ଧାର୍ମିକ ପାରିପାର୍ଶ୍ୱ ଏବଂ ରାଜନୈତିକ ଅବସ୍ଥାକୁ ଗ୍ରହଣ କରି ସେ ଏକ କଥାରୂପ ପ୍ରସ୍ତୁତ କରେ । ଏକ ଗୁରୁତ୍ୱପୂର୍ଣ୍ଣ ସମୟର ସାମାଜିକ ବିଧି ବ୍ୟବସ୍ଥାକୁ ସେ ଏହି ଉପନ୍ୟାସରେ ପ୍ରକାଶ କରିଥାଏ । ସାମାଜିକ ଉପନ୍ୟାସରେ ସ୍ରଷ୍ଟାର ସମାଜ ସମ୍ପର୍କ ସ୍ପଷ୍ଟ ଭାବରେ ପ୍ରକାଶ ପାଇଥାଏ । ଏକ ପ୍ରଚଳିତ ସମାଜ ବ୍ୟବସ୍ଥା, ପରମ୍ପରା ଓ ସଂସ୍କୃତି, ଲୋକନୃତ୍ୟ ଓ ସଙ୍ଗୀତ ସହ ବ୍ୟକ୍ତି ଜୀବନର ମୌଳିକ ଆବଶ୍ୟକତା ସାମାଜିକ ଉପନ୍ୟାସରେ ପ୍ରକାଶ ପାଇଥାଏ ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅନେକ ସାର୍ଥକ ସାମାଜିକ ଉପନ୍ୟାସ ଦେଖିବାକୁ ମିଳେ । ଫକୀରମୋହନ ସେନାପତି ପ୍ରଥମ କରି ଏକ ସମ୍ପୂର୍ଣ୍ଣ ସାର୍ଥକ ସାମାଜିକ ଉପନ୍ୟାସ ରଚନା କରିଛନ୍ତି । ୧୮୯୭ ମସିହାରେ ଉତ୍କଳ ସାହିତ୍ୟ

ପରିକାରେ 'ଛ'ମାଣ ଆଠଗୁଣ୍ଠ' ଆତ୍ମପ୍ରକାଶ କରି ଓଡ଼ିଆ ଉପନ୍ୟାସର ଅଭାବ ଦୂର କରିବା ସହ ଏହାର ସାମାଜିକ ଆବେଦନ ଏ ପର୍ଯ୍ୟନ୍ତ ପାଠକ ସ୍ମୃତିରେ ସଞ୍ଚିତ ହୋଇ ଏହାକୁ ଏକ କ୍ଲାସିକ୍ ଉପନ୍ୟାସର ମର୍ଯ୍ୟାଦା ପ୍ରଦାନ କରିଛି । ଛ'ମାଣ ଆଠଗୁଣ୍ଠର କାହାଣୀ ବର୍ଣ୍ଣିତ ସମସ୍ତଙ୍କୁ ୧୮୪୦ ମସିହାର ସମାଜ ଭିତରେ ଖୋଜିବାକୁ ପଡ଼ିବ । କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁରକୁ ନେଇ ଘଟି ଯାଇଥିବା ହୃଦୟସ୍ପର୍ଶୀ କାହାଣୀକୁ ଫକୀରମୋହନ ସଫଳତାର ସହ ଉପନ୍ୟାସ ରୂପ ଦେଇଛନ୍ତି । ଛ'ମାଣ ଆଠଗୁଣ୍ଠର ମୁଖ୍ୟ ସମସ୍ୟା ଶୋଷଣ ଶୋଷକ ଓ ଶାସନ ବ୍ୟବସ୍ଥାର । ରାମଚନ୍ଦ୍ର ମଙ୍ଗରାଜମାନେ ଭଗିଆ ଶାରିଆକୁ ଶୋଷଣ କରି ପ୍ରତିପତ୍ତି ଜାହିର କରିବାର ଯେଉଁ ବ୍ୟାକୁଳତା ଓ ଭୟଙ୍କରତା ପ୍ରକାଶ କରିଛନ୍ତି—ତାହା ଉକ୍ତ ଉପନ୍ୟାସକୁ ସାର୍ଥକ ସାମାଜିକତା ପ୍ରଦାନ କରିଛି । କେବଳ 'ଛ'ମାଣ ଆଠଗୁଣ୍ଠ' ନୁହେଁ ଫକୀରମୋହନ 'ମାମୁଁ' ଏବଂ 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ମଧ୍ୟ ଏହି ସାମାଜିକ ଆଭିମୁଖ୍ୟ ପ୍ରକାଶ କରିଛନ୍ତି । 'ମାମୁଁ' ଉପନ୍ୟାସରେ ଜଣେ କୌଳିକ ମଣିଷର ଜମିଦାରି ମନୋବୃତ୍ତି ପ୍ରକାଶ ପାଇଛି । 'ଛ'ମାଣ ଆଠଗୁଣ୍ଠ'ର ଶୋଷଣ ଗ୍ରାମଭିତ୍ତିକ; କିନ୍ତୁ ମାମୁଁ ଉପନ୍ୟାସର ଶୋଷଣ ନଗରଭିତ୍ତିକ । ଫକୀରମୋହନଙ୍କ ପ୍ରତ୍ୟେକ ଉପନ୍ୟାସ ଓଡ଼ିଶାର ସମାଜ ଜୀବନର ଏକ ଧାରାବାହିକ ବିବରଣୀ କହିଲେ ଭୁଲ୍ ହେବନି ।

୨

କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ ମାଟିର ମଣିଷ, ଲୁହାର ମଣିଷ, ଆଜିର ମଣିଷ ଉପନ୍ୟାସରେ ସମାଜଚିତ୍ର ଅତି ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ମାଟିର ମଣିଷର ବରଜୁ ଓ ଛକଡ଼ିକୁ ଓଡ଼ିଶାର ଅନେକ ଯୌଥ ପରିବାର ଭିତରେ ସନ୍ଧାନ କରାଯାଇ ପାରିବ । ମାଟିର ମଣିଷ ମାଟି ଆଉ ମଣିଷକୁ ନେଇ ଜୀବନର ପାରି-ବାରିକ ବୃତ୍ତର ଚିରନ୍ତନ ସମସ୍ୟା ଭିତରେ ରକ୍ତ ସମ୍ପର୍କକୁ କ୍ଷୟମାଣ ସମାଜ-ବ୍ୟବସ୍ଥା ଭିତରେ ନୂତନ ପ୍ରାଣ ପ୍ରଦାନ କରିଛି ।

ଉପନ୍ୟାସିକ ନିତ୍ୟାନନ୍ଦ ମହାପାତ୍ରଙ୍କ 'ଭଙ୍ଗାହାଡ଼', 'ହିଡ଼ମାଟି' ଆଦି ଉପନ୍ୟାସରେ ପାରିବାରିକ ଜୀବନବୋଧର ଏକ ଶୁଭ୍ର ସୂଚନା ପ୍ରଦାନ କରାଯାଇଛି । ରକ୍ତସମ୍ପର୍କ ଓ ବୃନ୍ଦଆଦି ପ୍ରୀତି ପ୍ରବଣତାକୁ ନେଇ ଉପନ୍ୟାସିକ ମହାପାତ୍ର ସମାଜ ଜୀବନର ବାସ୍ତବ ଚିତ୍ର ଆଙ୍କିବାରେ ସଫଳ ହୋଇଛନ୍ତି ।

ସାମାଜିକ ଉପନ୍ୟାସ ଆଲୋଚନା ପରିପ୍ରେକ୍ଷୀରେ କାହ୍ନୁଚରଣ ମହାନ୍ତିଙ୍କର ହା-ଅନ୍ନ, ଶାସ୍ତି, ଝଞ୍ଜା ଆଦି ଉପନ୍ୟାସକୁ ମନେପକାଇବାକୁ ହୋଇଥାଏ । ୧୮୬୬ ନଅଙ୍କ ଦୁର୍ଭିକ୍ଷ ପୃଷ୍ଠପଟରେ କାହ୍ନୁଚରଣ ସଫଳତାର ସହ ତାଙ୍କ ଉପନ୍ୟାସର କାହାଣୀ ଚୟନ କରିଛନ୍ତି । ଗ୍ରାମ୍ୟଜୀବନ ଓ ମଣିଷର ସର୍ବନିମ୍ନ ଆବଶ୍ୟକତାକୁ

ସୃଷ୍ଟି କରି ଉପନ୍ୟାସ ରଚନା କରିବାରେ କାହ୍ନୁ ଚରଣ ଜଣେ ସଫଳ ସ୍ରଷ୍ଟା । ସୁରେନ୍ଦ୍ର ମହାନ୍ତି, ରାଜକିଶୋର ପଟ୍ଟନାୟକ, ଗୋପିନାଥ ମହାନ୍ତି ପ୍ରମୁଖ ସାମାଜିକ ଉପନ୍ୟାସ ସୃଷ୍ଟି କରି ନିଜ ପ୍ରତିଭାର ବଳିଷ୍ଠ ସ୍ୱାକ୍ଷର ଛାଡ଼ି ଯାଇଛନ୍ତି । ସାମାଜିକ ଉପନ୍ୟାସ ସମାଜ ଜୀବନର ନିଚ୍ଛକ ପ୍ରତିଫଳନ ।

## (ଖ) ଐତିହାସିକ ଉପନ୍ୟାସ—

ଇତିହାସର ପଞ୍ଜର ଉପରେ ସାମାଜିକତାର ରକ୍ତ ମାଂସ ବାନ୍ଧିଦେଇ ଏ ଧରଣର ଉପନ୍ୟାସ ସୃଷ୍ଟି କରାଯାଇ ଥାଏ । ଉପନ୍ୟାସ ଇତିହାସ ନୁହେଁ କି ଇତିହାସ ଉପନ୍ୟାସ ନୁହେଁ; କିନ୍ତୁ ଉଭୟଙ୍କର ସମନ୍ୱୟରେ ସାର୍ଥକ ସାହିତ୍ୟ ସୃଷ୍ଟି ହୋଇଥାଏ । ଇତିହାସରେ ଏପରି ଅନେକ ଘଟଣାବଳୀ ରହିଛି, ଯାହା ଲୋକ ଲୋଚନକୁ ଆସିପାରେ ନାହିଁ । ଗୋଟିଏ ଜାତିର ଅତୀତ ଇତିହାସ, ଅସହାୟତାକୁ କାହାଣୀ ମାଧ୍ୟମରେ ସୃଜନଶୀଳତାର ରଙ୍ଗଦେଇ ଉପନ୍ୟାସ ଭାବରେ ସୃଷ୍ଟି କରାଯାଇଥାଏ । ଇତିହାସ ଆଶ୍ରିତ ଉପନ୍ୟାସର ପ୍ରଧାନ ଲକ୍ଷ୍ୟ ହେଉଛି ଇତିହାସ ସଚେତନତା ସୃଷ୍ଟି କରିବା । ଇତିହାସର ଗୁରୁତ୍ୱପୂର୍ଣ୍ଣ ସମସ୍ୟ ଓ ସମାଜ ସଙ୍କଟ ବା ଇତିହାସର ବୀର ପୁରୁଷମାନଙ୍କୁ କାହାଣୀର ନାୟକ ଭାବରେ ପ୍ରତିଷ୍ଠା ଦେବାକୁ ଉପନ୍ୟାସିକ ଆଗ୍ରହ ପ୍ରକାଶ କରିଥାଏ । ଚତୁର୍ଦ୍ଦଶ ଶତକରୁ ଷୋଡ଼ଷ ଶତକ ପର୍ଯ୍ୟନ୍ତ ସମଗ୍ର ଇଉରୋପରେ ନବଜାଗରଣ ଦେଖା ଦେଇଥିଲା । ଏହି ନବଜାଗରଣର ସାହିତ୍ୟରେ ଭୁଖାର୍ଡ଼ ଏବଂ ସାଇମଣ୍ଡଙ୍କ ପରି ସାହିତ୍ୟିକ ଅତୀତର ଐତିହ୍ୟ ସମ୍ପନ୍ନ ଘଟଣା ଓ ଘଟଣାର ନାୟକମାନଙ୍କୁ ନେଇ ସାହିତ୍ୟ ସୃଷ୍ଟି କରିଥିଲେ । ଲୋକପ୍ରିୟ ଓ ଲୋକ ସ୍ମୃତିରେ ସଜାଗ ଚରିତ୍ରମାନଙ୍କୁ ପୁଣି ଥରେ ସାହିତ୍ୟ ମାଧ୍ୟମରେ ସ୍ମରଣ କରାଇ ସ୍ରଷ୍ଟା ତା'ର ସୃଷ୍ଟିକୁ ଲୋକପ୍ରିୟ କରାଇଥାଏ । ଓଡ଼ିଆ ଉପନ୍ୟାସ ସାହିତ୍ୟ ଆରମ୍ଭ ପର୍ବରେ କେବଳ ଐତିହାସିକ ଉପନ୍ୟାସ ସୃଷ୍ଟି ହୋଇଥିଲା । ସମାଜଧର୍ମୀ କୌଣସି କାହାଣୀକୁ ଗ୍ରହଣ କରିବାକୁ ଯେତେବେଳେ ପାଠକମାନେ ପ୍ରସ୍ତୁତ ହୋଇ ନ ଥାନ୍ତି, ସେହିପରି ଏକ ସମୟରେ ' ଇତିହାସର କାହାଣୀକୁ ପ୍ରକାଶ କରାଯାଇପାରେ ।

ଏପରି ଏକ ସତ୍ୟର ବ୍ୟବହାରିକ ରୂପ ଆଦିପର୍ବ ଓଡ଼ିଆ ଉପନ୍ୟାସରେ ଦେଖିବାକୁ ମିଳିଥାଏ । ଓଡ଼ିଆ ଉପନ୍ୟାସ ସାହିତ୍ୟର ପ୍ରଥମ ଉପନ୍ୟାସ 'ପଦ୍ମମାଳୀ' ଇତିହାସକୁ ଗ୍ରହଣ କରି ଆତ୍ମପ୍ରକାଶ କରିଛି । ଉମେଶ ଚନ୍ଦ୍ର ସରକାରଙ୍କ 'କେନ୍ଦୁଝର ବିଦ୍ରୋହ' ମଧ୍ୟ ଏକ ଐତିହାସିକ ଉପନ୍ୟାସ । ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଦି ପର୍ବରେ ରାମଶଙ୍କର ରାୟଙ୍କର 'ସୌଦାମିନୀ' 'ବିବାସିନୀ' ମଧ୍ୟ

ଗୋଟିଏ ଗୋଟିଏ ଐତିହାସିକ ଉପନ୍ୟାସ । ଏହି ସମୟରେ ଫକୀରମୋହନଙ୍କ 'ଲଛମା' ଉପନ୍ୟାସକୁ ଗ୍ରହଣ କରାଯାଇ ପାରିବ । ଓଡ଼ିଶାରେ ମୋଗଲ-ମରହଟ୍ଟା-ମାନଙ୍କର ସଂଘର୍ଷ ଓ ଓଡ଼ିଶାର ସାମାଜିକ ରାଜନୈତିକ ଚିତ୍ରକୁ ଫକୀରମୋହନ 'ଲଛମା' ଉପନ୍ୟାସରେ ବର୍ଣ୍ଣନା କରିଛନ୍ତି ।

ରାମଚନ୍ଦ୍ର ଆଚାର୍ଯ୍ୟଙ୍କର 'ବୀର ଓଡ଼ିଆ', 'କମଳ କୁମାରୀ', ଗୋଦାବରୀଶ ମିଶ୍ରଙ୍କର '୧୮୧୭', ଗୋଦାବରୀଶ ମହାପାତ୍ରଙ୍କର 'ରାଜଦ୍ରୋହୀ', 'ବନ୍ଦୀର ମାୟା', ମୁକୁନ୍ଦ ଦାସଙ୍କର 'କଳାପାହାଡ଼', ତାରିଣୀ ଚରଣ ରଥଙ୍କର 'ଅନ୍ନପୂର୍ଣ୍ଣା' ଆଦି ଐତିହାସିକ ଉପନ୍ୟାସମାନ ଓଡ଼ିଶାର କିମ୍ବଦନ୍ତୀ ଓ ଇତିହାସକୁ ଉପନ୍ୟାସିକ କଳାରେ ଆବୃତ କରି ପ୍ରକାଶ କରିଛନ୍ତି ।

କାଳନ୍ଦୀ ଚରଣ ପାଣିଗ୍ରାହୀ 'ମୁକ୍ତାଗଡ଼ର କ୍ଷୁଧା', କାହ୍ନୁ ଚରଣ ମହାନ୍ତି 'ହାଲିରାଜା', ସୁରେନ୍ଦ୍ର ମହାନ୍ତିଙ୍କର 'ନୀଳଶୈଳ', 'ନୀଳାଦ୍ରି ବିଜୟ', 'କୃଷ୍ଣାବେଣୀର ସନ୍ଧ୍ୟା', 'ଆଜିବତିର ଅଟ୍ଟହାସ୍ୟ', ବାମାଚରଣ ମିତ୍ରଙ୍କର 'ଚନ୍ଦ୍ର ଓ ଚମ୍ପା', ଶାନ୍ତ ମହାପାତ୍ରଙ୍କର 'ନୁରଜାହାନ', ବସନ୍ତ କୁମାର ସାମଲଙ୍କର 'ଶାଳବନ୍ତୀ' ଗୋପିନାଥ ପଣ୍ଡାଙ୍କର 'ପାଟଳିପୁତ୍ରର ନଗର ବଧୂ', ନୃସିଂହ ପଣ୍ଡାଙ୍କର 'ଚଣ୍ଡାଶୋକ', ବିଭୂତି ପଟ୍ଟନାୟକଙ୍କର 'ସୁଲତାନା', ପ୍ରତିଭା ରାୟଙ୍କର 'ଉତ୍ତର ମାର୍ଗ', ଅନ୍ନଦା ପ୍ରସାଦ ରକ୍ଷିତଙ୍କର 'ନୀଲମ୍ ବିବି' ଆଦି ଉପନ୍ୟାସ ଇତିହାସକୁ ମୂଳ ପୁଞ୍ଜି କରି ଆତ୍ମପ୍ରକାଶ କରିଛି ।

ଉପନ୍ୟାସିକ ଇତିହାସର ପଟ୍ଟଭୂମି ଉପରେ ସାମାଜିକ ବର୍ଣ୍ଣନା ବିଳାସ ଲେପ ଦେଇ ଏକ ମନୋଜ୍ଞ ବାଣୀ ପ୍ରତିମା ସୃଷ୍ଟି କରିଥାଏ । ଐତିହାସିକ ଉପନ୍ୟାସ ଅତୀତର ଗୌରବ, ଅବକ୍ଷୟକୁ ଆମ ନିକଟରେ କଳାତ୍ମକ ଶୈଳୀରେ ପ୍ରକାଶ କରିଥାଏ ।

## ଜାତିପ୍ରୀତି ପ୍ରବଣ ଉପନ୍ୟାସ—

ଗୋଟିଏ ଜାତିର ଜାତୀୟ ଜୀବନରେ ଏପରି ଏକ ସମୟ ଆସେ, ଯେତେବେଳେ ସେହି ଜାତି ଭିତରେ ବାସ କରୁଥିବା ସଚେତନ ମନୀଷମାନେ ଗୋଟାଏ ଜାତୀୟ ସ୍ରୋତରେ ସାମିଲ ହୋଇ ନିଜ ଭିତରେ ଥିବା ସଂକୀର୍ଣ୍ଣତାକୁ ପାଶୋରି ପକାନ୍ତି । ୧୯୦୩ ମସିହାରେ ଗଞ୍ଜାମ ଜିଲ୍ଲାରେ ମଧୁବାବୁଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନପାଇଁ 'ଉତ୍କଳ ସମ୍ମିଳନୀ' ଅନୁଷ୍ଠିତ ହେଲା । ଓଡ଼ିଶାର ତତ୍କାଳୀନ ସମସ୍ତ ବୁଦ୍ଧିଜୀବୀ, ସାହିତ୍ୟିକ, ସମାଜସେବୀ ଏ ସମ୍ମିଳନୀର ସଫଳତା କାମନା କରି ସମଗ୍ର ଓଡ଼ିଶାରେ ଏକ ଉଚ୍ଚ ଧରଣର ଜାତୀୟବାଦୀ ଭାବଧାରା ପ୍ରବାହ କଲେ । ସତ୍ୟବାଦୀ ଯୁଗର ସାହିତ୍ୟ ଓ ସତ୍ୟ ସନ୍ଧାନୀ

ଆଭିମୁଖ୍ୟ ଏ ସମୟରେ ଜାତୀୟ ଚେତନା ପ୍ରକାଶ କରିବାରେ ନେତୃତ୍ୱ ନେଇ ନିଜର କର୍ତ୍ତବ୍ୟ ସମ୍ପାଦନ କରିଥିଲା । ଯେ କୌଣସି ଦେଶର ବା ଭାଷାର ସଭ୍ୟତା ଭିତରେ ଜାତିପ୍ରୀତି ଉଦ୍ରେକ କରିବା ପାଇଁ ଉପନ୍ୟାସ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ଓଡ଼ିଶାରେ ଜାତୀୟତାବାଦୀ ଉପନ୍ୟାସ ରଚନା କରିବା ପାଇଁ ସତ୍ୟବାଦୀ ଯୁଗ ଉପଯୁକ୍ତ ଭିତ୍ତିଭୂମି ପ୍ରସ୍ତୁତ କରିଥିଲା । ଜାଲିଅନାୱାଲାବାଗ ହତ୍ୟାକାଣ୍ଡ ପ୍ରଥମ ବିଶ୍ୱ ସମର ଅସହଯୋଗ ଆନ୍ଦୋଳନର ପୃଷ୍ଠଭୂମିରେ ଏକ ପକ୍ଷରେ ଭାରତୀୟତାବୋଧ ପ୍ରକାଶ ପାଉଥିବାବେଳେ ଅନ୍ୟ ପକ୍ଷରେ ଓଡ଼ିଶାର ଗଡ଼ଜାତ ଶାସନ ଓ ମୋଗଲ ବନ୍ଦୀ ଅଞ୍ଚଳମାନଙ୍କର ସମସ୍ୟା, ପ୍ରଜାମେଳି, ଅନାହାର ସମସ୍ୟା ଦିନକୁ ଦିନ ଉଗ୍ରରୂପ ଧାରଣ କରୁଥିଲା । ମୁଖ୍ୟତଃ ଏହି ଦୁଇଟି କାରଣକୁ ଆଖି ଆଗରେ ରଖି ସ୍ରଷ୍ଟାମାନେ ଜାତି ପ୍ରୀତି ପ୍ରବଣ ଉପନ୍ୟାସ ରଚନାରେ ପ୍ରୟାସୀ ହୋଇଥିଲେ ।

ଗୋଦାବରୀଶ ମିଶ୍ର ଅସହଯୋଗ ଆନ୍ଦୋଳନର ପୃଷ୍ଠଭୂମିରେ ରଚନା କରିଥିଲେ 'ଅଠରଗଡ଼' 'ଘଣ୍ଟାନ୍ତର' '୧୮୧୭' 'ନିର୍ବାସିତ' ଆଦି ଉପନ୍ୟାସ । ଏଥିରେ ଅତୀତ ଉତ୍କଳର ଗୌରବ ଉନ୍ମୋଚନ କରିଯିବା ସହ ବୀର ଓଡ଼ିଆମାନଙ୍କୁ ଏକାଠି କରି ପ୍ରତିବାଦ ପାଇଁ ପ୍ରୟାସ କରିଛନ୍ତି । ଗୋଦାବରୀଶ, ଲକ୍ଷ୍ମୀଧର ନାଏକ-ଙ୍କର 'କୁଳି' 'ହାଏରେ ଆମରି ଦେଶ', ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର 'କଣାମାମୁଁ', କାହ୍ନୁ ଚରଣଙ୍କ 'ବାଲି ରଜା' ଉପନ୍ୟାସମାନଙ୍କରେ ଉତ୍କଳୀୟ ସମୃଦ୍ଧ ଅତୀତକୁ ସ୍ମରଣ କରାଇ ବର୍ତ୍ତମାନର ଅବକ୍ଷୟକୁ ବର୍ଣ୍ଣନା କରାଯାଇଛି । ହରେକୃଷ୍ଣ ମହତାବ 'ନୂତନ ଧର୍ମ' 'ପ୍ରତିଭା' ଉପନ୍ୟାସ ମାଧ୍ୟମରେ ଉତ୍କଳୀୟ ପ୍ରୀତିର ସ୍ପର୍ଶ ଦେଇଛନ୍ତି । ସଚ୍ଚିଦାନନ୍ଦ ରାଉତରାୟ ତାଙ୍କର 'ଚନ୍ଦ୍ରଭାଗା' ଉପନ୍ୟାସରେ ଅବହେଳିତ ମଣିଷମାନଙ୍କର ସମସ୍ୟା ସମାଧାନ ପାଇଁ ବିପ୍ଳବର ସୂଚନା ଦେଇଛନ୍ତି ।

ଜାତୀୟତାବାଦୀ ଉପନ୍ୟାସରେ ଅତୀତର ଗୌରବ ମାଧ୍ୟମରେ ବର୍ତ୍ତମାନର ଅବକ୍ଷୟକୁ ଓ ସମସ୍ୟାକୁ ପ୍ରକାଶ କରି ଜାତିପ୍ରୀତି ପ୍ରସ୍ତୁତ କରାଯାଇଥାଏ ।

## (ଘ) ରାଜନୀତି କେନ୍ଦ୍ରିକ ଉପନ୍ୟାସ :

ରାଜନୈତିକ ଉପନ୍ୟାସମାନଙ୍କରେ ସମାଜର ଶାସନ ବ୍ୟବସ୍ଥା ଓ କ୍ଷମତା ଚିତ୍ର ପ୍ରକାଶ ପାଇଥାଏ । ରାଜନୈତିକ ଉପନ୍ୟାସରେ କ୍ଷମତାରେ ଥିବା ମଣିଷମାନଙ୍କର କକ୍ଷଚ୍ୟୁତ ଓ ଶାସନ କଳର ଦୁରୁପଯୋଗର ଚିତ୍ର ପ୍ରକାଶ ପାଇଥାଏ । ଉପନ୍ୟାସ ସମାଜ ଜୀବନର ଦର୍ପଣ ସଦୃଶ । ଗୋଟିଏ ଶାସନ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାକୁ ହେଲେ ବା ଜନସାଧାରଣଙ୍କ ଭିତରେ

କୌଣସି ସଚେତନତା ସୃଷ୍ଟି କରିବାକୁ ହେଲେ ଉପନ୍ୟାସ ଏକ ଶ୍ରେଷ୍ଠ ମାଧ୍ୟମ ରୂପେ ପ୍ରୟୋଗ ହୋଇଥାଏ । ତା'ର ଶାସନ ବିରୁଦ୍ଧରେ ସଂଗ୍ରାମ ପାଇଁ ସୋଭିଏଟ୍ ରୁଷରେ ଅନେକ ସଚେତନ ଉପନ୍ୟାସମାନ ସୃଷ୍ଟି ହୋଇଥିଲା । କେତେକ ପରିପକ୍ୱ ସାହିତ୍ୟ ସୃଷ୍ଟି ୧୯୧୭ ମସିହାରେ ବଲସେଭିକ ବିପ୍ଳବ ସୃଷ୍ଟି କରି ପାରିଥିଲେ । ମାକସିମ ଗର୍କିଙ୍କ 'The mother' ଉପନ୍ୟାସ ସାଧାରଣ ମଣିଷ ଭିତରେ ଯେଉଁ ଉଚ୍ଚାଭିଳାଷ ପୋଷଣ କରେ, ସଚେତନ ପାଠକ ନିଶ୍ଚୟ ପ୍ରତିକ୍ରିୟା ପ୍ରବଣ ହୋଇଉଠେ । ରାଜନୈତିକ ଘଟଣାବଳୀ, ରାଜନୀତିର ବିପଥଗାମୀ ଚିତ୍ର ଏବଂ ଅତୀତର ଶାସନ ବ୍ୟବସ୍ଥାସହ ବର୍ତ୍ତମାନର ଶାସନ ବ୍ୟବସ୍ଥାର ଏକ ତୁଳନାତ୍ମକ ଅଧ୍ୟୟନ ରାଜନୈତିକ ଉପନ୍ୟାସମାନଙ୍କରେ ସମ୍ଭବ ହୋଇଥାଏ । ଆଦର୍ଶବାଦର ହତ୍ୟା, ମାନବିକତାର ମୂଲ୍ୟହ୍ରାସ ସର୍ବୋପରି ଲଘୁଜନମାନଙ୍କୁ ଶୋଷଣ କରିବା ସହ କ୍ଷମତାରେ ଥିବା ମଣିଷର ଭ୍ରଷ୍ଟାଚାରର ଚିତ୍ର ରାଜନୈତିକ ଉପନ୍ୟାସମାନଙ୍କରୁ ମିଳିଥାଏ ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ରାଜନୈତିକ ଉପନ୍ୟାସର ପ୍ରାବଲ୍ୟ ଏତେ ଦେଖାଯାଏ ନାହିଁ । ସୁରେନ୍ଦ୍ର ମହାନ୍ତିଙ୍କ 'ଅନ୍ଧଦିଗନ୍ତ'ରେ ରାଜନୈତିକ ପରିଚର୍ଯ୍ୟା ସମ୍ଭବ ହୋଇଛି । ଶ୍ରୀଯୁକ୍ତ ମହାନ୍ତି ଆଜିର ରାଜନୈତିକ ବ୍ୟବସ୍ଥାକୁ ପର୍ଯ୍ୟାଲୋଚନା କରି ଲଘୁ ମନ୍ତବ୍ୟ ପ୍ରକାଶ କରିଛନ୍ତି । ଓଡ଼ିଆ ଭାଷାରେ ରାଜନୈତିକ ଉପନ୍ୟାସ ରଚନା କରିବାରେ ହରେକୃଷ୍ଣ ମହତାବ ଜଣେ ସ୍ମରଣୀୟ ପ୍ରତିଭା । ମହତାବ 'ଟାଉଟର', 'ଅବ୍ୟାପାର' ଉପନ୍ୟାସରେ ରାଜନୈତିକ ବ୍ୟଙ୍ଗ ଓ ବିଦ୍ରୂପ ପ୍ରକାଶ କରିଛନ୍ତି । ଆଜିର ରାଜନୀତିରେ ମୂଲ୍ୟବୋଧର ହ୍ରାସ ଓ ବ୍ୟକ୍ତିତ୍ୱର ପରାଜୟକୁ ମହତାବ ସୁନ୍ଦର ଭାବରେ ତୋଳି ପାରିଛନ୍ତି । ସାମ୍ପ୍ରତିକ ସମୟରେ ରଚନା କରାଯାଉଥିବା ଅନେକ ଉପନ୍ୟାସରେ ରାଜନୈତିକ ଚେତନା ପ୍ରକାଶ ପାଉଥିବା ଲକ୍ଷ୍ୟ କରାଯିବ । ଅନାଦି ସାହୁଙ୍କ 'ମୁଣ୍ଡମେଖଳା' 'ତାଣ୍ଡବ' ଆଦି ଉପନ୍ୟାସ ରାଜନୈତିକ ଚେତନାରେ ବେଶ୍ ହୃଷ୍ଟପୁଷ୍ଟ । ଅନ୍ୟତମ ଉପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ ତାଙ୍କ କୃତ ଉପନ୍ୟାସ ମାନଙ୍କରେ ମଧ୍ୟ ଏ ଭାବଧାରାଟିକୁ ଗ୍ରହଣ କରିଛନ୍ତି । ରାଜନୈତିକ ଉପନ୍ୟାସରେ ଶାସନବ୍ୟବସ୍ଥା ଓ ସୁବିଧାବାଦକୁ ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ ଉପସ୍ଥାପନା କରାଯାଇଥାଏ ।

## (ଙ) ମନସ୍ତାତ୍ତ୍ୱିକ ଉପନ୍ୟାସ—

ମନସ୍ତାତ୍ତ୍ୱିକ ଉପନ୍ୟାସ ମଣିଷର ମନଗହନର କଥା ଉନ୍ମୋଚନ କରିଥାଏ । ଆଧୁନିକ ମଣିଷ ଗୋଟିଏ ମାନସିକ ରୋଗୀ, ସେ ଦୁଇଟି ଚେହେରାର ମଣିଷ । ବାହାରକୁ ସେ ଗୋଟିଏ ପ୍ରକାର ଜଣା ପଡ଼ୁଥିଲେ ମଧ୍ୟ ପ୍ରକୃତରେ ସେ ସେପ୍ରା

ନୁହେଁ । ସାମ୍ପ୍ରତିକ ସମସ୍ୟାରେ ହସୁଥିବା ମଣିଷଟି ଯେମିତି ପ୍ରକୃତରେ ହସେନାହିଁ, କାନ୍ଦୁଥିବା ମଣିଷ କାନ୍ଦେନାହିଁ ଏପରି ଏକ ଅସହାୟ ଅପ୍ରାକୃତିକ ଅବସ୍ଥାରେ ବସ୍ତୁବାଦୀ ମଣିଷ ବଞ୍ଚିବାକୁ ବାଧ୍ୟହୁଏ ।

ବିଜ୍ଞାନର ଅଗ୍ରଗତି ଫଳରେ ମଣିଷ ନିଜକୁ ମାନସିକ ସ୍ତରରେ ଅଧିକରୁ ଅଧିକ ବିକଶିତ କରି ପାରିଛି । ଗୋଟିଏ ବିକଶିତ ଦେଶର ବ୍ୟବସ୍ଥାପକ ପୃଷ୍ଠଭୂମିରେ ମଣିଷ ଗୋଟିଏ ଯନ୍ତ୍ର ପାଲଟି ଯାଇଛି । ମଣିଷର ମନରାଜ୍ୟକୁ ବିଭିନ୍ନ ସମସ୍ୟାରେ ବହୁ ଦାର୍ଶନିକ ନିଜସ୍ୱ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । କାମ୍ୟୁ, କାଫକାଙ୍କ ସ୍ଥିତିବାଦୀ ଦର୍ଶନ ମଣିଷର ମନକୁ ଅବିରତ ନିଜର ଅସ୍ତିତ୍ୱ ଜାହିର କରିବା ପାଇଁ ପ୍ରସ୍ତୁତ କରିଛି । ଆଇନ୍‌ଷ୍ଟାଇନଙ୍କ ବିଜ୍ଞାନ, ଡାରୱିନଙ୍କ ବିବର୍ତ୍ତନବାଦ ଏବଂ ନିତ୍ସେଙ୍କ 'ଭଗବାନ ମରିଗଲେ' ତତ୍ତ୍ୱ ମଣିଷର ଚିନ୍ତା ରାଜ୍ୟକୁ ଆହୁରି ବିସ୍ତୃତ କରି ପାରିଛି । ଏପରି ଏକ ଜଟିଳ ଦ୍ୱନ୍ଦ୍ୱାତ୍ମକ ସମସ୍ୟାରେ ସିଗ୍‌ମଣ୍ଡ ଫ୍ରଏଡ୍ ମଣିଷର ଯୌନଦମ୍ଭ ଭାଙ୍ଗିପକାଇ ତା'ର ଅସ୍ତିତ୍ୱକୁ ପଦାରେ ପକାଇ ଦେଇଛନ୍ତି । ମଣିଷର ମନରାଜ୍ୟକୁ ସେ ସଚେତନ-ଅଚେତନ-ଅବଚେତନ ଏହିପରି ତିନିଗୋଟି ସ୍ତରରେ ବିଭକ୍ତ କରିଛନ୍ତି । ମଣିଷର ଅବଦମିତ ଯୌନ ଇଚ୍ଛା ଆକର୍ଷଣ ପ୍ରକାଶ କରି ସେ କହିଛନ୍ତି ଯେ ପ୍ରତ୍ୟେକ ପୁରୁଷ ନାରୀପାଇଁ ଏବଂ ପ୍ରତ୍ୟେକ ନାରୀ ପୁରୁଷପାଇଁ ଅବଚେତନ ସ୍ତରରେ ସବୁବେଳେ ପ୍ରସ୍ତୁତ ହୋଇ ରହିଥାଏ । ଯେତେ ନିକଟ ସମ୍ପର୍କ, ରକ୍ତସମ୍ପର୍କ ହେଲେ ମଧ୍ୟ ତା'ର ଯୌନଲାଳସା ଅବଦମିତ ଇଚ୍ଛାଶକ୍ତିର ରୂପନେଇ ବ୍ୟାପକ ଭାବରେ ପ୍ରକାଶ ପାଇଥାଏ । ଫ୍ରଏଡ୍ ମଣିଷକୁ ଏକ ସୁସ୍ଥ ସବଳ ଯୌନରୋଗୀ, ଡାରୱିନ ମଣିଷକୁ ସଂଗ୍ରାମୀ, କାମ୍ୟୁ ମଣିଷକୁ ସ୍ଥିତିବାଦୀରେ ପରିଣତ କରିଦେଲେ । ଏପରି ଏକ ମାନସିକ ବିଶ୍ୱଜ୍ୟ ପୃଷ୍ଠଭୂମିରେ ଆଧୁନିକ ମଣିଷ ମାନସିକ ସଙ୍କଟରେ ପଡ଼ିବା ସ୍ୱାଭାବିକ । ମଣିଷର ମନରାଜ୍ୟର ଚିନ୍ତାଧାରାକୁ ଉପନ୍ୟାସରେ ରୂପଦେଇ ଚରିତ୍ରମାନଙ୍କର ଅବଦମିତ ଆଗ୍ରହକୁ ପାଠକମାନଙ୍କ ନିକଟରେ ପହଞ୍ଚାଇ ଦିଆଯାଇ ଥାଏ ।

ଓଡ଼ିଆ ଭାଷାରେ ମନସ୍ତତ୍ତ୍ୱକୁ ନେଇ କେତେକ ସମୃଦ୍ଧ ଉପନ୍ୟାସ ଦେଖିବାକୁ ମିଳିଥାଏ । ମନଗହନର କଥାକୁ ଚିତ୍ରଣ କରିବାରେ ଆମ ଉପନ୍ୟାସିକମାନେ ବିଧିବଦ୍ଧ ପ୍ରୟାସ କରିଛନ୍ତି । ସବୁଜ ଯୁଗ ସାହିତ୍ୟରେ ମିଳିତ ଉଦ୍ୟମରେ ସୃଷ୍ଟି ହୋଇଥିବା 'ବାସନ୍ତୀ' ଏକ ମନସ୍ତାତ୍ତ୍ୱିକ ଉପନ୍ୟାସ । 'ବାସନ୍ତୀ'ର ମନରାଜ୍ୟକୁ ବିଶ୍ଳେଷଣ ମାଧ୍ୟମରେ ଅଗଣିତ ଉତ୍କଳୀୟ ବାସନ୍ତୀକୁ ସ୍ରଷ୍ଟାମାନେ ଉନ୍ମୋଚନ କରିଛନ୍ତି । ନିତ୍ୟାନନ୍ଦ ମହାପାତ୍ରଙ୍କ 'ହିଡ଼ମାଟି' ଉପନ୍ୟାସରେ ମନସ୍ତାତ୍ତ୍ୱିକ ଚିନ୍ତ ପ୍ରଦାନ କରାଯାଇଛି । ମନସ୍ତତ୍ତ୍ୱ ଦୃଷ୍ଟିରୁ ସୁରେନ୍ଦ୍ର ମହାନ୍ତିଙ୍କ 'କଳଙ୍କିତ ବସ୍ତୁ',

'ବଧୂ ଓ ପ୍ରିୟା' ଉପନ୍ୟାସ ଦୁଇଟି ମୂଲ୍ୟବାନ । ଚରିତ୍ରମାନଙ୍କ ଭିତରେ ପ୍ରେମ-ଚେତନା ପ୍ରକାଶ କରି ପ୍ରେମପ୍ରଣୟର ପରିଧିରେ ମାନସିକ ଦ୍ୱନ୍ଦ୍ୱର ସଫଳ ଚିତ୍ରଣ ସୁରେନ୍ଦ୍ର ମହାନ୍ତି କରିଛନ୍ତି । ଫ୍ରଏଡୀୟ ଚିନ୍ତାଧାରାରେ ପରିପୁଷ୍ଟ ଏ ଦୁଇଟି ଉପନ୍ୟାସରେ ସଫଳ ମନସ୍ତାତ୍ତ୍ୱିକ ଚିତ୍ରଣ ଲକ୍ଷ୍ୟ କରାଯାଇ ପାରିବ ।

ମନସ୍ତାତ୍ତ୍ୱିକ ଉପନ୍ୟାସ ଆଲୋଚନାରେ ଗୋବିନ୍ଦ ଦାସଙ୍କ 'ଅମାବାସ୍ୟାର ଚନ୍ଦ୍ର' ଉପନ୍ୟାସକୁ ଉପେକ୍ଷା କରାଯାଇ ପାରିବ ନାହିଁ । ଏହି ମନସ୍ତତ୍ତ୍ୱର କେନ୍ଦ୍ରବିନ୍ଦୁ ପାଲଟିଛି 'କାହ୍ଲ' । କାହ୍ଲ୍‌ର ଜୀବନଚର୍ଯ୍ୟା ଓ ଜୀବନ ପ୍ରତି ବେପରୁଆ ମନୋ-ବୃତ୍ତିକୁ ଉପନ୍ୟାସିକ ଅତି ସଫଳତାର ସହ ଚିତ୍ରଣ କରିଛନ୍ତି । ପ୍ରତ୍ୟେକ ମଣିଷର ଦୁଇଟି ପାର୍ଶ୍ୱ ଅଛି । ସେ ଅଧା ସଇତାନ ଅଧା ଭଗବାନ । କାହ୍ଲ ଜଣେ ମଣିଷ, ଜୀବନକୁ ନଷ୍ଟ କରି ବଞ୍ଚି ଶିଖିଥିବା ମଣିଷ । ସେ ଜୀବନରେ ପଇସା, ସମ୍ମାନର ମୂଲ୍ୟ କ'ଣ ଜାଣିଛି । ସେ ରୂପଜୀବୀ ମାନଙ୍କୁ ଉପଭୋଗ କରେ, ପ୍ରେମ କରେନା । ଯେଉଁ ଅଳିଆଗଦାରୁ କାହ୍ଲ୍‌ର ଜନ୍ମ 'ସେହି ଅଳିଆଗଦାର ମଣିଷମାନଙ୍କ ପାଇଁ ତା' ହୃଦୟ ବିଚଳିତ ହୁଏ । 'ଅମାବାସ୍ୟାର ଚନ୍ଦ୍ର' ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ସଫଳ ମନସ୍ତାତ୍ତ୍ୱିକ ଉପନ୍ୟାସ ।

ଓଡ଼ିଆ ମନସ୍ତାତ୍ତ୍ୱିକ ଉପନ୍ୟାସ ଆଲୋଚନା କଲାବେଳେ ଆଦ୍ୟପର୍ବର ଓଡ଼ିଆ ଉପନ୍ୟାସ ବୈଷ୍ଣବ ଚରଣ ଦାସଙ୍କ 'ମନେମନେ' କୁ ସ୍ମରଣ କରିବାକୁ ହୋଇଥାଏ । ଶାନ୍ତିକୁମାର ଆଚାର୍ଯ୍ୟଙ୍କ 'ଶତାବ୍ଦୀର ନଚିକେତା' ଉପନ୍ୟାସ ମଧ୍ୟ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବେଶ୍ ହୃଷ୍ଟପୁଷ୍ଟ ଜଣାଯାଏ ।

ପ୍ରତିଭା ରାୟଙ୍କ 'ଯାଜ୍ଞସେନୀ' ଏକ ସଫଳ ମନସ୍ତାତ୍ତ୍ୱିକ ଉପନ୍ୟାସ । ଏହାର ମନସ୍ତାତ୍ତ୍ୱିକ ସ୍ୱରୂପ ଯୋଗୁ ଏହା ସର୍ବଭାରତୀୟ ସ୍ୱୀକୃତି ହାସଲ କରିଛି । ଗୋଟିଏ ନାରୀମନର ମାନସିକ ସମସ୍ୟାକୁ ଅତି ଭାବପ୍ରବଣ ଭଙ୍ଗୀରେ ଶ୍ରୀମତୀ ରାୟ ଉନ୍ମୋଚନ କରିଛନ୍ତି । ନାରୀ ଚାହେଁ ପୁରୁଷ । ବିଭିନ୍ନ ଭାବର, ଭଙ୍ଗୀର, ଆଦର୍ଶର ପୁରୁଷ । ଗୋଟିଏ ପୁରୁଷ କୋଳରେ ବସି ଅନ୍ୟ ପୁରୁଷର ସ୍ମୃତିରେ ସେ ଗାଧୋଇଥାଏ ! ନାରୀର ଦେହକୁ ଜୟ କରାଯାଇ ପାରେ; କିନ୍ତୁ ତା'ର ମାନସିକ ସ୍ତରକୁ ଜୟ କରିବା ପାଇଁ କୌଣସି ପୁରୁଷ ସମର୍ଥ ହୁଅନ୍ତି ନାହିଁ । ସେ ନାରୀ, ସେ ନିଆଁ, ସେ ଅତୃପ୍ତ, ସର୍ବଗ୍ରାସୀ, କେତେବେଳେ ଅର୍ଜୁନ ପାଖରେ ବସି କର୍ଣ୍ଣର ବୀରତ୍ୱରେ ଭାସିଯାଏ ତ ଭୀମର ପରିପୁଷ୍ଟ ଶରୀରରେ ହାତ ବୁଲାଉ ବୁଲାଉ ସହଦେବର ସୁନ୍ଦରପଣରେ ବଶୀଭୂତ ହୋଇଯାଏ । ସବୁସତ୍ତ୍ୱେ ତା'ର ମନକୁ ପରାସ୍ତ କରି ଦୂରରୁ ଶୁଭୁଥିବା ଗୀତଟି ପରି ବଂଶୀ ଶୁଭେ । ସେ କୃଷ୍ଣା କୃଷ୍ଣର । ନାରୀ କାହାର ? ତା'ର କିଏ ? ସେ କ'ଣ ତା' ମନମୁତାବକ ସିନ୍ଦୂର ପିନ୍ଧିଥାଏ । ସ୍ୱାମୀ କାହାରକୁ

ସିନ୍ଦୂର ହୋଇ ଶୋଭାପାଏ, ପ୍ରେମିକ ଗୃହ ଭିତରେ ରକ୍ତ ହୋଇ ଝରୁଥାଏ । ଏକ ବିଚିତ୍ର ଗୃହଚକ୍ରର କାଳ୍ପନିକ ପୃଥିବୀ ଭିତରେ ନାରୀ ଯୁଗଳବନ୍ଦୀ । ପ୍ରତିଭା ରାୟଙ୍କ 'ଯାଜ୍ଞସେନୀ' ଉପନ୍ୟାସରେ ନାରୀ ମନସ୍ତତ୍ତ୍ୱକୁ ଅତି ସୁନ୍ଦର ଭାବରେ କଳାତ୍ମକ ରୂପ ପ୍ରଦାନ କରିଛନ୍ତି । ନାରୀର ମନକଥା କହିବାରେ ଏହା ଏକ ବିରଳ କୃତିତ୍ୱ ।

ପ୍ରତିଭା ରାୟଙ୍କ 'ଶିଳାପଦ୍ମ', 'ନିଷିଦ୍ଧ ପୃଥିବୀ', 'ଅରଣ୍ୟ' ଆଦି ଉପନ୍ୟାସ ମାନଙ୍କରେ ନାରୀ ଓ ପୁରୁଷର ମନସ୍ତତ୍ତ୍ୱକୁ ଗ୍ରହଣ କରାଯାଇଛି । ଶ୍ରୀମତୀ ରାୟଙ୍କ ପାଇଁ ଏଠିକି କହିହେବ ଯୌନଚେତନାର ଏକ ବଳିଷ୍ଠ ବ୍ୟାଖ୍ୟାକାର ଭାବେ ଶ୍ରୀମତୀ ରାୟ ନିଜକୁ ସ୍ୱାଧୀନତ୍ୱର ସମସ୍ୟରେ ପ୍ରତିଷ୍ଠା କରିଛନ୍ତି । ଯୌନ ଆଗ୍ରହରୁ ବଞ୍ଚିତ ହୋଇ ନାରୀ ଓ ପୁରୁଷ କେଉଁଠି ଅସହାୟତାକୁ ଏକ ସହରୀ ସଭ୍ୟତା— କ୍ଷମତା ଭିତରେ ଉପନ୍ୟାସିକା ପ୍ରକାଶ କରିଛନ୍ତି ।

ସାମ୍ପ୍ରତିକ ସମୟରେ ଉପନ୍ୟାସ ରଚନା କରୁଥିବା ଅନେକ ଉପନ୍ୟାସିକ ମାନଙ୍କ ସୃଷ୍ଟିରେ ମନସ୍ତତ୍ତ୍ୱ ଏକ ବଳିଷ୍ଠ ଚେତନା ଭାବରେ ଆତ୍ମପ୍ରକାଶ କରିଛି । 'ପରଜା' ଉପନ୍ୟାସରେ ନାରୀର ମନସ୍ତତ୍ତ୍ୱ ଦେଖାକୁ ଯାଇ ଗୋପିନାଥ କହିଥିଲେ 'ନାରୀର ମନ କେବେ ଖାଲି ରହେନା' । ଏହି ଅବବୋଧ ଅନେକ ଉପନ୍ୟାସିକମାନଙ୍କ କଳା କଳ୍ପନାରେ ପ୍ରକାଶ ପାଇଛି । ଦେବରାଜ ଲେଙ୍କାଙ୍କ 'ଧୂସର ପୃଥିବୀର ଡାକ' କେଳାକେଳୁଣୀର ଜୀବନବୋଧକୁ ନେଇ ବାସ୍ତବ ଯୌନ ଅନୁରାଗ ପ୍ରକାଶ କରିଛି । ଉପନ୍ୟାସିକ ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସକୁ ପର୍ଯ୍ୟାଲୋଚନା କଲେ ନାରୀ ଓ ପୁରୁଷ ମନସ୍ତତ୍ତ୍ୱର ବର୍ଣ୍ଣନା ମିଳିଥାଏ । ଉପନ୍ୟାସିକଙ୍କ 'ଧୂଳିଘର', 'ନାୟିକାର ନାମ ଶ୍ରାବଣୀ', 'ନଷ୍ଟ ଚରିତ୍ର', 'ପ୍ରେମିକା', 'ଓଦା ମାଟିର ସ୍ୱର୍ଗ' 'ପାପପୁଣ୍ୟ', 'ସତୀ ଅସତୀ', 'ଆଗ୍ନେୟଗିରିରେ ବଣଭୋଜି', 'ଅନ୍ଧକାରର ସିଡ଼ି', 'ବଉଳ ଫୁଲର ବାସ୍ନା', 'ଦୀପ ତଳର ଦୃଶ୍ୟ' ଆଦି ସୃଷ୍ଟିମାନଙ୍କରେ ବଳିଷ୍ଠ ମନସ୍ତତ୍ତ୍ୱର ବର୍ଣ୍ଣନା ଲକ୍ଷ୍ୟ କରାଯାଇ ପାରିବ । ସଂପ୍ରତି ପ୍ରକାଶ ପାଇଥିବା ଅକ୍ଷୟ କୁମାର ମହାନ୍ତିଙ୍କ 'ଗାୟକ' ଉପନ୍ୟାସଂ ଜଣେ ଗାୟକ ଜୀବନର ସଫଳ ମନ-ସ୍ତାତ୍ତ୍ୱିକ ପରିଭାଷା ପ୍ରଦାନ କରେ । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ସଫଳ ମନସ୍ତାତ୍ତ୍ୱିକ ଉପନ୍ୟାସ ଏଯାବତ୍ ସୃଜନମୁଗ୍ଧ କରି ଆସିଛି ।

## (ଗ) ଚେତନାପ୍ରବାହୀ ଉପନ୍ୟାସ—

ଉପନ୍ୟାସରେ ଚେତନା ପ୍ରବାହ ଏକ ଆଧୁନିକତମ ଲକ୍ଷଣ । ପାଶ୍ଚାତ୍ୟ ସାହିତ୍ୟର ଗୁପ୍ତାରେ ପ୍ରଭାବିତ ହୋଇ ସାଂପ୍ରତିକ ସମୟର କେତେଜଣ ସ୍ରଷ୍ଟା ଉପନ୍ୟାସରେ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ରଖି ପ୍ରକାଶ କରିବାକୁ ଚେତନାପ୍ରବାହୀ ଉପନ୍ୟାସ

କୁହାଯାଇଥାଏ । ଏସବୁ ଉପନ୍ୟାସର ଉଦ୍ଦେଶ୍ୟ ଥାଏ । ଗୋଟିଏ ଆଦର୍ଶ ବା ସମାଜ ବ୍ୟବସ୍ଥା ବା କୌଣସି ଦୃଢ ଚିନ୍ତାଧାରାକୁ ଅନ୍ୟ ମାନଙ୍କ ଆଗରେ ଉପନ୍ୟାସ ମାଧ୍ୟମରେ ପ୍ରତିଷ୍ଠା ଦେବାପାଇଁ ସ୍ରଷ୍ଟା ଏଥିରେ ଏକ ସଫଳ କଳାତ୍ମକ ଉଦ୍ୟମ କରିଥାଏ । ବିଶ୍ୱ ବ୍ୟବସ୍ଥାରେ ପ୍ରତିଦିନ ନୂଆ ନୂଆ ଘଟଣା-ଦୁର୍ଘଟଣା ଘଟି ଚାଲିଛି । ଜର୍ମାନୀ ଏକତ୍ରୀକରଣ, ଆମେରିକାର ସ୍ୱାଧୀନତା ସଂଗ୍ରାମ, ବଲ୍‌ସେଭିକ ବିପ୍ଳବ, ଚତୁର୍ଦ୍ଦଶ ଲୁଇଙ୍କ ବିରୁଦ୍ଧରେ ଫରାସୀ ରାଷ୍ଟ୍ର ବିପ୍ଳବ ପୃଥିବୀ ପୃଷ୍ଠରୁ ଅରାଜକତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି । ପୁଣି ମଣିଷର ମନ ରାଜ୍ୟକୁ ଓ ଗତାନୁଗତିକ ଚିନ୍ତାଧାରାକୁ ବଦଳାଇ ଦେବାପାଇଁ ଇଉରୋପର ରେନେସାଁ ପରଠାରୁ ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇଛି । ଆରିଷ୍ଟଟଲ, ସକ୍ରେଟିସ୍, ପ୍ଲାଟୋ, ମାକିଆଭେଲେ, ହିଗ୍‌ଲେ, କାମ୍ୟୁ, ଆଇନ୍‌ଷ୍ଟାଇନ୍, ନିଉଟନ, ସ୍ନାର୍ଲି ସ୍ପୁତ୍‌ନିକ୍, ନିତ୍‌ସେ, ବର୍ଣ୍ଣାଡ଼ଶ, ଇଲିଅଟ୍, ମାର୍କସ, ଲେନିନ୍, ବିସମାର୍କ, ଗାନ୍ଧିଜୀ, ସୁବାସ ଚନ୍ଦ୍ର ବୋଷ, ଅରବିନ୍ଦ, ବିବେକାନନ୍ଦ, ଯୀଶୁଖ୍ରୀଷ୍ଟଙ୍କ ଦ୍ୱାରା ବିଶ୍ୱ ମାନବ ବିଭିନ୍ନ ସମୟରେ ବିଭିନ୍ନ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇଛି । ଏହିସବୁ ଚିନ୍ତାଧାରାକୁ ନେଇ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପ୍ରକାଶ କରାଗଲେ ସେଥିରେ ଚେତନା ପ୍ରବାହ ଲକ୍ଷଣ ପରିଦୃଷ୍ଟ ହୋଇଥାଏ ।

ସଚ୍ଚିଦାନନ୍ଦ ରାଉତରାୟଙ୍କର 'ଚିତ୍ରଗ୍ରୀବ' ଉପନ୍ୟାସରେ ଖଟିଖିଆ, ମଜୁରିଆ, ମୂଲିଆ ପାଇଁ ସ୍ରଷ୍ଟା ଯେଉଁ ମାନବିକ ଆକୁତି ପ୍ରକାଶ କରିଛନ୍ତି, ପରୋକ୍ଷରେ ତାହା ମାର୍କସବାଦୀ ଦର୍ଶନର ସଫଳ ପରିପ୍ରକାଶ ହୋଇ ପାରିଛି । କାହ୍ନୁଚରଣ ମଧ୍ୟ 'ଶାସ୍ତି' ଉପନ୍ୟାସର ଶେଷ ପର୍ଯ୍ୟାୟରେ 'ସନିଆ'ର ବାରଭାଇ ଆଖଡ଼ା ଓ ଗାଁ ଗ୍ରାମ ଆଦର୍ଶବାଦ ପ୍ରଚାର ପାଇଁ ପଳାଇଯିବା ମୂଳରେ ମାର୍କସ ଓ ଗାନ୍ଧିବାଦୀ ଦର୍ଶନକୁ ପ୍ରକାଶ କରିଛନ୍ତି । ମାର୍କସ କହିଥିଲେ—One should act according his capacity and one should get according his nessecity. ଏହି ଚିନ୍ତାଧାରର ପ୍ରବାହ ଅନେକ ଓଡ଼ିଆ ଉପନ୍ୟାସମାନଙ୍କରେ ଦେଖିବାକୁ ମିଳେ । 'ମାଟିର ମଣିଷ' ଉପନ୍ୟାସରେ 'ବରଜୁ' ଗାନ୍ଧିବାଦୀ ଚରିତ୍ରଟିଏ । ଗାନ୍ଧିଜୀଙ୍କ ଆଦର୍ଶ ଓ ନୀତିର ପ୍ରତୀକ ଭାବରେ କାଳିନ୍ଦୀଚରଣ ବରଜୁକୁ ସୃଷ୍ଟି କରିଛନ୍ତି ।

ସାଂପ୍ରତିକ ସମୟରେ ବିଭିନ୍ନ ବାଦ (Ism) ଓ ଚେତନା (Concept) ମଣିଷର ଜୀବନଧାରାକୁ ଆକ୍ରାନ୍ତ କରିଛି । ସ୍ଥିତିବାଦୀ ଚେତନା ବସ୍ତୁବାଦୀ ମଣିଷର ମେରୁଦଣ୍ଡ ଦୋହଲାଇ ଦେଇଛି । ଫ୍ରଏଡ଼ୀୟ ମନୋବିଜ୍ଞାନୀ ବିଶ୍ଳେଷଣ ମଣିଷର ଯୌନଦମ୍ଭ ଭାଙ୍ଗି ଦେଇଛି । ନିଃସଙ୍ଗତା, ଅସହାୟତା ସର୍ବୋପରି ଏକ ବିବର୍ତ୍ତି

ପରିଧି ଭିତରେ ମଣିଷ ଅବିରତ ମୃତ୍ୟୁକୁ ସାମ୍ନା କରୁଛି । ଭଙ୍ଗା ସିଂହାସନରେ ବସି ବିଳାପ କରୁଥିବା ଚରିତ୍ରଟିଏ ହୋଇଛି ଆଧୁନିକ ମଣିଷ । ମଣିଷର ଛିନ୍ନଭିନ୍ନ ଓ ବିବିଧ ମାନସିକ ଅନ୍ତର୍ଦ୍ୱନ୍ଦ୍ୱାଚନା ବିଭିନ୍ନ ପାଶ୍ଚାତ୍ୟ ଚେତନା ମାଧ୍ୟମରେ ଉପନ୍ୟାସରେ ପ୍ରକାଶ ପାଇଛି । ଚନ୍ଦ୍ରଶେଖର ରଥଙ୍କର 'ଅସୂର୍ଯ୍ୟ ଉପନିବେଶ' କୃଷ୍ଣପ୍ରସାଦ ମିଶ୍ରଙ୍କର 'ସିଂହକଟୀ', ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର 'ନରକିନ୍ନର' ଆଧୁନିକ ମଣିଷର କଥା କହିବାରେ ସମର୍ଥ ହୋଇଛନ୍ତି ।

ଉପନ୍ୟାସରେ ଚେତନାପ୍ରବାହ ଏକ ଆଧୁନିକତମ ଅବବୋଧ । ଓଡ଼ିଆ ଉପନ୍ୟାସରେ ଏହି ରୀତିଧାରା ସଫଳତାର ସହ ଚର୍ଚ୍ଚିତ ହୋଇଛି ।

## (ଛ) ରହସ୍ୟ ଉପନ୍ୟାସ—

ରହସ୍ୟ ଉପନ୍ୟାସ ନିଜର ସ୍ୱକୀୟତା ଯୋଗୁ ଅନ୍ୟାନ୍ୟ ଉପନ୍ୟାସଠାରୁ ଅଲଗା ଜଣା ପଡ଼ିଥାଏ । ସାଧାରଣ ଓ ସ୍ୱାଭାବିକ ଜୀବନ ଅନେକ ସମୟରେ ସୁଖପ୍ରଦ ହୋଇ ନ ଥାଏ । ଗୋଟିଏ ଗୁଳାରେ ଧାରାବାହିକ ଜୀବନଯାପନ ପ୍ରୀତିପ୍ରଦ ସାବ୍ୟସ୍ତ ହୁଏନାହିଁ । ମଣିଷ ଏମିତି ଏକ ଇଲାକାର ସନ୍ଧାନ କରୁଥାଏ, ଯେଉଁଠି ଅତିମାନବୀୟ ଲୀଳାରେ ବା କୌଣସି ଅସାଧାରଣ ବସ୍ତୁରେ ସେ ଆମୋଦିତ ହୋଇପିବ । ଏହିପରି ଏକ ମାନସିକ ଯୋଜନାକୁ ଶରୀରୂପ ଦେବାକୁ ଯାଇ ରହସ୍ୟ ଉପନ୍ୟାସମାନଙ୍କ ସୃଷ୍ଟି । ଅତିରଞ୍ଜିତ କାହାଣୀ, ଅଲୌକିକ କାହାଣୀ ସର୍ବୋପରି କଠିନ ସଂଘର୍ଷମୟ ସୁଖଦ କାହାଣୀ ବର୍ଣ୍ଣନା କରାଯାଇ ଏହାର କଳେବରକୁ ସମୃଦ୍ଧ କରାଯାଇଥାଏ । ନାୟକ ନାୟିକାକୁ ପାଇବା ପାଇଁ ପ୍ରତିକୂଳ ପରିସ୍ଥିତିରେ ସଂଘର୍ଷ କରିଥାଏ । ସର୍ତ୍ତ ଥାଏ ଯଦି ସେହି ପଦ୍ମ ପୋଖରୀ ଭିତରୁ ଗୋଟିଏ ରକ୍ତପଦ୍ମ ଆଣି ରାଜକୁମାରୀ ଗଳାରେ ଖୋସି ପାରିବ ତାହାଲେ କୁମାରୀ ସହ ତା'ର ବିବାହ ସମ୍ପନ୍ନ ହେବ । ରାଜପୁଅ ପଦ୍ମ ଆଣିବାପାଇଁ ଘୋଡ଼ା ଝିଁପଟାଇ ବନସ୍ତରେ ବୁଲେ । ବାଘ-ରାକ୍ଷସମାନଙ୍କୁ ବଧ କରେ । କେତେବେଳେ କାପାଳିକ ବା ଅଶରୀରୀ ପ୍ରେତମାନଙ୍କ ସହ ତାକୁ ସଂଗ୍ରାମ କରିବାକୁ ପଡ଼ିଥାଏ । ସେ ପଦ୍ମ ପୋଖରୀ ପାଖରେ ପହଞ୍ଚେ, ଗୋଟିଏ ପଦ୍ମ ଅସୁରୁଣୀ ପାଲଟିଯାଏ । ଅସୁରୁଣୀ ସହ ରାଜାପୁଅ ଯୁଦ୍ଧ କରେ, ରାଜା ପୁଅକୁ ଅସୁରୁଣୀ କାବୁ କରିନିଏ । ରାଜାପୁଅର ଜୀବନ ପ୍ରତି ବିପଦ ଦେଖାଦିଏ । ସାତ ତାଳ ପାଣି ତା' ଭିତରେ ସୁନା ଫରୁଆ, ତା' ଭିତରେ ସାଇତା ହୋଇଛି ବୁଢ଼ୀ ଅସୁରୁଣୀର ଜୀବନ ନାଟିକା । ରାଜାପୁଅ ଶେଷରେ ସେହି ଜୀବନନାଟିକା ନେଇ ଆସି ଅସୁରୁଣୀକୁ ବଧ କରେ ଓ ରାଜକୁମାରୀ ପ୍ରାପ୍ତ ହୁଏ । କଥା ଭିତରେ ରହସ୍ୟ ରୋମାଞ୍ଚ ଭର୍ତ୍ତି କରି ଉପନ୍ୟାସିକ ଅତି ମନୋଜ୍ଞ ଭାବରେ ଏହାର କାହାଣୀକୁ କ୍ଲାଇମାକ୍ସରେ ପହଞ୍ଚାଇ ଦିଅନ୍ତି ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ରହସ୍ୟ ରୋମାଞ୍ଚ ଉପନ୍ୟାସ ସଂଖ୍ୟାତ୍ମକ ଦୃଷ୍ଟିରୁ ବହୁତ କମ୍ । ଯଦିଓ ଅନେକ ଉପନ୍ୟାସରେ ହତ୍ୟା, ଲୁଣ୍ଠନ, ପୋଲିସ, ଗୁଇନ୍ଦା ବିଭାଗ, ଯୁଦ୍ଧ ଓ ସଂଘର୍ଷ ବର୍ଣ୍ଣନା କରାଯାଇଛି, ତଥାପି ରହସ୍ୟ ଉପନ୍ୟାସର ଆବେଗକୁ ଏହା ଧରି ରଖି ପାରିନାହିଁ । ଆମ ଉପନ୍ୟାସରେ କେତେକ ପକେଟ୍ ବୁକ୍ ଉପନ୍ୟାସ ସିରିଜରେ ଏ ସମ୍ପର୍କୀୟ ଉପନ୍ୟାସ ଦେଖା ଯାଇଥାଏ । ଗୋଟିଏ ଗୋଟିଏ ରହସ୍ୟଧର୍ମୀ କାହାଣୀକୁ ଏଥିରେ ଆବେଗଦୀପ୍ତ ଭାବରେ ପ୍ରକାଶ କରାଯାଇଥାଏ । ଭଗମଣ୍ଡଳ ଶିପାଠୀଙ୍କ 'ଅଦୃଶ୍ୟ ମାନବ' କଣ୍ଟୁରି ଚରଣ ଦାସଙ୍କ 'ନହିତ ନାୟିକା', ଦ୍ୱାରକା ନାଥଙ୍କ 'ରହ୍ମାନ୍ ସିରଜ୍' ଏବଂ ଯୋଗେନ୍ଦ୍ର କୁମାର ମହାନ୍ତିଙ୍କ 'ମୀରା ସିରିଜ' ଉପନ୍ୟାସମାନଙ୍କରେ ଏହି ରହସ୍ୟ ରୋମାଞ୍ଚର ସ୍ୱର ସୁରକ୍ଷିତ ଅଛି ।

## (ଜ) ଅଞ୍ଚଳ ଓ ଭାଷାଭିତ୍ତିକ ଉପନ୍ୟାସ—

ଏକ ଭାଷାଭାଷୀ ଅଞ୍ଚଳ ମଧ୍ୟରେ ବାସ କରୁଥିବା ମଣିଷମାନଙ୍କର ସୁଖ ସମସ୍ୟାକୁ ନେଇ ଓଡ଼ିଆ ଭାଷାରେ ଉପନ୍ୟାସ ରଚନା କରାଯାଇଛି । ଗିରିଜନ ଓ ହରିଜନ ସମସ୍ୟା ଓଡ଼ିଶାର ଦୁଇଟି ମୁଖ୍ୟ ସମସ୍ୟା । ଓଡ଼ିଶା ଜନସଂଖ୍ୟାର ଏକ ବିପୁଳ ଭାଗ ଆଜି ମଧ୍ୟ ପାହାଡ଼ ପ୍ରାନ୍ତରେ କନ୍ଦରେ ବଣରେ ମହୁଲ ଫୁଲ ସାଉଁଟି, କେନ୍ଦୁପତ୍ର ତୋଳି, ଆମ୍ବ ଟାକୁଆକୁ ଗୁଣ୍ଡ କରି ଖାଇ ଜୀବିକା ନିର୍ବାହ କରନ୍ତି । ଆଦିବାସୀ ସଂପ୍ରଦାୟ ଓଡ଼ିଶାରେ ନିଜର ସଂସ୍କୃତି ଓ ଜୀବନଧାରଣରେ ଅନ୍ୟମାନଙ୍କଠାରୁ ଅଲଗା ବୋଲି ବାରି ହୋଇ ପଡ଼ନ୍ତି । ଏହି ବଣର ମଣିଷମାନେ ସହରୀ ମଣିଷମାନଙ୍କର ମାୟା ନ ଜାଣି ଅତି ସାଧାରଣ ଜୀବନଯାପନ କରନ୍ତି । ସହରୀ ବାବୁମାନେ, ଜମାଦାରମାନେ ଏମାନଙ୍କର ସରଳ ପଣର ସୁଯୋଗ ନେଇ ଏମାନଙ୍କୁ ହଇରାଣ ହରକତ କରି ଥାଆନ୍ତି । କେତେକ ମୁଷ୍ଟିମେୟ ସ୍ରଷ୍ଟା ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଏମାନଙ୍କର ଚିତ୍ର ପ୍ରଦାନ କରି ସମୃଦ୍ଧ କରିଛନ୍ତି ।

କୌଣସି ଜନ ଜାତିର ଚିତ୍ର ପ୍ରଦାନ କରିବାରେ ଗୋପିନାଥ ମହାନ୍ତି ଜଣେ ସଫଳ ସ୍ରଷ୍ଟା । ଗୋପାଳବଲ୍ଲଭ ଦାସ ପ୍ରଥମ କରି 'ଭୀମା ଭୂୟାଁ' ଉପନ୍ୟାସରେ 'ଭୀମା' ଚରିତ୍ରକୁ ନାୟକ ଆସନରେ ରଖି ଭୂୟାଁମାନଙ୍କର ଆତ୍ମଦାନ ଓ ସ୍ୱାର୍ଥ ତ୍ୟାଗର ସଫଳ ମନସ୍ତାତ୍ତ୍ୱିକ ଚିତ୍ର ପ୍ରଦାନ କରିଥିଲେ । ଗୋପିନାଥ ଆଦିବାସୀ ଜିଲ୍ଲାରେ ନିଜର କର୍ମମୟ ଜୀବନ କାଳରେ ଆଦିବାସୀମାନଙ୍କର ସମସ୍ୟା ପ୍ରତି ସଚେତନ ଥିଲେ । ଆଦିବାସୀ ଜୀବନବୋଧ ଓ ସେମାନଙ୍କର କଳା ସଂସ୍କୃତିକୁ ପୁଞ୍ଜି କରି ଗୋପିନାଥ କ୍ଲାସିକ୍ ଉପନ୍ୟାସମାନ ସୃଷ୍ଟି କରିଛନ୍ତି । 'ପରଜା', 'ହରିଜନ' ଆଦି ଉପନ୍ୟାସମାନଙ୍କରେ ଗୋପିନାଥଙ୍କ କଳା ଭୂରୁଷୀ ସ୍ପଷ୍ଟ ଭାବରେ

ପ୍ରକାଶିତ । ପରଜା ଉପନ୍ୟାସରେ ଶୁକଜାନ-ମାଣ୍ଡିଆ-ଟିକ୍ରା-ଜିଲବିଲ-ସାହୁକାର ଓ ପରଜା ଜୀବନର କଳା ସଂସ୍କୃତ, ଅନ୍ତବବୋଧ, ନଗର ଜୀବନପ୍ରତି ଭୟ ଓ ମୋହକୁ କଥାକାର ଅତି ଚମତ୍କାର କଳା ରୂପ ପ୍ରଦାନ କରିଛନ୍ତି । ଗଣେଶ୍ୱର ମିଶ୍ରଙ୍କ 'ସାମୁଦ୍ରିକ' ଯମେଶ୍ୱର ମିଶ୍ରଙ୍କ 'ଖମାଗ୍ୱ' ଉପନ୍ୟାସମାନଙ୍କରେ ମଧ୍ୟ ଗୋଟିଏ ଜାତି ଓ ଜୀବନଭିତ୍ତିକ କାହାଣୀ ପ୍ରଦାନ କରାଯାଇଛି ।

ଆଞ୍ଚଳିକ ଉପନ୍ୟାସମାନଙ୍କରେ ଗୋଟିଏ ଅଞ୍ଚଳ ବା ଜାତିର ମଣିଷର ସମସ୍ୟାକୁ କଥାରୂପ ପ୍ରଦାନ କରାଯାଇ ଥାଏ ।

## (ଙ) ଅନୁବାଦ ଉପନ୍ୟାସ--

ସାହିତ୍ୟର ଆବେଦନ ସର୍ବବ୍ୟାପୀ । ଏହା କୌଣସି ଭାଷା ବା ସାହିତ୍ୟ ମଧ୍ୟରେ ସୀମିତ ନୁହେଁ । ପୃଥିବୀର ବିଭିନ୍ନ ଭାଷାରେ ଅନେକ ସାର୍ଥକ ଉପନ୍ୟାସ ମାନ ସୃଷ୍ଟି ହୋଇଛି ଯାହା ସବୁ ଭାଷା ଓ ମଣିଷ ପାଇଁ ଚିରନ୍ତନ ଆବେଦନ ପ୍ରକାଶ କରିଛି । ସାମ୍ପ୍ରତିକ ସମୟରେ ସେହିସବୁ ଉପନ୍ୟାସମାନଙ୍କର ଗୁରୁତ୍ୱ ଅନୁଭବ କରାଯାଇ ତାକୁ ବିଭିନ୍ନ ଭାଷାରେ ଅନୁବାଦ କରାଯାଇଛି । ଅନୁବାଦ ମାଧ୍ୟମରେ ଗୋଟିଏ ଭାଷାର ସମୃଦ୍ଧ ସାହିତ୍ୟିକ ଚେତନା ଅନ୍ୟ ଭାଷା ଓ ସାହିତ୍ୟକୁ ପ୍ରଭାବିତ କରିପାରୁଛି । ସମ୍ପ୍ରତି ମଣିଷ ଉଦାରବାଦ ଓ ମୁକ୍ତବଜାର ମାଧ୍ୟମରେ ଏକ ସଙ୍କୁଚିତ ପୃଥିବୀ ଭିତରେ ଗତି କରୁଛି । ଯେ କୌଣସି ଭାଷାର ସାହିତ୍ୟ ଅନ୍ୟ ଭାଷା ପାଇଁ ଆବଶ୍ୟକ ହୋଇପଡ଼ିଛି । ଏହିପରି ଏକ ପ୍ରୟାସରୁ ଅନୁବାଦ ଉପନ୍ୟାସର ସୃଷ୍ଟି ହୋଇଛି । ଓଡ଼ିଆ ଭାଷାରେ ଏଯାବତ୍ ଅନେକ କେନ୍ଦ୍ର ସାହିତ୍ୟ ଓ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ବିଶିଷ୍ଟ ଭାରତୀୟ ଉପନ୍ୟାସ ଏବଂ ବିଶ୍ୱ ସାହିତ୍ୟର କେତେକ ବଳିଷ୍ଠ ଉପନ୍ୟାସର ଅନୁବାଦ ଦେଖିବାକୁ ମିଳେ ।

'ଅଗ୍ରଦୂତ' ପ୍ରକାଶନ ସଂସ୍ଥା ଓଡ଼ିଆ ଭାଷାରେ କେତେକ ପୁରସ୍କାରପ୍ରାପ୍ତ ଉପନ୍ୟାସକୁ ଅନୁବାଦ କରିବାର ଦାୟିତ୍ୱ ନେଇଛନ୍ତି । ଅବଲିନ୍, ତାରାଶଙ୍କର ବନ୍ଦୋପାଧ୍ୟାୟ, ଅନ୍ନଦା ଶଙ୍କର ରାୟ, ଅମୃତା ପ୍ରୀତମ୍, ପ୍ରେମଚନ୍ଦ, ମହାଶ୍ୱେତା ଦେବୀଙ୍କ ପରି ସାର୍ଥକ ଉପନ୍ୟାସକମାନଙ୍କ ରେଭିନ୍ୟୁ ଟିକେଟ୍, ଗଣଦେବତା, ଚନ୍ଦ୍ରପ୍ରିୟା, ଅରଣ୍ୟର ଅଧିକାର, କନ୍ୟା, ଯଯାତି, ଶଂମ୍ଭୁ ପରି କେତୋଟି ସାର୍ଥକ ଭାରତୀୟ ଉପନ୍ୟାସକୁ ଅନୁବାଦ କରାଯାଇଛି । ଏହାଛଡ଼ା ଗର୍କିଙ୍କ The mother ଉପନ୍ୟାସର ଓଡ଼ିଆ ରୂପାନ୍ତର 'ମା' 'war and peace'ର 'ଯୁଦ୍ଧ ଓ ଶାନ୍ତି' ଆଦି ଅନୁବାଦ କରାଯାଇଛି ।

ଯେ କୌଣସି ଭାଷାରେ ସାହିତ୍ୟକୁ ଅନୁବାଦ କରିବା ଏକ ସାର୍ଥକ ପରମ୍ପରା । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏ ଅଭାବ କ୍ରମଶଃ ଦୂରହେବାରେ ଲାଗିଛି, ଏକଥା ସ୍ୱୀକାର କରିବାକୁ ପଡ଼ିବ ।

## (୩) ବିଜ୍ଞାନଭିତ୍ତିକ ଉପନ୍ୟାସ—

ଆଜି ସମାଜରେ ବିଜ୍ଞାନର ବ୍ୟବହାରିକତା ଦିନକୁ ଦିନ ବଢ଼ିଯାଉଛି । ବିଜ୍ଞାନ ଆମର ଦୈନନ୍ଦିନ ଜୀବନକୁ ନିୟନ୍ତ୍ରଣ କରିବାରେ ସମର୍ଥ ହୋଇଛି । ନୂତନ ଜୀବନ ଚର୍ଯ୍ୟାର ସନ୍ଧାନ, ଗ୍ରହାନ୍ତର ଖବର ସର୍ବୋପରି ଜୀବନର ବହୁ ଜଟିଳ ସମସ୍ୟାର ସମାଧାନ ବିଜ୍ଞାନ ମାଧ୍ୟମରେ ହୋଇ ପାରୁଛି । ବିଜ୍ଞାନକୁ ଏକ କାହାଣୀ ଭାବରେ ଗ୍ରହଣ କରି ଉପନ୍ୟାସ କଳ୍ପନା କରିବା ନିଶ୍ଚୟ ପକ୍ଷରେ କଷ୍ଟସାଧ୍ୟ ବ୍ୟାପାର । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ବିଜ୍ଞାନ ଚେତନା ସମ୍ବଳିତ ଉପନ୍ୟାସର ଅଭାବ ପରିଲକ୍ଷିତ ହୁଏ ।

ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ 'କୃତ୍ରିମ ଉପଗ୍ରହ', 'ପୃଥିବୀ ବାହାରେ ମଣିଷ', 'ଚନ୍ଦ୍ରର ମୃତ୍ୟୁ' ତିନୋଟି ସାର୍ଥକ ବୈଜ୍ଞାନିକ ଉପନ୍ୟାସ । ସୁଯୋଗ୍ୟ ଉପନ୍ୟାସିକମାନେ ଏ ଦିଗରେ ଉଦ୍ୟମ କଲେ ଉପନ୍ୟାସର ଏ ବିଭାଗଟି ସମୃଦ୍ଧ ହୋଇ ପାରିବ ।

## (୬) ପତ୍ର ଉପନ୍ୟାସ—

ପତ୍ର ଉପନ୍ୟାସରେ ପତ୍ର ସଂଯୋଜନା ଓ ଚରିତ୍ରମାନଙ୍କର ସଂଳାପକୁ ଗୁରୁତ୍ୱ ଦିଆଯାଇ ଥାଏ । ପତ୍ର ପରେ ପତ୍ର ଯୋଗକରି ଉପନ୍ୟାସିକ କାହାଣୀକୁ ଆଗେଇ ନେଇଥାଏ । ପତ୍ରରୁ ଉପନ୍ୟାସର ଆରମ୍ଭ ଏବଂ ପତ୍ରରୁ ଉପସଂହାର ଆସିଥାଏ । ଓଡ଼ିଆ ଉପନ୍ୟାସରେ କେତେଜଣ ହାତଗଣତି ସ୍ରଷ୍ଟା ଏପରି ଉପନ୍ୟାସ ରଚନା କରିଛନ୍ତି ।

ଗୋଦାବରୀଶ ମହାପାତ୍ରଙ୍କ 'ପ୍ରେମପଥେ' ରାଜକିଶୋର ପଟ୍ଟନାୟକଙ୍କ 'ପଞ୍ଜୁରୀ ପକ୍ଷୀ' ବିଭୂତି ପଟ୍ଟନାୟକଙ୍କ 'ପ୍ରେମିକା' ଏପରି ଉପନ୍ୟାସର ଲକ୍ଷଣ ଦୃଷ୍ଟିରୁ ସମୃଦ୍ଧ ।

## (୦) ଚରିତ୍ର ଉପନ୍ୟାସ—

କୌଣସି ଏକ ଚରିତ୍ରକୁ ଗୁରୁତ୍ୱ ପ୍ରଦାନ କରି ଉପନ୍ୟାସ ରଚନା କରିଗଲେ ଏବଂ ଉକ୍ତ ଚରିତ୍ରର ମହତ୍ତ୍ୱ ସମଗ୍ର ଉପନ୍ୟାସରେ ପ୍ରତିଷ୍ଠା ପାଇଲେ, ତାହାକୁ ଚରିତ୍ର ଉପନ୍ୟାସ କୁହାଯାଇ ଥାଏ । ଏଥିରେ ଆତ୍ମଜୀବନୀ ବା ଜୀବନୀକୁ ମଧ୍ୟ ଉପନ୍ୟାସ

ରୂପ ଦିଆଯାଇ ପାରେ । ସତ୍ୟାଶ୍ରିତ ଘଟଣା ଚରିତ୍ର ଉପନ୍ୟାସରେ ଅଧିକ ପ୍ରକାଶିତ ହୋଇଥାଏ ।

ଓଡ଼ିଆ ଉପନ୍ୟାସରେ ଏହା ଏପର୍ଯ୍ୟନ୍ତ ଏକ ଗୌଣ ବର୍ଗ ରୂପେ ପରିଚିତ ହୋଇ ଆସୁଛି । ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଛଅକୋଡ଼ି ରାତିର ସକାଳ', କୃଷ୍ଣପ୍ରସାଦ ମିଶ୍ରଙ୍କ 'ନଜରକୁ ନାୟକ କର' ସୁରେନ୍ଦ୍ର ମହାନ୍ତିଙ୍କ 'ଶତାବ୍ଦୀର ସୂର୍ଯ୍ୟ' ମନମୋହନ ମିଶ୍ରଙ୍କ 'କସ୍ତୁରୀ ମୃଗ' ଏଧରଣର ସୃଷ୍ଟି ।

## (ଡ) ଘଟଣାପ୍ରଧାନ ଉପନ୍ୟାସ—

ଘଟଣାପ୍ରଧାନ ଉପନ୍ୟାସରେ ଘଟଣାମାନଙ୍କର ଗୁରୁତ୍ୱ ଥାଏ । ଏପରି ଉପନ୍ୟାସରେ କାହାଣୀକୁ ଗୁରୁତ୍ୱ ଦିଆଯାଇ ଥାଏ । ଗୋଟିଏ ମୁଖ୍ୟ ଘଟଣା ଛଡ଼ା ଅନେକ ଛୋଟ ଘଟଣାମାନ ଘଟିଥାଏ । ପାଠକ ଗୋଟିଏ ସମସ୍ୟା ଭିତରୁ ମୁକୁଳି କହୁବାଟ ଅଗ୍ରସର ହେବାବେଳେ ଗୌଣ ଚରିତ୍ରମାନେ ଆଉ ଏକ କାହାଣୀ, ଘଟଣା ସୃଷ୍ଟି କରିଥାଆନ୍ତି । ପାଶ୍ଚାତ୍ୟ ସାହିତ୍ୟମାନଙ୍କରେ ଏପରି ଅନେକ ଘଟଣା ପ୍ରଧାନ ଉପନ୍ୟାସ ଦେଖିବାକୁ ମିଳେ । ଅମାସ୍ ହାର୍ଡିଙ୍କର 'The wood hander' ଉପନ୍ୟାସ ଏକ ଘଟଣାପ୍ରଧାନ ଉପନ୍ୟାସ । ଓଡ଼ିଆ ଉପନ୍ୟାସର କାହାଣୀ ସାଧାରଣତଃ ଗୋଟିଏ ମୁଖ୍ୟ ଘଟଣାକୁ ନେଇ ସୃଷ୍ଟି ହୋଇଥାଏ । ଘଟଣାପ୍ରଧାନ ଉପନ୍ୟାସର ସଙ୍କେତ କେତୋଟି ଉପନ୍ୟାସରୁ ମିଳିଥାଏ । ଗୋପିନାଥଙ୍କ 'ପରଜା' ଏକ ସାର୍ଥକ ଘଟଣା ଧର୍ମୀ ଉପନ୍ୟାସ ।

## (ଢ) ଚରିତ୍ରପ୍ରଧାନ ଉପନ୍ୟାସ—

ଯେଉଁ ଉପନ୍ୟାସରେ ଅଧିକ ଚରିତ୍ରମାନଙ୍କର ବର୍ଣ୍ଣନା କରାଯାଇ ଥାଏ ଓ ଘଟଣାକୁ ଆଗେଇ ନେବାପାଇଁ ଚରିତ୍ରମାନଙ୍କର ଆବଶ୍ୟକତା ଉପଲବ୍ଧି କରାଯାଏ, ସେହିପରି ଉପନ୍ୟାସକୁ ଚରିତ୍ରପ୍ରଧାନ ଉପନ୍ୟାସ କୁହାଯାଏ । ଚରିତ୍ର ପ୍ରଧାନ ଉପନ୍ୟାସରେ ଏକ ବଳିଷ୍ଠ କାହାଣୀର ଆବଶ୍ୟକତା ପଡ଼ିଥାଏ ଏବଂ ଉପନ୍ୟାସିକ ବିଭିନ୍ନ ଧରଣର ଚରିତ୍ରମାନଙ୍କୁ ଏଥିରେ ସ୍ଥାନ ଦେଇ ଥାଆନ୍ତି । ନାୟକ ନାୟିକାଙ୍କ ସହ ସମାନ ଭାବରେ ପ୍ରତିନାୟକ ବା ପ୍ରତିନାୟିକା ଚରିତ୍ର ଅବତାରଣା କରାଯାଇଥାଏ । ଏଥିରେ ସାଧୁ ଚରିତ୍ର ଓ ମନ୍ଦ ଚରିତ୍ରମାନଙ୍କୁ ମଧ୍ୟ ଗ୍ରହଣ କରି ଯାଇଥାଏ । ଉପନ୍ୟାସର ଶେଷ ବେଳକୁ ଖଳଚରିତ୍ରମାନଙ୍କ ହୃଦୟ ପରିବର୍ତ୍ତନ ହୋଇଥାଏ ବା ଖଳ ଚରିତ୍ରମାନେ ମୃତ୍ୟୁ ବରଣ କରି ଥାଆନ୍ତି ।

ଓଡ଼ିଆ ଉପନ୍ୟାସରେ ଅନେକ ଚରିତ୍ର ପ୍ରଧାନ ଉପନ୍ୟାସ ଦେଖିବାକୁ ମିଳେ । କାହ୍ନୁ ଚରଣ ଓ ଗୋପିନାଥ ମହାନ୍ତିଙ୍କ ଉପନ୍ୟାସ ଏ ଦୃଷ୍ଟିରୁ ସମୃଦ୍ଧ ।

ଗୋପିନାଥଙ୍କ ଆଦିବାସୀ ଜୀବନ ସମ୍ବଳିତ ଓ କାହ୍ନୁଚରଣଙ୍କ ସାମାଜିକ ବାସ୍ତବଧର୍ମୀ ଉପନ୍ୟାସମାନଙ୍କରେ ଚରିତ୍ରମାନଙ୍କର ପ୍ରାବଲ୍ୟ ଦେଖିବାକୁ ମିଳେ ।

ଉପନ୍ୟାସ ସାହିତ୍ୟ ବିଭିନ୍ନ ଦୃଷ୍ଟିକୋଣରୁ ସମୃଦ୍ଧ । ଆଧୁନିକ ଜୀବନ ଜ୍ଞାନ ବିଜ୍ଞାନର ଆବିଷ୍କାର ଫଳରେ ଦ୍ରୁତ ଉଦାରବାଦ ଭିତରେ ଯେଉଁ ମାନସିକ ସଙ୍କଟ ଓ ଅସାମଞ୍ଜସ୍ୟତା ଭିତରେ ଗତି କରୁଛି, ଉପନ୍ୟାସରେ ସେହି ଜୀବନର ପ୍ରତିବିମ୍ବ ପ୍ରକାଶ ପାଉଛି । ଆଧୁନିକ ଉପନ୍ୟାସ ଆଧୁନିକ ଜୀବନ ପରି ବ୍ୟାପକ ଓ ଅନ୍ତଃଭେଦୀ । ଏହାର ପରିସରକୁ ଏକକୋଟି ପର୍ଯ୍ୟାୟ ଭିତରେ ବିଭକ୍ତ କରିବା କଷ୍ଟସାଧ୍ୟ ।

## ଓଡ଼ିଆ ଉପନ୍ୟାସ ସାହିତ୍ୟ : ଆଦ୍ୟରୁ ଅଦ୍ୟାବଧି

ଲୋକକଥା ଓ ପ୍ରାଚୀନ କିମ୍ବଦନ୍ତୀକୁ ପାଥେୟ କରି ଓଡ଼ିଆ ଉପନ୍ୟାସ ସୃଷ୍ଟି ହୋଇଛି । ଉପନ୍ୟାସ ରଚନା ହେବା ପୂର୍ବରୁ କାହାଣୀକଳା ଓ ବର୍ଣ୍ଣନା ଭଙ୍ଗୀରେ ଗଳ୍ପ ଗ୍ରଂଥନ ପ୍ରକ୍ରିୟାର ଏକ ସୁଦୃଶ୍ୟ ସମାବେଶ ଦେଖିବାକୁ ମିଳେ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ 'ରୁଦ୍ର ସୁଧାନିଧି' ଓ 'ଚତୁର ବିନୋଦ' ଉପନ୍ୟାସ କଳାକୁ କେତେକାଂଶରେ ବହନ କରିଥାଆନ୍ତି । ଚତୁରବିନୋଦରେ ବ୍ରଜନାଥ ବଡ଼ଜେନା ଗଳ୍ପକଥନ ସମ୍ପର୍କରେ ରାଜପୁତ୍ର ମୁହଁରେ କହାଇଛନ୍ତି—'ତେବେ ମୁଁ କଥାଟିଏ କହିବି ଶୁଣ । ପୂର୍ବେ ସଙ୍କର୍ଷଣ ପଣ୍ଡା ବ୍ରାହ୍ମଣ, ରାଜାଙ୍କ ସଭାରେ ଚତୁର ବିନୋଦ ନାମେ ଏକ କଥାଏ କହିଥିଲେ, ମୁଁ ତାହା ଶୁଣିଛି । ହାସବିନୋଦ, ରସବିନୋଦ, ନୀତିବିନୋଦ ଓ ପ୍ରୀତିବିନୋଦ ଭାବରେ ଚତୁର ବିନୋଦର କାହାଣୀକୁ ବର୍ଣ୍ଣନା କରାଯାଇଛି । ଏଥିରେ ଘଟଣାପ୍ରଧାନ ଓ ଚରିତ୍ରପ୍ରଧାନ ଉପନ୍ୟାସର ସମସ୍ତ କଳାଗତ ପ୍ରକ୍ରିୟା ଲକ୍ଷ୍ୟ କରାଯାଇପାରେ । ଚତୁର ବିନୋଦ ସନ୍ନିହିତ ଗଳ୍ପମାନଙ୍କରେ ଦ୍ୱନ୍ଦ୍ୱ, ରହସ୍ୟ, ସମସ୍ୟା, ସମାଧାନ, ପ୍ରେମ ଓ ନୀତି ଉପଦେଶର ସମାବେଶ ଦେଖିବାକୁ ମିଳେ । ବ୍ରଜନାଥ ବଡ଼ଜେନା ଅତି ମନୋଜ୍ଞ ଭାବରେ କାହାଣୀମାନଙ୍କର କଳ୍ପନା କରିଛନ୍ତି ଓ ଗୋଟିଏ କାହାଣୀରୁ ଆଉ ଗୋଟିଏ କାହାଣୀ ସୃଷ୍ଟି ହୋଇଛି । ଓଡ଼ିଆ ଗଦ୍ୟ ସାହିତ୍ୟର ଆଦ୍ୟ ପର୍ବରେ ଏପରି ଏକ ସଫଳ ସୃଷ୍ଟି ଅନ୍ୟ କୌଣସି ଭାଷାର ସମସାମୟିକ ଅବସ୍ଥା ସହ ତୁଳନା କରାଯାଇପାରେ । 'ଚଞ୍ଚଳାକ୍ଷୀ-ମୋହିନାଙ୍କ' ପ୍ରସଙ୍ଗରୁ ଶୃଙ୍ଗାରବିନୋଦ ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ମାର୍ଜାରମୁଖା-କଳାପମୁଖୀ ପ୍ରସଙ୍ଗ, ତରୁଣକାନ୍ତ-ହେମାଙ୍ଗୀ ପ୍ରସଙ୍ଗ, ପୁଣ୍ୟରାଜ-କନକରେଖା ପ୍ରସଙ୍ଗ ମାଧ୍ୟମରେ ଗଳ୍ପ ବର୍ଣ୍ଣନା କରାଯାଇଛି । 'ଚତୁର ବିନୋଦ' ଅନେକ ଗଳ୍ପ ସମ୍ବଳିତ ଉପନ୍ୟାସ, ପରବର୍ତ୍ତୀ ସମୟରେ ଓଡ଼ିଆ ଉପନ୍ୟାସ ଚତୁର ବିନୋଦ ଦ୍ୱାରା ସମୃଦ୍ଧ ହୋଇଛି ।

ଭାରତୀୟ ସାହିତ୍ୟରେ ଆଧୁନିକ ସାହିତ୍ୟ ସୃଷ୍ଟି ଇଂରେଜମାନଙ୍କ ଭାରତ ଆଗମନ ପରଠୁ ଆରମ୍ଭ ହୋଇଥିଲା । ଖ୍ରୀଷ୍ଟିୟାନ ପାଦ୍ରୀମାନେ ମିଶନାରୀ ମାଧ୍ୟମରେ ପ୍ରଥମେ କଲିକତାରେ ଖ୍ରୀଷ୍ଟଧର୍ମ ପ୍ରଚାରର ଉଦ୍ୟମ ଆରମ୍ଭ କରିଥିଲେ । ଫଳତଃ ସେମାନେ ହିନ୍ଦୁ ସମାଜରେ ଥିବା ବିଭିନ୍ନ କୁସଂସ୍କାରକୁ ଦୂର କରିବା ପ୍ରଥମେ ଉଦ୍ୟମ ଆରମ୍ଭ କରିଥିଲେ । ଏହି ଉଦ୍ୟମ ସ୍ୱରୂପ ସେମାନେ ଭାରତୀୟ ଭାଷା ମାନଙ୍କରେ ଇଂରାଜୀ ଭାଷାରେ ନଭେଲ ଗୁଡିକୁ ଅନୁବାଦ କରି ପ୍ରକାଶ କରୁଥିଲେ । ୧୮୫୭ ମସିହାରେ ଖ୍ରୀଷ୍ଟିୟାନ ପାଦ୍ରୀ ରେଭେରେଣ୍ଡ୍ ଜେ ଷ୍ଟୁବନ୍‌ସ ବଙ୍ଗଳା କାହାଣୀ 'ଫୁଲମଣି ଓ କରୁଣାର ବିବରଣ'ର ଉତ୍କଳୀୟ ଅନୁବାଦ ପ୍ରକାଶ କଲେ । ଏହି ଗ୍ରନ୍ଥଟି ୧୮୫୨ରେ ଜନୈକା ଇଂରେଜ ମହିଳା ଶ୍ରୀମତୀ ହାନାକ୍ୟାଥେରିନ୍ ମ୍ୟାଲେନ୍‌ସ (୧୮୨୨-୬୧) ରଚନା କରିଥିଲେ । ଖ୍ରୀଷ୍ଟିୟାନ ପ୍ରଚାର ସାହିତ୍ୟ ରୂପେ ଏହାର ସୃଷ୍ଟି ହୋଇଥିଲା ଏବଂ ଓଡ଼ିଆ ସମେତ ବାରଟି ଭାରତୀୟ ଭାଷାରେ ଅନୁବାଦ ହୋଇଥିଲା । ଏଥିରେ ବଙ୍ଗଳା ପଲ୍ଲୀଅଞ୍ଚଳର ବାସ୍ତବ କାହାଣୀ ଚିତ୍ରିତ ହୋଇଛି । ଅଧିକାଂଶ ପାତ୍ର-ପାତ୍ରୀ ସମାଜର ନିମ୍ନସ୍ତରର ବ୍ୟକ୍ତି ଏବଂ ଖ୍ରୀଷ୍ଟ ଧର୍ମାବଲମ୍ବୀ । ଫୁଲମଣି ଆଦର୍ଶ ଖ୍ରୀଷ୍ଟିୟାନ ରମଣୀ; କରୁଣା ଖ୍ରୀଷ୍ଟିୟାନ ହୋଇ ମଧ୍ୟ ଧର୍ମନୀତି ଅନୁଯାୟୀ ଜୀବନ ଯାପନ କରେନାହିଁ । ଏହି ଦୁଇଟି ଚରିତ୍ରର ବୈସାଦୃଶ୍ୟ ମଧ୍ୟରେ ଲେଖିକା ଖ୍ରୀଷ୍ଟିୟାନ ସମାଜ, ବିଶେଷତଃ ମହିଳାମାନଙ୍କୁ ନୀତି ଉପଦେଶ ପ୍ରଦାନ କରିଛନ୍ତି । * ଓଡ଼ିଶାରେ ଏହି ଉପନ୍ୟାସର ଅନୁବାଦ କେତେକାଂଶରେ ପ୍ରଭାବ ପକାଇ ପାରିଥିଲା । ସେ ସମୟର ସ୍ରଷ୍ଟାମାନଙ୍କୁ ଏପରି ଏକ ବିଦେଶାଗତ ସୃଷ୍ଟି ଉଦ୍‌ବୁଦ୍ଧ କରିଥିବ ନିଶ୍ଚୟ । ଫୁଲମଣି ଓ କରୁଣାର ବିବରଣ ସାମାଜିକ ଆବେଦନ ଓ ଉପନ୍ୟାସିକ ଦାୟିତ୍ୱକୁ ଉପଯୁକ୍ତ ଭାବରେ ସମ୍ପାଦନ କରିଛି । ଏଥିରେ ନିହିତ ଥିବା ଉପନ୍ୟାସ କଳା ଓ କାହାଣୀ ଏହାର ଗୌରବ ବୃଦ୍ଧି କରିଛି । ଓଡ଼ିଶାବାସୀ ପ୍ରଥମ ଉପନ୍ୟାସ ସ୍ୱାଦ ଏହି ଉପନ୍ୟାସରୁ ପାଇ ପାରିଛନ୍ତି । ଓଡ଼ିଆ ଭାଷାର ଏହା ପ୍ରଥମ ଉପନ୍ୟାସ ନ ହେଲେ ମଧ୍ୟ, ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏହାର ସ୍ଥାନ ସ୍ୱତନ୍ତ୍ର ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଆରମ୍ଭ ଅଧ୍ୟାୟରେ ଉତ୍କଳ ଦର୍ପଣ ପତ୍ରିକାରେ ପ୍ରକାଶିତ ରାଧାନାଥ ରାୟଙ୍କ ଇଟାଲୀୟ ଯୁବା ଓ ମଧୁସୂଦନ ରାଓଙ୍କ 'ପ୍ରଣୟର ଅଦ୍ଭୁତ ପରିଣାମ'କୁ ଗୁରୁତ୍ୱର ସହ ଗ୍ରହଣ କରାଯିବ । ରାଧାନାଥଙ୍କ 'ଇଟାଲୀୟ ଯୁବା'ରେ ଉପନ୍ୟାସିକ କଳା ଗୌରବ ଅଧିକ ଭାବରେ ପରିଲକ୍ଷିତ ହୋଇଥାଏ । 'ଏହି କାହାଣୀଟିରେ ଆଧୁନିକ ଉପନ୍ୟାସର ଏକ ବଳିଷ୍ଠ ସୂତ୍ର ପ୍ରେମର

* ଓଡ଼ିଆ ଉପନ୍ୟାସ—ଶ୍ରୀ କୃଷ୍ଣଚରଣ ବେହେରା-ପୃ-୮୫ ।

ବିଭୂଷିତ ଅଙ୍କିତ । କାହାଣୀର ନାୟିକା ଲକ୍ଷ୍ମୀ ଏକ ଦିଗରେ ତାହାର ପ୍ରଣୟୀ ଅନ୍ୟ ଦିଗରେ ତାହାର ସ୍ୱାମୀ । ସ୍ୱାମୀଦ୍ୱାରା ଲକ୍ଷ୍ମୀ ନିର୍ଯ୍ୟାତିତା । ଏଇ ନିର୍ଯ୍ୟାତନାର ପ୍ରତିଶୋଧ ପାଇଁ ତା'ର ପ୍ରେମିକ ନରହତ୍ୟା କରିଛୁ । ବହିରଙ୍ଗ ଓ ଘଟଣାବଳୀର ତଳ କରୁକରୁ ରାଧାନାଥ ଚରିତ୍ରର ଅନ୍ତଃଜଗତରେ ପ୍ରବେଶ କରିବାର ସୁଯୋଗ ଲାଭ କରିଛନ୍ତି । ହତ୍ୟାକାରୀର ମାନସିକ ପୀଡ଼ା ବର୍ଣ୍ଣନାରେ ରାଧାନାଥ ମୁଖର 'ଆତ୍ମଗ୍ଲାନି କେତେ ଯନ୍ତ୍ରଣାଦାୟକ, ନିର୍ବେଦ କେତେ ଗଭୀର, ନିରାଶା କେତେ ଦାରୁଣ, ତାହା ଲେଖନୀରେ ବ୍ୟକ୍ତ କରିବା ଅସମ୍ଭବ । ଉନ୍ମାଦାବସ୍ଥା ନାହିଁ, ଥିଲେ ଏଡ଼େ ଯନ୍ତ୍ରଣା ରହନ୍ତା ନାହିଁ ।' ମହାରଜୁ ଅରେ ହଜଗଲେ ଆଉ ତାହାର ପୁନଃପ୍ରାପ୍ତିର ସମ୍ଭାବନା ନ ଥାଏ' ଗତାନୁ ଶୋଚନା ମଧ୍ୟଦେଇ ରାଧାନାଥ ଆଧୁନିକ ଉପନ୍ୟାସ ରଚନା ପାଇଁ ମଣିଷର ଅନ୍ତଃ ଜୀବନର ଭିତର ଧାରା ଫିଟାଇଛନ୍ତି । *
'ଇଟାଲୀୟ ଯୁବା' ବଳିଷ୍ଠ କାହାଣୀ, ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଏବଂ ବର୍ଣ୍ଣନାଶୈଳୀ ଦୃଷ୍ଟିରୁ ଉପନ୍ୟାସର ପରିଚୟ ଦାବିକରେ । ରାଧାନାଥ ଓଡ଼ିଆ ଭାଷାରେ ସାଧାରଣ ପ୍ରେମ କାହାଣୀ ମାଧ୍ୟମରେ ସୁନ୍ଦର ଜୀବନ ଦର୍ଶନ ପ୍ରଚାର କରିଛନ୍ତି । ଆଦିପର୍ବର ଉପନ୍ୟାସ ଆଲୋଚନାରେ 'ଇଟାଲୀୟ ଯୁବା' ସ୍ୱତନ୍ତ୍ର ସମ୍ମାନ ପ୍ରାପ୍ତ ।

ରାମଶଙ୍କର ରାୟ ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସ୍ୱତନ୍ତ୍ର ପରିଚୟ ଦେବାପାଇଁ ପ୍ରଥମେ ବିଧିବଦ୍ଧ ଭାବରେ ପ୍ରୟାସ କରିଛନ୍ତି । ୧୮୭୮ ମସିହାରେ ଉତ୍କଳ ମଧୁପ ପତ୍ରିକାରେ ତାଙ୍କର ଅସମ୍ପୂର୍ଣ୍ଣ ଉପନ୍ୟାସ 'ସୌଦାମିନୀ' ଏବଂ ପରେ ୧୮୯୩ ମସିହାରେ ଇନ୍ଦ୍ରଧନୁ ପତ୍ରିକାରେ 'ଉନ୍ମାଦିନୀ' ନାମକ ଅନ୍ୟ ଏକ ଉପନ୍ୟାସ ପ୍ରକାଶ ପାଇଥିଲା । ପରବର୍ତ୍ତୀ ସମୟରେ ୧୮୯୧ ମସିହାରୁ ୧୮୯୫ ମସିହା ମଧ୍ୟରେ ଉତ୍କଳପ୍ରଭା ପତ୍ରିକାରେ ରାମଶଙ୍କରଙ୍କର ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ 'ବିବାସିନୀ' ଆତ୍ମପ୍ରକାଶ କରିଥିଲା । ଉମେଶଚନ୍ଦ୍ର ସରକାରଙ୍କ 'ପଦ୍ମମାଳୀ' ରଚନା ପୂର୍ବରୁ ରାମଶଙ୍କର ଦୁଇଟି ଉପନ୍ୟାସ ରଚନା କରିଥିଲେ ମଧ୍ୟ ତାହାକୁ ପୂର୍ଣ୍ଣକରି ନ ପାରିଥିବା ହେତୁ ଓଡ଼ିଆ ସାହିତ୍ୟରେ ପ୍ରଥମ ଉପନ୍ୟାସିକର ମର୍ଯ୍ୟାଦାରୁ ବଞ୍ଚିତ ହୁଅନ୍ତି । ଫକୀରମୋହନ 'ଉତ୍କଳ ଭ୍ରମଣଂ' ଗ୍ରନ୍ଥରେ ରାମଶଙ୍କରଙ୍କୁ ପ୍ରଥମ ଉପନ୍ୟାସିକର ମର୍ଯ୍ୟାଦା ପ୍ରଦାନ କରିଛନ୍ତି—

'ହେ ରାମ ଶଙ୍କର, ମୋର ମାନୁଛି ମନକୁ
ହୋଇପାର ଭାଇ ତୁମ୍ଭେ ଗଦ୍ୟର ପଛକୁ
ପ୍ରଥମ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମ୍ଭଠାରେ ହେଲା ସିନା ଦେଖା ।'

---

* ଆଧୁନିକ ଓଡ଼ିଆ କଥା ସାହିତ୍ୟ (ଉପନ୍ୟାସ) ଡ଼ଃ ନରେନ୍ଦ୍ର ନାଥ ମିଶ୍ର ଓଡ଼ିଶା ସାହିତ୍ୟ ଏକାଡେମୀ—ପୃ-୨୪ ।

ସୌଦାମିନୀ ତରଶିଗୋଟି ଅଧ୍ୟାୟ ପର୍ଯ୍ୟନ୍ତ ରଚନା କରାଯାଇଥିଲା । ଅର୍ଥ ଅଭାବରୁ ଏ ଉପନ୍ୟାସ ସମ୍ପୂର୍ଣ୍ଣ ଭାବରେ ଆଲୋକ ଦେଖି ପାରିଲା ନାହିଁ ବୋଲି ନିଜେ ରାମଶଙ୍କର ସ୍ୱୀକାର କରିଛନ୍ତି । ଏହା ଏକ ଐତିହାସିକ ଉପନ୍ୟାସ, ଆଲାଉଦ୍ଦିନ ଖିଲିଜଙ୍କର ଚିତୋର, ଉତ୍କଳିନୀ ଆକ୍ରମଣ, ସୌଦାମିନୀ ଓ ଜୟସିଂହର ପ୍ରେମପ୍ରଣୟ କାହାଣୀ, ସୌଦାମିନୀକୁ ଦିଲ୍ଲୀ ଦରବାରକୁ ବଳାତ୍କାର କରି ଆଣିବା ଆଦି ଘଟଣା ଉପନ୍ୟାସରେ ବର୍ଣ୍ଣିତ ହୋଇଛି । ସୌଦାମିନୀ ଅପୂର୍ଣ୍ଣ ହେଲେ ମଧ୍ୟ ଇତିହାସର କାହାଣୀକୁ ପୁଞ୍ଜି କରି ଉପନ୍ୟାସ କଳା ଦୃଷ୍ଟିରୁ ସମୃଦ୍ଧ ହୋଇ ପାରିଛି ।

ରାମଶଙ୍କରଙ୍କର 'ବିବାସିନୀ' ଏକ ସାର୍ଥକ ଐତିହାସିକ ଉପନ୍ୟାସ । ୧୭୭୦ ମସିହାର ଓଡ଼ିଶାରେ ମରଠା ଶାସନ ତଜ୍ଜନିତ ଦୁର୍ଭିକ୍ଷ ଏବଂ ଯାହାର ପୃଷ୍ଠଭୂମିରେ ଭୁଜଙ୍ଗ ଖଣ୍ଡରାଜାଙ୍କର ଡକାୟତ ଦଳ ଗଠନ, ଡକାୟତ ଦଳର ନେତା ରଘୁନାଥ ପଟ୍ଟନାୟକଙ୍କର 'କଳାବତୀ' ଓ 'ରସକଳା' ନାମକ ଦୁଇଟି ସ୍ତ୍ରୀ ଅପହରଣ ଏବଂ ଶେଷରେ ରସକଳା ଓ ରଘୁନାଥ ପଟ୍ଟନାୟକର ବିବାହ ଓ କଳାବତୀର ମହାନଦୀରେ ଆତ୍ମବିସର୍ଜନକୁ ରାମଶଙ୍କର ଏକ କାହାଣୀ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଇତିହାସର ପୃଷ୍ଠପଟ୍ଟରେ ସାମାଜିକତା ଆରୋପ କରି 'ବିବାସିନୀ' ଏକ ସାର୍ଥକ ଉପନ୍ୟାସ ଭାବରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଆଦ୍ୟ ପର୍ଯ୍ୟାୟରେ ସୃଷ୍ଟି ହୋଇଛି ।

୧୮୮୫ ମସିହା ଜାନୁଆରି ମାସରେ କଟକ ପ୍ରିଣ୍ଟିଂ-କମ୍ପାନୀ ମୁଦ୍ରିତ ପତ୍ରିକା ପ୍ରଦୀପରେ 'ମଠର ସମ୍ବାଦ' ଓ 'ଅନାଥିନୀ' ନାମରେ ଦୁଇଟି ଉପନ୍ୟାସ 'ଶ୍ରୀଛଦ୍ମ' ନାମରେ ପ୍ରକାଶିତ ହୋଇଥିଲା । ଇଂରାଜୀ ଶିକ୍ଷାର ଭଲ ଓ ଭେଲ ସହ ବାବୁଭାୟା ମାନଙ୍କର ଜୀବନଚିତ୍ରକୁ ଏଥିରେ ସମ୍ୟକ ଉପସ୍ଥାପନ କରାଯାଇ ଥିଲା । ଏ ଦୁଇଟି ଉପନ୍ୟାସ ଆଦି ପର୍ବରେ ସୃଷ୍ଟି ହୋଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ଉପନ୍ୟାସିକର ନାମ ଜାଣିବା ସମ୍ଭବ ହୋଇନାହିଁ ।

ପ୍ରଥମ ଓଡ଼ିଆ ଉପନ୍ୟାସ ପଦ୍ମମାଳୀ (୧୮୮୭) ଉମେଶ ଚନ୍ଦ୍ର ସରକାରଙ୍କ ଦ୍ୱାରା କଟକ ପ୍ରିଣ୍ଟିଂ କମ୍ପାନୀ ତରଫରୁ ପ୍ରକାଶିତ ହୋଇଥିଲା । ଇତିହାସ ଓ ସାମାଜିକ ଜୀବନ ଚିତ୍ରକୁ ମିଶାଇ ଏହା ଏକ historical romance ଭାବରେ ଆତ୍ମପ୍ରକାଶ କରିଥିଲା । 'ପଦ୍ମମାଳୀ'ର କାହାଣୀ ଜଟିଳ ବା ବହୁମୁଖୀ ନୁହେଁ । ପାଞ୍ଚଗଡ଼ର ପଟ୍ଟୋସ୍ୱାମୀ (ଅମିନ) ଜଗବନ୍ଧୁ ପଟ୍ଟନାୟକଙ୍କ କନ୍ୟା ପଦ୍ମମାଳୀ ନିଜ ଜନନୀଙ୍କ ସହ ମାଣିକୀର ପ୍ରସିଦ୍ଧ କଖାରୁଆ ବୈଦ୍ୟନାଥଙ୍କ ଜାଗରଯାତ୍ରା ଦେଖିବାକୁ ଯାଇଥିଲା । X X ସେହି ଯାତ୍ରା ସ୍ଥଳରୁ ଦୁରାତ୍ମା ଦୁର୍ଯ୍ୟୋଧନ ଦାସ, ବାଞ୍ଛାନିଧି

ବଳବନ୍ତ ରାୟ ସହାୟତାରେ ପଦ୍ମମାଳୀକୁ ଅପହରଣ କରି ନେଇଗଲେ । X X ମାଣିକୀ ନାଗର ଯାହାକୁ ପଦ୍ମମାଳୀକୁ ହରଣ କରି ଦୁର୍ଯ୍ୟୋଧନ କଂସାଇ ଆଡ଼କୁ ଘେନି ଯାଉଥିଲାବେଳେ ବାଟରେ ପରୀକ୍ଷିତ ସିଂହ (କର୍ତ୍ତିପଦାର ରାଜା) ପଦ୍ମମାଳୀକୁ ଉଦ୍ଧାର କରି ଦେଉଳ ସାହି ମଠରେ ମହନ୍ତ ହରିହର ରାମାନୁଜ ଦାସଙ୍କ ତତ୍ତ୍ୱା-ବଧାନରେ ଆଣି ଛାଡ଼ିଲେ । ପଦ୍ମମାଳୀ ଓ ପରୀକ୍ଷିତ ସିଂହ ପରସ୍ପର ପ୍ରତି ପ୍ରେମାସକ୍ତ ହେଲେ । ଏମାନଙ୍କର ବିବାହ ସମ୍ବନ୍ଧ ଶୁଣି ଦୁର୍ଯ୍ୟୋଧନ କୌଶଳକ୍ରମେ ପଦ୍ମମାଳୀକୁ ପୁଣି ଅପହରଣ କରି ନେଇଯାଇଛି । ପରୀକ୍ଷିତ ସିଂହ ଓ ହରିହର ଭ୍ରମରବର ଦୁହେଁ ମିଶି ଦୁର୍ଯ୍ୟୋଧନକୁ ଆକ୍ରମଣ କରିଛନ୍ତି । ଦୁର୍ଯ୍ୟୋଧନ ପରାସ୍ତ ହୋଇଛି । ବାଲେଶ୍ୱର କଲେକ୍ଟର ଏବଂ ଫୌଜଙ୍କ ହସ୍ତକ୍ଷେପ ଫଳରେ ସମସ୍ୟା ସମାଧାନ ହୋଇଛି । ଶେଷରେ ପରୀକ୍ଷିତ ଓ ପଦ୍ମମାଳୀର ବିବାହ ସମ୍ପନ୍ନ ଉପନ୍ୟାସର କାହାଣୀକୁ ଉପସଂହାର ଓ କ୍ଲାଇମାକ୍ସ ପ୍ରଦାନ କରିଛି । * ଉମେଶ ଚନ୍ଦ୍ରଙ୍କ ପ୍ରଥମ ପ୍ରୟାସ ହିଁ ତାଙ୍କୁ ପ୍ରତିଷ୍ଠା ଦେଇଛି । ଗଡ଼ଜାତ ପୃଷ୍ଠ ପଟରେ 'ପଦ୍ମମାଳୀ' ଯୁଦ୍ଧ ଓ ପ୍ରେମକୁ ପାଥେୟ କରି ପ୍ରଥମ ଉପନ୍ୟାସର କଳାଗତ ଗୌରବ ହାସଲ କରିଛି ।

୧୮୭୮ ମସିହାରେ କେନ୍ଦୁଝର ଗଡ଼ଜାତ ଅଞ୍ଚଳରେ ସଂଘଟିତ ବିଦ୍ରୋହର କଥାରୂପ ୧୯୦୭ ମସିହାରେ ମୁକୁର ପତ୍ରିକାରେ 'କେନ୍ଦୁଝର ବିଦ୍ରୋହ' ନାମରେ ପ୍ରକାଶ କରିଥିଲେ । ମହାରାଜ ଗଦାଧର ନାରାୟଣ ଭଞ୍ଜଙ୍କ ମୃତ୍ୟୁପରେ ଉତ୍ତରାଧିକାରୀ ପାଇଁ ସଂଘର୍ଷ ଏବଂ ଭୂୟାଁ, ଜୁଆଙ୍ଗମାନଙ୍କ ବିଦ୍ରୋହକୁ ନେଇ ଏହାର କାହାଣୀ ଗଠିତ । ଉପନ୍ୟାସଟି ସାମଗ୍ରିକ ଭାବରେ ପ୍ରକାଶିତ ହୋଇ ପାରିଥିଲେ ଓଡ଼ିଆ ଉପନ୍ୟାସ ପାଇଁ ଉମେଶ ଚନ୍ଦ୍ର ଆଉ ଏକ ସାଫଲ୍ୟ ପ୍ରଦାନ କରିଥାଆନ୍ତେ ନିଶ୍ଚୟ । ପଦ୍ମମାଳୀ ଓ କେନ୍ଦୁଝର ବିଦ୍ରୋହ ଓଡ଼ିଆ ଉପନ୍ୟାସ ସାହିତ୍ୟର ଦୁଇଟି ସ୍ମରଣୀୟ ଆଦ୍ୟ ସୃଷ୍ଟି ।

ଗୋପାଳବଲ୍ଲଭ ଦାସ ୧୮୯୮ ମସିହାରେ 'ଭୀମାଭୂୟାଁ' ରଚନା କରିଥିଲେ । କଟକ ଏଡ଼ୱାର୍ଡ ପ୍ରେସରୁ ଏହା ପ୍ରକାଶ କରି ଗୋପାଳବଲ୍ଲଭ ଆଦିବାସୀମାନଙ୍କର ଜୀବନ ବୃତ୍ତିକୁ ପ୍ରଥମ କରି ଉପନ୍ୟାସରେ ସ୍ଥାନ ଦେବା ଆରମ୍ଭ କଲେ । ଆଦିବାସୀ-ମାନେ ବଣର ଜନ୍ତୁ । ତା' ଭିତରେ ଝରଣାର ଛନ୍ଦ ଥାଏ । ସଙ୍ଗୀତର ମାଧୁର୍ଯ୍ୟ ଥାଏ । ପର୍ବତପରି ସହିବା ଥାଏ ପୁଣି ସିଂହଭଳି ହିଂସ୍ରତା ଥାଏ । ଗୋପଳବଲ୍ଲଭ ପ୍ରେମ-ପ୍ରଣୟ ଓ ମାନବ ସେବାକୁ କାହାଣୀର ଆୟୁଧ ଭାବରେ ଗ୍ରହଣ କରିଛନ୍ତି । ସମଗ୍ର

* ପଦ୍ମମାଳୀ କାହାଣୀ ଅଂଶ ସୌଜନ୍ୟ—ଓଡ଼ିଆ ଉପନ୍ୟାସ—କୃଷ୍ଣଚରଣ ବେହେରା ।

ଉପନ୍ୟାସରେ ଭୂୟାଁମାନଙ୍କର ଉଦାରତା ଓ ଆତ୍ମତ୍ୟାଗର ଚିତ୍ର ବର୍ଣ୍ଣନା କରାଯାଇଛି । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଭୀମା ଭୂୟାଁର ସ୍ଥାନ ସ୍ୱତନ୍ତ୍ର ।

ଆଦିପର୍ବର ଉପନ୍ୟାସିକ ସମ୍ଭାବନାକୁ ସ୍ୱୀକାର କରି ଓଡ଼ିଆ ଉପନ୍ୟାସ ଆକାଶରେ ଦେଖାଦିଅନ୍ତି ଫକୀରମୋହନ । ୧୮୯୭-୯୮-୯୯ ଏହି ତିନୋଟି ବର୍ଷରେ ସୃଷ୍ଟି କରି ସେ ପ୍ରଥମ ଓଡ଼ିଆ ସାମାଜିକ କ୍ଲାସିକ୍ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ସୃଷ୍ଟି କରନ୍ତି । ଫକୀରମୋହନ ବାସ୍ତବିକ୍ ଓଡ଼ିଆ ଉପନ୍ୟାସକୁ ଏକ ନୂତନ ଦିଗ୍‌ଦର୍ଶନ ଦେବାସହ ଓଡ଼ିଶାର ସାମାଜିକ ରାଜନୈତିକ ଓ ଅର୍ଥନୈତିକ ଚିତ୍ରକୁ ମାର୍ମିକ ଭାବରେ ଉପସ୍ଥାପନ କରିଅଛନ୍ତି । ଫକୀରମୋହନ ଗ୍ରାମ୍ୟଭିତ୍ତିକ ମଣିଷ ଜୀବନଯାପନ ଓ ସମାଜ ବ୍ୟବସ୍ଥା ବର୍ଣ୍ଣନା କରିବାକୁ ଯାଇ ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଚାରିଗୋଟି ସାର୍ଥକ ଉପନ୍ୟାସ ପ୍ରଦାନ କରନ୍ତି । ଫକୀରମୋହନଙ୍କ ଉପନ୍ୟାସ ରଚନା କରିବାର କଳା ସ୍ୱତନ୍ତ୍ର, ତାଙ୍କ ଗଳ୍ପ ଗ୍ରହଣ ସାଧାରଣ ମାଟିରୁ, ଭାଷା ଗ୍ରାମୀଣ, ଅନୁଭବ ଓଡ଼ିଶାର ଦରିଦ୍ର ପଲ୍ଲୀବାସୀର ହୃଦୟରୁ । ଫକୀର-ମୋହନଙ୍କ ପ୍ରତିଭାଯୁକ୍ତ ହୋଇ ଓଡ଼ିଆ ଉପନ୍ୟାସରେ ଆଧୁନିକତାର ଅରୁଣରାଗ ସମ୍ଭବ ହେଲା ।

ଛ'ମାଣ ଆଠଗୁଣ୍ଠରେ ଫକୀରମୋହନ ନୂଆକରି ସୃଷ୍ଟି ହୋଇଥିବା ନୂତନ ଜମିଦାର ଗୋଷ୍ଠିର ଚରିତ୍ର ମାଧ୍ୟମରେ ଓଡ଼ିଶାର ପଲ୍ଲୀ ପ୍ରକୃତିରେ ଶୋଷଣର ପୈଶାଚିକ ଚିତ୍ରକୁ ପ୍ରକାଶ କରିଛନ୍ତି । ରାମଚନ୍ଦ୍ର ମଙ୍ଗରାଜ ବୋଧହୁଏ ଆଦିପର୍ବ ଉପନ୍ୟାସର ସବୁଠାରୁ ଶକ୍ତିଶାଳୀ ଶୋଷକ । ଭଗିଆ-ଶାରିଆ ସାଧାରଣ ମଣିଷ ମାନଙ୍କର ପ୍ରତୀକ । ଅଗଣିତ ଧର୍ମଭୀରୁ ଓଡ଼ିଆମାନଙ୍କ ପରି ସିଏ ଭଗବାନ ଦେବେ ଠାକୁରାଣୀଙ୍କ ମନ୍ଦିର ତୋଳାଇ ଦେଲେ, ଏହିପରି ଏକ ସ୍ୱପ୍ନପ୍ରବଣ ଆଶ୍ୱାସନା ଭିତରେ ଭଗିଆର ଛ'ମାଣ ଆଠଗୁଣ୍ଠ ନିଲାମ ହୋଇଛି, ଶାରିଆର ନେଉଟାଇ ଯାଇଛି । ଫକୀରମୋହନ ଉକ୍ତ ଉପନ୍ୟାସରେ ନୀତି ଓ ନୈତିକତାର ବିଜୟ ଧ୍ୱଜା ଉଡ଼ାଇବାକୁ ଯାଇ ସଇତାନ ଚରିତ୍ରମାନଙ୍କୁ ଶାସ୍ତି ପ୍ରଦାନ କରିଛନ୍ତି । ରାମଚନ୍ଦ୍ର ମଙ୍ଗରାଜର ହୃଦୟ ପରିବର୍ତ୍ତନ ଘଟାଇଛନ୍ତି । ଛ'ମାଣ ଆଠଗୁଣ୍ଠର କାହାଣୀ ଏକ ଅଞ୍ଚଳ ଗ୍ରାମ ଜୀବନର କାହାଣୀ । ଏବେ ବି ଏ ଉପନ୍ୟାସର ସ୍ୱରୂପ ଓଡ଼ିଆ ସମାଜରେ ଅନୁମେୟ ହୁଏ । ପ୍ରେମଚନ୍ଦଙ୍କ 'ଗୋଦାନ', ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କ 'ଗଣଦେବତା' ପରି ଏଥିରେ ଗଭୀର ଆବେଦନ ପ୍ରକାଶ ପାଇଛି । ତାରାଶଙ୍କରଙ୍କର ଛିରୁପାଲ (ଶ୍ରୀହରି ଘୋଷ) ଚରିତ୍ର ସହ ରାମଚନ୍ଦ୍ର ମଙ୍ଗରାଜକୁ ତୁଳନା କରାଯାଇ ପାରିବ । ଛିରୁପାଲର ହୃଦୟ ଅଛି କିନ୍ତୁ ମଙ୍ଗରାଜ ହୃଦୟହୀନ । କିନ୍ତୁ ଏ ଦୁଇଟି ଚରିତ୍ରର ବିଶେଷତ୍ୱ ହେଉଛି ଉଭୟ ପ୍ରତିନାୟକ ଚରିତ୍ରର ଶେଷରେ

ଚଞ୍ଚ ପରିବର୍ତ୍ତନ ଘଟିଛି । ଭାରତୀୟ ଉପନ୍ୟାସ ସାହିତ୍ୟରେ 'ଛ'ମାଣ ଆଠଗୁଣ୍ଠ'ର ଏକ ସ୍ୱତନ୍ତ୍ର ଆବେଦନ ରହିଛି ।

'ଲଛମା' ଫକୀରମୋହନଙ୍କ ଏକ ଐତିହାସିକ ଉପନ୍ୟାସ । ମୋଗଲ-ମରହଟ୍ଟା ସଂଘର୍ଷର କଳାତ୍ମକ କଥାରୂପ ଉକ୍ତ ଉପନ୍ୟାସରେ ପ୍ରକାଶ ପାଇଛି । ଭାସ୍କର ପଣ୍ଡିତ ସହ ଆଲିବର୍ଦ୍ଦି ଖାଁର ସଂଘର୍ଷ ପ୍ରକାଶ ଭିତରେ ଓଡ଼ିଶାର ସାମାଜିକ-ରାଜନୈତିକ-ଅର୍ଥନୈତିକ ଅବସ୍ଥାର ଚିତ୍ର ପ୍ରଦାନ କରିଛନ୍ତି । ଉପନ୍ୟାସରେ ଲଛମା ଓ ନାୟକ ବାଦଲ ସିଂ ଚରିତ୍ରକୁ ଯୋଡ଼ି ଦିଆଯାଇଛି । ବୈରାଗଡ଼ିଆ ମାନଧାତା, ମୀର୍ ଜାଫର ସେନାପତି, ଫୁଲଝାର, ହଳଦୀପଦା ଯୁଦ୍ଧ, ରାୟବଣିଆ ଦୁର୍ଗ ଆଦି ଉକ୍ତ ଉପନ୍ୟାସରେ ଇତିହାସର ପଦଧ୍ୱନି ପ୍ରକାଶ କରିଥାଏ । ଫକୀର-ମୋହନ ଓଡ଼ିଆ ସ୍କୁଲ ପାଠ୍ୟକ୍ରମ ପାଇଁ ଭାରତ ଇତିହାସ ରଚନା କରିଥିଲେ । ପରବର୍ତ୍ତୀ ସମୟରେ ସେ ଏଥିରୁ ପ୍ରେରଣା ପାଇ ଓଡ଼ିଶାର ଇତିହାସକୁ ସାହିତ୍ୟିକ ରୂପଦେବା ପାଇଁ ପ୍ରୟାସ କରିଥିବେ । ଲଛମାରେ ଇତିହାସ ସହ ସମାନ୍ତରାଳ ଭାବରେ କାଳ୍ପନିକ କଥାବସ୍ତୁ ପ୍ରକାଶିତ କରାଯାଇଛି । ମରହଟ୍ଟା ଅତ୍ୟାଚାର, ମୋଗଲ ଆକ୍ରମଣ ସହ ଓଡ଼ିଆ ପାଇକପୁଅର ବୀରତ୍ୱ ଓ ଲଛମାର ପ୍ରେମ କାହାଣୀକୁ ପାଥେୟ କରି ଲଛମା ଏକ ପରିପୂର୍ଣ୍ଣ ଉପନ୍ୟାସର ମର୍ଯ୍ୟାଦା ଲାଭ କରିଛି ।

'ମାମୁଁ' ଫକୀରମୋହନଙ୍କର ତୃତୀୟ ଏବଂ ଦ୍ୱିତୀୟ ସାମାଜିକ ଉପନ୍ୟାସ । ମାମୁଁରେ ମମତାର ଫାଶ ଭିତରେ ଶୋଷଣର ସହସ୍ର ରୂପ ପ୍ରକାଶ ପାଇଛି । 'ମାମୁଁ' ଉପନ୍ୟାସର ସମାଜ ଛ'ମାଣ ଆଠଗୁଣ୍ଠ ଠାରୁ ଅଧିକ ସାମ୍ପ୍ରତିକ । ମଙ୍ଗରାଜଠାରୁ ନାଜର ନଟବର ଅଧିକ ଶିକ୍ଷିତ ଓ ଧୂର୍ତ୍ତ । ନିଜ ବିଧବା ଭଉଣୀ ରୁକ୍ମିଣୀର ଯାବତୀୟ ଧନସମ୍ପତ୍ତି ଅଧିକାର କରି ଭଣଜାକୁ ଶତ୍ରୁ ସ୍ନେହ କରୁଥିବା ଏହି ଅର୍ଥ ସର୍ବସ୍ୱ ଚରିତ୍ରର ଶେଷରେ ପରିବର୍ତ୍ତନ ଆସିଛି । ଫକୀରମୋହନଙ୍କ ଉପନ୍ୟାସର ବୈଶିଷ୍ଟ୍ୟ ହେଉଛି ମନ୍ଦ ଚରିତ୍ରମାନଙ୍କର ଶେଷ ସମୟରେ ହୃଦୟ ପରିବର୍ତ୍ତନ ଓ ଦୋଷ ସ୍ୱୀକାର । ମାମୁଁର ହୃଦୟ ପରିବର୍ତ୍ତନ ମାମୁଁ ଉପନ୍ୟାସର ମୁଖ୍ୟ ଘଟଣା । ଫକୀରମୋହନ ମାମୁଁ ଉପନ୍ୟାସରେ ସମ୍ପତ୍ତିଖୋର ମଣିଷର ଆତ୍ମିକ ଅଭୀପ୍ସାକୁ ପ୍ରକାଶ କରିଛନ୍ତି ।

'ପ୍ରାୟଶ୍ଚିତ୍ତ' ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ଏ ଉପନ୍ୟାସ ସମୟକୁ ଇଂରେଜ ଶିକ୍ଷା ଓ ସଭ୍ୟତାର ଯଥେଷ୍ଟ ପ୍ରଭାବ ଆମ ସମାଜ ବ୍ୟବସ୍ଥା ଉପରେ ପଡ଼ିଲାଣି । ଏହାର ପ୍ଲଟ୍ ଓ ପରିବେଷଣ ଶୈଳୀରେ ଫକୀରମୋହନ ନୂତନତ୍ୱ ଆଣିଛନ୍ତି । ଦୁଇଟି କରଣ ଆଭିଜାତ୍ୟ ପରିବାରରେ ଦ୍ୱନ୍ଦ୍ୱ ଓ ପରିଶେଷରେ କୁମାର ଗୋବିନ୍ଦ ଚନ୍ଦ୍ରଙ୍କ ଉଦାରତା କଳହ ଓ ଆତ୍ମୋତ୍ସର୍ଗ ମଧ୍ୟରେ ସୁଖୀସ୍ୱ

ପରିଣତ ଉପନ୍ୟାସଟିକୁ ଭାରତୀୟ ଆଦର୍ଶର ନିକଟବର୍ତ୍ତୀ କରିଅଛି । ଫକୀରମୋହନଙ୍କ ଶେଷ ବୟସର ଅନୁଭୂତ ଓ ବିଶ୍ୱାସର ଭାବମୂର୍ତ୍ତିରେ ଉଜ୍ଜଳ ଏଇ ଉପନ୍ୟାସଟିରେ ଶିଳ୍ପୀ ମାନସର ସେଇ ନିସ୍ତରଙ୍ଗ ସମାହିତ ଭାବ all passions spent ଭାବ ଅନ୍ୟତ୍ର ଦୁର୍ଲଭ । *

ଫକୀରମୋହନ ଓଡ଼ିଆ ପ୍ରାଣର ସ୍ପନ୍ଦନ । ଗାଁରେ ଥିବା ହୁଙ୍କାଟିଏ, ଦୂରରେ ଥିବା ପାହାଡ଼ଟିଏ, ଗାଁରେ ଥିବା ଦଳଗଡ଼ିଆ ତ ପୁଣି କେତେବେଳେ ନିଗିଡ଼ି ଆସୁଥିବା ନିର୍ଝରଣୀଟିଏ, ଏମିତି ଓଡ଼ିଶାର କଳା, ସଂସ୍କୃତି, ଭାଷା, ଜାତୀୟତା ଓ ମାନବିକ ଆତ୍ମାର ନୈତିକ ସ୍ପର୍ଶ ତୋଳିବାରେ ଫକୀରମୋହନ ଅଦ୍ୱିତୀୟ । ଏ ମହାନ ସ୍ରଷ୍ଟା ମହାନ ଜାତିର ନମସ୍ୟ ।

ଫକୀରମୋହନ ଓଡ଼ିଆ ଭାଷାରେ ବାଧ୍ୟବଦ୍ଧ ଭାବରେ ଉପନ୍ୟାସ ସୃଷ୍ଟି କଲେ । ପରବର୍ତ୍ତୀ ସମୟରେ ଅନେକ ସ୍ରଷ୍ଟା ଉପନ୍ୟାସ ରଚନା କରିବାରେ ପ୍ରୟାସୀ ହୋଇଛନ୍ତି । କବି ନନ୍ଦକିଶୋର ବଳ 'କନକଲତା' ନାମକ ଏକ ଉପନ୍ୟାସ ରଚନା କରିଛନ୍ତି । କନକଲତା ଓ ଗଜେନ୍ଦ୍ରର ଜୀବନଚର୍ଯ୍ୟା ଉପରେ ନନ୍ଦକିଶୋର ଉପନ୍ୟାସକୁ ଆବଦ୍ଧ କରିଛନ୍ତି । ଏ ସମୟରେ ଓଡ଼ିଆ ଭାଷାରେ ସାମାଜିକ ଚରିତ୍ରଭିତ୍ତିକ ଓ ଘଟଣା ପ୍ରଧାନ ଉପନ୍ୟାସ ରଚନା କରିବାରେ ଅନେକ ପ୍ରଶଂସନୀୟ ଉଦ୍ୟମ ଆରମ୍ଭ ହୋଇଛି । ନିମ୍ନରେ କେତେକ ବିଶିଷ୍ଟ କୃତିର ସୂଚନା ଦିଆଗଲା ।

ଅପର୍ଣ୍ଣାଦେବୀ—କଳାବତୀ ।

ଚନ୍ଦ୍ରମଣି ମହାନ୍ତି—ରୂପାଚୁଡ଼ି, ଟଙ୍କାଗଛ, ଯୁଗଳମଠ, ବୁଲାଫକୀର, ଶନିସପ୍ତା, ରକ୍ତଦାନ ।

ମୃତ୍ୟୁଞ୍ଜୟ ରଥ—ଅଦ୍ଭୁତ ପରିଣାମ ।
ତାରିଣୀ ଚରଣ ରଥ—ଅନ୍ନପୂର୍ଣ୍ଣା ।
ଲକ୍ଷ୍ମୀକାନ୍ତ ମହାପାତ୍ର—କଣାମାମୁଁ ।
ବୈଷ୍ଣବ ଚରଣ ଦାସ—ମନେମନେ ।
ବଟକୃଷ୍ଣ ପ୍ରହରାଜ—ମାତାମଠ, ଘନାବର୍ତ୍ତି, ଅଶ୍ରୁବିନ୍ଦୁ ।
ଅଶ୍ୱିନୀ କୁମାର ଘୋଷ—ବୃନ୍ଦାଚର୍ଚ୍ଚା, ମୁକ୍ତି, ଚଣାବାଲି, ନାରୀ, ଏ ପୃଥିବୀ କି ସୁନ୍ଦର ।

* ଆଧୁନିକ ଓଡ଼ିଆ କଥା ସାହିତ୍ୟ—ଡ଼ଃ ନରେନ୍ଦ୍ର ନାଥ ମିଶ୍ର, ଓଡ଼ିଶା ସାହିତ୍ୟ ଏକାଡେମୀ—ପୃ-୭୮ ।

ହରପ୍ରସିଂହ ପାଣିଗ୍ରାହୀ—ଅମୃତ କଙ୍କଣ, ତୁ ମୋ ମା' ।

ଉପେନ୍ଦ୍ର କିଶୋର ଦାସ—ମଲାଜହ୍ନ ।

ସବୁଜ ସାହିତ୍ୟ ସମିତି—ବାସନ୍ତୀ ।

ରାମଚନ୍ଦ୍ର ଆଚାର୍ଯ୍ୟ—କମଳକୁମାରୀ, ବୀରଓଡ଼ିଆ, ପୀୟୁଷ ପ୍ରବାହ, ପଦ୍ମିନୀ, ବୀରାଙ୍ଗନା ।

କୁନ୍ତଳା କୁମାରୀ ସାବତ—ନଅରୁଣ୍ଡି, ପରଶମଣି, କାଳିବୋହୂ, ରଘୁ ଅରକ୍ଷିତ ।

ଗୋବର୍ଦ୍ଧନ ଚନ୍ଦ୍ର ତ୍ରିପାଠୀ—ପଥିକର ଆତ୍ମକଥା, ମାୟାବୀ, ପ୍ରସାଦ ।

ଗୋଦାବରୀଶ ମିଶ୍ର—ଘଟାନ୍ତର, ୧୮୧୭, ଅଭାଗିନୀ, ନିର୍ବାସିତ ।

ଗୋଦାବରୀଶ ମହାପାତ୍ର—ବିଦ୍ରୋହୀ, ରାଜଦ୍ରୋହୀ, ପ୍ରେମପଥେ, ବନ୍ଦୀର ମାୟା ।

ହରେକୃଷ୍ଣ ମହତାବ—ପ୍ରତିଭା, ଅବ୍ୟାପାର, ଟାଉଟର, ତୃତୀୟପନ୍ଥ, ନୂତନ ଧର୍ମ ।

ରାମପ୍ରସାଦ ସିଂ—ହୋମଶିଖା, ସମାପ୍ତି, ଅଗ୍ନିପଥେ ।

ଅନନ୍ତ ପଣ୍ଡା—ଭାଗ୍ୟଚକ୍ର, କୂଳ ।

ଲକ୍ଷ୍ମୀଧର ନାୟକ—ସବହରାଙ୍କ ହାୟରେ ଦୁର୍ଭାଗା ଦେଶ ।

କାଳନ୍ଦୀ ଚରଣ ପାଣିଗ୍ରାହୀ—ଅମରଚିତା, ମୁକ୍ତାଗଡ଼ର କ୍ଷୁଧା, ମାଟିର ମଣିଷ, ଆଜର ମଣିଷ, ଲୁହାର ମଣିଷ ।

ନିତ୍ୟାନନ୍ଦ ମହାପାତ୍ର—ଭୀରୁ ପଥ ଖସଡ଼ା, ଭଙ୍ଗାହାଡ଼, ହିଡ଼ମାଟି ।

କାହ୍ନୁ ଚରଣ ମହାନ୍ତି—ବାଲିରଜା, ହା-ଅନ୍ନ, ଶାସ୍ତି, ଝଞ୍ଜା, ବଜ୍ରବାହୁ, ଶବରୀ, ପଲାତକ, ତଥାସ୍ତୁ, ମନକାଣେ ପାପ, ଭୁଣ୍ଡବାଇଦ, କା, ପ୍ରତୀକ୍ଷା ।

ସୀତାଦେବୀ ଖାଡ଼ଙ୍ଗା—ପୋଷ୍ୟପୁତ୍ର, ପ୍ରତ୍ୟାବର୍ତ୍ତନ, ଅଗ୍ରଜ ।

ରାଜକିଶୋର ପଟ୍ଟନାୟକ—ସପନ କୁହୁଡ଼ି, ପ୍ରେମିକର ଡାଇରୀ ।

ଗୋପିନାଥ ମହାନ୍ତି—ହରିଜନ, ଦାନାପାଣି, ଦାଦିବୁଢ଼ା, ପରଜା, ଅମୃତର ସନ୍ତାନ, ମାଟିର ମଣିଷ, ଶରତବାବୁଙ୍କ ଗଳି, ରାହୁର ଛାୟା, ଶିବଭାଇ, ସପନମାଟି, ଦଗଦହୁଡ଼ି, ଅନାମ, ଅନଳନଳ, ଲୟବିଲୟ, ଅପହଞ୍ଚ, ଆକାଶ ସୁନ୍ଦରୀ, ଦୁଇପତ୍ର ।

ସୁରେନ୍ଦ୍ର ମହାନ୍ତି—କୃଷ୍ଣାବେଣୀର ସନ୍ଧ୍ୟା, ଶତାବ୍ଦୀର ସୂର୍ଯ୍ୟ, କଲେଜବସ୍ତ୍ର, ବଧୂ ଓ ପ୍ରିୟା, ଅନ୍ଧଦିଗନ୍ତ, ନୀଳଶୈଳ, ନେତନେତ, ନୀଳାଦ୍ରି ବିଜୟ, ଆଜୀବନର ଅଟ୍ଟହାସ୍ୟ, କାଳାନ୍ତର, ଧ୍ୱଂସଗୀତ ।

ମହାପାତ୍ର ନୀଳମଣି ସାହୁ—ତାମସୀ ରାଧା, ଧର୍ଷ ଓ ଧାର୍ଷ ।

ନରସିଂହ ଚରଣ ସାହୁ—ସେବାସଦନ, ବଡ଼ଘରର ଝିଅ, ଚନ୍ଦ୍ର ଚକୋର ।

ଶୁକଦେବ ସାହୁ—ମନର ଯେତେ ଆଶା, ନବଜନ୍ମ, ପ୍ରିୟା ପରକୀୟା ।

ଗୋବିନ୍ଦ ଦାସ—ଅମାବାସ୍ୟାର ଚନ୍ଦ୍ର, ଲସ୍ତୁ, ଭଗ୍ନାଂଶ, ସୂର୍ଯ୍ୟାସ୍ତ ।

ଫକୀରମୋହନଙ୍କ ଠାରୁ ସ୍ୱାଧୀନତା ପ୍ରାପ୍ତିର କେତେବର୍ଷ ପର୍ଯ୍ୟନ୍ତ ନାମାଙ୍କିତ ଉପନ୍ୟାସମାନଙ୍କରେ ମୁଖ୍ୟତଃ ସମାଜ ଜୀବନର ପ୍ରତିବିମ୍ବ ପ୍ରକାଶ ପାଇଛି । ଛ'ମାଣ ଆଠଗୁଣ୍ଠ ପରେ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ଉପନ୍ୟାସ ପାଠକର ହୃଦୟକୁ ଜୟ କରିବାରେ ସମର୍ଥ ହୁଏ । କାଳନ୍ଦୀ ଚରଣ ଓଡ଼ିଶାର ଯୌଥ ପରିବାର ସମସ୍ୟା ଓ ଭାଇଭାଇର ରକ୍ତ ସମ୍ପର୍କର ଡାକକୁ ପ୍ରକାଶ କରିଛନ୍ତି । ମାଟିର ମଣିଷରେ ମାଟି ଆଉ ମଣିଷର ସମ୍ପର୍କକୁ ପ୍ରକାଶ କରାଯାଇଛି । ବରଜୁ ଓ ଛକଡ଼ି ଚରିତ୍ର ଭିତରେ ଓଡ଼ିଶାର ଅଗଣିତ ଭାଇମାନଙ୍କୁ ଖୋଜାଯାଇ ପାରିବ ।

କାହ୍ନୁ ଚରଣ ଫକୀରମୋହନଙ୍କ ପରେ ଉତ୍କଳୀୟ ଜୀବନ ଚିତ୍ରକୁ ପ୍ରକାଶ କରିବାପାଇଁ ନେତୃତ୍ୱ ନେଇଥିବାର ଗୁରୁଦାୟିତ୍ୱ ସମ୍ପାଦନ କରି ଯାଇଛନ୍ତି । ଶାନ୍ତି-ହା-ଅନ୍ନ-ଝଞ୍ଜା ଆଦି ଉପନ୍ୟାସମାନଙ୍କରେ ନଅଙ୍କ ପୀଡ଼ିତ (୧୮୬୬) ପୃଷ୍ଠଭୂମିର ବର୍ଣ୍ଣନା ଦେଇଛନ୍ତି । ପ୍ରେମ ଓ ପରିବେଶ କାହ୍ନୁ ଚରଣଙ୍କ ଉପନ୍ୟାସର ବୈଶିଷ୍ଟ୍ୟ, ଭୁଣ୍ଡିବାଇଦ, ଶବରୀ ଆଦି ଉପନ୍ୟାସ ଓଡ଼ିଶାର ପାରିବାରିକ ଜୀବନ-ବୋଧର ପରିଚାୟକ ।

ଜନଜାତିମାନଙ୍କର ସମସ୍ୟାକୁ ଶୈଳ୍ପିକ ଆବେଗ ମାଧ୍ୟମରେ ପ୍ରକାଶ କରିବାରେ ଗୋପିନାଥ ଅନ୍ୟତମ ସଫଳ ସ୍ରଷ୍ଟା । ଗିରିଜନମାନଙ୍କର ଜୀବନଚିତ୍ର ଓ ସଂସ୍କୃତିକୁ ଆଧୁନିକ ମଣିଷ ନିକଟରେ ପହଞ୍ଚାଇବାର ବିଧିବଦ୍ଧ ପ୍ରୟାସ ଗୋପିନାଥଙ୍କ ଉପନ୍ୟାସମାନଙ୍କରେ ଲକ୍ଷ୍ୟ କରାଯିବ । ପରଜା, ଅମୃତର ସନ୍ତାନ, ହରିଜନ ଆଦି ଉପନ୍ୟାସମାନଙ୍କରେ ଗୋପିନାଥଙ୍କ ଆବେଦନ ଅତି ସ୍ପଷ୍ଟ ଓ ବଳିଷ୍ଠ । ଗୋପିନାଥ ସମସ୍ୟା ଭିତରେ ସୌନ୍ଦର୍ଯ୍ୟ ଫୁଟାଇବାରେ ଜଣେ ସଫଳ ସ୍ରଷ୍ଟା ।

ଇତିହାସକୁ ଉପନ୍ୟାସର ପଞ୍ଜର ଭାବରେ ଗ୍ରହଣ କରି କଥା ସୃଷ୍ଟି କରିବାରେ ସୁରେନ୍ଦ୍ର ସକ୍ଷମ । ଉତ୍କଳର ଧର୍ମକେନ୍ଦ୍ରିକ ଇତିହାସ ଓ ଜଗନ୍ନାଥ ଚେତନାକୁ ଗୁରୁଗମ୍ଭୀର ଶବ୍ଦ ଭିତରେ ଶ୍ରୀଯୁକ୍ତ ମହାନ୍ତି ପ୍ରକାଶ କରିଛନ୍ତି । ତଥାପି ତାଙ୍କର ସାମାଜିକ ଉପନ୍ୟାସମାନଙ୍କରେ ପ୍ରେମ ଓ ବାସ୍ତବତା ସହ ମାନସିକ ମୂଲ୍ୟାୟନ ପ୍ରକାଶ ପାଇଥାଏ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ସଚେତନ ସାହିତ୍ୟ ସୃଷ୍ଟି କରିବାରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଜଣେ ବହୁ ବିଜ୍ଞାପିତ ଓ ଆଲୋଚିତ ପ୍ରତିଭା । ସଚେତନତା ସୃଷ୍ଟି କରିବା ଓ ସଚେତନ ହୋଇ ଉପନ୍ୟାସ ତିଆରି କରିବା ତାଙ୍କର କଳାଧର୍ମ, ରାଜନୈତିକ ବାସ୍ତବତା, ବ୍ୟକ୍ତି ଜୀବନର ଗୁରୁତର ବିଭ୍ରାଟକୁ କୌତୁକ ଓ ବ୍ୟଙ୍ଗ ମାଧ୍ୟମରେ ବ୍ୟାଖ୍ୟା କରିବାର ଦକ୍ଷତା ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କର ରହିଛି । 'ଛନୋଟି ରାତିର ସକାଳ', 'ନରକକନ୍ଦର', 'ଦକ୍ଷିଣାବର୍ତ୍ତ', 'ଶତାବ୍ଦୀର ନଚିକେତା', 'ଯାତ୍ରାର ପ୍ରଥମ ପାଦ', 'ଶକୁନ୍ତଳା', 'ଧରିତ୍ରୀର କାଳ' ଆଦି ଉପନ୍ୟାସମାନଙ୍କରେ ଶ୍ରୀଯୁକ୍ତ ଆଚାର୍ଯ୍ୟ ତାଙ୍କର ସ୍ପଷ୍ଟବାଦୀ ଆତ୍ମମୁଖ୍ୟାର ପରିଚୟ ପ୍ରଦାନ କରିଛନ୍ତି ।

ନୃସିଂହ ଚରଣ ପଣ୍ଡା ମିଥିକ୍ ଚରିତ୍ର ମାଧ୍ୟମରେ ଅନେକ ସାର୍ଥକ ଉପନ୍ୟାସ ସୃଷ୍ଟି କରିଛନ୍ତି । ଇତିହାସର ଚରିତ୍ରମାନଙ୍କଠାରେ ଆରତ୍ୱ ଓ ସୌନ୍ଦର୍ଯ୍ୟ ବୋଳି ଦେଇ ଓଡ଼ିଆ ଉପନ୍ୟାସର ଏକ ନିର୍ଦ୍ଦିଷ୍ଟ ଅଭାବବୋଧକୁ 'ଚଣ୍ଡାଶୋକ', 'ଧର୍ମାଶୋକ', 'ଖାରବେଳ', 'ମେଷ ପ୍ରାଳକ' ଆଦି ଉପନ୍ୟାସ ମାଧ୍ୟମରେ ପୂରଣ କରି ପାରିଛନ୍ତି । ସାମାଜିକ ଉପନ୍ୟାସ ଆଲୋଚନା ପରିପ୍ରେକ୍ଷୀରେ ଭଣ୍ଡାରି ଚରଣ ଦାସଙ୍କ 'ନିହତ ନାୟିକା', ବସନ୍ତ କୁମାରୀ ପଟ୍ଟନାୟକଙ୍କ 'ଅମଡ଼ାବାଟ', 'ଚୋରାବାଲି', 'ଅଲିଭା ଚିତା', ଗାୟତ୍ରୀ ବସୁ ମଲ୍ଲିକଙ୍କ 'ମରୁଝଡ଼', 'ଓଏସିସ', 'କାବେରୀ', 'ମାଧବୀର ମଧୁଯାମିନୀ', ନରସିଂହ ମିଶ୍ରଙ୍କର 'ଲଘୁଗୁରୁ', 'ବେଳାଭୂମି', 'ଶକୁନ', 'ସେ ଫୁଲ ମଉଳି ନାହିଁ', ବଳରାମ ପଟ୍ଟନାୟକଙ୍କ 'ମହାନଦୀର ଢେଉ', 'ମନ ଅରଣ୍ୟ', କୁନ୍ତଳା କୁମାରୀ ଆଚାର୍ଯ୍ୟଙ୍କ 'ଅଦିନ ମେଘ', 'ଦୂର ଦିଗନ୍ତ', କୃଷ୍ଣପ୍ରସାଦ ମିଶ୍ରଙ୍କ 'ସିଂହଳକନ୍ୟା', 'ମୃଗତୃଷ୍ଣା' 'ନେପଥ୍ୟେ', ଯଦୁନାଥ ଦାଶ ମହାପାତ୍ରଙ୍କ 'ଭୁଲି ହୁଏନା', 'ରାହୁମୁକ୍ତ', 'ଲୁହର ଫୁଲ', 'ମାଘ ଶେଷ ମେଘ ଶେଷ', ପରମେଶ୍ୱର ମିଶ୍ରଙ୍କ 'ଝମାରି' ଆଦି ଉପନ୍ୟାସ ନିଜର ବିସ୍ତୃତ ପରିଚୟ ପ୍ରଦାନ କରିଥାଆନ୍ତି ।

ଭାଗୀରଥି ନେପାକଙ୍କ 'ମଧୁମଦିରା', 'ପୁନରାବୃତ୍ତି', 'ତରୁଣୀର ମନ', 'ଦେହ ଓ ଦେହାତୀତ', 'ସୁଜାତାର ସ୍ୱପ୍ନ' ଆଦି ଉପନ୍ୟାସିକ ମନସ୍ତତ୍ତ୍ୱ ପ୍ରଦାନ କରିବା ସହ ଆଧୁନିକ ବ୍ୟକ୍ତି ଜୀବନର ମାନସିକ ସମସ୍ୟା ଉନ୍ମୋଚନ କରିଛନ୍ତି । ଉପନ୍ୟାସିକ

ସାତକଡ଼ି ହୋତାଙ୍କ 'ଅସମାପ୍ତ', 'ସୂର୍ଯ୍ୟ ଉଇଁଲେ ସ୍ୱପ୍ନ' ଦୁଇଟି ତାତ୍ତ୍ୱିକ ଦୃଷ୍ଟିରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଗୋପୀଚନ୍ଦ୍ର ମିଶ୍ରଙ୍କର 'ପ୍ରୀତିପୂର୍ବା' 'କେତେ କାମିନୀ କେତେ ଯାମିନୀ' 'ପାଷାଣୀ କନ୍ୟା' ଆଦି ଉପନ୍ୟାସ ସୁନ୍ଦର କାହାଣୀ ଓ ଚରିତ୍ରମାନଙ୍କୁ ଧରି ରଖି ପାରିଛି ।

ଉପନ୍ୟାସିକ ବିଭୂତି ପଟ୍ଟନାୟକ ସତୁରୀ ଦଶକରୁ ଜଣେ ସାର୍ଥକ ପ୍ରତିଭା ଭାବରେ ଆତ୍ମପ୍ରକାଶ କରି ଅନେକ ସାର୍ଥକ ଉପନ୍ୟାସ ଭେଟି ଦେଇଛନ୍ତି । ବିଭୂତି ବାବୁଙ୍କ ପାଠକ ଯୁବକ ଓ ଯୁବା ପ୍ରାଣର ଯେ କୌଣସି ମଣିଷ । ରୋମାଣ୍ଟିକ୍ ଅନୁରାଗରେ ଶ୍ରୀଯୁକ୍ତ ପଟ୍ଟନାୟକ ତାଙ୍କ ପାଠକ ମନକୁ ଧୀରେ ଧୀରେ ସଂଯମିତ ହୋଇ ବାସ୍ତବତାର ବଳିଷ୍ଠ ସୃଷ୍ଟି କରି ଯାଆନ୍ତି । ଧୂଳିଘର, ନାୟିକାର ନାମ ଶ୍ରାବଣୀ, ବଧୂ ନିରୁପମା, ନଷ୍ଟ ଚରିତ୍ର, ସମୟର ଶୋକ, ଚପଳଛନ୍ଦା, ଘନ କୁହୁଡ଼ିର ବନ, ସତ୍ତା ଅସତ୍ତା, ସୁଲତାନା, ଓଦା ମାଟିର ସ୍ୱର୍ଗ, କୃତାର୍ଥ ପୁରୁଷ, ଏଇ ଗାଁ ଏଇ ମାଟି, ପାପପୁଣ୍ୟ, ଅଶୋକ ବନର ସୀତା, କେଶବତୀ କନ୍ୟା, ମଧ୍ୟାହ୍ନର ଦିବାରାତ୍ରି, ରାଗ ଅନୁରାଗ, ପ୍ରେମିକା, କାଳ ବୈଶାଖୀ, ଆଗ୍ନେୟଗିରିରେ ବଣଭୋଜି, ଅନ୍ଧକାରର ସିଡ଼ି, ବର୍ଣ୍ଣମାଳା, ଛବିର ମଣିଷ, ଅଶ୍ୱମେଧର ଘୋଡ଼ା, ଅସବର୍ଣ୍ଣ, କଦଳି ଫୁଲର ବାସ୍ନା, ସେଦିନ ଚୈତ୍ରମାସ, ଦୀପ ତଳର ଦୃଶ୍ୟ, ସୁଡ଼ଙ୍ଗ ଶେଷରେ ସୂର୍ଯ୍ୟୋଦୟ ଆଦି ଉପନ୍ୟାସ ବ୍ୟକ୍ତି ଜୀବନର ବହୁ ବିଲମ୍ବିତ ଘଟଣାର ଗୋଟିଏ ଗୋଟିଏ ସଫଳ କଥାରୂପ । ଶ୍ରୀଯୁକ୍ତ ପଟ୍ଟନାୟକ ସମ୍ପ୍ରତି ଜଣେ ଲୋକପ୍ରିୟ ଉପନ୍ୟାସିକ ଭାବରେ ଓଡ଼ିଆ ପାଠକଙ୍କ ନିକଟରେ ଖୁବ୍ ଜଣାଶୁଣା । ପ୍ରତିଭା ରାୟ ଆଉ ଜଣେ ପ୍ରତିଭାବନ୍ତ ସ୍ୱାକ୍ଷର । ନାରୀ ଜୀବନକୁ ଭାଙ୍ଗି ଭାଙ୍ଗି ସେଥିରୁ ବିଷ ଅମୃତର ନିର୍ଯ୍ୟାସ ବାଛିନେଇ ମନସ୍ତାତ୍ତ୍ୱିକ ଉପନ୍ୟାସ ରଚନାରେ ସେ ଅନ୍ୟମାନଙ୍କଠାରୁ ପୋଖତ । 'ଶିଳାପଦ୍ମ' 'ଯାଜ୍ଞସେନୀ' 'ପୁଣ୍ୟତୋୟା' 'ନିଷିଦ୍ଧ ପୃଥିବୀ' 'ଉପନାୟିକା' 'ଅପରିଚିତା' 'ଅରଣ୍ୟ' 'ଉତ୍ତରମାର୍ଗ' ଆଦି ତାଙ୍କର ସଫଳ ସୃଷ୍ଟି । ଆଉ ଜଣେ ସାର୍ଥକ ସ୍ରଷ୍ଟା ହେଉଛନ୍ତି ଦେବ୍ରାଜ ଲେଙ୍କା । ଖୁବ୍ କମ୍ ରଚନା କରି ଖୁବ୍ ଶୀଘ୍ର ସ୍ୱୀକୃତି ପ୍ରାପ୍ତ । ଏ ସ୍ରଷ୍ଟା ଜଣକ ପ୍ରେମମୟ ଶବ୍ଦ ଭିତରେ ନଙ୍ଗଳା ମଣିଷକୁ ନେଇ ମହାମହିମ ଲିଙ୍ଗ ତିଆରର ଯୋଜନା ରଖନ୍ତି । 'ଗାଁ ଗାଁ' 'ଆହା ଆହା' ହେଉ କି 'ଲଳିତ ଲବଙ୍ଗଲତା' 'ଧୂର ପୃଥିବୀର ତାରା' 'ଅନ୍ଧମୁହାଣୀ' 'ଜୋକର' 'ପ୍ରେମନଗରର ଅନେକ କଥା' 'ଖେଳ' 'ଖାଁ ଖାଁ କାନ୍ଥରାର' 'ଠୋପଠାପ୍ ଘୋଡ଼ା ଶବ୍ଦ' ଭିତରେ ସେ ସୃଜନ ସ୍ୱପ୍ନ ଦେଖନ୍ତି ।

ଅନାଦି ସାହୁ ସାମାଜିକ ଓ ରାଜନୈତିକ ଉପନ୍ୟାସ ରଚନା କରିବାରେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି । ଜରାସନ୍ଧ, ତାଣ୍ଡବ, ମୃଣ୍ମେଖଳା, ମୟୂ,

ଜଙ୍ଗଲୀ ସହର ଆଦରେ ଶ୍ରୀଯୁକ୍ତ ସାହୁଙ୍କ ପ୍ରତିଭାର ପରିଚୟ ମିଳିଥାଏ । ହୃଷିକେଶ ପଣ୍ଡା ଆମ ସମୟର ଜଣେ ପ୍ରତିଭାବାନ ସ୍ରଷ୍ଟା । 'ଶୂନ୍ୟ ସାଙ୍ଗେ ସାମୟିକ ସନ୍ଧି' ଉପନ୍ୟାସ ତାଙ୍କର ମନସ୍ତାତ୍ତ୍ୱିକ ବିସ୍ତାରଶୀଳତାକୁ ବହନ କରିଥାଏ ।

ଓଡ଼ିଆ ଉପନ୍ୟାସ ସାହିତ୍ୟର ସାଂପ୍ରତିକ ପରିସର ବ୍ୟାପକ । ଅନେକ ତରୁଣ ଓ ଅନେକ ପୁରାତନ ପ୍ରବଣତା ବର୍ତ୍ତମାନ ଉପନ୍ୟାସ ରଚନାରେ ମନୋନିବେଶ କରିଛନ୍ତି ! ପ୍ରତିବର୍ଷ ପୂଜା ପତ୍ରିକାମାନଙ୍କରେ ଏକାଧିକ ଉପନ୍ୟାସ ଆତ୍ମପ୍ରକାଶ କରୁଛି । ଅନେକ ବୟସ୍କ ପ୍ରତିଭା ଏସବୁ ସୁଯୋଗର ନେତୃତ୍ୱ ନେଇ ସଫଳତାର ବହୁରଙ୍ଗୀ ଆର୍ଦ୍ଦ ସୃଷ୍ଟି କରି ପାରିଛନ୍ତି । ରାମଚନ୍ଦ୍ର ବେହେରା, ଜଗଦୀଶ ମହାନ୍ତି, ସରୋଜିନୀ ମହାନ୍ତି, ପଦ୍ମଜ ପାଳ, ଚନ୍ଦ୍ରଶେଖର ରଥ, ଅନ୍ନଦା ପ୍ରସାଦ ରକ୍ଷିତଙ୍କ ପରି ସ୍ରଷ୍ଟାମାନେ ଏହି ଦାୟିତ୍ୱ ତୁଲାଇଛନ୍ତି ।

ସମ୍ପ୍ରତି ଅନେକ ତରୁଣ ଆବେଗଧର୍ମୀ ଉପନ୍ୟାସ ସୃଷ୍ଟି କରୁଛନ୍ତି । ତରୁଣମାନେ କାହାଣୀ ଉପରେ ଗୁରୁତ୍ୱ ନ ଦେଇ ଆବେଗକୁ ନେଇ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଅଧିକ ସୁଯୋଗ ସୃଷ୍ଟି କରୁଛନ୍ତି । ଅକ୍ଷୟ କୁମାର ମହାନ୍ତିଙ୍କ ପରି ସ୍ରଷ୍ଟା 'ଗାୟକ' ଉପନ୍ୟାସ ରଚନା କରି ଆବେଗ ଓ କାହାଣୀର ସୁସମନ୍ୱୟ ପୁଣି ଥରେ ପ୍ରତିଷ୍ଠା କରିଛନ୍ତି । ଯଶୋଧାରା ମିଶ୍ର, ବୀଣାପାଣି ମହାନ୍ତି, ରବି ନାଏକଙ୍କ ସୃଜନଶୀଳତା ଉପରେ ପୁଣି ପାଠକମାନେ ତୀକ୍ଷ୍ଣ ଦୃଷ୍ଟି ପକାଇ ବସନ୍ତି । ଜଗନ୍ନାଥ ପାଣ୍ଡ, ବଟକୃଷ୍ଣ ହିପାଠୀଙ୍କୁ ନୂତନ ସ୍ୱାଦର ଉପନ୍ୟାସିକ ଭାବରେ ଗ୍ରହଣ କରାଯାଇ ପାରିବ ଏବଂ ସେମାନଙ୍କର କୃତିକୁ ଅଧିକ ଆଲୋଚନା ମଧ୍ୟକୁ ଆସିବାକୁ ପଡ଼ିବ ।

ଉପନ୍ୟାସ ସାହିତ୍ୟ ଆମ ଜୀବନ ପରିବ୍ୟାପକ । ଓଡ଼ିଆ ଉପନ୍ୟାସ ଅତୀତର ସୁଦୃଢ଼ ପରମ୍ପରା ଉପରେ ଦଣ୍ଡାୟମାନ । ଆମ ଉପନ୍ୟାସର ଭବିଷ୍ୟତ ଯେ ଉଜ୍ଜ୍ୱଳମୟ ଏକଥା ଆଉ ଥରେ ଗର୍ବର ସହ କହିବାକୁ ପଡ଼ିବ ।



# ପ୍ରବନ୍ଧ

ସୃଷ୍ଟି ସଙ୍ଗୀତମୟ । ସଙ୍ଗୀତମୟତା ଭିତରୁ ସୃଜନ ବଂଶୀ ବାଜି ଉଠିଛି କବିତାର ଭାବ ପ୍ରବଣତା ଭିତରେ । ସମସ୍ତ ଆବେଗ, ଅନୁଭବ ଓ ଆତ୍ମ ଚିନ୍ତାଧାରାକୁ ପ୍ରଭାବଶାଳୀ ଭାବରେ କବିତାରେ ସ୍ଥାନ ଦିଆଗଲା । କବିତା ପାଲଟି ଯାଇଛି ସୃଜନଶୀଳ ସାହିତ୍ୟର ପ୍ରଥମ ବିଭାଗ । ବୋଧହୁଏ କବିତାର ମହତ୍ତ୍ୱ ଓ ଐତିହ୍ୟ ଦୃଷ୍ଟିରୁ ଯେ କୌଣସି ସାହିତ୍ୟ ସୃଷ୍ଟିକୁ କାବ୍ୟ ନାମରେ ନାମିତ କରାଯାଉଥିଲା । ସେଇଥିପାଇଁ ନାଟକ, ଉପନ୍ୟାସକୁ ମଧ୍ୟ କାବ୍ୟ ଆଖ୍ୟା ଗ୍ରହଣ କରିବାକୁ ପଡ଼ୁଥିଲା । କିନ୍ତୁ ଲକ୍ଷ୍ୟ କରିବାର କଥା ଏହି କାବ୍ୟ ଓ ନାଟକରେ ଯେଉଁଠାରେ ଶବ୍ଦ ଅଲଙ୍କାର, ଅର୍ଥ ଅଲଙ୍କାର କିମ୍ବା ତତ୍ତ୍ୱପୂର୍ଣ୍ଣ ଉପସ୍ଥାପନ କରି ପ୍ରକାଶ କରୁଥିଲା, ତାହାକୁ ପ୍ରବନ୍ଧ ଆଖ୍ୟା ଦିଆଯାଉଥିଲା । ପ୍ରବନ୍ଧ ଶବ୍ଦର ପ୍ରାଚୀନ ପ୍ରୟୋଗ ଯୁକ୍ତିନିଷ୍ଠତା, ଭାବଗର୍ଭକ ଓ ତତ୍ତ୍ୱପୂର୍ଣ୍ଣ ବର୍ଣ୍ଣନା ବା କାବ୍ୟ ଅଂଶକୁ ପ୍ରକାଶ କରୁଥିଲା । ଆମର ପ୍ରାଚୀନ ସାହିତ୍ୟରେ ପ୍ରବନ୍ଧକୁ ଏପରି ଅର୍ଥରେ ଗ୍ରହଣ କରାଯାଇଛି । ବିଦଗ୍ଧ ଚିନ୍ତାମଣି କାବ୍ୟରେ ଅଭିମନ୍ୟୁ ନିଜ କାବ୍ୟ ସପକ୍ଷରେ ଯୁକ୍ତି ଦେଇ ତାହାକୁ 'ଯମକାଦି ଚିତ୍ରକାବ୍ୟ ପ୍ରବନ୍ଧ' ନାମରେ ନାମିତ କରିଛନ୍ତି । ଯଦୁମଣି ମହାପାତ୍ର ତାଙ୍କ ଯୁକ୍ତିନିଷ୍ଠ କାବ୍ୟର ନାମକରଣ କରିଛନ୍ତି 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' । ଭାଗବତକାର ଜଗନ୍ନାଥ ଦାସ ଭାଗବତରେ ପ୍ରବନ୍ଧର ସ୍ୱରୂପ ପ୍ରଦାନ କରି କହିଛନ୍ତି 'ଭାଷା ପ୍ରବନ୍ଧେ ଭାଗବତ, କହଇ ଦାସ ଜଗନ୍ନାଥ' । ଭାଷାକୁ ପ୍ରବନ୍ଧ କରି ଅର୍ଥାତ୍ ପ୍ରାସଙ୍ଗିକ କରି ଲାଳିତ୍ୟପୂର୍ଣ୍ଣ ଶୈଳୀରେ ପ୍ରକାଶ କରାଯାଇଛି । ପ୍ରବନ୍ଧରେ ଭାଷା ଓ ଶବ୍ଦର ସୁବିନ୍ୟାସକୁ ଏଠାରେ ପ୍ରକାଶ କରାଯାଇଛି । ପ୍ରବନ୍ଧକୁ ସାହିତ୍ୟର ସର୍ବାପେକ୍ଷା ମାର୍ଜିତ, ସୁସଜ୍ଜିତ ସାହିତ୍ୟ କଳା ଭାବରେ ଗ୍ରହଣ କରାଯିବ । ଏଥିରେ କଳ୍ପନା କମ୍ ଯୁକ୍ତି ବେଶୀ । ସାହିତ୍ୟର ଏହା ଏକ ଆଧୁନିକ କଳା । ବିଭିନ୍ନ ଭାଷାର ବିକାଶ ଓ ସମୃଦ୍ଧି ସହ ପ୍ରବନ୍ଧ ଆତ୍ମପ୍ରକାଶ କରିଛି ।

ପ୍ରବନ୍ଧ ଶବ୍ଦକୁ ବିଶ୍ଳେଷଣ କଲେ ଏହାର ଗଠନ କଳା ଓ ଗୁରୁତ୍ୱ ଉପରେ ଦୃଷ୍ଟି ନିବଦ୍ଧ ହୋଇଥାଏ । ପ୍ରବନ୍ଧକୁ ପ୍ରକୃଷ୍ଟ ବନ୍ଧନ ବୋଲି କୁହାଯାଇଥାଏ । ଉତ୍ପତ୍ତିଗତ ଅର୍ଥରେ ଏହାକୁ (ପ୍ର—ବନ୍ଧ+ଅ) ଭାବରେ ଗ୍ରହଣ କରାଯାଇଥାଏ । ଯାହାକୁ ପ୍ରକୃଷ୍ଟ ବନ୍ଧନ ଦ୍ୱାରା ପ୍ରକାଶ କରାଯାଇଥାଏ ତାହାକୁ ପ୍ରବନ୍ଧ ଭାବରେ ସ୍ୱୀକୃତ ଦିଆଯାଇଥାଏ । ପ୍ରକୃଷ୍ଟ ବନ୍ଧନ କହିଲେ ଉନ୍ନତ ଶବ୍ଦ ସଂରଚନା ଓ ଯୁକ୍ତିପୂର୍ଣ୍ଣ ବିଶ୍ଳେଷଣକୁ ବୁଝାଇଥାଏ । ପ୍ରବନ୍ଧ କବିତା ପରି ଭୁଗୁଳା ଓ ପ୍ରଗଲ୍ଭ ନୁହେଁ; ଏଥିରେ ସ୍ରଷ୍ଟାର ନିୟନ୍ତ୍ରଣ ଓ ଇଚ୍ଛାଶକ୍ତିର ପ୍ରକାଶ ଘଟିଥାଏ । ଓଡ଼ିଆ ପ୍ରବନ୍ଧ ଶବ୍ଦ ଇଂରାଜୀ Essayର ଶବ୍ଦର ଅନୁରୂପ । ପାଶ୍ଚାତ୍ୟ ସାହିତ୍ୟରେ Essayକୁ ବିଭିନ୍ନ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରାଯାଇଛି । ଆଲୋଚକ ଜନ୍‌ସନ୍ ଏ ବିଷୟରେ ନିଜର ମତାମତ ପ୍ରକାଶ କରି କହିଛନ୍ତି—"An essay is a loose sally of the mind, an irregular indigested piece, not a regular and orderly composition." ପ୍ରବନ୍ଧ ହେଉଛି ଏକ ଭୁଗୁଳା ମନର ଅନିୟମିତ ଅଭିବ୍ୟକ୍ତି । ପ୍ରବନ୍ଧ ଶବ୍ଦକୁ ବ୍ୟାଖ୍ୟା କରି The random House Dictionaryରେ ଏହାର ଅର୍ଥ କରାଯାଇଛି 'A short literary composition, on a particular them or subject usually in prose and generally analytic, speculative or interpretative.' ପ୍ରବନ୍ଧକୁ ଏକ ଚିନ୍ତାଶୀଳ ଗଦ୍ୟ ରଚନା ଓ ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ଭାବରେ ଗ୍ରହଣ କରା ଯାଇଛି । ପ୍ରବନ୍ଧର ମୁଖ୍ୟ କାର୍ଯ୍ୟ ହେଉଛି ବିଶ୍ଳେଷଣ କରିବା, ବିଶ୍ଳେଷଣ ମାଧ୍ୟମରେ ଗୋଟିଏ ସମସ୍ୟା ବା ଘଟଣାର ଏହା ନିକଟତର ହୋଇଥାଏ । ଯୁକ୍ତିପୂର୍ଣ୍ଣ ଓ ତଥ୍ୟ ମୂଳକ ଉପସ୍ଥାପନାରେ ଏହା ନିଜକୁ ସମୃଦ୍ଧ କରିଥାଏ । ପାଶ୍ଚାତ୍ୟ ପ୍ରବନ୍ଧ ସାହିତ୍ୟରେ ଏହାର ଯୁକ୍ତିପୂର୍ଣ୍ଣ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରାଯାଇଛି ।

Essay ଶବ୍ଦକୁ ବ୍ୟାଖ୍ୟା କରି M.H. Agraham ତାଙ୍କ 'A Glossary of literary terms' ଗ୍ରନ୍ଥରେ କହିଛନ୍ତି—'any breif composition in prose that undertakes to discuss a matter, express apoint of view or persuades us to accept thesis on any subject whatever.' ପ୍ରବନ୍ଧର ପ୍ରବୃତ୍ତି ବିଷୟରେ ଆଲୋଚନା କରି ପ୍ରାୟ ଆଲୋଚକ ଏହାର ଯୁକ୍ତିନିଷ୍ଠ ବିଚାର ଉପରେ ଗୁରୁତ୍ୱ ଦେଇଛନ୍ତି । ପ୍ରବନ୍ଧର ପ୍ରକୃଷ୍ଟ ପରିପାଟୀ ଓ ତତ୍ତ୍ୱପୂର୍ଣ୍ଣ ଆବେଦନ ସମାଲୋଚକମାନଙ୍କୁ ପ୍ରଭାବିତ କରିଛି । ପ୍ରବନ୍ଧ ସମ୍ପର୍କୀୟ ଆଲୋଚନାରେ Balonଙ୍କ ଉକ୍ତି ଗୁରୁତ୍ୱପୂର୍ଣ୍ଣ । Balon କହିଥିଲେ, "An essay is a thing which some

one does himself and the point of the essay is not the subject, for any subject will sleffice but the charm of the personality.'' ପ୍ରବନ୍ଧରେ କ'ଣ ପ୍ରକାଶ କରାଯିବ ବଡ଼କଥା ନୁହେଁ, ବଡ଼କଥା ହେଉଛି ପ୍ରାବନ୍ଧିକ କିପରି ଏହାକୁ ପ୍ରୟୋଗ କରିବ । ପ୍ରବନ୍ଧ ଏପରି ଏକ ସାହିତ୍ୟ ଯେଉଁଥିରେ ମୌଳିକ ସୃଜନର ଲକ୍ଷଣ ପ୍ରକାଶ ପାଇଥାଏ । ପ୍ରାବନ୍ଧିକ ବାହ୍ୟ ଆଡ଼ମ୍ବରକୁ ପରିତ୍ୟାଗ କରି ପ୍ରବନ୍ଧର କଳେବର ନିର୍ମାଣ କରିଥାଏ । ପ୍ରାବନ୍ଧିକ ବହୁ ଦୃଷ୍ଟିରୁ ବିଗ୍ଭର କରି ଏହାର କଳେବର ନିର୍ମାଣ କରିଥାଏ । ପ୍ରବନ୍ଧ ବାହ୍ୟ ରୂପରେ ନିରସ ଆବେଦନ ଓ ପ୍ରକାଶଭଙ୍ଗୀ ଗ୍ରହଣ କରିବା ଜଣା ପଡୁଥିଲେ ମଧ୍ୟ ଭିତରେ ଶବ୍ଦ ବ୍ରିହ୍ମ ସୃଷ୍ଟି କରିଥାଏ । ବିନ୍ଦୁ ମଧ୍ୟରେ ସିନ୍ଧୁ ଦର୍ଶନ ଦେବା ପ୍ରାବନ୍ଧିକର ଲକ୍ଷ୍ୟ । ପ୍ରବନ୍ଧର ସଂଜ୍ଞା ପ୍ରକାଶ କରି ଏହାକୁ ସାହିତ୍ୟର ଏକ ବଳିଷ୍ଠ ତାତ୍ତ୍ୱିକ ବିଭାଗରୂପେ ଗ୍ରହଣ କରାଯାଇ ପାରିବ ।

ପ୍ରବନ୍ଧର ସ୍ୱରୂପ ଅତି ସିଧାସାଧା । ଏହା ସ୍ରଷ୍ଟାର ଆତ୍ମମୁଖ୍ୟକୁ ପ୍ରକାଶ କରିବାରେ ତତ୍ପର ହୋଇଥାଏ । ପ୍ରାବନ୍ଧିକ ଏହାକୁ ରଚନା କରିବାକୁ ମନସ୍ଥ କରିବା ଅର୍ଥ ପ୍ରଥମେ ସେ ଏକ ଘଟଣା ଚୟନ କରିଥିବ, ସେହି ଘଟଣାକୁ ବିବିଧ ଦୃଷ୍ଟିକୋଣରୁ ଆଲୋଚନା କରି ବୈଜ୍ଞାନିକ ସିଦ୍ଧାନ୍ତ ଭିତରେ ପରିବେଷଣ କରି-ଥାଏ । ସିଧାସଳଖ ଆତ୍ମମୁଖ୍ୟ ପ୍ରକାଶ ପ୍ରବନ୍ଧର ବଡ଼କଥା । ଅନ୍ୟ କୌଣସି ସୃଜନଶୀଳ ସାହିତ୍ୟରେ ସ୍ରଷ୍ଟା ଏପରି ଅବାଧ ସୁଯୋଗ ପାଇ ନ ଥାଏ । ପ୍ରାବନ୍ଧିକ ବାହ୍ୟ ଆଡ଼ମ୍ବରକୁ ବାଦ ଦେଇ ଏହାକୁ ସୃଷ୍ଟି କରୁଥିଲେହେଁ ଏହାର କଳା ବିଭାଗ ଅକ୍ଷୁଣ୍ଣ ରହୁଏନାହିଁ ।

ପ୍ରବନ୍ଧ ଏକ ଗବେଷଣାତ୍ମକ କଳା । କଳ୍ପନା ବଳାସରୁ ପ୍ରବନ୍ଧ ସାହିତ୍ୟ ସୃଷ୍ଟି ହୁଏନାହିଁ । ପ୍ରାବନ୍ଧିକ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ନଜରରେ ରଖି ପ୍ରବନ୍ଧ ରଚନା କରିଥାଏ । ଗୋଟିଏ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ସେହି ଘଟଣାକୁ ପରୀକ୍ଷା କରିବା ବା ବିଶ୍ୱର ଅନ୍ୟ କୌଣସି ଘଟଣା ସହ ମିଶାଇ ତାହାର ଏକ ତୁଳନାତ୍ମକ ତଥ୍ୟ ପ୍ରଦାନ କରିବାକୁ ପ୍ରାବନ୍ଧିକ ଇଚ୍ଛା ପ୍ରକାଶ କରିଥାଏ । ଏହା ଏକ ଗବେଷଣାତ୍ମକ କଳା ହୋଇଥିବାରୁ ପ୍ରାବନ୍ଧିକର ଜ୍ଞାନ ଓ ପ୍ରତିଭା ଉପରେ ଏହା ପୂର୍ଣ୍ଣତଃ ନିର୍ଭର କରିଥାଏ ।

ପ୍ରବନ୍ଧ ଏକ ସ୍ୱୟଂସମ୍ପୂର୍ଣ୍ଣ କଳା । ପ୍ରାବନ୍ଧିକ ପ୍ରଥମେ ତା'ର ଚିନ୍ତାଧାରାକୁ କେତୋଟି ପ୍ଲଟ୍‌ରେ ବିଭକ୍ତ କରିଥାଏ । ବର୍ଣ୍ଣନା ଆରମ୍ଭ କରି ସେ କୌଣସି ଅଯଥା ଗୌରଚନ୍ଦ୍ରିକାକୁ ଗ୍ରହଣ କରେନାହିଁ । ପ୍ରଥମେ ନିଜର ଆତ୍ମମୁଖ୍ୟ ବିଷୟରେ

ସଚେତନ ସୂଚନା ପ୍ରଦାନ କରି ପରବର୍ତ୍ତୀ ପର୍ଯ୍ୟାୟରେ ଉକ୍ତ ବିଷୟକୁ ବିବିଧ ଦୃଷ୍ଟି-କୋଣରୁ ବ୍ୟାଖ୍ୟା କରିଥାଏ । ପ୍ରବନ୍ଧର ଉପସଂହାରରେ ପ୍ରାବନ୍ଧିକ ପ୍ରବନ୍ଧର ସମଗ୍ର ତତ୍ତ୍ୱକୁ ଚୁମ୍ବକରେ ପ୍ରକାଶ କରିଥାଏ । ଏଥିରେ ପ୍ରବନ୍ଧର ସାରକଥା ଓ ପ୍ରାବନ୍ଧିକର ଆଭିମୁଖ୍ୟ ପ୍ରତିଫଳିତ ହୋଇଥାଏ ।

## ପ୍ରବନ୍ଧର ଗଠନ କଳା

ପ୍ରବନ୍ଧର ଗଠନ କଳା କୌଣସି ସୃଜନ ପରି ସୂକ୍ଷ୍ମ କାରିଗରୀ କୌଶଳ ନୁହେଁ ବରଂ ଏକ ପ୍ରକୃଷ୍ଟ ସଙ୍ଗଠନ । ଭାଷା-ଭାବ ଶବ୍ଦକୁ ଉପଯୁକ୍ତ ମାର୍ଗରେ ଉପସ୍ଥାପନା କରିବା ପ୍ରବନ୍ଧ ପାଇଁ ବଡ଼କଥା । ପ୍ରବନ୍ଧକୁ ପ୍ରକୃଷ୍ଟ ରଚନା ବୋଲି କୁହାଯାଇ ଥାଏ । ତେଣୁ ପ୍ରାସଙ୍ଗିକ ଓ ତାତ୍ତ୍ୱିକ ବନ୍ଧନ ହିଁ ପ୍ରବନ୍ଧର ମୂଳ ଆଧାର । ପ୍ରବନ୍ଧର ଗଠନ ପାଇଁ ବିଷୟବସ୍ତୁ, ସଂକ୍ଷିପ୍ତ କଳେବର, ଏକତ୍ୱ, ସଠିକତା, ସମାନତା, ସାବଲୀଳତା, ଶୈଳୀ, ସଂରଚନ ପ୍ରକ୍ରିୟା ଆଦି ଆବଶ୍ୟକ ହୋଇଥାଏ ।

### (କ) ବିଷୟବସ୍ତୁ—

ବିଷୟବସ୍ତୁ ପ୍ରବନ୍ଧ ରଚନା ପାଇଁ ପ୍ରଥମ ଓ ପ୍ରଧାନ ଆବଶ୍ୟକତା । ଏକ ଦୃଢ଼ ଭିତ୍ତିଭୂମି ଉପରେ ପ୍ରାବନ୍ଧିକ ପ୍ରବନ୍ଧ ରଚନାର ପ୍ରୟାସ କରିଥାଏ । ବିଷୟବସ୍ତୁ ଦୃଷ୍ଟିରୁ ପ୍ରବନ୍ଧକୁ ବସ୍ତୁନିଷ୍ଠ ଓ ବ୍ୟକ୍ତିନିଷ୍ଠ ଏହିପରି ଦୁଇଭାଗରେ ବିଭକ୍ତ କରାଯାଇ ଥାଏ । ପ୍ରାବନ୍ଧିକ ତା' ଇଚ୍ଛାନୁଯାୟୀ ଏକ ବିଷୟ ଗ୍ରହଣ କରିଥାଏ । କୌଣସି ବିଷୟ ଚୟନ ସମୟରେ ସେ ତା'ର ଅତୀତ ଓ ସାମ୍ପ୍ରତିକ ଦିଗ ବିଷୟରେ ସଚେତନ ହୋଇଥାଏ ।

### (ଖ) ସଂକ୍ଷିପ୍ତ କଳେବର—

ସଂକ୍ଷିପ୍ତ କଳେବର ପ୍ରବନ୍ଧ ନିର୍ମାଣ ପାଇଁ ନିହାତି ଜରୁରୀ । ପ୍ରବନ୍ଧ ଉପନ୍ୟାସ କି ନାଟକ ନୁହେଁ । ଗୋଟିଏ ଛୋଟିଆ ଘଟଣାକୁ ଏଥିରେ ବ୍ୟବହାର କରାଯାଇ ଥାଏ । ଏଥିରେ ଅନାବଶ୍ୟକ ବର୍ଣ୍ଣନା, ଅବାଞ୍ଛିତ ଭାଷା ପ୍ରୟୋଗ କରାଯାଉ ନ ଥିବାରୁ ଏହା ସଂକ୍ଷିପ୍ତରେ ସୁନ୍ଦର ଦିଶିଥାଏ । ପ୍ରବନ୍ଧ ଦୀର୍ଘ ହେଲେ ଏହାର ପ୍ରାସଙ୍ଗିକତା ନଷ୍ଟ ହୋଇଥାଏ । ପ୍ରାବନ୍ଧିକ ପ୍ରବନ୍ଧ ରଚନା ସମୟରେ ସଂକ୍ଷିପ୍ତ ପ୍ରତି ଦୃଷ୍ଟି ଦେଇ ଥାଆନ୍ତି ।

### (ଗ) ଏକତ୍ୱ—

ଏକତ୍ୱ ରକ୍ଷା ନ ହେଲେ ପ୍ରବନ୍ଧର ମହତ୍ତ୍ୱ ପ୍ରତିଷ୍ଠା ହୋଇପାରେ ନାହିଁ । ବର୍ଣ୍ଣନାରେ, ଭାଷା ପ୍ରୟୋଗରେ ସର୍ବୋପରି ଘଟଣାର ପ୍ରାସଙ୍ଗିକତାରେ ପ୍ରାବନ୍ଧିକ

ଏକତ୍ୱ ପ୍ରତିଷ୍ଠା କରିଥାଏ । ଘଟଣାକୁ ଆଗେଇ ନେବାପାଇଁ ସେ ଅନାବଶ୍ୟକ ବର୍ଣ୍ଣନାକୁ ବାଦ ଦେଇଥାଏ । ପ୍ରାବନ୍ଧିକ ଅନେକ ସମୟରେ ଆଲୋଚ୍ୟ ଘଟଣାସହ ଅନ୍ୟାନ୍ୟ ଘଟଣାର ତୁଳନାତ୍ମକ ଅଧ୍ୟୟନ କରିଥାଏ । ଏପରି ବର୍ଣ୍ଣନାରେ ଯେପରି ଚିନ୍ତାଧାରା ବାଧାପ୍ରାପ୍ତ ନ ହୁଅନ୍ତି ଏବଂ ମୂଳ ଘଟଣା ସହ ଚିନ୍ତାଧାରାର ଏକତ୍ୱ ପ୍ରତିଷ୍ଠା ହୁଏ ସେଥିପ୍ରତି ପ୍ରାବନ୍ଧିକ ଅଧିକ ପ୍ରଯତ୍ନ କରି ଥାଆନ୍ତି । ଏକତ୍ୱ ପ୍ରବନ୍ଧ ରଚନା ପାଇଁ ଗୁରୁତ୍ୱପୂର୍ଣ୍ଣ । ଏକତ୍ୱ ବିହୀନ ପ୍ରବନ୍ଧ ନିଜର ମୌଳିକତା ଓ କଳାଗତ ସାଫଲ୍ୟ ବଜାୟ ରଖିପାରେ ନାହିଁ ।

## (ଘ) ସଠିକତା —

ପ୍ରାବନ୍ଧିକ ପ୍ରବନ୍ଧରେ ଅନେକ ତଥ୍ୟ ଓ ଅଜ୍ଞାତ ଜ୍ଞାନର ସୂଚନା ଦେଇଥାଆନ୍ତି । ବିଶେଷ କରି ଐତିହାସିକ ପ୍ରବନ୍ଧମାନଙ୍କରେ ପ୍ରାବନ୍ଧିକ ଅତୀତର ଶିଳାଲେଖ, ତାମ୍ରପଟ୍ଟ, ଅନୁଶାସନ ଓ ତାଳପତ୍ର ପୋଥିରୁ ଅନେକ ତଥ୍ୟ ଉଦ୍ଧାର କରି ପ୍ରବନ୍ଧ ରଚନା କରିଥାଆନ୍ତି । ଏସବୁ ପ୍ରବନ୍ଧ ଅନାବିଷ୍କୃତ ଜ୍ଞାନ ଉପରେ ନିର୍ଭର କରିଥାଏ । ସାଧାରଣରେ ସତ୍ୟ ପ୍ରଚାର କରିବା ପାଇଁ ପ୍ରାବନ୍ଧିକ ଯେଉଁ ପ୍ରୟାସ କରିଥାଏ, ତାହା ଯୁକ୍ତିଯୁକ୍ତ ଓ ସଠିକ ହେବା ଆବଶ୍ୟକ । ଅନେକ ସମୟରେ ଭ୍ରମାତ୍ମକ ତଥ୍ୟ ପ୍ରବନ୍ଧର ଆଭିମୁଖ୍ୟକୁ ନଷ୍ଟ କରିଥାଏ । ପ୍ରାବନ୍ଧିକ ବର୍ଣ୍ଣିତ ବିଷୟକୁ ନିଜର ଅବବୋଧରେ ଆତ୍ମନିଧାନ କରି ସାରିବା ପରେ ତାକୁ ପ୍ରକାଶ କରିବା ଉଚିତ । ସଠିକ ତଥ୍ୟ ଦେବା ସତ୍ ପ୍ରାବନ୍ଧିକର ଭୂଷଣ ଓ ପ୍ରତିଭାର ପରିଚାୟକ । ପ୍ରବନ୍ଧ ରଚନା ସମୟରେ ପ୍ରାବନ୍ଧିକ ଏ ଦିଗରେ ଦୃଷ୍ଟିଦେବା ବାଞ୍ଛନୀୟ ।

## (ଙ) ସମାନତା —

ପ୍ରବନ୍ଧର ପ୍ରସ୍ତୋଷବିଧି ଉପରେ ନିୟନ୍ତ୍ରଣ ଜାରି କରିବା ପ୍ରାବନ୍ଧିକର କର୍ତ୍ତବ୍ୟ । ଯଦି ବର୍ଣ୍ଣିତ କୌଣସି ଘଟଣା ଅନିୟନ୍ତ୍ରିତ ହୋଇଯାଏ, ତା'ହେଲେ ପ୍ରବନ୍ଧର ଗୁରୁତ୍ୱ ହ୍ରାସ ପାଇଥାଏ । ପ୍ରାବନ୍ଧିକ ସମାନ ଭାବରେ ଏହାର ସମସ୍ତ ବିଭାଗ ଗୁଡ଼ିକୁ ପରିବେଷଣ କରିଥାଏ । ସଂକ୍ଷିପ୍ତ ପରିସର ଭିତରେ ଶବ୍ଦ ଆଡ଼ମ୍ବର ବ୍ୟତିରେକେ ପ୍ରବନ୍ଧ ପରିବେଷିତ ହୋଇଥାଏ ।

## (ଚ) ସାବଲୀଳତା —

ପ୍ରବନ୍ଧ ଏକ ଯୁକ୍ତିନିଷ୍ଠ କଳା ହୋଇପାରେ; କିନ୍ତୁ ଏହାର ଅନ୍ତର ଭିତରେ ଏକ ସାବଲୀଳ କଳା ପ୍ରବାହ, ଆବେଗ ଓ ସୌନ୍ଦର୍ଯ୍ୟ ଦେଖିବାକୁ ମିଳେ । କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ଭିତରେ ଓ ମାପଚୁପ ଶବ୍ଦକୁ ନେଇ ପ୍ରବନ୍ଧର ସୌନ୍ଦର୍ଯ୍ୟ ପ୍ରକାଶିତ ହୋଇଥାଏ । ପ୍ରବନ୍ଧ ପ୍ରାବନ୍ଧିକର ପରିସର ଭିତରୁ ଅନିୟନ୍ତ୍ରିତ ହୋଇଗଲେ

ଏହାର ସାବଲୀଳ ପ୍ରବାହ ଧାରା ବାଧାପ୍ରାପ୍ତ ହୋଇଥାଏ । ସାବଲୀଳତା ସୌନ୍ଦର୍ଯ୍ୟ ଭିତରେ ରସଚେତନା ସୃଷ୍ଟି କରିଥାଏ ।

## (ଛ) ଶୈଳୀ—

ଶୈଳୀକୁ ନେଇ ସାହିତ୍ୟର ଶ୍ରୀବୃଦ୍ଧି ହୋଇଥାଏ । ଦକ୍ଷ ଓ ପ୍ରତିଭାବାନ୍ ସ୍ରଷ୍ଟାମାନେ ଉନ୍ନତ ଶୈଳୀର ପରିଚୟ ଦେଇଥାଆନ୍ତି । ଯେ କୌଣସି ବିଷୟକୁ ମନୋଜ୍ଞ ଭାବରେ ଉପସ୍ଥାପନା କରାଗଲେ ତାହା ସୁନ୍ଦର ଦିଶିଥାଏ । ପ୍ରବନ୍ଧରେ ପ୍ରାବନ୍ଧିକ ସ୍ୱତନ୍ତ୍ର ଶୈଳୀ ଗ୍ରହଣ କରିଥାଏ । ବସ୍ତୁତଃ ପ୍ରବନ୍ଧ ରଚନା କରିବା ପାଇଁ ସେପରି କୌଣସି ଧରାବନ୍ଧା ନିୟମ ନାହିଁ । ବିଭିନ୍ନ ପ୍ରାବନ୍ଧିକମାନେ ଭିନ୍ନ ଭିନ୍ନ ଶୈଳୀର ପରିଚୟ ଦେଇ ପ୍ରବନ୍ଧ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । Aldous Huxley ପ୍ରାବନ୍ଧିକର ଶୈଳୀ ସମ୍ପର୍କରେ କହିଛନ୍ତି—

"To be an essayist a writer must have one sift style. To have a style, he must be a character and to be a character he must have wisdom."

ପ୍ରାବନ୍ଧିକ ପ୍ରବନ୍ଧରେ ଏକ ସ୍ୱକୀୟ ଶୈଳୀ ଗ୍ରହଣ କରି ନିଜ ଚିନ୍ତା ଚେତନାକୁ ପ୍ରକାଶ କରିଥାଏ । ଉପଯୁକ୍ତ ପରିବେଷଣ ପ୍ରବନ୍ଧକୁ ଯଥାର୍ଥ ପ୍ରଶସ୍ତି ପ୍ରଦାନ କରିଥାଏ ।

## (ଜ) ସଂରଚନ ପ୍ରକ୍ରିୟା—

ପ୍ରବନ୍ଧକୁ ସଜାଇ ପ୍ରକାଶ କରିବା ପ୍ରାବନ୍ଧିକ ପାଇଁ ସବୁଠାରୁ ଏକ କଷ୍ଟସାଧ୍ୟ କାର୍ଯ୍ୟ । ବର୍ଣ୍ଣନା ଦୃଷ୍ଟିରୁ ଏବଂ ପ୍ରାସଙ୍ଗିକତା ଦୃଷ୍ଟିରୁ ଆଖ୍ୟାନ ଭାଗକୁ କିପରି ପ୍ରକାଶ କରିବେ ଏହା ପ୍ରାବନ୍ଧିକର ସୃଷ୍ଟି କର୍ମ ଉପରେ ନିର୍ଭର କରିଥାଏ । ସାଧାରଣ ସଂରଚନାରେ ପ୍ରବନ୍ଧ ତିନୋଟି ପର୍ଯ୍ୟାୟ ଦେଇ ଆତ୍ମପ୍ରକାଶ କରିଥାଏ । ପ୍ରଥମତଃ ପ୍ରାବନ୍ଧିକ ଆଖ୍ୟାନ ଭାଗକୁ ଉପସ୍ଥାପନ କରି ଥାଆନ୍ତି, ଦ୍ୱିତୀୟତଃ ପ୍ରବନ୍ଧର ଗତି ପଥରେ ବିଭିନ୍ନ ଯୁକ୍ତି ମାଧ୍ୟମରେ ବଳିଷ୍ଠ ଭାବରେ ନିଜର ମତ ପରିବେଷଣ କରି ଥାଆନ୍ତି, ତୃତୀୟତଃ ଉପସଂହାରରେ ସ୍ରଷ୍ଟା ପ୍ରବନ୍ଧ ସମ୍ପର୍କୀୟ ନିଜସ୍ୱ ଅଭିବ୍ୟକ୍ତି ପ୍ରକାଶ କରିଥାଏ । ଅନେକ ସମୟରେ ଏପରି ସଂରଚନାର ବ୍ୟତିକ୍ରମ ଲକ୍ଷ୍ୟ କରାଗଲେ ମଧ୍ୟ ପ୍ରାଚୀନ କାଳରୁ ଆଜିପର୍ଯ୍ୟନ୍ତ ଅନେକ ପ୍ରାବନ୍ଧିକ ଏହି ଶୈଳୀଟିକୁ ଗ୍ରହଣ କରିଛନ୍ତି । ଉପଯୁକ୍ତ ସଂରଚନା ପ୍ରବନ୍ଧର ମହତ୍ତ୍ୱ ବୃଦ୍ଧି କରିଥାଏ ।

ପ୍ରବନ୍ଧ ଗଠନ ପାଇଁ ବିଭିନ୍ନ ବୈଷୟିକ ଦିଗଗୁଡ଼ିକୁ ତର୍ଜମା କରି ପ୍ରାବନ୍ଧିକ ନିଜର ଆଭିମୁଖ୍ୟକୁ ସାବଲୀଳ ଭଙ୍ଗୀରେ ପରିବେଷଣ କରିଥାଏ । ପ୍ରବନ୍ଧରେ କେବଳ ଶବ୍ଦରେ ପ୍ରସୂନ ପଣିଆ ପ୍ରକାଶ ପାଏନାହିଁ, ବରଂ ସଙ୍ଗୀତମୟ ନୂପୁର ନାଦ ମଧ୍ୟ ଦେଖାଯାଏ । ଉପଯୁକ୍ତ ଭାବେ ସୃଷ୍ଟି ହୋଇଥିବା ପ୍ରବଂଧରେ ପ୍ରକୃତ ରସ ଆସ୍ୱାଦନ କରାଯାଇ ଥାଏ । ପ୍ରବଂଧର ରଚନା କରିବା ଏକ ସହଜ ସାଧ କଥା ନୁହେଁ । କଳାତ୍ମକ ଦୃଷ୍ଟିରୁ ଏହାର ଗଠନ ଶୈଳୀ ଅତି ସୂକ୍ଷ୍ମ ଓ ବ୍ୟାୟାମଶୀଳ ।

## ପ୍ରବନ୍ଧର ପ୍ରକାର ଭେଦ

ପ୍ରକୃତି ଓ ପ୍ରୟୋଗ ଦୃଷ୍ଟିରୁ ପ୍ରବନ୍ଧକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଥାଏ । ମୁଖ୍ୟତଃ ଏହାର ବ୍ୟବହାରିକ ପଦ୍ଧତି ଓ ସଂରଚନା ଦୃଷ୍ଟିରୁ ଏହାକୁ ବସ୍ତୁନିଷ୍ଠ ଓ ବ୍ୟକ୍ତିନିଷ୍ଠ ନାମରେ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ପାଶ୍ଚାତ୍ୟ ସାହିତ୍ୟରେ ପ୍ରବଂଧକୁ civil ଓ morale ନାମରେ ଦୁଇ ଭାଗରେ Balon ବିଭକ୍ତ କରିଥିଲେ । ପ୍ରଥମ ବିଭାଗରେ ଶାସନ ନୀତି ଓ ତନ୍ତ୍ର ସମ୍ପର୍କୀୟ ବିଚାରଧାରା ଆତ୍ମପ୍ରକାଶ କରିଥିବାବେଳେ ଦ୍ୱିତୀୟ ପ୍ରକାର ପ୍ରବଂଧରେ ସାମାଜିକ ସମସ୍ୟା ଓ ବ୍ୟକ୍ତିସମସ୍ୟା ଅଧିକ ଭାବରେ ଆତ୍ମପ୍ରକାଶ କରିଛି । ଯେ କୌଣସି ଭାଷା ସାହିତ୍ୟରେ ପ୍ରବଂଧ ଏକ ବ୍ୟାପକ ପରିସର ଭିତରେ ଆତ୍ମପ୍ରକାଶ କରିଥାଏ । ଓଡ଼ିଆ ଭାଷାରେ ବିଭିନ୍ନ ପ୍ରବୃତ୍ତିର ପ୍ରବଂଧ ଦେଖାଦେଇ ଥାଏ । ଏହି ପବଂଧଗୁଡ଼ିକୁ ବସ୍ତୁନିଷ୍ଠ ଓ ବ୍ୟକ୍ତିନିଷ୍ଠ ଭେଦରେ ଆଲୋଚନା କରାଯାଇ ପାରିବ ।

### ବସ୍ତୁନିଷ୍ଠ ପ୍ରବନ୍ଧ ବା ତନ୍ମୟ ପ୍ରବନ୍ଧ—

ବସ୍ତୁନିଷ୍ଠ ପ୍ରବଂଧରେ ପ୍ରାବଂଧିକ ବର୍ଣ୍ଣିତ ବିଷୟ ଉପରେ ଗୁରୁତ୍ୱ ପ୍ରଦାନ କରିଥାଏ । ଏଥିରେ ସ୍ରଷ୍ଟାର କଳ୍ପନା ବିଳାସ, କାବ୍ୟ ଆଡ଼ମ୍ବର ଓ ଅଯଥା ହସ୍ତକ୍ଷେପକୁ ଗ୍ରହଣ କରାଯାଇ ନ ଥାଏ । ବସ୍ତୁନିଷ୍ଠ ପ୍ରବଂଧ ଘଟଣାର ଗୁରୁତ୍ୱ ଦୃଷ୍ଟିରୁ ପ୍ରବହମାନ ଗତିରେ ସିଧାସଳଖ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଉପନୀତ ହୋଇଥାଏ । ପ୍ରାବଂଧିକର ଅନୁଶୀଳନ, ତତ୍ତ୍ୱ ଓ ଶାସ୍ତ୍ରଜ୍ଞାନ ଏଥିରେ ପ୍ରକାଶ ପାଇଥାଏ । ପ୍ରାବଂଧିକ ଯେଉଁ ବିଷୟ ଆଲୋଚନା କରିବାକୁ ଚାହୁଁଥାଏ, ସେହି ବିଷୟ ସହ ଅନ୍ୟାନ୍ୟ ଉପଯୋଗୀ ତଥ୍ୟକୁ ତୁଳନାତ୍ମକ ଭାବରେ ପରିବେଷଣ କରିଥାଏ । ବସ୍ତୁନିଷ୍ଠ ପ୍ରବଂଧ ଯୁକ୍ତିଶୀଳ । ମଣିଷର ଚିନ୍ତାରାଜ୍ୟକୁ ଏହା କ୍ରମେ ସଙ୍କୁଚିତ ହୋଇଯାଏ । ବ୍ୟକ୍ତିନିଷ୍ଠ ପ୍ରବଂଧରେ ଯେପରି ପ୍ରାବନ୍ଧିକ ନିଜ କଥା କହିବାର ଅବାଧ ସୁଯୋଗ ଲାଭ

କରିଥାଏ ଏଥିରେ ସେପରି ଅନୁଭବ ନ ଥାଏ । ପ୍ରାବନ୍ଧିକ ପ୍ରଥମେ ଏପରି ପ୍ରବନ୍ଧ ରଚନା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ଏହାର ଏକ ନକ୍ସା ଅଙ୍କନ କରି ଏହାକୁ ପୂର୍ଣ୍ଣାଙ୍ଗ ରୂପ ଦେଇଥାଏ । ବସ୍ତୁନିଷ୍ଠ ପ୍ରବନ୍ଧ ବ୍ୟକ୍ତିର ଊର୍ଦ୍ଧ୍ୱରେ ରହି ମଣିଷର ଚିନ୍ତାରାଜ୍ୟକୁ ପ୍ରଭାବିତ କରିଥାଏ ।

## ବ୍ୟକ୍ତିନିଷ୍ଠ ବା ମନ୍ମୟ ପ୍ରବନ୍ଧ—

ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ପ୍ରାବନ୍ଧିକ ନିଜକୁ ପୂର୍ଣ୍ଣଭାବରେ ପ୍ରୟୋଗ କରିଥାଏ । ପ୍ରାବନ୍ଧିକର ପ୍ରତିଭା ଓ ବ୍ୟକ୍ତିତ୍ୱ ଉପରେ ଏହା ନିର୍ଭର କରିଥାଏ । ମନ୍ମୟ ପ୍ରବନ୍ଧ ପ୍ରାବନ୍ଧିକର ମନସ୍ତତ୍ତ୍ୱ, ସୃଜନଶୀଳତା ଓ ବର୍ଣ୍ଣନା କଳାସବୁ ପୁଞ୍ଜି କରି ପ୍ରକାଶିତ ହୋଇଥାଏ । ପ୍ରାବନ୍ଧିକ ଯେଉଁ ବିଷୟରେ ନିଜର ମତ ପ୍ରକାଶ କରିବାକୁ ଚାହୁଁଥାଏ ସେହି ବିଷୟକୁ ସେ ବିଭିନ୍ନ ଭଙ୍ଗୀରେ ପରିବେଷଣ କରିଥାଏ । ପାଠକ ମନରେ ରସଭାବ ଉତ୍ପନ୍ନ ପାଇଁ ପ୍ରାବନ୍ଧିକ ପୂର୍ଣ୍ଣ ପ୍ରୟାସ କରିଥାଏ । ଏଥିରେ ତତ୍ତ୍ୱଜ୍ଞାନ ଅପେକ୍ଷା ବର୍ଣ୍ଣନା କଳାର, ପାଣ୍ଡିତ୍ୟ ଅପେକ୍ଷା ଧନାଳାପ ଅଧିକ ଭାବରେ ପ୍ରକାଶ ପାଉଥିବାରୁ ପାଠକ ଏଥିରୁ ପ୍ରକୃତ ରସ ଆସ୍ୱାଦନ କରିଥାଏ । ପ୍ରତିଭାଧର ସ୍ରଷ୍ଟା ମାନେ ମନ୍ମୟ ପ୍ରବନ୍ଧରେ ବିଭିନ୍ନ ରୁଚିର ପ୍ରବନ୍ଧ ସୃଷ୍ଟି କରିଥାଆନ୍ତି । ହାସ୍ୟରସ, ଭ୍ରମଣ ବୃତ୍ତାନ୍ତ ଓ କୌଣସି ମୌଳିକ ପ୍ରାବନ୍ଧିକ ମନୋଜ୍ଞ ଶୈଳୀରେ ପରିବେଷଣ କରିଥାଆନ୍ତି । ବସ୍ତୁନିଷ୍ଠ ପ୍ରବନ୍ଧ ମଣିଷର ଚିନ୍ତାଶକ୍ତି ଉପରେ ସିଧାସଳଖ ପ୍ରଭାବ ପକାଉଥିଲାବେଳେ ବ୍ୟକ୍ତିନିଷ୍ଠ ପ୍ରବନ୍ଧ ମଣିଷର ମନ ଉପରେ ଆଲୋକପାତ କରିଥାଏ । ଏହା ପାଠକର ଆନନ୍ଦ ପାଇଁ ଖୁବ୍ ଶୀଘ୍ର ଉଦ୍ୟମ କରିଥାଏ । ବ୍ୟକ୍ତିନିଷ୍ଠ ପ୍ରବନ୍ଧ ଏପରି ଏକ ଉତ୍କୃଷ୍ଟ ବନ୍ଧନ ସାହିତ୍ୟର ଲଘୁ ପରିପ୍ରକାଶ । ବସ୍ତୁନିଷ୍ଠ ପ୍ରବନ୍ଧଠାରୁ ବ୍ୟକ୍ତିନିଷ୍ଠ ପ୍ରବନ୍ଧ ପାଠକର ନିକଟତର ଓ ମନଛୁଆଁ ।

ବିଷୟ ପ୍ରକରଣ ଦୃଷ୍ଟିରୁ ପ୍ରବନ୍ଧକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇ ଥାଏ । ବସ୍ତୁନିଷ୍ଠ ପ୍ରବନ୍ଧରେ ବିଭିନ୍ନ ପ୍ରକାର ଆଖ୍ୟାନ ଥାଏ । ବିଷୟବିନ୍ୟାସ ଓ ପ୍ରକରଣ ଦୃଷ୍ଟିରୁ ଏହାକୁ ନିମ୍ନମତେ ଆଲୋଚନା କରାଗଲା । (୧) ବର୍ଣ୍ଣନାମୂଳକ ପ୍ରବନ୍ଧ Descriptive, (୨) ଚିନ୍ତାମୂଳକ ପ୍ରବନ୍ଧ Reflective, (୩) ଐତିହାସିକ ପ୍ରବନ୍ଧ Historical, (୪) ଦାର୍ଶନିକ ପ୍ରବନ୍ଧ Philosophical, (୫) ବ୍ୟାଖ୍ୟାତ୍ମକ ପ୍ରବନ୍ଧ Narrative, (୬) ଆବେଗାତ୍ମକ ପ୍ରବନ୍ଧ Emotional, (୭) ତାର୍କିକ ପ୍ରବନ୍ଧ Argumentative, (୮) ସମ୍ବାଦଧର୍ମୀ Journalistic, (୯) ଯୁକ୍ତିମୂଳକ ପ୍ରବନ୍ଧ Quotational

(୧୦) ସାହିତ୍ୟ ପ୍ରବନ୍ଧ literary, (୧୧) ସାହିତ୍ୟ ସମାଲୋଚନା ପ୍ରବନ୍ଧ literary criticism । ଏତଦ୍‌ଭିନ୍ନ ଆମ ସାହିତ୍ୟରେ ପ୍ରକୃତାତ୍ମିକ, ଭ୍ରମଣମୂଳକ ଓ ଜୀବନୀ ମୂଳକ ଅନେକ ପ୍ରବନ୍ଧ ଦେଖାଯାଏ ।

## (୧) ବର୍ଣ୍ଣନା ମୂଳକ ପ୍ରବନ୍ଧ—

ପ୍ରାବନ୍ଧିକର ବର୍ଣ୍ଣନାବିଳାସକୁ ନେଇ ଏପ୍ରକାର ପ୍ରବନ୍ଧ ସୃଷ୍ଟି ହୋଇଥାଏ । ସ୍ରଷ୍ଟା ପ୍ରାକୃତିକ ବର୍ଣ୍ଣନା ଓ ସୃଷ୍ଟିର ବୈଚିତ୍ର୍ୟକୁ ଏଥିରେ ଗୁରୁତ୍ୱ ଦେଇଥାଆନ୍ତି । ଏପରି ପ୍ରବନ୍ଧ ଅନେକ ସମୟରେ ଈଶ୍ୱରଙ୍କ ସର୍ଜନାର ବ୍ୟାଖ୍ୟା କରିବାକୁ ଯାଇ ମଣିଷର ଭାବସ୍ତରକୁ ଏକ ଉର୍ଦ୍ଧ୍ୱକଳ ସ୍ତରକୁ ଉତ୍ତରଣ କରାଇ ଥାଏ । ସାଧାରଣ ଦେଖାଯାଉଥିବା ଦୃଶ୍ୟକୁ ଏଥିରେ ଗୁରୁତ୍ୱ ଆରୋପ କରାଯାଇ ବର୍ଣ୍ଣନା କରାଯାଇ ଥାଏ । ଅନେକ ସମୟରେ ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ପ୍ରାବନ୍ଧିକ କୌଣସି ଦାର୍ଶନିକ ସତ୍ୟକୁ ପ୍ରକାଶ କରିବାକୁ ଯାଇ ବର୍ଣ୍ଣନା ଉପରେ ଗୁରୁତ୍ୱ ଆରୋପ କରି ଥାଆନ୍ତି । ବର୍ଣ୍ଣନାତ୍ମକ ପ୍ରବନ୍ଧଗୁଡ଼ିକ ସାଧାରଣତଃ କାବ୍ୟିକ । ଏସବୁ ପ୍ରବନ୍ଧରେ ପ୍ରାବନ୍ଧିକଙ୍କ ମୌଳିକ ପ୍ରତିଭାର ପରିଚୟ ମିଳିଥାଏ । ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟ, ଶଶିଭୂଷଣ ରାୟ ଅନେକ ସାର୍ଥକ ବର୍ଣ୍ଣନାତ୍ମକ ପ୍ରବନ୍ଧ ସୃଷ୍ଟି କରିଛନ୍ତି ।

## (୨) ଚିନ୍ତାମୂଳକ ପ୍ରବନ୍ଧ—

ଚିନ୍ତାମୂଳକ ପ୍ରବନ୍ଧ ମଣିଷର ସୂକ୍ଷ୍ମ ମାନସିକ ସ୍ତରକୁ ଆଘାତ କରିଥାଏ । ଏଥିରେ ପ୍ରାବନ୍ଧିକ ଗୋଟିଏ ବସ୍ତୁକୁ ବା ଘଟଣାକୁ ବିଭିନ୍ନ ଦିଗରୁ ବ୍ୟାଖ୍ୟା କରିଥାଏ । ଚିନ୍ତାମୂଳକ ପ୍ରବନ୍ଧରେ ପ୍ରାବନ୍ଧିକ ଗୋଟିଏ ସମସ୍ୟାକୁ ଉପସ୍ଥାପିତ କରେ ଏବଂ ଉକ୍ତ ସମସ୍ୟାକୁ ବିବିଧ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଥାଏ । ଶେଷରେ ସେହି ସମସ୍ୟାର ସମାଧାନ ସ୍ୱରୂପ ସେ ଏକ ଦାୟିତ୍ୱପୂର୍ଣ୍ଣ ମାର୍ଗ ଦେଖାଇଥାଏ । ଚିନ୍ତାମୂଳକ ପ୍ରବନ୍ଧରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣକୁ ଗୁରୁତ୍ୱ ଦିଆଯାଇ ଥାଏ । ଓଡ଼ିଆ ସାହିତ୍ୟରେ ଉତ୍କଳର ମାୟାଧର ମାନସିଂ ଓ ବୈଦ୍ୟନାଥ ମିଶ୍ର ପ୍ରମୁଖ ଏ ଧରଣର ପ୍ରବନ୍ଧ ସୃଷ୍ଟି କରିଛନ୍ତି ।

## (୩) ଐତିହାସିକ ପ୍ରବନ୍ଧ—

ଐତିହାସିକ ପ୍ରବନ୍ଧମାନଙ୍କରେ ଇତିହାସକୁ ଅବଲମ୍ବନ କରି ପ୍ରବନ୍ଧ ରଚନା କରାଯାଇ ଥାଏ । ଗୋଟିଏ ଜାତିର ପ୍ରାଚୀନ ପରମ୍ପରା ଓ ସଂସ୍କୃତିର ପୁନଃ ଆଲୋଚନା ପାଇଁ ଅତୀତ ଉପରେ ନିର୍ଭର କରିବାକୁ ପଡ଼ିଥାଏ । କୌଣସି ରାଜାଙ୍କ ଶାସନ ବା ସେ ସମୟର ସାମାଜିକ ଗତିପଥ, ଗୋଟାଏ ଜାତିର ଉନ୍ନତି ଓ

ଅବକ୍ଷୟକୁ ଏଥିରେ ଗୁରୁତ୍ୱ ଦିଆଯାଇ ଥାଏ । ଓଡ଼ିଆ ସାହିତ୍ୟରେ ଅନେକ ପ୍ରବୀଣ ସ୍ରଷ୍ଟା ଏଥିରେ ହସ୍ତକ୍ଷେପ କରିଛନ୍ତି । ଉତ୍କଳର ଜଗନ୍ନାଥ ମଠନାୟକ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଭୁବନେଶ୍ୱର ବେହେରା, ହରେକୃଷ୍ଣ ମହତାବ, ରବି ରାୟ, ସତ୍ୟନାରାୟଣ ରାଜଗୁରୁ, ଶ୍ୟାମମୋହନ ଆଗ୍ରୀର, କେଦାରନାଥ ମହାପାତ୍ର ପ୍ରମୁଖ ପ୍ରବନ୍ଧ ସାହିତ୍ୟର ଏ ବିଭାଗକୁ ସମୃଦ୍ଧ କରିଛନ୍ତି ।

## (୪) ଦାର୍ଶନିକ ପ୍ରବନ୍ଧ—

ଦାର୍ଶନିକ ପ୍ରବନ୍ଧମାନଙ୍କରେ ପ୍ରାବନ୍ଧିକର ଅଭିବ୍ୟକ୍ତିକୁ ଗୁରୁତ୍ୱ ଦିଆଯାଇ ଥାଏ । ପ୍ରାବନ୍ଧିକ କୌଣସି ବିଷୟକୁ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରି ପରିଶେଷରେ ନିଜର ସିଦ୍ଧାନ୍ତ ପ୍ରକାଶ କରିଥାଏ । ଧର୍ମ, ଈଶ୍ୱର, ସଂସ୍କୃତି ଓ ସାମ୍ପ୍ରତିକ ଜୀବନ ଧାରଣ ବିଷୟରେ ଏଥିରେ ଆଲୋକପାତ କରାଯାଇ ଥାଏ । ବେଦବେଦାନ୍ତର ତତ୍ତ୍ୱକୁ ଏଥିରେ ବ୍ୟାଖ୍ୟାକରି ମଣିଷ ଜୀବନରେ ତା'ର ବହୁମୂଲ୍ୟ ପ୍ରୟୋଗ ସମ୍ପର୍କରେ ମଧ୍ୟ ପ୍ରାବନ୍ଧିକ ନିଜର ଦୃଷ୍ଟିଭଙ୍ଗୀକୁ ପ୍ରଚ୍ଛନ୍ନ କରିଥାଏ । ଓଡ଼ିଆ ସାହିତ୍ୟରେ ଦାର୍ଶନିକ ପ୍ରବନ୍ଧ ରଚନା କରିବାରେ ରତ୍ନାକର ପତି ଓ ମଧୁସୂଦନ ରାଓଙ୍କୁ ସ୍ମରଣ କରାଯାଇ ପାରିବ ।

## (୫) ବ୍ୟାଖ୍ୟାତ୍ମକ ପ୍ରବନ୍ଧ—

ବ୍ୟାଖ୍ୟାତ୍ମକ ପ୍ରବନ୍ଧରେ ବସ୍ତୁ ବିନ୍ୟାସକୁ ଗୁରୁତ୍ୱ ଦିଆଯାଇ ଥାଏ । ପ୍ରାବନ୍ଧିକ ଗୋଟିଏ ମୂଳବସ୍ତୁ ସହ ସମାନ୍ତରାଳ ଭାବରେ ମଧ୍ୟ ଅନ୍ୟ କେତେକ ଉଦାହରଣ ପ୍ରକାଶ କରିଥାଆନ୍ତି । ବ୍ୟାଖ୍ୟାତ୍ମକ ପ୍ରବନ୍ଧ ଅନେକାଂଶରେ ବର୍ଣ୍ଣନାତ୍ମକ ପ୍ରବନ୍ଧର ନିକଟବର୍ତ୍ତୀ ।

## (୬) ଆବେଗାତ୍ମକ ପ୍ରବନ୍ଧ—

ଆବେଗାତ୍ମକ ପ୍ରବନ୍ଧର ସଫଳତା ପ୍ରାବନ୍ଧିକର ପରିବେଷଣ ଶୈଳୀ ଓ ଆଖ୍ୟାନ ଭାଗ ଉପରେ ନିର୍ଭର କରିଥାଏ । ପ୍ରାବନ୍ଧିକ ଘଟଣାର ଗୁରୁତ୍ୱକୁ ଏକ କ୍ଲାଇମାକ୍ସ ସ୍ତର ପର୍ଯ୍ୟନ୍ତ ନେଇଯାଏ, ଯେଉଁସ୍ତରରେ ପାଠକ ମୂଳ ଘଟଣାକୁ ଭୁଲିଯାଇ ସମ୍ମୋହିତ ହୋଇ ଯାଇଥାଏ ଏବଂ ସ୍ୱାପରେ କ'ଣ ଘଟିବ ଅପେକ୍ଷା କରି ବସିଥାଏ । ଓଡ଼ିଆ ସାହିତ୍ୟରେ ଆବେଗାତ୍ମକ ପ୍ରବନ୍ଧର ସଂଖ୍ୟା ବହୁତ କମ୍ । କେତେକ ରମ୍ୟରଚନା, ଭ୍ରମଣ କାହାଣୀ ଓ ଐତିହାସିକ ପ୍ରବନ୍ଧମାନଙ୍କରେ ଆବେଗଧର୍ମୀତା ଦେଖାଯାଏ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ ଗୋବିନ୍ଦ ତ୍ରିପାଠୀଙ୍କ ଅନେକ ପ୍ରବନ୍ଧରେ ଆବେଗଧର୍ମୀତା ଦେଖାଯାଏ ।

## (୭) ତାତ୍ତ୍ୱିକ ପ୍ରବନ୍ଧ—

ପ୍ରାବନ୍ଧିକର ପାଣ୍ଡିତ୍ୟ ଓ ପାଠକର ବୋଧଶକ୍ତିକୁ ନେଇ ତାତ୍ତ୍ୱିକ ପ୍ରବନ୍ଧ ସୃଷ୍ଟି ହୋଇଥାଏ । ଏପରି ପ୍ରବନ୍ଧରେ ପ୍ରାବନ୍ଧିକ ନିର୍ଦ୍ଦିଷ୍ଟ ଭାବରେ ଗୋଟିଏ ସାର୍ବଜନୀନ ତତ୍ତ୍ୱ ଉପସ୍ଥାପନ ପାଇଁ ପ୍ରୟାସ କରିଥାଏ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଆଗ୍ରହ ନେଇ ଏ ପ୍ରବନ୍ଧ ରଚନା କରାଯାଉ ଥିବାରୁ ଏଥିରେ ଗୁରୁଗମ୍ଭୀର ପରିବେଶ ସୃଷ୍ଟି ହୋଇଥାଏ । ତାତ୍ତ୍ୱିକ ପ୍ରବନ୍ଧରେ ପ୍ରାବନ୍ଧିକ ପାଠକମାନଙ୍କ ପାଇଁ ଏକ ନୂତନ ଚେତନାର ପ୍ରକାଶ କରିଥାଏ । ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ତାତ୍ତ୍ୱିକ ପ୍ରବନ୍ଧ ରଚନାରେ ରତ୍ନାକର ପତି, ଶଶୀଭୂଷଣ ରାୟ ପ୍ରତିଷ୍ଠା ଅର୍ଜନ କରିଛନ୍ତି ।

## (୮) ସମ୍ବାଦଧର୍ମୀ ପ୍ରବନ୍ଧ—

ଏ ପ୍ରକାର ପ୍ରବନ୍ଧମାନଙ୍କରେ ଅନାଲୋଚିତ କୌଣସି ଘଟଣା ଉପରେ ତଥ୍ୟମୂଳକ ଆଲୋଚନା କରାଯାଇ ଥାଏ । ଏହାର ପରିବେଷଣ ଶୈଳୀ ସ୍ୱତନ୍ତ୍ର । ଅନେକ ଭ୍ରମଣ ବୃତ୍ତାନ୍ତରେ ସମ୍ବାଦଧର୍ମୀତା ଦେଖାଯାଏ । ପ୍ରାବନ୍ଧିକ ବିଭିନ୍ନ ତଥ୍ୟ, ମସିହା, ତାରିଖ ଓ ଐତିହାସିକ ଘଟଣାବଳୀର ସମନ୍ୱୟ ଏ ପ୍ରକାର ପ୍ରବନ୍ଧରେ କରିଥାଆନ୍ତି । ସମ୍ବାଦଧର୍ମୀ ପ୍ରବନ୍ଧରେ ବର୍ଣ୍ଣନା ଅପେକ୍ଷା ତଥ୍ୟ ପ୍ରୟୋଗ ଉପରେ ଗୁରୁତ୍ୱ ଦିଆଯାଇଥାଏ ।

## (୯) ଯୁକ୍ତିମୂଳକ ପ୍ରବନ୍ଧ –

ଗୋଟିଏ ଗଢ଼ିଆସୁଥିବା ଘଟଣା ବା ଘୋଷିତ ସତ୍ୟକୁ ଗ୍ରହଣ କରି ଅପର ପକ୍ଷରେ ଏକ ନୂତନ ଚିନ୍ତାଧାରା ଦ୍ୱାରା ସେହି ପ୍ରାଚୀନ ସତ୍ୟକୁ ବିଶ୍ଳେଷଣ କରି ଯୁକ୍ତିମୂଳକ ପ୍ରବନ୍ଧ ଆତ୍ମପ୍ରକାଶ କରିଥାଏ । ଅନେକ ସମୟରେ ସାମ୍ପ୍ରତିକତାକୁ ମଧ୍ୟ ପ୍ରାଚୀନ ମୂଲ୍ୟବୋଧ ସହ ସମୀକ୍ଷା କରି ପ୍ରାବନ୍ଧିକ କାହାଣୀକୁ ଆଗେଇ ନେଇ ଥାଆନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁ ଉପରେ ପ୍ରାବନ୍ଧିକ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋକପାତ କରିଥାଆନ୍ତି । ସମ୍ଭାବ୍ୟ ବିଭିନ୍ନ ଦିଗ ଉପରେ ଆଲୋଚନା କରି ଶ୍ରେଷ୍ଠ ସିଦ୍ଧାନ୍ତକୁ ପ୍ରାବନ୍ଧିକ ଶେଷରେ ଗ୍ରହଣ କରିଥାଏ । ଏପରି ପ୍ରବନ୍ଧରେ ପାଠକ ସିଧାସଳଖ ସାମିଲ ହୋଇଥାଏ । ପ୍ରାବନ୍ଧିକର ଚେତନା ତା' ମନରେ ଆଲୋଡ଼ନ ସୃଷ୍ଟି କରେ । ସେ ପ୍ରାବନ୍ଧିକର ବିଚାରଧାରାକୁ ଗ୍ରହଣ କରିପାରେ ବା ନ କରିପାରେ; କିନ୍ତୁ ପ୍ରାବନ୍ଧିକ ପ୍ରବନ୍ଧରେ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟକୁ ଗ୍ରହଣ କରିଥାଏ । ଓଡ଼ିଆ ସାହିତ୍ୟରେ ଅନେକ ସଫଳ ଯୁକ୍ତିମୂଳକ ପ୍ରବନ୍ଧ ଦେଖାଯାଏ । ନୀଳକଣ୍ଠ ଦାସ ଭାରତୀୟ ଜୀବନବୋଧ ଓ ସଂସ୍କୃତିକୁ ସମଗ୍ର ବିଶ୍ୱ ସଂସ୍କୃତି ସହ ତୁଳନା କରି ସାର୍ଥକ ଯୁକ୍ତିମୂଳକ ପ୍ରବନ୍ଧ ରଚନା କରିଛନ୍ତି ।

## (୧୦) ସାହିତ୍ୟିକ ପ୍ରବନ୍ଧ—

ସାହିତ୍ୟର ବିଭିନ୍ନ ବିଭାଗକୁ ନେଇ ପ୍ରବନ୍ଧ ରଚନା କରାଯାଇ ଥାଏ । ନାଟକ, ଗଳ୍ପ, ଉପନ୍ୟାସ ସମ୍ପର୍କରେ ଅନେକ ପ୍ରବନ୍ଧ ରଚନା କରାଯାଇ ଏମାନଙ୍କର ବହୁମୂଲ୍ୟ ବୈଶିଷ୍ଟ୍ୟ, ସୃଷ୍ଟି ଧର୍ମ, ଗଠନକଳା ଓ ଆନନ୍ଦବୋଧ ସମ୍ପର୍କରେ ଆଲୋକପାତ କରାଯାଇଛି । ସାହିତ୍ୟିକ ପ୍ରବନ୍ଧମାନଙ୍କରେ ସୃଜନଶୀଳତାକୁ ଗୁରୁତ୍ୱ ଦିଆଯାଇଥାଏ । ଏଥିରେ ବିଭିନ୍ନ ଅଳଙ୍କାର ଓ ଶବ୍ଦ ବୈଚିତ୍ର୍ୟ ଦେଖାଯାଏ । ସ୍ରଷ୍ଟା ନିଜର ମୌଳିକ ଅନୁଭବକୁ ଏଥିରେ ପ୍ରକାଶ କରି ଥାଆନ୍ତି ।

## (୧୧) ସାହିତ୍ୟ ସମାଲୋଚନା ପ୍ରବନ୍ଧ—

ଓଡ଼ିଆ ସାହିତ୍ୟ ବିଭିନ୍ନ ଦୃଷ୍ଟିକୋଣରୁ ସମୃଦ୍ଧ । ପ୍ରାଚୀନ ଚର୍ଯ୍ୟାପଦଠାରୁ ଆରମ୍ଭ କରି ସାଂପ୍ରତିକ କବିତା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ସୁଦୀର୍ଘ ଇତିହାସକୁ ଅନୁଧ୍ୟାନ କଲେ ଏହାର ଗୌରବଶାଳୀ ଅତୀତ ଓ ପ୍ରାଚୁର୍ଯ୍ୟମୟ ବର୍ତ୍ତମାନର ପରିଚୟ ମିଳିଥାଏ । ଯେ କୌଣସି ସୃଜନଶୀଳ ସାହିତ୍ୟର ଭବିଷ୍ୟତ ଓ ପରିଚୟ ଗଠନଶୀଳ ଓ ଗୁଣାତ୍ମକ ସମାଲୋଚନା ଉପରେ ନିର୍ଭର କରିଥାଏ । ଓଡ଼ିଆ ସାହିତ୍ୟରେ ବିଭିନ୍ନ ବିଭାଗରେ ଧୀଶକ୍ତି ସମ୍ପନ୍ନ ସ୍ରଷ୍ଟାମାନେ ସାହିତ୍ୟିକ ସମାଲୋଚନା ମାଧ୍ୟମରେ ଆମ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ପ୍ରାଚୀନ ସମାଲୋଚନାରେ ଅର୍ତ୍ତିବଲ୍ଲଭ ମହାନ୍ତି, ବଂଶୀଧର ମହାନ୍ତି, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଝଗେଶ୍ୱର ମହାପାତ୍ର, କୃଷ୍ଣ ଚରଣ ବେହେରା ପ୍ରମୁଖ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ମଧ୍ୟ ସାହିତ୍ୟ ବା କାବ୍ୟ ଯୁଗର ସାହିତ୍ୟ ସମାଲୋଚନାରେ ଗଙ୍ଗାଧର ବଳ, ସୁରେନ୍ଦ୍ର ନାୟକ, ଗୌରିକୁମାର ବ୍ରହ୍ମା, କୁଳମଣି ମହାପାତ୍ର ପ୍ରମୁଖ ଅଧିକ ସଫଳ ହୋଇଛନ୍ତି । ଆଧୁନିକ ସାହିତ୍ୟ ସମାଲୋଚନାରେ ନଟବର ସାମନ୍ତରାୟ, ନରେନ୍ଦ୍ରନାଥ ମିଶ୍ର, ପଠାଣୀ ପଟ୍ଟନାୟକ ପ୍ରମୁଖ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ଓଡ଼ିଆ ନାଟ୍ୟ ସାହିତ୍ୟ ସମାଲୋଚନାରେ ହେମନ୍ତ କୁମାର ଦାଶ, ରତ୍ନାକର ଚଇନି, ସଂଘମିତ୍ରା ମିଶ୍ର, ରମେଶ ପାଣିଗ୍ରାହୀ, କୃଷ୍ଣ ଚରଣ ବେହେରା, ନୀଳାଦ୍ରିଭୂଷଣ ହରିଚନ୍ଦନ ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ଓଡ଼ିଆ କଥା ସାହିତ୍ୟ ସମାଲୋଚନାରେ ଡକ୍ଟର ବୈଷ୍ଣବ ଚରଣ ସାମଲ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । ଆଧୁନିକ ଓଡ଼ିଆ କବିତା ସମାଲୋଚନାରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ, ଦାଶରଥି ଦାସ, ଇନ୍ଦୁ ମିଶ୍ର, ଅଶ୍ୱିନୀ କୁମାର ପଣ୍ଡା, ଅଭୟ ବାରିକ, ସୀତାକାନ୍ତ ମହାପାତ୍ର ପ୍ରମୁଖ ନିଜକୁ ପ୍ରତିଷ୍ଠିତ କରିଛନ୍ତି ।

ଓଡ଼ିଆ ଭାଷାତାତ୍ତ୍ୱିକ ସମାଲୋଚନାରେ ପ୍ରଫେସର ବାସୁଦେବ ସାହୁ, ବଂଶୀଧର ମହାନ୍ତି, ଗୋଲକ ବିହାରୀ ଧଳ, ଅପର୍ଣ୍ଣା ପ୍ରଧାନ ପ୍ରମୁଖ ନିଜର ବିପୁଳ

ପ୍ରତିଭାର ପରିଚୟ ଦେଇଛନ୍ତି । ଓଡ଼ିଆ ଲୋକ ସାହିତ୍ୟ ଅଧ୍ୟୟନରେ କୁଞ୍ଜବିହାରୀ ଦାଶ, ଚକ୍ରଧର ମହାପାତ୍ର, ବେଣୀମାଧବ ପାଢ଼ୀ, ପ୍ରସନ୍ନ କୁମାର ମିଶ୍ର, କୈଳାସ ପଟ୍ଟନାୟକ, ଶ୍ୟାମସୁନ୍ଦର ମହାପାତ୍ର, ମହେନ୍ଦ୍ର କୁମାର ମହାନ୍ତି, ଦିଲ୍ଲୀପ କୁମାର ସ୍ୱାଇଁ, ଚୌଧୁରୀ ଅଜୟ ପ୍ରଧାନ ପ୍ରମୁଖ ନିଜର ଗବେଷଣାମୁଖୀ ମନୋବୃତ୍ତିର ପରିଚୟ ଦେଇଛନ୍ତି । ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନାରେ ଡକ୍ଟର ବ୍ରଜମୋହନ ମହାନ୍ତି, ମହେଶ୍ୱର ମହାନ୍ତି ଓ ଜଗନ୍ନାଥ ମହାନ୍ତି ପ୍ରମୁଖ ଉକ୍ତ ବିଭାଗକୁ ସମୃଦ୍ଧ କରିଛନ୍ତି । ବର୍ତ୍ତମାନ ବିଭିନ୍ନ ପତ୍ର ପତ୍ରିକାରେ ଅନେକ ତରୁଣ ସମାଲୋଚକମାନେ ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ସାହିତ୍ୟ ସମାଲୋଚନା ବିଭାଗ ଅଧିକ ସମୃଦ୍ଧ ।

## (୧୨) ଭ୍ରମଣ କାହାଣୀ—

କୌଣସି ସ୍ଥାନକୁ ଭ୍ରମଣ ସମୟରେ ସେଠାକାର ଅନୁଭୂତି, କଳା, ସଂସ୍କୃତିକୁ ନେଇ ମନୋଜ୍ଞ ଉପସ୍ଥାପନ ଦ୍ୱାରା ଭ୍ରମଣ କାହାଣୀ ସୃଷ୍ଟି ହୋଇଥାଏ । ଭ୍ରମଣ କାହାଣୀରେ ପ୍ରବନ୍ଧ ପରି ଯୁକ୍ତିନିଷ୍ଠ ବର୍ଣ୍ଣନା ପ୍ରକାଶ ପାଇ ନ ଥାଏ, ବରଂ ଗୋଟିଏ ସ୍ଥାନ ଓ ପରିବେଶର ବର୍ଣ୍ଣନାକୁ ସମ୍ୟକ ଭାବରେ ଉପସ୍ଥାପନ କରାଯାଇଥାଏ । ଓଡ଼ିଆ ସାହିତ୍ୟରେ ଲଣ୍ଡନ ଚିଠି, ଆମେରିକା ଚିଠି, ପଶ୍ଚିମ ଯାତ୍ରୀ, ପେକିଂ ଡାଏରୀ ଗୋଟିଏ ଗୋଟିଏ ସଫଳ ଭ୍ରମଣ କାହାଣୀ ।

## (୧୩) ବିଜ୍ଞାନଭିତ୍ତିକ ପ୍ରବନ୍ଧ—

ବୈଜ୍ଞାନିକ ଉଦ୍‌ଭାବନ ବା ନୂତନ ତଥ୍ୟକୁ ନେଇ ବିଜ୍ଞାନଭିତ୍ତିକ ପ୍ରବନ୍ଧ ରଚନା କରାଯାଇଥାଏ । ଏପରି ପ୍ରବନ୍ଧରେ ନୂତନ ଆବିଷ୍କାର ଓ ଆଗାମୀ ଦିନର ବୈଜ୍ଞାନିକ ସାଫଲ୍ୟ ସମ୍ପର୍କରେ ସୂଚନା ଦିଆଯାଇଥାଏ । ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକ ପ୍ରବନ୍ଧ ଏତେ ସମୃଦ୍ଧ ନୁହେଁ ।

## (୧୪) ରାଜନୈତିକ ପ୍ରବନ୍ଧ—

ବିଭିନ୍ନ ରାଜନୈତିକ ଘଟଣାମାନଙ୍କୁ ନେଇ ରାଜନୈତିକ ପ୍ରବନ୍ଧ ଆତ୍ମପ୍ରକାଶ କରିଥାଏ । ରାଜନୈତିକ ପ୍ରବନ୍ଧରେ ଗୋଟିଏ ଦେଶର ଶାସନ ବ୍ୟବସ୍ଥା ଓ ଅନୁଶାସନ ବିଷୟରେ ଆଲୋଚନା କରାଯାଇଥାଏ । ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଅଧ୍ୟାପକ ବିଶ୍ୱରଞ୍ଜନ, ବିରେନ୍ଦ୍ର କୃଷ୍ଣ ଧଳ, ସଦାଶିବ ଦାଶ ପ୍ରମୁଖ ଅନେକ ସାର୍ଥକ ରାଜନୈତିକ ପ୍ରବନ୍ଧ ରଚନା କରିଛନ୍ତି ।

ପ୍ରବନ୍ଧର ପ୍ରବୃତ୍ତି ଦୃଷ୍ଟିରୁ ଏହାକୁ ଅନେକ ଭାଗରେ ବିଭକ୍ତ କରାଯାଇ ପାରିବ । ଏହାର ଗୋଟିଏ ବିଭାଗ ଅନ୍ୟ ବିଭାଗ ମଧ୍ୟରେ ପରିଲକ୍ଷିତ ହୋଇଥାଏ । ପ୍ରବନ୍ଧ ଏକ ନିର୍ଦ୍ଦିଷ୍ଟ ଓ ଆରୋପିତ କଳା ହୋଇଥିବାରୁ ଏଥିରେ ଅନେକ ବୈଚିତ୍ର୍ୟ ଦେଖିବାକୁ ମିଳିଥାଏ ।

## ପାଶ୍ଚାତ୍ୟ ପରିବେଶରେ ପ୍ରବନ୍ଧ----

ପ୍ରବନ୍ଧ ରଚନା ଯେ କୌଣସି ସାହିତ୍ୟର ଆଧୁନିକତମ କଳା । ୟୁରୋପରେ ରେନେଁସା ପରେ ପ୍ରବନ୍ଧ ରଚନାର ସୂତ୍ରପାତ ହୋଇଥିଲା । ଏ ସମୟରେ ଚିନ୍ତାଶୀଳ ସ୍ରଷ୍ଟାମାନେ ଚିନ୍ତା ରାଜ୍ୟରେ ଆଲୋଡ଼ନ ଆଣିବା ପାଇଁ ଉପଯୁକ୍ତ ଗଦ୍ୟ ରଚନାର ଆଶ୍ରୟ ନିଥିଁଥିଲେ । ଫରାସୀ ପ୍ରାବନ୍ଧିକ **montaigne** ଗ୍ରୀକ୍ ପ୍ରାବନ୍ଧିକ **plutrach** ରୋମୀୟ ପ୍ରାବନ୍ଧିକ **cicero** ପ୍ରବନ୍ଧ ରଚନା ପାଇଁ ପୂର୍ଣ୍ଣ ପ୍ରୟାସ ଆରମ୍ଭ କରିଥିଲେ । ପ୍ରାରମ୍ଭିକ ପଦକ୍ଷେପ ସ୍ୱରୂପ ପ୍ରାଚୀନ ଗଦ୍ୟ କୃତିମାନଙ୍କୁ ମାର୍ଜିତ ଭାବରେ ପୁନଃ ପ୍ରକାଶ କରାଗଲା । ଇଂରାଜୀ ସାହିତ୍ୟରେ ବେକନ (Bacon)ଙ୍କ ତତ୍ତ୍ୱାବଧାନରେ ପାଶ୍ଚାତ୍ୟ ପ୍ରବନ୍ଧରେ ବାସ୍ତବ ଉନ୍ନତି ସମ୍ଭବ ହେଲା । ନବଜାଗରଣ ପୃଷ୍ଠପଟ୍ଟରେ ବେକନ୍ ଅନେକ ଚିନ୍ତାଶୀଳ, ମନସ୍ତାତ୍ତ୍ୱିକ ପ୍ରବନ୍ଧ ରଚନା କଲେ । ଏହି ସମୟରେ ଅନ୍ୟାନ୍ୟ ଇଂରେଜ ପ୍ରାବନ୍ଧିକ ଗୋଲ୍ଡସ୍ମିଥ୍, ମାଥ୍ୟୁ ଆରନୋଲଡ୍, ଚେଷ୍ଟରଟନ୍ ଆଦି ପ୍ରାବନ୍ଧିକମାନେ ପ୍ରବନ୍ଧ ସାହିତ୍ୟକୁ ନୂତନ ଶକ୍ତି ପ୍ରଦାନ କଲେ । ପ୍ରବନ୍ଧ ମାଧ୍ୟମରେ ଏ ସମୟର ସ୍ରଷ୍ଟାମାନେ ମଣିଷର ଚୈତନ୍ୟ ସ୍ତରକୁ ଉନ୍ମୋଚନ କରୁଥିଲେ । ପରେ ପରେ ପାଶ୍ଚାତ୍ୟ ପ୍ରବନ୍ଧ ବିଭିନ୍ନ ଦୃଷ୍ଟିକୋଣରୁ ପରିପୁଷ୍ଟ ହୋଇ ବିଶ୍ୱର ବିଭିନ୍ନ ଭାଷାର ପ୍ରବନ୍ଧକୁ ପ୍ରଭାବିତ କଲା ।

## ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ସାହିତ୍ୟର ବିକାଶଧାରା

ପ୍ରବନ୍ଧ ସାହିତ୍ୟର ସବୁଠାରୁ ଆଧୁନିକତମ ବିଭାଗ । ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ବିକାଶ ପରେ ପ୍ରବନ୍ଧ ରଚନାର ସ୍ୱତନ୍ତ୍ର ମନୋଭୂମି ସୃଷ୍ଟି ହୋଇ ପାରିଛି । ଆମର ପ୍ରାଚୀନ ସାହିତ୍ୟରେ ପ୍ରବନ୍ଧ ରଚନାର କୌଣସି ପ୍ରୟାସ ଦେଖିବାକୁ ମିଳେନାହିଁ । ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ କରାଯାଇଥିବା ଆଜ୍ଞାପତ୍ର, ଦାନପତ୍ର, ଘୋଷଣାମାନଙ୍କରେ ଦୃଢ଼ ଗଦ୍ୟ ବନ୍ଧର ପ୍ରକାଶ ଘଟିଥିଲା । ପଞ୍ଚସଖା ସାହିତ୍ୟରେ ଗୀତା, ପୋଟଳମାନଙ୍କରେ ଗଦ୍ୟ ରଚନାର ପ୍ରୟାସ କରାଯାଇଛି । ବୌଦ୍ଧଧର୍ମ ଦର୍ଶନ, ପଞ୍ଚସଖା ଯୋଗସାଧନ, କାୟାମୁକ୍ତି ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଆଦି ଗଦ୍ୟ ମାଧ୍ୟମରେ ପ୍ରକାଶ କରିବାର ପ୍ରୟାସ ପଞ୍ଚସଖା ଯୁଗରୁ ଆରମ୍ଭ ହୋଇଛି । ଅଭିଲେଖ ଓ ଶିଳାଲେଖମାନଙ୍କରେ ଗଦ୍ୟ ରଚନାର ପ୍ରାରମ୍ଭିକ ପ୍ରୟାସ

ଆରମ୍ଭ ହୋଇଥିଲା । ଏହାପରେ ଏକ ଅସ୍ପଷ୍ଟ ପ୍ରୟାସକୁ ଷୋଡ଼ଶ ଶତକରେ ମାଦଳା ପାଞ୍ଜି ମାଧ୍ୟମରେ ପ୍ରକାଶ କରାଯାଇ ଥିଲା । ମାଦଳା ପାଞ୍ଜି ପ୍ରକାଶ ପରେ ଓଡ଼ିଆ ଭାଷାରେ ଗଦ୍ୟ ରଚନା ପରମ୍ପରା ସୃଷ୍ଟି ହୋଇଛି । ପରବର୍ତ୍ତୀ ସମୟରେ ନାରାୟଣ ନନ୍ଦ ଅବଧୂତ ସ୍ୱାମୀ 'ରୁଦ୍ର ସୁଧାନିଧି' ରଚନା କରିଛନ୍ତି । 'ସୋମନାଥ ବ୍ରତ' ଆଦି ଆଉ ଅନେକ ଗଦ୍ୟ ରଚନା ମଧ୍ୟ ଏ ସମୟରେ ସୃଷ୍ଟି ହୋଇଛି । ପ୍ରାଚୀନ ସାହିତ୍ୟରେ ଗଦ୍ୟ ସାହିତ୍ୟର ସମ୍ଭାବନାରେ ବ୍ରଜନାଥ ବଡ଼ଜେନାଙ୍କର 'ଚତୁର ବିନୋଦ' ଓ ନୀଳାମ୍ବର ବିଦ୍ୟାଧରଙ୍କ 'ପ୍ରସ୍ତାବ ଚିନ୍ତାମଣି' ଦୁଇଟି ସାର୍ଥକ ସୃଷ୍ଟି । ଏ ସମୟର ଗଦ୍ୟ କାହାଣୀଭିତ୍ତିକ । ଗୋଟିଏ କାହାଣୀକୁ ଲୋକକଥା ଓ ସଙ୍ଗୀତ ମାଧ୍ୟମରେ ଉପସ୍ଥାପନ କରାଯାଇଛି । ଏଥିରେ ପ୍ରବନ୍ଧ କଳା ବା ପ୍ରବନ୍ଧ ରଚନାର ଉତ୍କୃଷ୍ଟ ପାଣିପାଗ ଦେଖାଯାଏ ନାହିଁ । ଭାବପ୍ରକାଶ ପାଇଁ ଓ ଯୁକ୍ତି ଗ୍ରହଣ କରିବା ପାଇଁ ଗଦ୍ୟର ଭାଷା ପରିପୁଷ୍ଟ ନୁହେଁ । ପ୍ରାଚୀନ ସାହିତ୍ୟରେ କେତୋଟି ଗଦ୍ୟ ରଚନା ଦେଖା ଦେଇଥିଲେହେଁ ଏହା ପ୍ରବନ୍ଧ ରଚନା ପାଇଁ ଉପଯୋଗୀ ସାବ୍ୟସ୍ତ ହୁଏନାହିଁ ।

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ସାମାଜିକ, ରାଜନୈତିକ ଜୀବନରେ ଯେଉଁ ବିପୁଳ ପରିବର୍ତ୍ତନ ଆସିଛି, ସେହି ପରିବର୍ତ୍ତନର ଫଳ ସ୍ୱରୂପ ଓଡ଼ିଶାରେ ନୂତନ ଜୀବନଧାରଣ ଓ ଜିଜ୍ଞାସାବୋଧ ସୃଷ୍ଟି ହୋଇଛି । ପଡ଼ୋଶୀ ବଙ୍ଗ ପ୍ରଦେଶ ଅନେକ ଆଗରୁ ଇଂରେଜମାନଙ୍କ ସଂସର୍ଶରେ ଆସିଥିବା ହେତୁ ସେମାନଙ୍କର ଜୀବନ ଧାରଣରେ ନୂତନତା ଆସିଥିଲା । ଏହି ନୂତନତା ସେମାନଙ୍କର କଳା, ସାହିତ୍ୟ, ସ୍ଥାପତ୍ୟ ଓ ମୂଲ୍ୟବୋଧରେ ନବରୁଚି ସୃଷ୍ଟି କରିଥିଲା । ୧୮୦୩ ମସିହାରେ ଦେବଗ୍ରାମ ସନ୍ଧି ବଳରେ ମରହଟ୍ଟାମାନଙ୍କଠାରୁ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଓଡ଼ିଶା ଅଧିକାର ପରେ ଇଂରେଜମାନେ ଓଡ଼ିଶାର ସାମାଜିକ ଜୀବନକୁ ପରିବର୍ତ୍ତନ କରିବା ପାଇଁ ପ୍ରୟାସ କରିଥିଲେ । ପାଦ୍ରୀମାନେ ଓଡ଼ିଶାର ଗାଁ ଗହଳକୁ ଯାଇ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ମାଧ୍ୟମରେ ଆମ ଭିତରେ ପ୍ରଚଳିତ ଥିବା କୁସଂସ୍କାର, ଅନ୍ଧବିଶ୍ୱାସକୁ ପଛରେ ପକାଇ ମଣିଷ ଜୀବନ ଭିତରେ ନୂତନ ଜ୍ଞାନ ଓ ଆଲୋକର ସନ୍ଧାନ ଦେଲେ । ୧୮୧୧ ମସିହାରେ ଶ୍ରୀରାମପୁର ମିସନାରୀମାନଙ୍କ ଦ୍ୱାରା ବାଇବେଲ୍‌ର ଅନୁବାଦ ସାଧାରଣ ଜନତାଙ୍କ ପାଖରେ ପହଞ୍ଚାଇ ଦିଆଗଲା । ଏକ ପକ୍ଷରେ ଖ୍ରୀଷ୍ଟଧର୍ମ ଦର୍ଶନ ଅପର ପକ୍ଷରେ ଆଧୁନିକ ଅଭିରୁଚି ସ୍ୱାଭିମାନ ଦେଇ ଆମ ସମାଜରେ ଏକ ପରିବର୍ତ୍ତନ ପ୍ରକ୍ରିୟା ଆରମ୍ଭ ହେଲା । ୧୮୩୫ ମସିହାରେ ମାକେଲ୍‌ଙ୍କ ଶିକ୍ଷା ନୀତି ଦ୍ୱାରା ଓଡ଼ିଶାରେ ସ୍କୁଲ ସ୍ଥାପନ କରାଯିବା ନିଷ୍ପତ୍ତି ନିଆଗଲା । ଫଳ ସ୍ୱରୂପ ପ୍ରଥମେ କଟକରେ ଓ ପରେ ବାଲେଶ୍ୱର ଠାରେ ସ୍କୁଲ ସ୍ଥାପନ କରାଗଲା । ଏହି ନୂତନ ସ୍କୁଲ ଓ ଶିକ୍ଷା ବ୍ୟବସ୍ଥାକୁ ଭିତ୍ତିକରି ଓଡ଼ିଶାରେ

ପ୍ରଥମ କରି ସଚେତନତାର ନୂତନ ପର୍ବ ଆରମ୍ଭ ହେଲା । ପ୍ରାଥମିକ ଶିକ୍ଷା ଓ ଇଂରାଜୀ ଶିକ୍ଷାକୁ ଆହୁରି ବ୍ୟାପକତର କରିବା ଉଦ୍ଦେଶ୍ୟରେ ନ'ଅଙ୍କ ଦୁର୍ଭିକ୍ଷର କଙ୍କାଳ ଭିତରୁ ରେଭେନ୍‌ସା ମହାବିଦ୍ୟାଳୟ ସ୍ଥାପନ କରାଗଲା । ୧୮୭୦ ମସିହା ବେଳକୁ ଏଥିରୁ ସୃଷ୍ଟି ହୋଇଥିବା ଇଂରେଜ ପଢ଼ୁଆ ଓଡ଼ିଆ ଯୁବକମାନେ ସାମାଜିକ ଚେତନାର ପ୍ରତୀକ ସଦ୍‌ଗୁଣ ସାଧାରଣମାନଙ୍କ ପାଇଁ ଆଦର୍ଶରେ ରୂପାନ୍ତରିତ ହୋଇଗଲେ । ରେଭେନ୍‌ସା ମହାବିଦ୍ୟାଳୟକୁ ଓଡ଼ିଶାର ନବଦୋୟାମ୍ବ ବା ଭାଗ୍ୟ ଉଦୟ ଭାବରେ ଗ୍ରହଣ କରାଯାଇପାରେ । ଏଥିରୁ ଉତ୍ପନ୍ନ ପ୍ରତିଭାଧର ବ୍ୟକ୍ତିସମ୍ପନ୍ନ ଓଡ଼ିଶାର ସାମାଜିକ, ରାଜନୈତିକ ପ୍ରତିଷ୍ଠା ପ୍ରାଇଁ ସଚେତନତା ସୃଷ୍ଟି ଆରମ୍ଭ କରିଥିଲେ । ଓଡ଼ିଶାରେ ଆତ୍ମଜାଗୃତି ବୃଦ୍ଧି ପାଇଁ ସେ ସମୟର ପ୍ରମୁଖ ତିନୋଟି କାରଣକୁ ଗ୍ରହଣ କରାଯାଇ ପାରିବ । ପ୍ରଥମତଃ ନ'ଅଙ୍କ ଦୁର୍ଭିକ୍ଷ (୧୮୬୬) ଦ୍ୱିତୀୟତଃ ଭାଷାବିଲୋପ ଆନ୍ଦୋଳନ (ଓଡ଼ିଆ ଏକ୍‌ଟା ସ୍ୱତନ୍ତ୍ର ଭାଷା ନୁହେଁ, ୧୮୬୭) ତୃତୀୟତଃ ଧାର୍ମିକ ପୁନଃ ଜାଗରଣ (ରାଜା ରାମମୋହନ ରାୟଙ୍କ ବ୍ରାହ୍ମଧର୍ମ) ଓଡ଼ିଶାର ସାମାଜିକ ଦାୟିତ୍ୱବୋଧକୁ ଆହୁରି ବୃଦ୍ଧି କରିଥିଲା । ଏପରି ଏକ ସମୟରେ ଓଡ଼ିଶାର ଦାରିଦ୍ର୍ୟ, ଆବଶ୍ୟକତା ଓ ଅସହାୟତାର ସମ୍ବାଦ ପରିବେଷଣ କରିବା ପାଇଁ ଏବଂ ଓଡ଼ିଶାର ଦାବିକୁ ସରକାରଙ୍କ ଆଗରେ ଉପସ୍ଥାପନ କରିବା ପାଇଁ ସମ୍ବାଦପତ୍ର, ପତ୍ରିକାର ଆବଶ୍ୟକତା ଥିଲା । ଏପରି ଆବଶ୍ୟକତାରୁ ଓଡ଼ିଶାରେ ଅନେକ ପତ୍ର ପତ୍ରିକା ସୃଷ୍ଟି ହେଲା । ଯାହା ମାଧ୍ୟମରେ ଓଡ଼ିଶାରେ ଜନସଚେତନତା ଓ ସାହିତ୍ୟିକ ଅଭିବୃଦ୍ଧି ସମ୍ଭବ ହୋଇ ପାରିଲା । ଓଡ଼ିଶାରେ ପ୍ରବନ୍ଧ ସାହିତ୍ୟର ଉତ୍ପତ୍ତି ଓ ବିକାଶରେ ଏହି ପତ୍ରିକାମାନଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଏହି ପତ୍ରିକା ଗୁଡ଼ିକୁ ନିମ୍ନରେ ପ୍ରଦତ୍ତ କରାଗଲା ।

୧୮୪୯—ଜ୍ଞାନାରୁଣ ।

୧୮୫୬—ପ୍ରବୋଧ ଚନ୍ଦ୍ରିକା ।

୧୮୬୬—ଉତ୍କଳ ଦୀପିକା ।

୧୮୬୮—ବାଲେଶ୍ୱର ସମ୍ବାଦ ବାହିକା ।

୧୮୬୮—ସମ୍ବଲପୁର ହିତୈଷିଣୀ ।

୧୮୬୮—ବୋଧଦାୟିନୀ ।

୧୮୭୩—ଉତ୍କଳପୁତ୍ର ।

୧୮୭୪—ଶିକ୍ଷକ ।

୧୮୮୮—ନବସମ୍ବାଦ ।

୧୮୯୨—ଆଶା ।

୧୮୯୩—ଇନ୍ଦ୍ରଧନୁ ।

୧୮୯୪—ବିଜୁଳି ।

ଏହାଛଡ଼ା ଉତ୍କଳ ସମ୍ବାଦ, ଉତ୍କଳ ଦର୍ପଣ, ଭଗବତ୍ ଶକ୍ତି ପ୍ରଦାୟିନୀ, ସ୍ୱଦେଶୀ, ସାହିତ୍ୟ, ଉତ୍କଳ ସାହିତ୍ୟ, ସମାଜ, ସହକାର ଏବଂ ପରେ ପରେ ଯୁଗବାଣୀ, ଆଧୁନିକ, ଝଙ୍କାର, ଡଗର, ନଆଁଖୁଣ୍ଟା, ପ୍ରଜାତନ୍ତ୍ର ଆଦି ପତ୍ରିକା ମାଧ୍ୟମରେ ଓଡ଼ିଶାର ସମାଜ ବ୍ୟବସ୍ଥା ଓ ସାହିତ୍ୟରେ ନାନାବିଧ ଉନ୍ନତି ସାଧିତ ହୋଇଛି । ଏସବୁ ପତ୍ରିକା ସେତେବେଳେ ସମ୍ବାଦ ପରିବେଷଣ ସହ ସାହିତ୍ୟ ସୃଷ୍ଟି କରିଛନ୍ତି । ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଏହିସବୁ ପତ୍ରିକାକୁ ଆଧାର କରି ସୃଷ୍ଟି ହୋଇଥିଲା ।

ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ରଚନା ପ୍ରଥମ କରି 'ଉତ୍କଳ ଦୀପିକା' ପତ୍ରିକାରୁ ଆରମ୍ଭ ହୋଇଥିଲା । ଗୌରୀଶଙ୍କରଙ୍କର ବଳିଷ୍ଠ ସମ୍ପାଦନା ଓ ପ୍ରୋତ୍ସାହନ ଫଳରେ ଉକ୍ତ ପତ୍ରିକାରେ ଅନେକ ସମ୍ବାଦଭିତ୍ତିକ ପ୍ରବନ୍ଧ ଓ ମୌଳିକ ପ୍ରବନ୍ଧମାନ ପ୍ରକାଶ ପାଇଥିଲା । ନବସମ୍ବାଦ, ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳପୁତ୍ର ଏବଂ ଉତ୍କଳ ସାହିତ୍ୟରେ ଅନେକ ତତ୍ତ୍ୱମୂଳକ ପ୍ରବନ୍ଧ ପ୍ରକାଶ ପାଇଲା । ମଧୁସୂଦନ ରାଓ, ରାଧାନାଥ ରାୟ, ଫକୀରମୋହନ ସେନାପତି, ସତନ, ଷ୍ଟାର୍ଲି ଆଦି ସ୍ରଷ୍ଟାମାନେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ପ୍ରତିଷ୍ଠା ଦେବାରେ ପ୍ରାଥମିକ ପ୍ରୟାସ ଆରମ୍ଭ କଲେ । ଓଡ଼ିଆ ପତ୍ରପତ୍ରିକାରେ ଯେଉଁ ସମ୍ବାଦ ପ୍ରକାଶ ପାଉଥିଲା ତାହାକୁ କାହାଣୀ ଆକାରରେ ଉପସ୍ଥାପନା କରାଯାଉଥିଲା । ଓଡ଼ିଶାର ପଲ୍ଲୀ ଅଞ୍ଚଳର ସମସ୍ୟା, ଅର୍ଥନୀତି ଓ ଗଡ଼ଜାତ ସମସ୍ୟାକୁ ଏଥିରେ ପ୍ରାଧାନ୍ୟ ଦିଆଯାଉଥିଲା । ନବସମ୍ବାଦ ଓ ଉତ୍କଳ ସାହିତ୍ୟରେ ସାହିତ୍ୟିକ ପ୍ରବନ୍ଧମାନ ପ୍ରକାଶ ପାଇଥିଲା । ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ମାଧ୍ୟମରେ ଓଡ଼ିଶାରେ ଯେଉଁ ମସୀଯୁଦ୍ଧ ଆରମ୍ଭ ହେଲା ଏହା ଅନେକ ସମାଲୋଚନାତ୍ମକ ପ୍ରବନ୍ଧକୁ ଜନ୍ମଦେଲା । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିକାଶରେ ପତ୍ରପତ୍ରିକାର ଅବଦାନ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟ ଉତ୍କଳ ଦର୍ପଣ ପତ୍ରିକାରେ 'ବିବେକୀ' ପ୍ରବନ୍ଧ ପ୍ରକାଶ କଲେ । ଉକ୍ତ ପ୍ରବନ୍ଧକୁ ସମାଲୋଚକମାନେ ଓଡ଼ିଆ ସାହିତ୍ୟରେ ପ୍ରଥମ ପ୍ରବନ୍ଧର ମାନ୍ୟତା ଦେଇଆସନ୍ତି । ବିବେକୀର କଳା ପାଟବ ଓ ବର୍ଣ୍ଣନା-ଶୈଳୀ କାବ୍ୟିକ ଓ ଗଳ୍ପଧର୍ମୀ । ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ପ୍ରବନ୍ଧ ନ ଥିବାରୁ 'ବିବେକୀ' ଏକ ସଫଳ ପ୍ରାଥମିକ ପ୍ରୟାସ । ରାଧାନାଥ ପରବର୍ତ୍ତୀ ସମୟରେ ଅତି

କେତେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ପ୍ରବନ୍ଧମାନଙ୍କରେ ମନନଶୀଳ ଦୃଷ୍ଟି-ଭଙ୍ଗୀର ପରିଚୟ ମିଳିଥାଏ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଦିପର୍ବରେ ଅନେକ ପ୍ରତିଭାଧର ସ୍ରଷ୍ଟା ଲେଖନୀ ଚାଳନା କରିଥିବା ଜଣାଯାଏ । ଅନେକ ପତ୍ରିକାମାନଙ୍କରେ ସୁଯୋଗ୍ୟ ସମ୍ପାଦକ, କବି ଓ ସଙ୍ଗଠକ ଏ ସମୟରେ ସମାଜ ଓ ବ୍ୟକ୍ତିର ବିବିଧ ସମସ୍ୟାକୁ ନେଇ ଲେଖନୀ ଚାଳନା କରିଛନ୍ତି । ମଧୁସୂଦନ ରାଓ ଏ ସମୟରେ ଅନେକ ଆଧ୍ୟାତ୍ମିକ, ଚିନ୍ତାମୂଳକ ପ୍ରବନ୍ଧ ରଚନା କରିଛନ୍ତି । 'ଆତ୍ମପ୍ରତ୍ୟୟ' ମଧୁସୂଦନଙ୍କ ଏକ ସାର୍ଥକ ବିଶ୍ଳେଷଣାତ୍ମକ ପ୍ରବନ୍ଧ । ମଧୁସୂଦନ ଭାରତୀୟ ପରମ୍ପରା ବେଦ ବେଦାନ୍ତର ସାରତତ୍ତ୍ୱ ଓ ମଣିଷ ଜୀବନର ଉଚ୍ଚତର ମୂଲ୍ୟବୋଧକୁ ନେଇ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ମଧୁରାଓଙ୍କ ଅନେକ ପ୍ରବନ୍ଧ ଉତ୍କଳ ଦୀପିକା, ସମ୍ବାଦ ବାହିକାରେ ପ୍ରକାଶିତ ହୋଇଛି । ମଧୁସୂଦନ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ନିର୍ମାଣ ଯୁଗରେ ଜଣେ ସଫଳ ସ୍ରଷ୍ଟା ।

ପ୍ରବନ୍ଧ ରଚନାର ଏ ପର୍ଯ୍ୟାୟରେ ଗୋବିନ୍ଦ ରଥ, ବିଶ୍ୱନାଥ କର, କୃଷ୍ଣପ୍ରସାଦ ଚୌଧୁରୀ, ଚନ୍ଦ୍ରମୋହନ ମହାରଣା, ଚନ୍ଦ୍ରଶେଖର ନନ୍ଦ, ଜଗବନ୍ଧୁ ସିଂ ପ୍ରମୁଖ ବିଭିନ୍ନ ଦୃଷ୍ଟିକୋଣରୁ ଅନେକ ସାର୍ଥକ ପ୍ରବନ୍ଧ ରଚନା କରିଛନ୍ତି ।

ଏ ସମୟର ପ୍ରାବନ୍ଧିକ ଓ ତାଙ୍କର ସୃଷ୍ଟିକୁ ନିମ୍ନରେ ପ୍ରଦାନ କରାଗଲା ।

ବିଶ୍ୱନାଥ କର—ବିବିଧ ପ୍ରବନ୍ଧ ।

ଶ୍ୟାମସୁନ୍ଦର ରାଜଗୁରୁ—ପ୍ରବନ୍ଧାବଳୀ ।

ଗୋପୀନାଥ ନନ୍ଦ—ମହାଭାରତ ଓ ଦାଣ୍ଡୀ ରାମାୟଣର ତୁଳନାତ୍ମକ ବ୍ୟାଖ୍ୟା ।

ଗୋପାଳ ଚନ୍ଦ୍ର ପ୍ରହରାଜ—ମହାତ୍ମା ଚନ୍ଦ୍ର ଶେଖର, ବିଶୁଦ୍ଧ ଭାଷା । ଆମ-ଘରର ହାଲଚାଲ, ସ୍ୱର୍ଗୀୟ ଫକୀରମୋହନ, ଉତ୍କଳ ସାହିତ୍ୟର ଆଧୁନିକ ଗତି ।

ଶଶିଭୂଷଣ ରାୟ—ପ୍ରବନ୍ଧପ୍ରସୂନ, ପ୍ରବନ୍ଧ ପ୍ରବାହ ।

ଜଗବନ୍ଧୁ ସିଂହ—ପ୍ରାଚୀନ ଉତ୍କଳ ।

ମୃତ୍ୟୁଞ୍ଜୟ ରଥ—ପ୍ରବନ୍ଧ ପାଠ ।

ଚନ୍ଦ୍ରଶେଖର ନନ୍ଦ—ସାହିତ୍ୟ ।

ଉପରୋକ୍ତ ଅଲୋଚକମାନେ ଓଡ଼ିଆ ଭାଷାରେ ପ୍ରବନ୍ଧ ସୃଷ୍ଟି କରିବାରେ ଦକ୍ଷତା ଦେଖାଇଥିଲେ । ଜଗବନ୍ଧୁ ସିଂହ ତାଙ୍କ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ସଙ୍କଳିତ ପ୍ରବନ୍ଧମାନଙ୍କରେ ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ଧର୍ମଧାରଣାକୁ ନେଇ

ଯୁକ୍ତିମୂଳକ ଓ ମନୋଜ୍ଞ ପ୍ରବନ୍ଧ ରଚନା କରିଛନ୍ତି । ଆଲୋଚ୍ୟ ସମୟରେ ଗୋପାଳ ଚନ୍ଦ୍ର ପ୍ରହରାଜ ଜଣେ ସଫଳ ସ୍ରଷ୍ଟା । ସେ ଅନେକ ସାହିତ୍ୟିକ ପ୍ରବନ୍ଧ ରଚନା କରିଛନ୍ତି । ସେଗୁଡ଼ିକରେ ଆଧୁନିକ ସାହିତ୍ୟ ବିଷୟରେ ଟିପ୍ପଣୀ ପ୍ରକାଶ କରିଛନ୍ତି । 'ଆମ ଘରର ହାଲଚାଲ' ତାଙ୍କର ସଫଳ ସୃଷ୍ଟି । ଓଡ଼ିଶାର ଗ୍ରାମ୍ୟ ଓ ପରିବାରର ଚିତ୍ର ମାଧ୍ୟମରେ ଓଡ଼ିଶାର ଜନଜୀବନ ଓ ସଂସ୍କୃତିର ବ୍ୟାପକ ପ୍ରୟୋଗ ପ୍ରବନ୍ଧମାନଙ୍କରେ କରିଛନ୍ତି । ଏ ସମୟରେ ମୋହିନୀ ମୋହନ ସେନାପତି ଉତ୍କଳ ଦୀପିକା ଓ ଉତ୍କଳ ସାହିତ୍ୟରେ ଅନେକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ଅନେକ ପ୍ରତିଭାଧର ସ୍ରଷ୍ଟାମାନଙ୍କ ଦ୍ୱାରା ପରିଚାଳିତ ହୋଇ ଏ ସମୟର ପ୍ରବନ୍ଧ ସାହିତ୍ୟ ପରବର୍ତ୍ତୀ ସମୟ ପାଇଁ ଏକ ବଳିଷ୍ଠ ଭିତ୍ତି ତିଆରି କରିଥିଲା ।

୧୯୦୩ ମସିହାରେ ମଧୁସୂଦନ ଦାସଙ୍କ ନେତୃତ୍ୱରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା ପରେ ଓଡ଼ିଶାରେ ଜାତୀୟତାର ନୂତନ ସ୍ରୋତ ପ୍ରବାହିତ ହେଲା । ସେ ସମୟରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଓ ସମସ୍ୟା, ଗଡ଼ଜାତସମସ୍ୟା, ପ୍ରାକୃତିକ ବିପର୍ଯ୍ୟୟ ଆଦି ସମସ୍ୟା ଓଡ଼ିଶାର ଅର୍ଥନୈତିକ ଓ ସାମାଜିକ ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ଏହିପରି ଏକ ସମୟରେ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ ଗାନ୍ଧିବାଦ ଓ ମାନବ ସେବାକୁ ଆଧାର କରି ସତ୍ୟବାଦୀ ଯୁଗ ପ୍ରତିଷ୍ଠା ହୁଏ ।

ସତ୍ୟବାଦୀ ଯୁଗରେ ପ୍ରାଚୀନ ସଂସ୍କୃତିର ଉଦ୍ଧାର ଓ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସହ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଡାକରା ଦିଆଗଲା । ଗୋଟିଏ ଜାତି ଗୋଟିଏ ଭାଷା ମନ୍ତ୍ରରେ ଓଡ଼ିଆବାସୀଙ୍କ ଭିତରେ ଜାତିପ୍ରୀତି ଉଦ୍ରେକ ହେଲା । ଗୋପବନ୍ଧୁଙ୍କ ନେତୃତ୍ୱରେ ସତ୍ୟବାଦୀ ବନବିଦ୍ୟାଳୟ ପ୍ରତିଷ୍ଠା ଓ 'ସମାଜ' ପତ୍ରିକାର ଆତ୍ମପ୍ରକାଶ ପରେ ଏ ଯୁଗୀୟ ଆଭିମୁଖ୍ୟ ପ୍ରକାଶ ପାଇଲା । ଅନେକ ଚିନ୍ତାମୂଳକ ପ୍ରବନ୍ଧ ଏସବୁ ସମସ୍ୟାକୁ ନେଇ ସୃଷ୍ଟି ହେଲା ।

ଗୋପବନ୍ଧୁ ଦାସ ଓଡ଼ିଶାର ଭାଷା, ଧର୍ମ ଭାବନା ଓ ଜାତୀୟତାକୁ ନେଇ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ସମ୍ପାଦିତ 'ସମାଜ' ପତ୍ରିକାରେ ତାଙ୍କର ଅନେକ ପ୍ରବନ୍ଧ ପ୍ରକାଶ ପାଇଛି । ଓଡ଼ିଆ ଜାତି ଓ ତା'ର ଐତିହ୍ୟକୁ ଗୌରବମୟ ଭାବରେ ଗୋପବନ୍ଧୁ ତାଙ୍କ ପ୍ରବନ୍ଧମାନଙ୍କରେ ଉପସ୍ଥାପନ କରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶାର ଜୀବନଧାରା ଓ ଆର୍ଯ୍ୟ ସଂସ୍କୃତିକୁ ନେଇ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ପ୍ରବନ୍ଧମାନଙ୍କରେ ଉତ୍କଳର ସଂସ୍କୃତି ସହ ମହାଭାରତୀୟ ଜୀବନବୋଧ ଆତ୍ମପ୍ରକାଶ କରିଛି । 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ପ୍ରାବନ୍ଧିକଙ୍କର ସଫଳ ଦୃଷ୍ଟିଭଙ୍ଗୀର ପରିଚାୟକ । ଏ ସମୟରେ କୃପାସିନ୍ଧୁ ମିଶ୍ର, ବୃନ୍ଦାବନ

ନାଥ ଶର୍ମାଙ୍କ ପରି ସ୍ରଷ୍ଟାମାନେ ସତ୍ୟବାଦୀ, ମୁକୁର, ସମାଜ, ଝଙ୍କାର ପତ୍ରିକା-ମାନଙ୍କରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି ।

ସ୍ୱାଧୀନତାର ସମୟରେ ଅନେକ ସ୍ରଷ୍ଟା ବିଭିନ୍ନ ପ୍ରକାରର ପ୍ରବନ୍ଧ ରଚନା କରି ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ବିଜ୍ଞାନ, ପ୍ରତ୍ନତତ୍ତ୍ୱ ଓ ବିଭିନ୍ନ ମୌଳିକ ସମସ୍ୟାକୁ ନେଇ ଏ ସମୟରେ ଅନେକ ପ୍ରବନ୍ଧ ସୃଷ୍ଟି ହୋଇଛି । ପ୍ରାଣକୃଷ୍ଣ ପରିଜାଙ୍କର ଅନେକ ଚିନ୍ତାଶୀଳ ପ୍ରବନ୍ଧ ଓଡ଼ିଶାର ଶିକ୍ଷା ଓ ସାମାଜିକ ଜୀବନକୁ ନେଇ ଦୃଷ୍ଟିପୁଷ୍ଟ ହୋଇଛି । ବିରୂପାକ୍ଷ କର ଓ କରୁଣାକର ପ୍ରମୁଖ ପ୍ରବନ୍ଧକମାନେ ବିଭିନ୍ନ ଗବେଷଣାତ୍ମକ ପ୍ରବନ୍ଧ ରଚନା କରି ଓଡ଼ିଆ ସାହିତ୍ୟକୁ ବୁଦ୍ଧିମନ୍ତ କରିଛନ୍ତି । ବିରୂପାକ୍ଷ କର ଇତିହାସକୁ କେନ୍ଦ୍ର କରି ଅନେକ ପ୍ରବନ୍ଧ ରଚନା କରିଛନ୍ତି । କରୁଣାକର କର ପ୍ରାଚୀନ ଶିଳାଲିପି, ସଂସ୍କୃତି, ଧର୍ମ ଦର୍ଶନକୁ ନେଇ ପ୍ରବନ୍ଧ ରଚନା କରିଛନ୍ତି । 'ଅଷ୍ଟମୀଚର୍ଯ୍ୟାପ୍ରେ' ପ୍ରାବନ୍ଧିକଙ୍କର ଏକ ବିରଳ କୃତିତ୍ୱ । ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ସତ୍ୟନାରାୟଣ ରାଜଗୁରୁ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନବୀନ କୁମାର ସାହୁ ପ୍ରମୁଖ ଓଡ଼ିଆ ସାହିତ୍ୟର ଇତିହାସ, ସଂସ୍କୃତି ଓ ପ୍ରତ୍ନତତ୍ତ୍ୱକୁ ନେଇ ବହୁ ସଫଳ ପ୍ରବନ୍ଧ ସୃଷ୍ଟି କରିଛନ୍ତି । କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ଇତିହାସ ଓ କିମ୍ବଦନ୍ତୀ' ପୁସ୍ତକରେ ଅନେକ ଇତିହାସଭିତ୍ତିକ ପ୍ରବନ୍ଧ ସ୍ଥାନ ପାଇଛି । ଏ ସମୟରେ ଓଡ଼ିଶାର ଶିକ୍ଷା ସମସ୍ୟାକୁ ନେଇ ଡକ୍ଟର ମାୟାଧର ମାନସିଂହ 'ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନ' 'ଓଡ଼ିଆ ସମାଜ ଓ ସଂସ୍କୃତି' ଆଦି ପ୍ରବନ୍ଧ ରଚନା କରିଛନ୍ତି ।

ହରେକୃଷ୍ଣ ମହତାବ ଓ ରାଧାନାଥ ରଥ ରାଜନୈତିକ ପ୍ରବନ୍ଧ ରଚନାରେ ନିଜ ପ୍ରତିଭାର ପରିଚୟ ଦେଇ ଯାଇଛନ୍ତି । ହରେକୃଷ୍ଣ ମହତାବ ପ୍ରଜାତନ୍ତ୍ର ସମ୍ପାଦ-ପତ୍ରର ସମ୍ପାଦନା ସହ ମାସିକ 'ଝଙ୍କାର' ସାହିତ୍ୟ ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରି ଅନେକ ଚିନ୍ତାମୂଳକ ପ୍ରବନ୍ଧ ରଚନା କରିଛନ୍ତି । 'ଗାଁ ମଜଲିସ' ତାଙ୍କ ପ୍ରବନ୍ଧ ପ୍ରତିଭାର ପରିଚୟ ବହନ କରିଥାଏ । ରାଧାନାଥ ରଥ ସାମ୍ବାଦିକତା ମାଧ୍ୟମରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ପ୍ରତିଭାର ନିଦର୍ଶନ 'ଟିକିଟିକି କଥା' ସମାଜ ଦୈନିକ ସ୍ତମ୍ଭରେ ଦେଖିବାକୁ ମିଳିଥାଏ । ରାଜନୈତିକ ପ୍ରବନ୍ଧ ରଚନା କରିବାରେ ବୈଦ୍ୟନାଥ ମିଶ୍ର ଓ ଶ୍ରୀରାମଚନ୍ଦ୍ର ଦାଶଙ୍କ ସୃଷ୍ଟି ସ୍ୱାକ୍ଷର ଦେଖାଯାଏ । ଅନେକ ପତ୍ରପତ୍ରିକାରେ ଏହି ପ୍ରତିଭାବାନ ସ୍ରଷ୍ଟାମାନଙ୍କର ପ୍ରବନ୍ଧ ପ୍ରକାଶ ପାଇଛି ।

ଆଧୁନିକ ପ୍ରବନ୍ଧ ସାହିତ୍ୟରେ ବିଜ୍ଞାନଭିତ୍ତିକ ପ୍ରବନ୍ଧ ରଚନାର କେତୋଟି ସାର୍ଥକ ପରିଚୟ ଦେଖା ଯାଇଥାଏ । ବିଭିନ୍ନ ପତ୍ରପତ୍ରିକାରେ ଡକ୍ଟର ଗୋକୁଳାନନ୍ଦ

ମହାପାତ୍ର, ଡଃ ଗାଣକୃଷ୍ଣ ପରଜା, ଦେବକାନ୍ତ ମିଶ୍ର, ପ୍ରସନ୍ନ କୁମାର ମିଶ୍ର ପ୍ରମୁଖ ଅନେକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଏହି ଅବହେଳିତ ଦିଗଟି ଏମାନଙ୍କ ଦ୍ୱାରା ପରିପୁଷ୍ଟ ହୋଇଛି ।

ଓଡ଼ିଆ ଭାଷାତତ୍ତ୍ୱ ଓ ଶବ୍ଦଲିପିକୁ ନେଇ ଅନେକ ଗବେଷଣାତ୍ମକ ପ୍ରବନ୍ଧ ରଚନା କରାଯାଇଛି । ଓଡ଼ିଆ ଭାଷାର ଉତ୍ପତ୍ତି, କ୍ରମବିକାଶ, ଶବ୍ଦରୂପ ଓ ବିଭିନ୍ନ ପ୍ରାଚୀନ ପୋଥି ଅଧ୍ୟୟନ ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ଅନେକ ଗବେଷଣାତ୍ମକ ପ୍ରବନ୍ଧ ସୃଷ୍ଟି ହୋଇଛି । ଶୋଧାତ୍ମକ ପ୍ରବନ୍ଧ ରଚନା କରିବାରେ ଗୋଲକ ବିହାରୀ ଧଳ ଅନେକ ସୁନାମ ଅର୍ଜନ କରିଛନ୍ତି । ଶ୍ରୀଯୁକ୍ତ ଧଳ ଓଡ଼ିଆ ଭାଷାର ପ୍ରାଚୀନ କ୍ରମ ଓ ରୂପାନ୍ତରକୁ ନେଇ ଅନେକ ତାତ୍ତ୍ୱିକ ଓ ତୁଳନାତ୍ମକ ପ୍ରବନ୍ଧ ରଚନା କରିଛନ୍ତି । କୁଞ୍ଜବିହାରୀ ତ୍ରିପାଠୀ ଓଡ଼ିଶାର ବିଭିନ୍ନ ଉପଭାଷା ସହ ମୂଳ ଭାଷାର ତୁଳନାତ୍ମକ ଅଧ୍ୟୟନ କରି ଅନେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ପ୍ରବନ୍ଧରେ ଓଡ଼ିଆ ଭାଷାର ପ୍ରାଚୀନତା ଓ ବ୍ୟାକରଣଗତ ବୈଚିତ୍ର୍ୟ ପ୍ରତିଫଳିତ ହୋଇଛି । ଧନେଶ୍ୱର ମହାପାତ୍ର ଓଡ଼ିଆ ଭାଷା ଓ ଧ୍ୱନି ତତ୍ତ୍ୱକୁ ନେଇ ଅନେକ ସୃଜନଶୀଳ ପ୍ରବନ୍ଧ ରଚନା କରିଛନ୍ତି । ଧନେଶ୍ୱର ମହାପାତ୍ର ଓଡ଼ିଆ ଭାଷାର ଅର୍ଥ-ଗୌରବ ଓ ବ୍ୟବହାରିକ ଦିଗ ଉପରେ ଅଧିକ ଆଲୋକପାତ କରିଛନ୍ତି । ଖଗେଶ୍ୱର ମହାପାତ୍ର ଓଡ଼ିଆ ଭାଷାର ପ୍ରାଚୀନତାକୁ ନେଇ ଆଲୋଚନା କରିଛନ୍ତି । 'ଚର୍ଯ୍ୟା-ଗୀତିକା' ପୁସ୍ତକରେ ଓଡ଼ିଆ ଭାଷାର ପ୍ରାଚୀନ ରୂପ ଓ ଏହାର ବିକାଶ କ୍ରମକୁ ଗବେଷଣାତ୍ମକ ଭାବରେ ଗ୍ରହଣ କରିଛନ୍ତି । ବଂଶୀଧର ମହାନ୍ତି ଓଡ଼ିଆ ଭାଷାର ସ୍ୱତନ୍ତ୍ର ଅନୁଶୀଳନ କରିଛନ୍ତି । ଝଙ୍କାର ପତ୍ରିକାରେ ଓଡ଼ିଆ ଭାଷାର ପ୍ରାଚୀନ ପ୍ରାଚୁର୍ଯ୍ୟକୁ ନେଇ ସେ ଅନେକ ସଫଳ ପ୍ରବନ୍ଧ ସୃଷ୍ଟି କରିଛନ୍ତି । ପ୍ରଫେସର ଡକ୍ଟର ବାସୁଦେବ ସାହୁ ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମ ବିକାଶକୁ ପାଣ୍ଡିତ୍ୟ ଓ ଧୀଶକ୍ତି ପ୍ରୟୋଗ କରି ଆଲୋଚନା କରିଛନ୍ତି । ଓଡ଼ିଆ ଭାଷା ଉପରେ ବିଦେଶୀ ଭାଷାର ପ୍ରଭାବ, ଓଡ଼ିଆ ଶବ୍ଦ ଭଣ୍ଡାର, ଓଡ଼ିଆ ବ୍ୟାକରଣ ଓ ଅର୍ଥବିଜ୍ଞାନ, ଧ୍ୱନିବିଜ୍ଞାନ, ଭାଷା ବିଜ୍ଞାନକୁ ଗବେଷଣାତ୍ମକ ଭାବରେ ପରିବେଷଣ କରିଛନ୍ତି । ବିଭିନ୍ନ ପୁସ୍ତକ ଓ ପତ୍ରିକା ପ୍ରବନ୍ଧ ମାଧ୍ୟମରେ ଓଡ଼ିଆ ଭାଷା ଉପରେ ଶ୍ରୀଯୁକ୍ତ ସାହୁ ଅନେକ ପ୍ରବନ୍ଧ ରଚନା କରି ଦକ୍ଷତାର ପରିଚୟ ଦେଇଛନ୍ତି । ଅପର୍ଣ୍ଣା ପ୍ରଧାନ ଓ ବିଜୟ ପ୍ରସାଦ ମହାପାତ୍ର ପ୍ରମୁଖ ଅନେକ ପ୍ରତିଭାଧର ସ୍ରଷ୍ଟା ସାଂପ୍ରତିକ ସମୟରେ ଆଧୁନିକ ଓଡ଼ିଆ ଭାଷା ଉପରେ ଅନେକ ଗବେଷଣାତ୍ମକ ପ୍ରବନ୍ଧ ରଚନା କରିଛନ୍ତି । ଓଡ଼ିଆ ଭାଷା ଆଲୋଚନାକୁ ଆଶ୍ରା କରି ଓଡ଼ିଆ ପ୍ରବନ୍ଧ ସମୃଦ୍ଧ ହୋଇଛି ।

ପ୍ରାବନ୍ଧିକ ଚିତ୍ତରଞ୍ଜନ ଦାସ ଅନେକ ମୌଳିକ ବିଶ୍ଲେଷଣାତ୍ମକ ପ୍ରବନ୍ଧ ମାଧ୍ୟମରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । 'ଜାତିରେ ମୁଁ ଯବନ' 'ଶିଳା ଓ ଶାଳଗ୍ରାମ' 'ଜୀବନ ବିଦ୍ୟାଳୟ' ଆଦି ପ୍ରବନ୍ଧ ତାଙ୍କ ବିବିଧ ପ୍ରତିଭାର ପରିଚୟ ବହନ କରିଥାଏ । ଡକ୍ଟର ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟକୁ ବିବିଧ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରି ଅନେକ ସାହିତ୍ୟିକ ପ୍ରବନ୍ଧ ରଚନା କରିଛନ୍ତି । 'ଯୁଗ-ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' 'ଓଡ଼ିଆ ସାହିତ୍ୟର ଇତିହାସ' ତାଙ୍କ ଗବେଷଣାତ୍ମକ ପ୍ରତିଭାର ପରିଚୟ ବହନ କରିଥାଏ । ସୁରେନ୍ଦ୍ର ମହାନ୍ତି ଜଣେ ସଫଳ ପ୍ରାବନ୍ଧିକ ଭାବରେ ଓଡ଼ିଆ ସାହିତ୍ୟରେ ନିଜକୁ ପ୍ରତିଷ୍ଠିତ କରି ଯାଇଛନ୍ତି । ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କରି 'ଆଦିପର୍ବ' 'ମଧ୍ୟପର୍ବ' ଓ 'ଉତ୍ତରପର୍ବ' ରଚନା କରିଛନ୍ତି । 'ଫକୀରମୋହନ ସମୀକ୍ଷା'ଠାରୁ ଆରମ୍ଭ କରି 'ଶେଷପ୍ରସ୍ନ' ଯାଏ ସବୁଠି ତାଙ୍କ ସମୀକ୍ଷାତ୍ମକ ସୃଜନର ପରିଚୟ ମିଳିଥାଏ । ଗୋପାଳ ଚନ୍ଦ୍ର ମିଶ୍ର, ଗଙ୍ଗାଧର ବଳ, ପଠାଣି ପଟ୍ଟନାୟକ, ଯାଜ୍ଞସେନୀ ହୋତା, ଅଭିନ୍ନଚନ୍ଦ୍ର ଦାଶ, ବଳଭଦ୍ର ମିଶ୍ର ପ୍ରମୁଖ ଆଲୋଚକମାନେ ସାହିତ୍ୟ ସମାଲୋଚନାକୁ ଗ୍ରହଣ କରି ଅନେକ ସାର୍ଥକ ପ୍ରବନ୍ଧ ସୃଷ୍ଟି କରିଛନ୍ତି । ଓଡ଼ିଆ କଥାସାହିତ୍ୟ ଓ ଇତିହାସ ଆଲୋଚନାରେ ପଠାଣି ପଟ୍ଟନାୟକଙ୍କ ଅବଦାନ ସ୍ମରଣୀୟ । ଶ୍ରୀନିବାସ ମିଶ୍ର 'ଓଡ଼ିଆ ଗଦ୍ୟସାହିତ୍ୟ'ରେ ସମାଲୋଚନାତ୍ମକ ପ୍ରବନ୍ଧ ରଚନା କରି ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ସୁଦର୍ଶନ ଆଚାର୍ଯ୍ୟଙ୍କର 'ଓଡ଼ିଆ କାବ୍ୟ କୌଶଳ' ତାଙ୍କୁ ପ୍ରାଚୀନ କାବ୍ୟ ସାହିତ୍ୟର ସମାଲୋଚକ ଭୂମିକାରେ ଅବତୀର୍ଣ୍ଣ କରାଇଛି । ଅସିତ କବି ଓ ଗୌରୀକୁମାର ବ୍ରହ୍ମା ଅନେକ ମୌଳିକ ଓ ସମାଲୋଚନାତ୍ମକ ପ୍ରବନ୍ଧ ରଚନା କରିଛନ୍ତି । ଶ୍ରୀଯୁକ୍ତ ବ୍ରହ୍ମା ରାଜନୈତିକ, ଐତିହାସିକ ଓ ଗବେଷଣାତ୍ମକ ସାହିତ୍ୟ ପ୍ରବନ୍ଧ ରଚନା କରିବାରେ ସୁନାମ ଅର୍ଜନ କରିଛନ୍ତି । 'ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର'ରେ ତାଙ୍କର ସୃଜନଶୀଳ ପ୍ରାବନ୍ଧିକ ପ୍ରତିଭାର ପରିଚୟ ମିଳିଥାଏ ।

ମୌଳିକ ଓ ସାହିତ୍ୟିକ ସମୀକ୍ଷାତ୍ମକ ପ୍ରବନ୍ଧ ସୃଷ୍ଟି କରିବାରେ ଅଧ୍ୟାପକ ଶ୍ରୀଯୁକ୍ତ ଦାଶରଥି ଦାସ ଅନ୍ୟତମ । ଗଭୀର ପ୍ରଜ୍ଞା ଓ ବିଚକ୍ଷଣ ଧୀଶକ୍ତି ପ୍ରୟୋଗ କରି ଓଡ଼ିଆ ସାହିତ୍ୟରେ ଅନେକ ଉପଯୁକ୍ତ ସାହିତ୍ୟ ସମାଲୋଚନାତ୍ମକ ଓ ମୌଳିକ ପ୍ରବନ୍ଧ ସୃଷ୍ଟି କରି ଯାଇଛନ୍ତି । ଶ୍ରୀଯୁକ୍ତ ଦାସ 'ଚନ୍ଦ୍ରମାଟି ଅଚହ୍ନା ଆକାଶ' 'ମୃତ୍ୟୁ-ଲୋକରେ ରତ୍ନ ସପ୍ତମ' 'ବିବିଧ ସମାଲୋଚନା' 'କବିସୂର୍ଯ୍ୟ କାବ୍ୟବିଚାର' 'କାବ୍ୟ-ହମ୍ପାଦ' 'ଆଧୁନିକ କାବ୍ୟଜିଜ୍ଞାସା' ଓ 'ଚକ୍ରକାନ୍ତି' ଆଦି ଅନେକ ସାର୍ଥକ ସଙ୍କଳନ ସୃଷ୍ଟି କରିଛନ୍ତି ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଆଲୋଚନା ପରିସରରେ ଶ୍ରୀଯୁକ୍ତ ବୈଷ୍ଣବ ଚରଣ ସାମଲ ଜଣେ ସ୍ୱତନ୍ତ୍ର ଶକ୍ତିଶାଳୀ ପ୍ରତିଭା । ଓଡ଼ିଆ ସାହିତ୍ୟର ସମସ୍ତ ବିଭାଗରେ ସଫଳ ଭାବରେ ଲେଖନୀ ଚାଳନା କରି ଶ୍ରୀଯୁକ୍ତ ସାମଲ ପରିମାଣାତ୍ମକ ଏବଂ ଗୁଣାତ୍ମକ ଦୃଷ୍ଟିରୁ ଅନେକ ସଫଳ ସୃଷ୍ଟି ଛାଡ଼ି ଯାଇଛନ୍ତି । ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ତାଙ୍କ ଦାନ ଅତୁଳନୀୟ । ସାହିତ୍ୟ ସମାଲୋଚନା ମାଧ୍ୟମରେ ଶ୍ରୀଯୁକ୍ତ ସାମଲ ଅନେକ କ୍ଷମତା ସମ୍ପନ୍ନ ପୁସ୍ତକ ରଚନା କରିଛନ୍ତି । 'ଓଡ଼ିଆ ସାହିତ୍ୟର ଇତିହାସ' 'ଓଡ଼ିଆ ଲୋକନାଟକ' 'ସ୍ୱର ଓ ସ୍ୱାକ୍ଷର' 'ଓଡ଼ିଆ କ୍ଷୁଦ୍ର ଗଳ୍ପର ଇତିହାସ' 'ଓଡ଼ିଆ କ୍ଷୁଦ୍ର ଗଳ୍ପର ଗତି ଓ ପ୍ରବୃତ୍ତି' 'ସମାଲୋଚନା ମଧୁପର୍କ' ଆଦି ପୁସ୍ତକମାନଙ୍କରେ ତାଙ୍କ ପ୍ରତିଭାର ପରିଚୟ ସୁସ୍ପଷ୍ଟ ।

ପ୍ରଫେସର ନିତ୍ୟାନନ୍ଦ ଶତପଥୀ ବିଭିନ୍ନ ପତ୍ର ପତ୍ରିକାରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ଓଡ଼ିଆ ଗଳ୍ପ ଓ ଆଧୁନିକ କବିତା ସମ୍ପର୍କରେ ଅନେକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ତାଙ୍କ ପ୍ରବନ୍ଧମାନଙ୍କରେ ଦେଖାଯାଏ । ଶ୍ରୀଯୁକ୍ତ ଶତପଥୀ 'ସବୁଜରୁ ସାଂପ୍ରତିକ', 'ପ୍ରମୁଖ କବି କବିପରି', 'ଗଳ୍ପ ଓ ଗାଳ୍ପିକ', 'କାବ୍ୟ ପ୍ରକରଣ' ଆଦି ପୁସ୍ତକମାନଙ୍କରେ ନିଜ ପ୍ରବନ୍ଧ ରଚନାର ପ୍ରତିଭା ପରିଚୟ ଛାଡ଼ି ଯାଇଛନ୍ତି ।

ଶ୍ରୀଯୁକ୍ତ ନରେନ୍ଦ୍ର ନାଥ ମିଶ୍ର ଆଧୁନିକ କାବ୍ୟ କବିତା ସମ୍ପର୍କରେ ତାତ୍ତ୍ୱିକ ଓ ତଥ୍ୟମୂଳକ ଆଲୋଚନା କରିଛନ୍ତି । 'ଆଧୁନିକ ଓଡ଼ିଆ କାବ୍ୟଧାରା', 'ଆଧୁନିକ କଥା ସାହିତ୍ୟ' ଆଦି ପୁସ୍ତକମାନଙ୍କରେ ତାଙ୍କ ବିଶ୍ଳେଷଣ ବର୍ଣ୍ଣନା କଳାର ପରିଚୟ ମିଳିଥାଏ । ଶ୍ରୀଯୁକ୍ତ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଶରତ ଚନ୍ଦ୍ର ପ୍ରଧାନ, ବାହିନୀପତି ଭାବ, ଆଦିକନ୍ଦ ସାହୁ, ନୀଳାଦ୍ରୀଭୂଷଣ ହରିଚନ୍ଦନ ଆଦି ପ୍ରତିଭାଧର ସ୍ରଷ୍ଟାମାନେ ଓଡ଼ିଆ ସାହିତ୍ୟର ବିଭିନ୍ନ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ଅନେକ ସାର୍ଥକ ପ୍ରବନ୍ଧ ସୃଷ୍ଟି କରିଛନ୍ତି । ଓଡ଼ିଆ ସାହିତ୍ୟରେ ସମାଲୋଚନାତ୍ମକ ପ୍ରବନ୍ଧ ରଚନା କରିବାରେ ଡକ୍ଟର କ୍ଷେତ୍ରବାସୀ ନାୟକ, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଅନ୍ୟତମ । କ୍ଷେତ୍ରବାସୀ ନାୟକଙ୍କ 'ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ' ତାଙ୍କୁ ଜଣେ ପ୍ରତିଭାବନ୍ତ ପ୍ରାବନ୍ଧିକ ଓ ସମାଲୋଚକର ଗୌରବ ପ୍ରଦାନ କରିଥାଏ । ଜାନକୀ ବଲ୍ଲଭ ମହାନ୍ତି ଓଡ଼ିଆ ପ୍ରାଚୀନ କବିତା, ଶିଶୁ ସାହିତ୍ୟ ଉପରେ ଅନେକ ପୁସ୍ତକ ଓ ପ୍ରବଂଧ ରଚନା କରିଛନ୍ତି ।

ଡକ୍ଟର କୃଷ୍ଣ ଚରଣ ବେହେରା ଓଡ଼ିଆ ସାହିତ୍ୟରେ ଐତିହାସିକ ଓ ପ୍ରାଚୀନ ଉତ୍ସ ନିରୂପଣ କରି ପ୍ରବଂଧ ରଚନା କରିଛନ୍ତି । 'ଓଡ଼ିଆ ନାଟ୍ୟ ସାହିତ୍ୟ' 'ଓଡ଼ିଆ ଉପନ୍ୟାସ ସାହିତ୍ୟ' ଆଦି ପୁସ୍ତକରେ ତାଙ୍କ ସମାଲୋଚନାତ୍ମକ ମନୋବୃତ୍ତିର

ପରିଚୟ ମିଳିଥାଏ । ଉତ୍କଳର ଦେବେନ୍ଦ୍ର ମହାନ୍ତି, ରତ୍ନାକର ଚଇନି, ଯତୀନ୍ଦ୍ର ମୋହନ ମହାନ୍ତି, ହଂସମିତା ମିଶ୍ର, ଇନ୍ଦୁ ମିଶ୍ର, ସୌରୀନ୍ଦ୍ର ବାରିକ, ଶରତ ଚନ୍ଦ୍ର ରଥ ପ୍ରମୁଖ ପ୍ରାବନ୍ଧିକମାନେ ଓଡ଼ିଆ ସାହିତ୍ୟରେ ବିଭିନ୍ନ ଦୃଷ୍ଟିକୋଣରୁ ଅନେକ ବିଳକ୍ଷ ପ୍ରବନ୍ଧ ରଚନା କରିଛନ୍ତି ।

ସାମ୍ପ୍ରତିକ ସମୟରେ ମୌଳିକ ପ୍ରବନ୍ଧ ଅପେକ୍ଷା ସମାଲୋଚନାତ୍ମକ ପ୍ରବନ୍ଧ ଅଧିକ ଦେଖିବାକୁ ମିଳୁଛି । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ କମ୍ପା କବି, ନାଟ୍ୟକାରମାନଙ୍କ ସୃଷ୍ଟିକୁ ଆଧାର କରି ଅନେକ ସମାଲୋଚନାତ୍ମକ ପ୍ରବନ୍ଧ ସୃଷ୍ଟି ହେଉଛି । ଅନେକ ପ୍ରତିଭାବାନ ସ୍ରଷ୍ଟା ବର୍ତ୍ତମାନ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ନେତୃତ୍ୱ ନେଇଛନ୍ତି । ପି.ଏଚ୍.ଡି. ଉପାଧି ପାଇଁ ଆମ ଭାଷାରେ ଅନେକ ଗବେଷଣାତ୍ମକ ପ୍ରବନ୍ଧ ସୃଷ୍ଟି ହେଉଛି । ଭାଷା ସାହିତ୍ୟର ପରିସର କ୍ରମଶଃ ବ୍ୟାପକ ହେଉଥିବାରୁ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଗୁରୁତ୍ୱ ଦିନକୁ ଦିନ ବୃଦ୍ଧି ପାଉଛି । ସାମ୍ପ୍ରତିକ ସମୟରେ ଝଙ୍କାର, ଇସ୍ତାହାର, ନବଲିପି, ଅମୃତାୟନ, ଗୋକର୍ଣ୍ଣିକା, ସମାରୋହ, ସମାବେଶ, ସମସାମୟିକ, ସମୁଦ୍ର, ଚହା, ପଶ୍ଚିମା, ଯୁବପ୍ରଭା, ସମ୍ୟାନ୍ତକ, କଶାନ୍ତ, ଶର୍ମିଷ୍ଠା, କ୍ରାନ୍ତିଧାରା, ପାଞ୍ଚଜନ୍ୟ, ପ୍ରତିବେଶୀ, ବିଶ୍ୱମୁକ୍ତ ଆଦି ମାସିକ, ତ୍ରୈମାସିକ ପତ୍ରିକା ଏବଂ ସମାଜ, ପ୍ରଜାତନ୍ତ୍ର, ସମ୍ବାଦ, ସମୟ, ଧରିତ୍ରୀ, ପ୍ରଗତିବାଦୀ, ଅନୁପମ ଭାରତ ଆଦି ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଉଥିବାରୁ ପ୍ରବନ୍ଧ ରଚନା ପାଇଁ ଓ ପ୍ରକାଶ ପାଇଁ ବ୍ୟାପକ ପରିବେଶ ସୃଷ୍ଟି ହୋଇଛି । ଅନେକ ପ୍ରତିଭା ସମ୍ପନ୍ନ ସ୍ରଷ୍ଟାମାନେ ପ୍ରବନ୍ଧ ସାହିତ୍ୟରେ ଲେଖନୀ ଚଳାଇ ଏହାକୁ ଋଦ୍ଧିମନ୍ତ କରିବାରେ ସାହାଯ୍ୟ କରୁଛନ୍ତି । ଓଡ଼ିଆ ସୃଜନଶୀଳ ସାହିତ୍ୟ ପରି ପ୍ରବନ୍ଧ ସାହିତ୍ୟର ଭବିଷ୍ୟତ ଗୌରବମୟ ଏକଥା ସ୍ୱୀକାର କରିବାକୁ ପଡ଼ିବ ।



# ରମ୍ୟରଚନା

ରମ୍ୟରଚନା ପ୍ରବନ୍ଧର ଏକ ମନୋରମ ବିଭାଗ । କୌଣସି କଥାବସ୍ତୁକୁ ରମ୍ୟକ ଭାବରେ ଏଥିରେ ଉପସ୍ଥାପନ କରାଯାଇ ଥାଏ । ରମ୍ୟରଚନା ସିଧାସଳଖ ପାଠକ ସହିତ ଯୋଗାଯୋଗ ସ୍ଥାପନ କରିଥାଏ । ରମ୍ୟରଚକ ବିଷୟବସ୍ତୁ ଉପସ୍ଥାପନା କରିବା ପାଇଁ ବ୍ୟଙ୍ଗ ଓ ଶାଣିତ ସମାଲୋଚନାକୁ ଆଶ୍ରୟ କରି ଘଟଣା ବିନ୍ୟାସ କରିଥାଆନ୍ତି । ଏଥିରେ ହାସ୍ୟରସ ସହ ଉଚ୍ଚ କୋଟୀର ବର୍ଣ୍ଣନାଶୈଳୀ ଦେଖିବାକୁ ମିଳିଥାଏ । ରମ୍ୟରଚନା ବାହ୍ୟଦୃଷ୍ଟିରୁ ନରମ ଓ ଦାୟିତ୍ୱହୀନ ପରି ଅନୁମେୟ ହେଉଥିଲେହେଁ ପ୍ରକୃତପକ୍ଷରେ ଅନ୍ତଃସଲିଳ ଆବେଦନ ଏହାର ଗୁରୁଗମ୍ଭୀର । କୌଣସି ଏକ ବିଶେଷ ଆଖ୍ୟାନ ଭାଗ ନ ଥିଲେ ସଫଳ ରମ୍ୟରଚନା ସୃଷ୍ଟି ହୋଇପାରେ ନାହିଁ । ସମସ୍ତେ ପ୍ରବନ୍ଧ ରଚନା କରି ପାରିବେ; କିନ୍ତୁ ସବୁ ପ୍ରାବନ୍ଧିକ ରମ୍ୟରଚନା ସୃଷ୍ଟି କରି ପାରିବେ ନାହିଁ । ରମ୍ୟରଚନା ପାଇଁ ସ୍ରଷ୍ଟା ପାଖରେ ପ୍ରାବନ୍ଧିକର ସମସ୍ତ କଳା ବିଦ୍ୟମାନ ରହିବା ସହ କବିତ୍ୱ ଓ ରମ୍ୟ ଶୈଳୀର ଯଥେଷ୍ଟ ପଟୁତା ରହିବା ଆବଶ୍ୟକ । ରମ୍ୟରଚକ ସାଧାରଣତଃ ଗୋଟିଏ ବିଷୟବସ୍ତୁ ଗ୍ରହଣ କରିସାରିବା ପରେ ତା'ର ଅତୀତ ଓ ବର୍ତ୍ତମାନର ଦିଗକୁ ବିସ୍ତାର କରିଥାଏ । ଗୋଟିଏ ଘଟଣାକୁ ସେ ବିବିଧ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଥାଏ । ଅନେକ ସମୟରେ ଅପ୍ରାସଙ୍ଗିକ ବର୍ଣ୍ଣନାକୁ ପ୍ରାସଙ୍ଗିକତାର ରୂପଦେଇ ପ୍ରୟୋଗ କରିଥାଏ । କବିତ୍ୱର ଆଭାରେ ରମ୍ୟରଚନାର ଅନ୍ତଃରଙ୍ଗ ଓ ବାହ୍ୟରଙ୍ଗ ଆଲୋକିତ ହୋଇଥାଏ । ନରମ ଭାଷା ପ୍ରୟୋଗ, ଉପମା ଓ ରୂପକ ଅଳଙ୍କାର ପ୍ରୟୋଗ ସର୍ବୋପରି ରସିକ ହୃଦୟ ନେଇ ସ୍ରଷ୍ଟା ଏହାକୁ ପ୍ରକାଶ କରିଥାଏ । ରମ୍ୟରଚକର ପାଣ୍ଡିତ୍ୟ ହାସ୍ୟରସ ଭିତରେ ଲୁଚିକରି ଥାଏ । ଏକ ଲଘୁ ପରିବେଶ ଭିତରେ ରମ୍ୟରଚକ ବୃହତ ସମସ୍ୟାକୁ ଉଦ୍‌ଘାଟନ କରିବା ସହ ତା'ର ପରିଣତି ଓ ପରିଣାମ, ପ୍ରତିକାର ମଧ୍ୟ ପ୍ରକାଶ କରିଥାଏ ।

## ସଂଜ୍ଞା ଓ ସ୍ୱରୂପ—

ରମ୍ୟରଚନାର ଅତୀତ ଅତି ପୁରାତନ ନୁହେଁ । ୟୁରୋପରେ ନୂତନ ଚିନ୍ତା-ଚେତନାର ଅଭ୍ୟୁଦୟ, ମୁଦ୍ରଣଯନ୍ତ୍ରର ପ୍ରତିଷ୍ଠା ଓ ବିସ୍ତୃତ ପ୍ରୟୋଗରୁ ରମ୍ୟରଚନା ସୃଷ୍ଟି ହୋଇଛି । ଫରାସୀ 'Belles Cettres' ଶବ୍ଦରୁ ରମ୍ୟରଚନା ଶବ୍ଦର ମୂଳ ଉତ୍ପତ୍ତି ଅନୁସନ୍ଧାନ କରାଯାଏ । ଏହି ଫରାସୀ ମୂଳ ଶବ୍ଦ 'ଲଘୁ ସାହିତ୍ୟ' 'ରସାତ୍ମକ ସାହିତ୍ୟ' ଅର୍ଥରେ ବ୍ୟବହୃତ ହେଉଥିଲା । କାଳକ୍ରମେ ରମ୍ୟକ ଭାବରେ ଉପସ୍ଥାପନ କରାଯାଉଥିବା ସାହିତ୍ୟକୁ ଲଘୁସାହିତ୍ୟ ବା ରମ୍ୟରଚନାରେ ନାମିତ କରାଗଲା । ୟୁରୋପରେ Bell'es Cettres ଆଜିର ରମ୍ୟରଚନା ଅର୍ଥରେ ପ୍ରୟୋଗ କରାଯାଉ ନ ଥିଲା । ଫରାସୀ ଭାଷା ସାହିତ୍ୟର ଲଘୁ ଆଲୋଚନା, ପର୍ଯ୍ୟାଲୋଚନା ଏବଂ ପ୍ରସଙ୍ଗ ବିସ୍ତାରକୁ ଏହାର ପରିସରଭୁକ୍ତ କରାଯାଉଥିଲା । କାଳକ୍ରମେ ପୃଥିବୀର ପ୍ରାଦେଶିକ ଭାଷା ସାହିତ୍ୟମାନଙ୍କରେ Belles Cettresକୁ ରମ୍ୟରଚନା ଭାବରେ ଗ୍ରହଣ କରାଯାଇଛି । ଆଲୋଚକ ଜନସନ୍ (Johnson) ପ୍ରବନ୍ଧର ଯେଉଁ ସଂଜ୍ଞା ପ୍ରଦାନ କରିଛନ୍ତି, ତାହା ରମ୍ୟରଚନା ପାଇଁ ଅଧିକ ଉପଯୋଗୀ ଓ ଯୁକ୍ତିଯୁକ୍ତ । ସେ କହିଛନ୍ତି—'Loose sally of mind, an irregular undigasted piece, not a regular and orderly composition.' ଢିଲା ମନର ଅନିୟନ୍ତ୍ରିତ ଅଭିବ୍ୟକ୍ତି ଭାବରେ ଜନସନ୍ ପ୍ରବନ୍ଧର ସଂଜ୍ଞା ନିରୂପଣ କରିଛନ୍ତି । ବସ୍ତୁନିଷ୍ଠ ବା ବ୍ୟକ୍ତିନିଷ୍ଠ ପ୍ରବନ୍ଧମାନଙ୍କରେ ଏକ ସ୍ଥିତିପ୍ରଜ୍ଞ, ବିଚାରଶୀଳ ବୌଦ୍ଧିକ ମାନସିକତାର ପରିଚୟ ମିଳିଥାଏ । ସେଠାରେ ବିଚାରଧାରା ଓ ଘଟଣା ବିନ୍ୟାସ ଧାରାବାହିକ ଓ ସ୍ଥାନୋଚିତ୍ୟ । ରମ୍ୟରଚନାରେ ଅନେକ ସମୟରେ ଖାପଛଡ଼ା ବର୍ଣ୍ଣନା ଓ ଇଙ୍ଗିତମୟ ବର୍ଣ୍ଣନା ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ରମ୍ୟରଚନା ପାଇଁ ଉକ୍ତ ସଂଜ୍ଞାଟି ଅଧିକ ଉପଯୁକ୍ତ ଓ ବାସ୍ତବ । ରମ୍ୟରଚନା ଏକ ଲଘୁ ପରିବେଶ ଭିତରେ ଗୁରୁଗମ୍ଭୀର ଭାବ ବିନ୍ୟାସ ।

## ଗଠନକଳା—

ରମ୍ୟରଚନା ସୃଷ୍ଟି କରିବା ସାଧାରଣ ମାନସିକତା ନୁହେଁ । ପ୍ରବନ୍ଧ ଯୁକ୍ତିଶୀଳ ଓ ଏହା ହାଲୁକା ଅନୁଭବ ପ୍ରକାଶ କରିବାରେ ଅସମର୍ଥ ହୋଇଥାଏ । ରମ୍ୟରଚନା ପ୍ରବନ୍ଧର ଏପରି ନିର୍ଦ୍ଦିଷ୍ଟ ଅସୁବିଧାକୁ ପୂରଣ କରିଥାଏ । ରମ୍ୟ-ରଚନାକୁ ଏକ ଲଘୁ ପରିବେଶ ଭିତରେ ବର୍ଣ୍ଣନା କରାଯାଇ ଥାଏ । ଏହାର ସ୍ରଷ୍ଟା ଜଣେ ରସିକ, ଏହି ରସିକ ବ୍ୟକ୍ତି ଶବ୍ଦ ଭିତରେ ଅଭ୍ୟନ୍ତର ସୌନ୍ଦର୍ଯ୍ୟ ପ୍ରକାଶ କରିଥାଏ । ରମ୍ୟରଚନାର ଗଠନ ପାଇଁ ଉନ୍ନତ ଶୈଳୀର ଆବଶ୍ୟକତା ଅନୁଭବ କରାଯାଇଥାଏ । ଗୋଟିଏ ଘଟଣାକୁ କିପରି ଉପସ୍ଥାପନା କରାଯିବ, ତା'ର ଉପରେ

ରମ୍ୟରଚନାର ସଫଳତା ଅଧିକାଂଶ ଭାବରେ ହର୍ଷର ଉପରେ ନିର୍ଭର କରିଥାଏ । ଆଲୋଚକ ଜନ୍‌ସନ୍ ଏହାକୁ ଅନିୟମିତ ଅଭିବ୍ୟକ୍ତି ବୋଲି ବର୍ଣ୍ଣନା କରିଛନ୍ତି । ପ୍ରବନ୍ଧରେ ସାଧାରଣତଃ ଯେପରି ବଳିଷ୍ଠ ଆରମ୍ଭ ଓ ଧାରାବାହିକ ଘଟଣାର ବିବରଣୀ ବା ଆକାଂକ୍ଷା ହେବା କଥା ରମ୍ୟରଚନାରେ ତାହା ହୋଇପାରେ ନାହିଁ । ରମ୍ୟରଚନା ଗୋଟିଏ କଥା କହୁକହୁ ଅନ୍ୟ କଥାରେ ମଜ୍ଜିଯାଏ, ଏମିତିକି ସ୍ରଷ୍ଟା ଗୋଟିଏ କଥା କହିବା ପାଇଁ ସ୍ରଷ୍ଟା ଅନେକ କଥାକୁ ପ୍ରସଙ୍ଗ କ୍ରମେ ସଂଯୋଗ କରିଥାଏ ।

ରମ୍ୟରଚନାର ଗଠନ ପାଇଁ ଏକ ଦୃଢ଼ ବିଷୟବସ୍ତୁ (Subject)ର ଆବଶ୍ୟକତା ରହିଛି । ରମ୍ୟରଚକ ସାମାଜିକ, ରାଜନୈତିକ, ପୌରାଣିକ ଯେ କୌଣସି ବିଷୟ ଗ୍ରହଣ କରିପାରେ । ଗୋଟିଏ ପଟରେ ଘଟଣାର ଗୁରୁତ୍ୱ ବର୍ଣ୍ଣନା ସହ ଅନ୍ୟ ପଟରେ ତା'ର ଅପବ୍ୟବହାର ସମ୍ପର୍କରେ ଆଲୋଚନା କରାଯାଇ ଥାଏ । ସାମାଜିକ ଘଟଣା ବା ଚରିତ୍ରର ବର୍ଣ୍ଣନା ପାଇଁ ପୌରାଣିକ ଘଟଣା ବା ଚରିତ୍ରକୁ ମିଥିକ୍ ଭାବରେ ପ୍ରକାଶ କରାଯାଇ ଥାଏ ।

ରମ୍ୟରଚନା ଗଠନ ପାଇଁ ବ୍ୟଙ୍ଗ ନିହାତି ଆବଶ୍ୟକ । ରମ୍ୟରଚନା ଘଟଣାର ଗୁରୁତ୍ୱକୁ ତାର୍ଯ୍ୟକ ସମାଲୋଚନା ଦ୍ୱାରା ପ୍ରକାଶ କରିଥାଏ । ଏଥିପାଇଁ ସେ ବ୍ୟଙ୍ଗର ଆଶ୍ରୟ ନେଇଥାଏ । ରମ୍ୟରଚନାରେ ହାସ୍ୟରସର ଅନ୍ତଃସଲିଳଧାରା ପ୍ରବାହିତ ହେଉଥିବାରୁ ବ୍ୟଙ୍ଗକୁ ସ୍ରଷ୍ଟା ଆଦରି ନେଇଥାଏ । ରମ୍ୟରଚନାର ଯୁକ୍ତି ଯେପରି ସ୍ଥାନକାଳ ପାତ୍ରୋଚିତ ହେବ ସେଥିପ୍ରତି ସ୍ରଷ୍ଟା ଦୃଷ୍ଟି ଦେଇଥାଏ । ଯେଉଁ ସମୟର ଘଟଣା ବର୍ଣ୍ଣନା କରାଯାଉଥାଏ, ଘଟଣାର ପ୍ରାସଙ୍ଗିକତା ଦୃଷ୍ଟିରୁ ରମ୍ୟରଚକ ନିଜକୁ ପ୍ରସ୍ତୁତ କରିଥାଏ । ସ୍ରଷ୍ଟା ଉନ୍ନତ ଭାବନା, ପ୍ରକାଶଭଙ୍ଗୀରେ ସରସତା, ଉପଯୁକ୍ତ ବିଷୟବସ୍ତୁ ସହ ଉଚ୍ଚ କୋଟୀର ଆବେଗକୁ ରମ୍ୟରଚନା ଭିତରେ ପ୍ରକାଶ କରିଥାଏ । ରମ୍ୟରଚନାର ଗଠନ ପ୍ରକ୍ରିୟା ସହଜ ଜଣାପଡୁଥିଲେ ମଧ୍ୟ ଏହା ଭିତରେ ଏକ ଦୃଢ଼ ସାତତ୍ୟକ ଅନୁବନ୍ଧନ ପ୍ରକାଶ ପାଇଥାଏ ।

## ଓଡ଼ିଆ ସାହିତ୍ୟରେ ରମ୍ୟରଚନାର ବିକାଶଧାରା—

ଓଡ଼ିଆ ସାହିତ୍ୟରେ ରମ୍ୟରଚନା ଅଧିକ ସାମ୍ପ୍ରତିକତମ ବିଭାଗ । ଓଡ଼ିଶାରେ ଶିକ୍ଷା, ସଭ୍ୟତା ଓ ଆଧୁନିକ ଜୀବନବୋଧର ପରିପ୍ରେକ୍ଷୀରେ ରମ୍ୟରଚନା ସୃଷ୍ଟି ହୋଇଛି । ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଆଧୁନିକ ଯୁଗ (୧୮୮୦) ସାହିତ୍ୟ ଭିତରେ ବିକଶିତ ହୋଇଥିଲା । ରମ୍ୟରଚନା ପ୍ରବନ୍ଧ ସହ କୃଶ ଶରୀର ବହନ କରି ପ୍ରାରମ୍ଭିକ ପର୍ଯ୍ୟାୟରେ ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରିଥିଲା ।

ରମ୍ୟରଚନାର ପ୍ରାଚୀନ ରୂପ ଆମ ସାହିତ୍ୟରେ ଏତେ ହୃଷ୍ଟପୁଷ୍ଟ ନୁହେଁ । ପ୍ରାଚୀନ ମହାଭାରତ, ରାମାୟଣ ଓ ଭାଗବତରେ ଏପରି କେତେକ ଗଦ୍ୟଧର୍ମୀ ବର୍ଣ୍ଣନାଂଶ ରହିଛି ଯାହା କି ପାଠକ ମନରେ ତତ୍‌କ୍ଷଣାତ୍ ବିଭିନ୍ନ ରସର ସଞ୍ଚାର କରିଥାଏ । ଏହା ସବୁ ରମ୍ୟରଚନା ନ ହେଲେ ମଧ୍ୟ ରମ୍ୟରଚନା ସୃଷ୍ଟି ପଛରେ ସାହିତ୍ୟିକ ପୃଷ୍ଠଭୂମି ଭାବରେ ଗ୍ରହଣ କରାଯାଇ ପାରିବ । କବିସୂର୍ଯ୍ୟ ବଳଦେବ ରଥଙ୍କ 'ଜଗତେ କେବଳ' କାବ୍ୟାଂଶଟି ଏକ ସଫଳ ରମ୍ୟରଚନାର କାବ୍ୟରୂପ । ଯେ କୌଣସି ରମ୍ୟରଚନାରେ ଅପାରଗ ମଣିଷର ପୂର୍ଣ୍ଣାଙ୍ଗ ପ୍ରତିବିମ୍ବ ଅଙ୍କନରେ ଯେଉଁ ଅଭାବବୋଧ ସୃଷ୍ଟି ହୋଇଥାଏ, ତାହାକୁ 'ଜଗତେ କେବଳ' କବିତାର ପ୍ରାଚୀନତା ଭିତରେଁ ଖୋଜିବାକୁ ପଡ଼ିବ । ଷୋଡ଼ଶ ଶତକର ଅନେକ ଗଦ୍ୟ ସାହିତ୍ୟକୁ ରମ୍ୟ ଭାବରେ ଉପସ୍ଥାପନ କରାଯାଇଛି । 'ରୁଦ୍ରସୁଧାନିଧି' 'ସୋମନାଥ ବ୍ରତକଥା' ଏବଂ 'ଚତୁର ବିନୋଦ'ର ଉପସ୍ଥାପନା ଓ ପରିବେଷଣ ଶୈଳୀ ପ୍ରାଚୀନ ରମ୍ୟରଚନା ସମ୍ପର୍କରେ ଅନେକ କିଛି ଆଶାନ୍ୱିତ ଆଲୋଚନାକୁ ଅପେକ୍ଷା ରଖେ ।

ରାଧାନାଥ ରାୟଙ୍କ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରବନ୍ଧ 'ବିବେକୀ'କୁ ଓଡ଼ିଆ ସାହିତ୍ୟରେ ପ୍ରଥମ ରମ୍ୟରଚନାର ମାନ୍ୟତା ମଧ୍ୟ ଦିଆଯାଇଥାଏ । 'ବିବେକୀ'ର ବର୍ଣ୍ଣନା ଧର୍ମ ଓ ପରିବେଷଣ ଶୈଳୀକୁ ଆଲୋଚନା କରାଯାଇ ଏପରି ମନ୍ତବ୍ୟ ଦିଆଯାଇଛି । କିନ୍ତୁ 'ବିବେକୀ'ର ମୁଖ୍ୟ ଆବେଦନ ନିଆରା । ଏକ ସୁନ୍ଦର କାହାଣୀ ମଧ୍ୟରେ ବିବେକପଣ ଓ ମାନବିକତାର ଉଦ୍ରେକ କରିବାର ପ୍ରୟାସ ରାଧାନାଥ କରିଛନ୍ତି । ଏହା ଏକ ବିଶ୍ଳେଷଣ, ଆତ୍ମମୁଖୀ ନୁହେଁ । ଏ ଦୃଷ୍ଟିରୁ ବିଚାର କରି 'ବିବେକୀ'କୁ ରମ୍ୟରଚନା ଭାବରେ ଗ୍ରହଣ କରିବା ଅଧିକ ନିରାପଦ ନୁହେଁ । ରାଧାନାଥ ଯୁଗରେ ଅନ୍ୟତମ ସଫଳ ସ୍ରଷ୍ଟା ଶଶୀଭୂଷଣ ରାୟଙ୍କ 'ସ୍ୱାଧୀନ ଚିନ୍ତା' ଓ ଜଳନ୍ଧରଦେବଙ୍କ 'ବିକ୍ଷିପ୍ତ ଚିନ୍ତା'କୁ ରମ୍ୟରଚନା ଭାବରେ ଗ୍ରହଣ କରାଯାଇଛି । ଆଧୁନିକ ଯୁଗର ଆରମ୍ଭରେ ରମ୍ୟରଚନାର ପ୍ରାବଲ୍ୟ ନ ଥିଲା । ପରେ ପରେ ଶଶୀଭୂଷଣ, ମଧୁସୂଦନ ଆଦି ସ୍ରଷ୍ଟାମାନେ ପୂର୍ଣ୍ଣାଙ୍ଗ ରମ୍ୟରଚନା ସୃଷ୍ଟି କରି ନ ଥିଲେ ମଧ୍ୟ ରମ୍ୟରଚନା ସୃଷ୍ଟିର ପ୍ରୟାସ କରିଛନ୍ତି । 'ନନାଙ୍କ ପାଞ୍ଜି' ରମ୍ୟରଚନା ସୃଷ୍ଟି କରି ଫକୀରମୋହନ ଆଧୁନିକ ଯୁଗର ସାହିତ୍ୟରେ ରମ୍ୟରଚନା ସୃଷ୍ଟିର ଫଳପୂର୍ଣ୍ଣ ପ୍ରୟାସ ଆରମ୍ଭ କରିଥିଲେ ।

ଓଡ଼ିଆ ରମ୍ୟରଚନାର ନୂତନ ଦିଗନ୍ତ ଆରମ୍ଭ ହୁଏ ରମ୍ୟରଚକ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କଠାରୁ । ଗୋପାଳ ଚନ୍ଦ୍ର ଓଡ଼ିଆ ଭାଷାରେ ଗୁଣାତ୍ମକ ଦୃଷ୍ଟିରୁ ଓ ପରିମାଣ ଦୃଷ୍ଟିରୁ ଅନେକ ସାର୍ଥକ ରମ୍ୟରଚନା ସୃଷ୍ଟି କରିଛନ୍ତି । 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା', 'ବାଇ ମହାନ୍ତି ପାଞ୍ଜି', 'ନନାଙ୍କ ବସ୍ତାନି', 'ଆମ ଘରର

ହାଲଚାଲ୍' ଆଦି ତାଙ୍କର ସଫଳ ରମ୍ୟରଚନା । ଗୋପାଳ ଚନ୍ଦ୍ରଙ୍କ ରମ୍ୟରଚନାରେ ଗ୍ରାମ୍ୟାଭିମୁଖୀ ସମାଜ ଚିନ୍ତା, ଗ୍ରାମ୍ୟ ଜୀବନବୋଧ, ଆଧୁନିକ ସଭ୍ୟତାର ଅବକ୍ଷୟ ଓ ରାଜନୀତିର ବ୍ୟାଧି ମୌଳିକ ଓ ନୈତିକ ଜୀବନର ଅଭାବବୋଧ ପରିଲକ୍ଷିତ ହୁଏ । ଆମେରିକାସ୍ଥ ଲେଖକ ଅଲିଭର ଓ୍ୱେଣ୍ଡେଲ୍ ହୋମସ୍‌ଙ୍କ 'Autocrat of the Breakfast table', 'The poet at the breakfast table' ଦ୍ୱାରା ଅନୁପ୍ରାଣିତ ହୋଇ ଗୋପାଳ ଚନ୍ଦ୍ର ପ୍ରହରାଜ ତାଙ୍କ ରମ୍ୟରଚନାକୁ ବଳିଷ୍ଠ କରିଛନ୍ତି । ଓଡ଼ିଶାର ସଂସ୍କୃତି ଓ ପଲ୍ଲୀ ଜୀବନବୋଧ ତାଙ୍କ ରମ୍ୟରଚନାରୁ ଦେଖାଯାଏ । ଓଡ଼ିଆ ରମ୍ୟରଚନା ସାହିତ୍ୟକୁ ଗୋପାଳ ଚନ୍ଦ୍ର ପ୍ରହରାଜ ନୂତନ ଜୀବନ ଓ ବେଗ ପ୍ରଦାନ କରି ଯାଇଛନ୍ତି ।

ଗୋବିନ୍ଦ ତ୍ରିପାଠୀ ଓଡ଼ିଆ ରମ୍ୟରଚନାରେ ଅନ୍ୟତମ ପରିଚିତ ପ୍ରସିଦ୍ଧ ନାମ । ସାଧାରଣ ଘଟଣା ଭିତରେ ଅସାଧାରଣତ୍ୱ ପ୍ରତିପାଦନ କରି ଓଡ଼ିଶାର ଅତୀତ ଐଶ୍ୱର୍ଯ୍ୟ ଓ ସାଂସ୍କୃତିକ ଚେତନାକୁ ନେଇ ସେ ଅନେକ ରମ୍ୟରଚନା ସୃଷ୍ଟି କରିଛନ୍ତି । 'କଖାରୁ ଫୁଲ' 'କଳା ଧଳା' 'ବଟୁଆ' 'ଗ୍ରେଟ କଥାଟିଏ' ଆଦି ସଫଳ ରମ୍ୟରଚନା ସେ ଓଡ଼ିଆ ସାହିତ୍ୟକୁ ଦାନ କରିଛନ୍ତି ।

କୃଷ୍ଣପ୍ରସାଦ ବସୁ କେତୋଟି ସାର୍ଥକ ରମ୍ୟରଚନା ମାଧ୍ୟମରେ ନିଜକୁ ପ୍ରତିଷ୍ଠା ଦେଇଛନ୍ତି । ତାଙ୍କର ରଚନାମାନଙ୍କ ମଧ୍ୟରୁ 'ଆଖଡ଼ା ଘରେ ବୈଠକ' ଅଧିକ ପରିଚିତ । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'ଅସହଯୋଗୀର ଆତ୍ମକଥା', ନିତ୍ୟାନନ୍ଦ ମହାପାତ୍ରଙ୍କ 'ପଞ୍ଚ ପ୍ରତିମା', କୃଷ୍ଣବିହାରୀ ଦାଶଙ୍କ 'ଶ୍ରୀମନ୍ତ', ଚନ୍ଦ୍ରଶେଖର ରଥଙ୍କ 'ମନ ଅରଣ୍ୟ', ଚିତ୍ତରଞ୍ଜନ ଦାସଙ୍କ 'ସେହିତର ଡାଏରୀ', ମନୋଜ ଦାସଙ୍କ 'ସମୁଦ୍ର କୂଳର ଗାଁ', ଚିନ୍ତାମଣି ମିଶ୍ରଙ୍କ 'ଦେବ ଦେବଙ୍କ ଦୁର୍ଗତି' ଆଦି ରମ୍ୟରଚନା ଓଡ଼ିଆ ସାହିତ୍ୟରେ ଗୋଟିଏ ଲେଖାଁ ଅମୂଲ୍ୟ ସମ୍ପଦ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଅନେକ ସ୍ରଷ୍ଟା ରମ୍ୟରଚନା ସୃଷ୍ଟି କରିଛନ୍ତି । ସାଂପ୍ରତିକ ମଣିଷ କୌଣସି ମତମନ୍ତବ୍ୟ ସିଧାସଳଖ ପ୍ରକାଶ କରିବାରେ ଅକ୍ଷମ ହେଉଥିବାରୁ ରମ୍ୟରଚନା ତାକୁ ସେହି ପ୍ରକାଶୀସ୍ତ ସୁଯୋଗ ଦେଇଛି । ଏଇଥିପାଇଁ ଆଧୁନିକ ସାହିତ୍ୟରେ ଆଂଶିକ (ଆତ୍ମସଧର୍ମୀ) ଓ ପୂର୍ଣ୍ଣାଙ୍ଗ ରମ୍ୟରଚନା ପ୍ରକାଶ ପାଉଛି ।

ସାଂପ୍ରତିକ ସମୟରେ ସୃଜନଶୀଳ ରମ୍ୟରଚନା ସୃଷ୍ଟି କରିବାରେ ବୈଷ୍ଣବ ଚରଣ ସାମଲଙ୍କ ଅବଦାନ ପ୍ରଣିଧାନଯୋଗ୍ୟ । ସ୍ରଷ୍ଟା ହାସ୍ୟ ଓ ବ୍ୟଙ୍ଗ ମାଧ୍ୟମରେ ଅନେକ ସଫଳ ରମ୍ୟରଚନା ପୁସ୍ତକର ଜନକ । ଶ୍ରୀଯୁକ୍ତ ସାମଲ୍‌ଙ୍କ ଶୈଳୀ ଓ ପରିବେଷଣ ସ୍ୱତନ୍ତ୍ର । ଭାଷା ସଞ୍ଜିତ ଅଥଚ ରସଯୁକ୍ତ । ସମାଜରେ ଘଟୁଥିବା ଗ୍ଲେଟ ଗ୍ଲେଟ ଘଟଣାକୁ ଆବେଗର ସହିତ ପ୍ରକାଶ କରିବାରେ ତାଙ୍କର ଉଦ୍ୟମ

ପ୍ରଶଂସନୀୟ । 'ନାଗର ମୁହଁ' 'ଇଛନ୍ତି ଦାମ୍ଭିକେ' 'ଆଜି ଦେଖିଲିରେ' ଆଦି ଶ୍ରୀଯୁକ୍ତ ସାମଲଙ୍କ ସଫଳ ରମ୍ୟରଚନା ପୁସ୍ତକ । ଓଡ଼ିଆ ରମ୍ୟରଚନା ତାଙ୍କଠାରୁ ଆହୁରି ବଳିଷ୍ଠ ଓ ବ୍ୟାପକ ଋଦ୍ଧି ଆଶାକରେ ।

ଅଚ୍ୟୁତାନନ୍ଦ କର ସାଂପ୍ରତିକ ସମୟରେ ଅନେକ ରମ୍ୟରଚନା ସୃଷ୍ଟି କରିଛନ୍ତି । ଶ୍ରୀଯୁକ୍ତ କର ଅଧିକ ବାସ୍ତବବାଦୀ ଓ ଖୋଲା । ଦୈନିକ ସମ୍ବାଦପତ୍ର ଓ ସାପ୍ତାହିକୀରେ ତାଙ୍କର ଅନବଦ୍ୟ କୃତିତ୍ୱର ପରିଚୟ ମିଳିଥାଏ ।

ଓଡ଼ିଆ ରମ୍ୟରଚନାକୁ ଫକୁରାନନ୍ଦଙ୍କ ଅବଦାନ ଅଧିକ ସାଫଲ୍ୟ ମଣ୍ଡିତ କରିଛି । 'ବୁଧବାରିଆ ସାହିତ୍ୟ ଆସର ହେବୁ' ବା ମେଡ଼ିକାଲ୍ କଲେଜରେ ଜୟନ୍ତୀ ହେବୁ ଶବ୍ଦ ଭିତରେ ହାସ୍ୟରସକୁ ଆୟୁଧ କରି ରମ୍ୟରଚନା ସୃଷ୍ଟି କରିବାରେ ଫକୁରାନନ୍ଦ ଅନ୍ୟମାନଙ୍କର ଆଦର୍ଶ ସ୍ଥାନୀୟ ।

ବର୍ତ୍ତମାନ ଅନେକ ତରୁଣ ରମ୍ୟରଚନା ପ୍ରତି ଆକୃଷ୍ଟ ହୋଇ ପଡ଼ିଥିବା ଲକ୍ଷ୍ୟ କରାଯାଇ ପାରିବ । ଦୈନିକ ଖବର କାଗଜମାନଙ୍କରେ ବିଭିନ୍ନ ସାଂପ୍ରତିକ ଘଟଣାବଳୀକୁ ନେଇ ଫିଚର ପ୍ରସ୍ତୁତ କରିବା ସମ୍ପାଦକୀୟ ଏବଂ ସ୍ଥିରଚିତ୍ର, କଟାକ୍ଷ, ମନ୍ତମନ୍ତବ୍ୟ ମାଧ୍ୟମରେ ରମ୍ୟରଚନା ସୃଷ୍ଟିର ପ୍ରୟାସ କରାଯାଉଛି ।

ରମ୍ୟରଚନା ଅନେକ ତରୁଣ ଓ ପ୍ରତିଭାବନ୍ତ ସ୍ରଷ୍ଟାମାନଙ୍କ ଦ୍ୱାରା ପରିପୁଷ୍ଟ ହୋଇ ନୂତନ ଧାରା ଓ ପ୍ରଗତିରେ ଆଗେଇଯିବ, ଏ ସମ୍ଭାବନା ଆମ ସାହିତ୍ୟରେ ସୃଷ୍ଟି ହୋଇ ସାରିଲାଣି ।



# ସମାଲୋଚନା

ସୃଜନଶୀଳତା ସାହିତ୍ୟର ଆଧାର । ସୃଜନଶୀଳ ହୃଦୟରୁ ସତ୍ ସାହିତ୍ୟ ସୃଷ୍ଟି ହୋଇଥାଏ । ଯେତେବେଳେ ସ୍ରଷ୍ଟା କିଛି ସୃଷ୍ଟି କରିବା ପାଇଁ କାଗଜ କଲମ ଧରି ବସେ ବସ୍ତୁତଃ ସେ କିଛି ସୃଷ୍ଟି କରିପାରେ ନାହିଁ; କିନ୍ତୁ ଏମିତି କେତେକ ବିରଳ ମୁହୂର୍ତ୍ତି ଆସିଥାଏ ଆପେ ଆପେ କିଛି ସୃଷ୍ଟି ହୋଇଯାଏ । ଯେମିତି ଗଛରେ ପତ୍ର ଆସେ, ଫୁଲରେ ରଙ୍ଗ ଆସେ, ପବନରେ ବେଗ ଆସେ, କିଶୋରୀ ଓଠରେ ହସ ଉଠେ ସେମିତି ସୃଜନଶୀଳତା ଆପେ ଆପେ କବି ହୃଦୟରୁ ଉଙ୍କିମାରେ । ସ୍ରଷ୍ଟା ତା' ସୃଷ୍ଟିର ସମ୍ପୂର୍ଣ୍ଣ ମାଲିକାନା ସତ୍ତ୍ୱକୁ ହାତରେ ରଖିଥାଏ ସେ ପର୍ଯ୍ୟନ୍ତ ଯେତେବେଳ ପର୍ଯ୍ୟନ୍ତ ଏହା ପାଠକ ବା ଶ୍ରୋତା ନିକଟକୁ ଯାଇ ନ ଥାଏ । ଯେତେବେଳେ ଏହା ପାଠକ ଦରବାରରେ ପହଞ୍ଚିଯାଏ ସେତେବେଳେ ଏଥିରେ ସୌନ୍ଦର୍ଯ୍ୟବୋଧ ରସ ଗ୍ରାହକତାକୁ ନେଇ ବିଭିନ୍ନ ପ୍ରଶ୍ନବାଚୀ ସୃଷ୍ଟି ହୋଇଥାଏ । କୁହାଯାଇଥାଏ 'ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତି' । ଭଗବାନ ଯେପରି ଏ ସୃଷ୍ଟି ସର୍ଜନା କରିଛନ୍ତି କବି ସେହିପରି ସୃଷ୍ଟି କରିଥାଏ । ଯଦି ଈଶ୍ୱରଙ୍କୁ ପ୍ରଥମ କବି ଭାବରେ ଗ୍ରହଣ କରାଯାଏ, ତା' ହେଲେ ଏ ବିରାଟ ବିଶ୍ୱ ହିଁ ହେବ ପୃଥିବୀର ଶ୍ରେଷ୍ଠ ଓ ବୃହତ୍ତ ପ୍ରଥମ କବିତା । କବି ଜଣେ ସୃଜନଶୀଳ ବ୍ୟକ୍ତି ଓ ଈଶ୍ୱରୀୟ ସତ୍ତାର ଅଧିକାଂଶ ଏକଥା ଗ୍ରହଣ କରାଯାଇ ଥାଏ । ଈଶ୍ୱର ସୃଷ୍ଟିକୁ ଜନ୍ମ-ପାଳନ-ସଂହାର କରିଥାଆନ୍ତି । ବସ୍ତୁତଃ କବିର ସୃଜନ ଅଧିକାରକୁ ଛାଡ଼ିଦେଲେ ଅନ୍ୟ ଅଧିକାର ନାହିଁ । ସେ ସୃଷ୍ଟି କରେ, ପାଠକ ତାକୁ ପାଳନ କରେ, ଯଦି ଉକ୍ତ ସୃଷ୍ଟିର ଜୀବନଶକ୍ତି ଥାଏ ତାହାହେଲେ ତାହା କାଳଜୟୀ ରୂପ ନେଇ ବଞ୍ଚିଯାଏ । ସାହିତ୍ୟରେ ପାଳନ କରିବା ଓ କରେଇବାର ଭୂମିକାଟି ଆଲୋଚନା ହେବା ସମୟରେ ସମାଲୋଚକର ଭୂମିକା ଆଲୋଚନା ପରିସରକୁ ଆସିଥାଏ । ଯେ କୌଣସି ସାହିତ୍ୟ ସୃଷ୍ଟିକୁ ପରିଚିତ ଓ ଲୋକପ୍ରିୟ କରିବା ପାଇଁ ସମାଲୋଚକର ଆବଶ୍ୟକତା ରହିଛି ।

ସାହିତ୍ୟରେ ଗଠନଗତ ସମସ୍ୟା ମୁଖ୍ୟତଃ ଦୁଇ ପ୍ରକାରର । ପ୍ରଥମତଃ କଳାପାଇଁ କଳା (Art for art shake) ସୃଷ୍ଟି ହେବ ନା ଜୀବନପାଇଁ କଳା (Art for life shake) ସୃଷ୍ଟି ହେବ । ସାହିତ୍ୟର ନନ୍ଦନତତ୍ତ୍ୱ କଳାକୁ ଗୁରୁତ୍ୱ ଦେଇଥାଏ । ଜହ୍ନ ଯେମିତି ହସେ, ଫୁଲ ଯେମିତି ଫୁଟେ, ଯମୁନା ଯେମିତି ଉଛୁଳେ ସବୁ ଜିନିଷକୁ ଠିକ୍ ଠିକ୍ ସିଧାସଳଖ ପ୍ରକାଶ କରିବାକୁ ଏହା ପ୍ରବର୍ତ୍ତାଇ ଥାଏ । ପ୍ରାକୃତିକ ଉପାଦ୍ୱରେ ପ୍ରକୃତିର ସ୍ୱରୂପ ସହ ପ୍ରବୃତ୍ତିକୁ ପ୍ରକାଶ କରିବା କଳାର ଧର୍ମ । ସାହିତ୍ୟ ଯେହେତୁ ଏକ ସର୍ବଶ୍ରେଷ୍ଠ ପ୍ରକାଶନ୍ମୁଖ କଳା, ସେଥିପାଇଁ ପ୍ରକୃତିର ସମସ୍ତ ସଳଖ ବସ୍ତୁମକୁ ସିଧାସଳଖ ବ୍ୟାଖ୍ୟା କରିବାକୁ ଗୁରୁତ୍ୱ ଦେଇଥାଏ । ଜୀବନପାଇଁ କଳାର ଡାକ ସାହିତ୍ୟରେ ସବୁବେଳେ ସାମ୍ପ୍ରତିକତାକୁ ସୂଚିତ ଦେଇଥାଏ । ଏପରି ଦାୟିତ୍ୱବାନ ସ୍ରଷ୍ଟାମାନେ କଳାକୁ ଜୀବନ ଭିତରେ ଆଙ୍କିବାର ବଧିବଦ୍ଧ ପ୍ରୟାସ କରିଥାଏ । ଜହ୍ନର ହସ ଭିତରେ ବଉଳଫୁଲିଆ କଶୋରୀର ହସକୁ ସାମଞ୍ଜସ୍ୟତା ଭିତରେ ଆଙ୍କିବା, ଉଚ୍ଛୁଳ ପଡୁଥିବା ଯମୁନାର ନୀଳପାଣି ସହ ହୃଦୟର ପ୍ରେମବରହ ଅନୁଭବକୁ ପରମାପକ ସଂଜ୍ଞା ପ୍ରଦାନ କରିବା । ଫୁଟିଥିବା ଫୁଲ ଭିତରେ କଶୋରୀର ଯୌବନ ପ୍ରାପ୍ତ ଅବସ୍ଥାକୁ ଗ୍ରହଣ କରିବାକୁ ଜୀବନବାଦୀ ସ୍ରଷ୍ଟା ଅଧିକ ଗୁରୁତ୍ୱ ଦେଇଥାଏ । ଜୀବନବାଦୀ ସ୍ରଷ୍ଟା ଗୋଲାପ ଫୁଲକୁ ପୋଡିପାରେ, ଜହ୍ନକୁ ହତ୍ୟା କରିପାରେ, ଯମୁନାକୁ ଶୁଖାଇ ଦେଇପାରେ ଏବଂ ମଣିଷକୁ ବାରମ୍ବାର ଙ୍କୃଣବଦ୍ଧ କରିପାରେ । ସାହିତ୍ୟର ସୃଜନଶୀଳ ପ୍ରକ୍ରିୟାରେ ଏହି ଦୁଇଟି ପ୍ରୟାସ ବାରମ୍ବାର ସ୍ରଷ୍ଟାକୁ ପ୍ରଭାବିତ କରି ଆସିଛି । ବସ୍ତୁତଃ ସୃଜନଶୀଳ ସ୍ରଷ୍ଟା କଳାକୁ ଜୀବନଧର୍ମୀ କରିବା ପାଇଁ ଅବିରତ ପ୍ରୟାସ କରିଥାଏ । କିନ୍ତୁ ଖାସ୍ କଳାପାଇଁ କଳା ଓ ଜୀବନ ପାଇଁ କଳା ସୃଷ୍ଟିକୁ ବିଭାଗୀକରଣ କରିବା ସହଜ ନୁହେଁ । ଯେ କୌଣସି ସୃଜନଶୀଳତା ଏହି ଉଭୟ ଭାବଧର୍ମକୁ ଗ୍ରହଣ କରି ଆତ୍ମପ୍ରକାଶ କରିଥାଏ ।

## ସଂଜ୍ଞା ଓ ସ୍ୱରୂପ—

ସୃଜନଶୀଳ ସୃଷ୍ଟିକୁ ଯିଏ ବିଭିନ୍ନ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଥାଏ ତାହାକୁ ସମାଲୋଚକ ଓ ତାହାର ବ୍ୟାଖ୍ୟାକୁ ସମାଲୋଚନା କୁହାଯାଇ ଥାଏ । ସମାଲୋଚନା ସାହିତ୍ୟର ଏକ ସ୍ୱର୍ଣ୍ଣକାତର ବିଭାଗ । ଅନେକ ପ୍ରଶାନ୍ତି ଓ ଉତ୍ତେଜନା ମଧ୍ୟରେ ସମାଲୋଚକ ତା'ର କର୍ତ୍ତବ୍ୟ ସମ୍ପାଦନ କରିଥାଏ । ସମାଲୋଚନା ଓ ସମାଲୋଚକର କୌଣସି ସ୍ୱୀକୃତ ସଂଜ୍ଞା ପ୍ରଦାନ କରିବା ସହଜ ନୁହେଁ । ଯେ କୌଣସି ସୃଜନଶୀଳ ସୃଷ୍ଟିର ବୋଧଗମ୍ୟ ବ୍ୟାଖ୍ୟାକୁ ସମାଲୋଚନା କୁହାଯାଇ ଥାଏ । ସମାଲୋଚନା ଗୋଟିଏ ସୃଷ୍ଟିକୁ ପାଠକ ନିକଟରେ ପରିଚିତ କରିଥାଏ । ସମାଲୋଚନାରେ ଉଭୟ କାବ୍ୟ ପ୍ରକରଣ ଓ କାବ୍ୟାତ୍ମାକୁ ଗ୍ରହଣ କରାଯାଇ ଥାଏ । ପ୍ରାଚ୍ୟ

ସାହିତ୍ୟରେ ବିଭିନ୍ନ ବୈୟାକରଣିକମାନେ କାବ୍ୟ ଗଠନ ସମ୍ପର୍କରେ ବିଭିନ୍ନ ସିଦ୍ଧାନ୍ତ ଗ୍ରନ୍ଥମାନ ପ୍ରଣୟନ କରିଥିଲେ । 'ସାହିତ୍ୟ ଦର୍ପଣ' 'ଅଷ୍ଟାଧ୍ୟାୟୀ' ଏସବୁ ଉତ୍କୃଷ୍ଟ ଗ୍ରନ୍ଥ ପ୍ରାଚ୍ୟ ସାହିତ୍ୟକୁ ଏକ ପରମ୍ପରା ପ୍ରଦାନ କରିବାରେ ଓ ପରିପୁଷ୍ଟ କରିବାରେ ପ୍ରଭୂତ ସାହାଯ୍ୟ କରିଛି । ପାଶ୍ଚାତ୍ୟ ସାହିତ୍ୟରେ ସୃଷ୍ଟି ସହ ସମାଲୋଚନାକୁ ସମାନ୍ତରାଳ ମର୍ଯ୍ୟାଦା ପ୍ରଦାନ କରାଯାଇଛି । ଏକଥା କୁହାଯାଇ ପାରିବ ଉନ୍ନତ ସମାଲୋଚନା ଯୋଗୁ ପାଶ୍ଚାତ୍ୟ ସାହିତ୍ୟ ସମସ୍ତଙ୍କ ନିକଟରେ ପହଞ୍ଚି ପାରିଛି । ସମାଲୋଚନାର ସଂଜ୍ଞା ଓ ଗୁରୁତ୍ୱ ଗ୍ରହଣ କରି Sainte-Becuive କହିଛନ୍ତି, "That for him criticism was onlo away of exhalting ahidden poetry in an indirect way.' କବିତା ଭିତରେ ଲୁକ୍କାୟିତ ଅନ୍ତର୍ନିହିତ ଭାବକୁ ସମାଲୋଚନା ପ୍ରକାଶ କରିଥାଏ । କେବଳ କବିତା ନୁହେଁ Sainte-Becuiveଙ୍କ ମତାମତ ଏକ ସାଧାରଣ ସମାଲୋଚନା ଓ ଯେ କୌଣସି ସାହିତ୍ୟ ସୃଷ୍ଟି ପାଇଁ ଉପଯୁକ୍ତ । ସ୍ରଷ୍ଟା ପରେ ସୃଷ୍ଟି ପାଇଁ ସମାଲୋଚକର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଏଲିଅଟ୍ ସାହିତ୍ୟରେ ସମାଲୋଚନାକୁ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଯେ କୌଣସି ସୃଜନଶୀଳ ସୃଷ୍ଟି ଅପୂର୍ଣ୍ଣ ଓ ଉପଯୁକ୍ତ ବ୍ୟାଖ୍ୟାପରେ ଏହା ପରିପକ୍ୱ ହୋଇଥାଏ ବୋଲି ସେ ତାଙ୍କ ବକ୍ତବ୍ୟରେ ପ୍ରକାଶ କରିଛନ୍ତି । T.S. Eliot ସମାଲୋଚନା ସମ୍ପର୍କରେ କହନ୍ତି, "The critical activity finds its highest its true fulfilment in a kind of union, with creation in the labour of the artist." ସମାଲୋଚକକୁ ସାହିତ୍ୟର ବିଗ୍ୟରକ ଭାବରେ ଗ୍ରହଣ କରାଯାଇ ଥାଏ । ବିଚାରକ ଯେପରି ଭଲମନ୍ଦ ସମୀକ୍ଷା କରି ବିଚାର ଶୁଣାଏ, ସମାଲୋଚକ ସେହିପରି ସମସ୍ତ ବିଷୟକୁ ଅଧ୍ୟୟନ କରି ତର୍ଜମା କରିଥାଏ । କିନ୍ତୁ ସମାଲୋଚକ କବିତାର ଆଲୋଚନା ସମୟରେ କବି, ନାଟକ ଆଲୋଚନା ସମୟରେ ନାଟ୍ୟକାର ଏବଂ ଗଳ୍ପ ଆଲୋଚନା ସମୟରେ ଗାଳ୍ପିକ ହେବାକୁ ବାଧ୍ୟ । ସ୍ରଷ୍ଟାପରି ସମାଲୋଚକ ଭିତରେ ସୃଜନଶୀଳତା ଓ ସହୃଦୟତା ରହିଲେ ସେ ଯେ କୌଣସି ସୃଷ୍ଟିର ବିଚକ୍ଷଣତା ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଥାଏ । ଓଡ଼ିଆ କାବ୍ୟ ଯୁଗରେ ଏହି କବି ଓ ସମାଲୋଚକ (ପାଠକ) ମାନଙ୍କ ସମ୍ପର୍କରେ କବିର ସୃଜନଶୀଳ ପ୍ରତିକ୍ରିୟା ପ୍ରକାଶ ପାଇଛି । ବିଦଗ୍ଧ ଚିନ୍ତାମଣି କାବ୍ୟରେ କବି ଅଭିମନ୍ୟୁ ସାମନ୍ତ ସିଂହାର ପ୍ରକାଶ କରିଛନ୍ତି—

"ବିବେକ ଗାହକ କୋଟି କବି ଆୟୁ ଘେନ
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ ।

× + ×

ଗୁଣ ଗ୍ରାହକେ ପାଇବେ ଚନ୍ଦ୍ରଲ ସୁନାମ •
ଗୀତ ହେବ ବିଦଗ୍ଧ ଚନ୍ଦ୍ରାମଣି ନାମ ।''

ସମାଲୋଚକ ଶାସ୍ତ୍ରଦର୍ଶୀ ଓ ବହୁଶ୍ରୁତ ହେବା ସହ ବିବେକବାନ ହେବା ବାଞ୍ଛନୀୟ । ସମାଲୋଚନାକୁ ସମାଲୋଚକର ବିଦଗ୍ଧ ହୃଦୟର ବ୍ୟାଖ୍ୟା ଭାବରେ ଗ୍ରହଣ କରାଯାଇ ପାରେ । କବି ଦୀନକୃଷ୍ଣ କହିବା ଲୋକ (ସମାଲୋଚକ)ର ଗୁଣ ଓ ଗୁରୁତ୍ୱ ସମ୍ପର୍କରେ କହିଛନ୍ତି—

''କବିତା ବନିତା କବିତା ପିତା
କହିବା ଲୋକ ତା'ର ଉପମାତା
କଲେ ତାକୁ ଶୋଭା ରସିକ ନେତା
କେଳେ ବା ରହିଇ ତା'ର ଯୋଗ୍ୟତା
କୁମତ ଗୁଆଁର
କେବଳ ବନ୍ଧ୍ୟା ମାନ୍ତ ଭାଇ ତାହାର ।''

କବି ଦୀନକୃଷ୍ଣ ଉପରୋକ୍ତ ପଦ ରଚନା ଭିତରେ କବି ସୃଜନଶୀଳତା, ସମାଲୋଚନା ଏବଂ ଖଳମତିମାନଙ୍କର ସାର୍ଥକ ପରିଭାଷା ପ୍ରଦାନ କରିଛନ୍ତି । ସମାଲୋଚକ ସୃଷ୍ଟିର ପାଳନକର୍ତ୍ତା। କବି ଜନ୍ମଦାତା, ସମାଲୋଚକ ତାକୁ ପାଳନ କରେ, ତା'ର କଷ୍ଟ ସହେ ଏବଂ ପରିଶେଷରେ ରସିକମାନଙ୍କ ପାଖରେ ପହଞ୍ଚାଇ ଦିଏ । ସମାଲୋଚନା ଏକ ସତ୍କର୍ମ । ମହତ୍ ଉଦ୍ଦେଶ୍ୟ ରଖି ଯେ କୌଣସି ସୃଷ୍ଟିକୁ ନିରପେକ୍ଷ ବ୍ୟାଖ୍ୟା କଲେ ଏହାର ମହତ୍ତ୍ୱ ଫୁଟି ଉଠିଥାଏ ।

## ସମାଲୋଚକର ଗୁଣ—

ସମାଲୋଚନା ଲେଖିବା ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ଯେ କେହି ସମାଲୋଚକ ହୋଇ ପାରିବ ନାହିଁ କି କୌଣସି ଅସୁସ୍ଥ- ମାନସିକତା ଓ ଅସଜଡ଼ା ବ୍ୟବସ୍ଥା ଭିତରୁ ସମାଲୋଚନା ସୃଷ୍ଟି ହୋଇ'ପାରିବ ନାହିଁ । ଯିଏ ସମାଲୋଚକ ହେବ ସିଏ ନିଜକୁ ସମସ୍ତ ପ୍ରାନ୍ତୀୟତା ଭିତରୁ, ସଂକୀର୍ଣ୍ଣତା ଭିତରୁ ଏବଂ ଅଜ୍ଞାନତା ଭିତରୁ ମୁକୁଳାଇ ଆଣିବ । ସମାଲୋଚକ ହେବା ପାଇଁ କେତୋଟି ସର୍ବନିମ୍ନ ଆବଶ୍ୟକତା ଆବଶ୍ୟକ । ଏହି ଆବଶ୍ୟକତାଗୁଡ଼ିକୁ ନିମ୍ନରେ ଆଲୋଚନା କରାଗଲା ।

### (କ) ସୃଜନଶୀଳତା—

ସମାଲୋଚକର ସୃଜନଶୀଳ ହୃଦୟ ଥିବା ନିହାତି ଦରକାର । ପାହାଡ଼କୁ ଚଢ଼ିବା କଥା ନ ଥିବା ମଣିଷ ପାହାଡ଼ ସମ୍ପର୍କରେ କବିତା ରଚନା କରିବା ଯେପରି

ଅତିରଞ୍ଜିତ ସେହିପରି ସୃଜନଶୀଳତା ନ ଥିବା ମଣିଷ ସୃଜନଶୀଳତାକୁ ବ୍ୟାଖ୍ୟା କରିବା ଭ୍ରମାତ୍ମକ । ସ୍ରଷ୍ଟାର ସୃଜନଶୀଳତା କୌଣସି ଏକ ଦିଗରୁ ନିଷ୍ଟିତ ପକ୍ଷରେ ଅପୂରଣୀୟ ଥାଏ । ସମାଲୋଚକ ସ୍ରଷ୍ଟାର ଅଭାବମୟ ଦିଗକୁ ବ୍ୟାଖ୍ୟା କଲାବେଳେ ନିଜର ସୃଜନ ସ୍ପର୍ଶରେ ଏହି ଅଂଶକୁ ପରିପୂର୍ତ୍ତି କରିଥାଏ । ସୃଜନଶୀଳତାର ପରିପ୍ରକାଶ ସ୍ରଷ୍ଟା ଭିତରେ ଆବେଗ ଓ କଳାରସର ପ୍ରକାଶ କରିଥାଏ । ଯାହା ଫଳରେ ସମାଲୋଚକ ସୃଷ୍ଟିର କର୍ମକୁ ଗ୍ରହଣ କରିବାରେ ସକ୍ଷମ ହୋଇଥାଏ ।

## (ଖ) ନିରପେକ୍ଷତା—

ସମାଲୋଚକ ନିରପେକ୍ଷ ହେବାକୁ ବାଧ୍ୟ । ସମାଲୋଚକ ଭିତରେ ଯଦି ସଂକୀର୍ଣ୍ଣତା ଆତ୍ମପ୍ରକାଶ କରେ ତାହାହେଲେ ସେ ସତ୍ ସାହିତ୍ୟ ସୃଷ୍ଟି କରିବାରୁ ବଞ୍ଚିତ ହୋଇଥାଏ । ଅନେକ ସମୟରେ ବ୍ୟକ୍ତିଗତ ଈର୍ଷାଭାବ ପୋଷଣ କରି ସମାଲୋଚନା କରିଯାଇ ଥିବାରୁ ଏହାର ଗୁରୁତ୍ୱ ହ୍ରାସ ପାଇଥାଏ । ସମାଲୋଚକ ନିରପେକ୍ଷ ବ୍ୟାଖ୍ୟା କଲେ ସୃଷ୍ଟିର ପ୍ରକୃତ ମୂଲ୍ୟାୟନ ହୋଇ ପାରିବ । ଗୋଟିଏ ସୃଷ୍ଟିର ସାମାଜିକ ଭିତ୍ତିଭୂମି, ଭାଜନୈତିକ ଚିନ୍ତା, ସାହିତ୍ୟିକ ମୂଲ୍ୟ ଓ ଯୁଗୋପଯୋଗିତା ବିଷୟ ସହ ପାଠକୀୟ ପ୍ରଶସ୍ତିକୁ ମଧ୍ୟ ସମାଲୋଚକ ଗ୍ରହଣ କରିଥାଏ । ଗୋଟିଏ ସୃଷ୍ଟି ଭିତରେ ଯଦି ଜୀବନୀଶକ୍ତି ଥାଏ ଏହା ଯୁଗ ଯୁଗକୁ ବଞ୍ଚିଥାଏ । ନିରପେକ୍ଷ ସମାଲୋଚନା ସାହିତ୍ୟର ଏହି ଜୀବନୀ ଶକ୍ତି ଖୋଜିବା ସହ ଯୁଗବାର୍ତ୍ତାକୁ ପ୍ରକାଶ କରିଥାଏ ।

## (ଗ) ପାଣ୍ଡିତ୍ୟ—

ସମାଲୋଚକ ବହୁ ଶାସ୍ତ୍ରଦର୍ଶୀ ହେବା ଆବଶ୍ୟକ । ସାହିତ୍ୟ ମରୁବେଳେ ଏକ ବ୍ୟାପକତାର ଚିନ୍ତା ତା'ର କବିଷ ଭିତରେ ପ୍ରକାଶ କରିଥାଏ । ଏହା ଭାବମୟ ସ୍ତରରେ ଭାସି ବୁଲିଲାବେଳେ ପୁଣି କେଉଁ କଳ୍ପଲୋକରେ ଉଡ଼ି ବୁଲୁଥାଏ ! ଚିହ୍ନା ମାଟି ଓ ଅଚିହ୍ନା ଆକାଶ ଭିତରେ ପକ୍ଷୀଟିଏ ସାଜି ସାହିତ୍ୟିକ ଚେତନା ଉଡ଼ି ବୁଲୁଥାଏ । ସାଂପ୍ରତିକ ସାହିତ୍ୟ ପୁଣି ସୁଦୂର ପ୍ରସାରୀ । ଫ୍ରଏଡ଼, କାମ୍ୟୁ, କାଫକା, ଡାରଉଇନ୍-ଆଇନ୍‌ଷ୍ଟାଇନ-ସ୍ପିଙ୍ଗଲିଙ୍ଗ୍ ପ୍ଲିନ୍‌ଙ୍କ ସହ ସମାଜ ବିଜ୍ଞାନ-ନୃତତ୍ତ୍ୱ-ବାଣିଜ୍ୟ ଅର୍ଥନୀତି ସବୁ ମିଶି ସାହିତ୍ୟର ପରିସରକୁ ବ୍ୟାପକତା ପ୍ରଦାନ କରିଛନ୍ତି । ସ୍ରଷ୍ଟା ସାହିତ୍ୟ ସୃଷ୍ଟି ସମୟରେ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ତା' ସୃଷ୍ଟି ଭିତରେ ଏହି ରହସ୍ୟମୟ ଜଗତର ସ୍ୱରୂପ ଦେଖିବାକୁ ମିଳୁଛି । ସମାଲୋଚକ ନିଜକୁ ଯଦି ସବୁ-ଦିଗରୁ ଉନ୍ମୁକ୍ତ ନ ରଖେ ତାହାହେଲେ ସେ ସ୍ରଷ୍ଟା ନିକଟରେ ପହଞ୍ଚି ପାରିବ ନାହିଁ ।

ପୁଣି ଏକ ସୃଷ୍ଟିର ତୁଳନାତ୍ମକ ବ୍ୟାଖ୍ୟା ପାଇଁ ଏକାଧିକ ଭାଷାରେ ପାଣ୍ଡିତ୍ୟର ଆବଶ୍ୟକତା ରହିଛି । ସମାଲୋଚକ ନିଜକୁ ଏସବୁ ଦିଗରୁ ପ୍ରସ୍ତୁତ କରିବା ଆବଶ୍ୟକ ।

## (ଘ) ରସପ୍ରାଣ—

ସମାଲୋଚକର ରସପ୍ରାଣ ରହିବା ଦରକାର । ସାହିତ୍ୟକୁ ଭଲ ପାଉଥିବା, ଶ୍ରଦ୍ଧା କରୁଥିବା ପରି ମନିଷଟିଏ ହେବା ନିହାତି ଆବଶ୍ୟକ । ଗୋଟିଏ ସୃଷ୍ଟିକୁ ଅଧ୍ୟୟନ ପରେ ତା' ଭିତରୁ ପାଉଥିବା ଆନନ୍ଦକୁ ସେ ଯଦି ଗ୍ରହଣ କରି ପାରୁଥିବ ତାହାହେଲେ ଅନ୍ୟମାନଙ୍କୁ ସେହି ଆନନ୍ଦ ବାଣ୍ଟିବାରେ ସମର୍ଥ ହୋଇ ପାରିବ । ରସିକ ବ୍ୟକ୍ତି ନ ହେଲେ କେହି ସ୍ରଷ୍ଟା ବା ସମାଲୋଚକ ହୋଇ ପାରିବ ନାହିଁ ।

# ସମାଲୋଚନାର ପ୍ରକାର ଭେଦ

ଉପଲବ୍ଧ ହେଉଥିବା ସମାଲୋଚନାରେ ବିଭିନ୍ନ ପ୍ରକାର ସମାଲୋଚନା ଦେଖାଯାଇ ଥାଏ । ସମାଲୋଚକ ସୃଷ୍ଟିର ପ୍ରବୃତ୍ତିକୁ ଗ୍ରହଣ କରି ବିବିଧ ଦୃଷ୍ଟି କୋଣରୁ ଚୟନ କରିଥାଏ । ସୃଷ୍ଟିମାନଙ୍କରେ ବିଭିନ୍ନତା ପରିଲକ୍ଷିତ ହେଉଥିବାରୁ ଏବଂ ଅନେକ ସୃଷ୍ଟିରେ ମୌଳିକ ଆବେଦନ ସ୍ୱତନ୍ତ୍ର ହୋଇଥିବାରୁ ସମାଲୋଚନାରେ ମଧ୍ୟ ପ୍ରକାର ଭେଦ ଦେଖାଯାଇ ଥାଏ । ନିମ୍ନରେ ବିଭିନ୍ନ ପ୍ରକାର ସମାଲୋଚନା ସମ୍ପର୍କରେ ଆଲୋଚନା କରାଗଲା ।

## (କ) ଗବେଷଣାତ୍ମକ ସମାଲୋଚନା—

ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଗ୍ରହଣ କରି ତାକୁ ପୂର୍ବାପର ଗବେଷଣା କରି ଯେଉଁ ସିଦ୍ଧାନ୍ତ ପ୍ରସ୍ତୁତ କରାଯାଏ ତାକୁ ଗବେଷଣାତ୍ମକ ସମାଲୋଚନା କୁହାଯାଏ । ଗବେଷଣାତ୍ମକ ସମାଲୋଚନାରେ ସମାଲୋଚକ ନିଜର ପ୍ରଜ୍ଞା ପ୍ରୟୋଗ କରିଥାଏ । ଗୋଟିଏ ନୂଆକଥା ଓ ଅନ ଆଲୋଚିତ ସତ୍ୟକୁ ସମସ୍ତଙ୍କ ସାମ୍ନାରେ ଉନ୍ମୋଚନ କରିଥାଏ । ଓଡ଼ିଆ ସାହିତ୍ୟରେ ଏହି ସମାଲୋଚନା ବିଭାଗଟି ଅଧିକ ହୃଷ୍ଟପୁଷ୍ଟ । ଅନେକ ଗବେଷଣାତ୍ମକ ନିବନ୍ଧ ପ୍ରସ୍ତୁତ ହୋଇ ଓଡ଼ିଆ ସାହିତ୍ୟରେ ସମାଲୋଚନାର ମାନବୃଦ୍ଧି କରି ପାରିଛି ।

## (ଖ) ଇତିହାସଭିତ୍ତିକ ସମାଲୋଚନା—

ଗୋଟିଏ ସୃଷ୍ଟିର ଉତ୍ପତ୍ତି ଓ ଅଧିପତନ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା ଇତିହାସଭିତ୍ତିକ ସମାଲୋଚନାରେ କରାଯାଇ ଥାଏ । ସୃଷ୍ଟିର ଅତୀତର ପାଣିପାଗ,

ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ପରିବେଶ ଓ ପଦ୍ଧତି ଅନୁସନ୍ଧାନ ସହ ସାମ୍ପ୍ରତିକ ଅବକ୍ଷୟକୁ ଗ୍ରହଣ କରି ସମାଲୋଚନା ପ୍ରସ୍ତୁତ କରାଯାଇ ଥାଏ । ସମାଲୋଚକ ସୃଷ୍ଟିର ମହତ୍ତ୍ୱ ଦେଖାଇବାକୁ ଯାଇ ଅତୀତର ସ୍ୱର୍ଣ୍ଣବିନ୍ଦୁ ଉପରେ ଦୃଷ୍ଟିପାତ କରିଥାଏ ।

ସାଂପ୍ରତିକ ସମୟରେ ମିଥିକ୍‌ଧର୍ମୀ ସାହିତ୍ୟ ସୃଷ୍ଟି ହେଉଥିବାରୁ ଇତିହାସ ଅଧ୍ୟୟନର ଗୁରୁତ୍ୱ ସୃଷ୍ଟି ହୋଇଛି । ସୃଜନଶୀଳ ସାହିତ୍ୟରେ ରୂପକ, ପ୍ରତୀକ ଓ ମିଥ୍‌ର ବ୍ୟବହାର ଆମକୁ ଅତୀତର ଇଶ୍ୱରଙ୍କ ନିକଟବର୍ତ୍ତୀ କରାଇଛି । ଇତିହାସଭିତ୍ତିକ ସମାଲୋଚନାରେ ଗୋଟିଏ ସୃଷ୍ଟିର କାଳ ଚେତନା ଓ କଳା ଚେତନା ଆତ୍ମପ୍ରକାଶ କରିଥାଏ । ଇତିହାସଭିତ୍ତିକ ସମାଲୋଚନା ଲେଖିବାରେ ଓଡ଼ିଆ ସାହିତ୍ୟରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସୂର୍ଯ୍ୟନାରାୟଣ ଦାଶ, ଶ୍ୟାମସୁନ୍ଦର ରାଜଗୁରୁ, ନଟବର ସାମନ୍ତରାୟ, ଆର୍ତ୍ତବଲ୍ଲଭ ମହାନ୍ତି, ସୁରେନ୍ଦ୍ର ମହାନ୍ତି ଏବଂ ମାୟାଧର ମାନସିଂ ପ୍ରମୁଖ ପ୍ରଶଂସନୀୟ ଉଦ୍ୟମ କରିଛନ୍ତି ।

## (ଗ) ତୁଳନାତ୍ମକ ସମାଲୋଚନା—

ତୁଳନାତ୍ମକ ସମାଲୋଚନା ସମାଲୋଚକର ପାଣ୍ଡିତ୍ୟ ଓ ଅବବୋଧ କ୍ଷମତା ଉପରେ ନିର୍ଭର କରିଥାଏ ଏକାଧିକ ଭାଷାରେ ଯଦି ସମାଲୋଚକର ଅଭିଜ୍ଞତା ଥାଏ, ତାହାହେଲେ ସମାଲୋଚକ ଗୋଟିଏ ଭାଷାର ସୃଷ୍ଟିକୁ ଅନ୍ୟ ଭାଷାର ସୃଷ୍ଟି ସାମଞ୍ଜସ୍ୟ ସହ ତୁଳନାତ୍ମକ ଅଧ୍ୟୟନ କରିଥାଏ । ତୁଳନାତ୍ମକ ସମାଲୋଚନାରେ ସୃଷ୍ଟିର ପ୍ରାସଙ୍ଗିକତା ଓ ଯୁଗୋପଯୋଗିତା ପରିସ୍ଫୁଟ ହୋଇଥାଏ । ଓଡ଼ିଆ ଭାଷାରେ ତୁଳନାତ୍ମକ ସମାଲୋଚନାର ଧାରା ଏତେ ଉଜ୍ଜ୍ୱଳ ନୁହେଁ । ମାୟାଧର ମାନସିଂହଙ୍କ 'Kalidash and Shakespeer a comparative study'କୁ ତୁଳନାତ୍ମକ ସମାଲୋଚନା ଭାବରେ ଗ୍ରହଣ କରାଯାଇ ପାରିବ । ସେହିପରି ଫକୀରମୋହନଙ୍କ ସହ ପ୍ରେମଚନ୍ଦଙ୍କୁ ଏବଂ ଗୁରୁପ୍ରସାଦ ମହାନ୍ତିଙ୍କ ସହ ଟି.ଏସ୍. ଏଲିଅଟ୍‌ଙ୍କୁ ଗ୍ରହଣ କରି ତୁଳନାତ୍ମକ ସମାଲୋଚନା ସୃଷ୍ଟି ହୋଇଛି । ତୁଳନାତ୍ମକ ସମାଲୋଚନାରେ ସମାଲୋଚକ ଦୁଇଟି ଭାଷା ଓ ସାହିତ୍ୟ ଭିତରେ ସଂଯୋଗ ସେତୁ ସ୍ଥାପନ କରିଥାଏ । ତୁଳନାତ୍ମକ ସମାଲୋଚନାରେ ସମାଲୋଚକର ଦକ୍ଷତା ପରିସ୍ଫୁଟନ ହୋଇଥାଏ ।

## (ଘ) ସାହିତ୍ୟିକ ସମାଲୋଚନା—

ଏକ ସ୍ରୃଜନଶୀଳ ସୃଷ୍ଟିକୁ ଆଲୋଚନା କରିବାର ପ୍ରୟାସ ସାହିତ୍ୟିକ ସମାଲୋଚନାରେ ଦେଖା ଯାଇଥାଏ । ସାହିତ୍ୟ ଏକ କେବଳ ସୃଜନଶୀଳତାକୁ ଆଲୋଚନା କରୁଥିବାରୁ ସ୍ରଷ୍ଟାର ଦୃଷ୍ଟିଭଙ୍ଗୀ ପ୍ରଥମରୁ କାବ୍ୟିକ ହୋଇଥାଏ । କବିଟିକୁ ସିଏ କଳ୍ପିତିଏ କରେ, ପଥରକୁ ରୂପସୀ କରେ, କବି ଯଦି କବିତାରେ ସ୍ୱର୍ଗର ସୂଚନା ଦେଇଥାଏ ସମାଲୋଚକ ସ୍ୱର୍ଗ ଖୋଜିବଏ । ସୃଜନଶୀଳ ସୃଷ୍ଟି ପାଇଁ ସ୍ରଷ୍ଟା ସୃଜନଶୀଳ ହେବା ଦରକାର । ସମାଲୋଚକ ଏକାଧାରରେ ଗଳ୍ପ, କବିତା, ନାଟକ, ଉପନ୍ୟାସର ସମାଲୋଚନା ଲେଖିପାରେ; କିନ୍ତୁ ସିଏ ଯେଉଁ ବିଭାଗଟିକୁ ଆଲୋଚନା କରିବ ସେହି ବିଭାଗ ସହ ସମ୍ପୂର୍ଣ୍ଣ ଜଡ଼ିତ ଥିବା ଆବଶ୍ୟକ । କାବ୍ୟ କବିତାର ସମାଲୋଚନା ପାଇଁ କାବ୍ୟ ଗଠନର ନିୟମ, ଅକ୍ଷର ଶୃଙ୍ଖଳା ଏବଂ କାବ୍ୟ କବିତାର ବିକାଶ ଧାରା ପ୍ରତି ଦୃଷ୍ଟି ଦେବା ବାଞ୍ଛନୀୟ ।

ଓଡ଼ିଆ ସମାଲୋଚନା ସାହିତ୍ୟରେ ସାହିତ୍ୟିକ ସମାଲୋଚନା ବିଭାଗଟି ଅଧିକ ହୃଷ୍ଟପୁଷ୍ଟ ହୋଇଥିବା ଜଣାଯାଏ । ଅନେକ ବରିଷ୍ଠ ବିଶେଷଜ୍ଞମାନଙ୍କ ସହ ପ୍ରତିଭାବନ୍ତ ତରୁଣମାନେ ଏହି ଧାରାଟିକୁ ଆଗେଇ ନେବାରେ ବଦ୍ଧପରିକର । କବିତା, ଗଳ୍ପ, ନାଟକ, ଉପନ୍ୟାସ ସମ୍ପର୍କରେ ଅନେକ ସମାଲୋଚନା ପୁସ୍ତକ ଏବଂ ବ୍ୟକ୍ତିଗତ ଭାବରେ ସ୍ରଷ୍ଟାଙ୍କ ସୃଷ୍ଟି ସଂଭାରକୁ ନେଇ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟା ଦେଖିବାକୁ ମିଳେ । ସାମ୍ପ୍ରତିକ ସମୟରେ ଅନେକ ମାସିକ ତ୍ରୈମାସିକ ପତ୍ରିକା ଆତ୍ମପ୍ରକାଶ କରୁଥିବାରୁ ଓଡ଼ିଆ ସମାଲୋଚନାର ଏ ଧାରାଟି ଅଧିକ ବଳିଷ୍ଠ ହୋଇ ପାରୁଛି । ସୃଜନଶୀଳ ସୃଷ୍ଟି ପାଇଁ ସମାଲୋଚନାର ଆବଶ୍ୟକତା ରହିଛି । ସାହିତ୍ୟିକ ସମାଲୋଚନାରେ ଗୋଟିଏ ସୃଷ୍ଟିର ପ୍ରକୃତ ବ୍ୟାଖ୍ୟା ସମ୍ଭବ ହୋଇଥାଏ ।

## ଓଡ଼ିଆ ସାହିତ୍ୟରେ ସମାଲୋଚନାର ଗତି ଓ ପ୍ରକୃତି

ସାହିତ୍ୟ ସୃଷ୍ଟି ସହ ସମାଲୋଚନା ଓ ସମାଲୋଚକ ସୃଷ୍ଟି ହୋଇଛନ୍ତି । ପ୍ରାଚୀନ କାଳରେ ସମାଲୋଚକ ପାଇଁ ସ୍ୱତନ୍ତ୍ର ସ୍ଥାନ ନ ଥିଲା । ସିଏ ପାଠକ ସିଏ ସମାଲୋଚକର ଆସନରେ ଅଧିଷ୍ଠିତ ହେଉଥିଲା । କିନ୍ତୁ କାଳକ୍ରମେ ସାହିତ୍ୟର ପରିସର ଓ ଆବେଗ ବୃଦ୍ଧି ସହ ସମାଲୋଚକ ଓ ସମାଲୋଚନା ସୃଷ୍ଟି ହୋଇଛି । ଲୋକ ସାହିତ୍ୟ ଅଧ୍ୟୟନ ସମୟରେ ଏପରି ପଦକ୍ଷେପର ପ୍ରମାଣ ମିଳେନାହିଁ । ଯଦିଓ

ବ୍ୟାଖ୍ୟାକାର ଗ୍ରନ୍ଥମାନେ ଗ୍ରାମ ଅଞ୍ଚଳରେ ଥିଲେ, ସେମାନେ ପୁରାଣର କୌଣସି ଘଟଣାକୁ ଆବୃତ୍ତି କଲାବେଳେ ପ୍ରାଞ୍ଜଳ ଭାବରେ ବୁଝାଇ ଦେଉଥିଲେ । ପୁରାଣ ପଣ୍ଡା, ଗଳ୍ପ ସାଗର ପରି ପଦବୀ ପ୍ରାଚୀନ ସମାଜରେ ଥିଲା । ଏହି ପଦବୀର ପରିଣତ ଭାବରେ ପାଲା ଗାୟକ, ଚକୁରିଆ ପଣ୍ଡାଙ୍କୁ ଗ୍ରହଣ କରାଯାଇପାରେ । ଏମାନଙ୍କୁ କିନ୍ତୁ ଆଧୁନିକ ଅର୍ଥରେ ସମାଲୋଚକ ଯଦିଓ କୁହାଯାଇ ପାରିବ ନାହିଁ ତଥାପି ଏମାନଙ୍କ ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା ସେ ସମୟର ଅଭାବକୁ ପୂରଣ କରିବାପାଇଁ ଯେ ସମର୍ଥ ହୋଇଥିଲା, ଏକଥା ସ୍ୱୀକାର୍ଯ୍ୟ ।

ସାରଳା ମହାଭାରତରେ ଅନେକ ଟୀକା ଟିପ୍ପଣୀ ଥିଲେହେଁ କବି ନିଜେ ସ୍ରଷ୍ଟା ଓ ସମାଲୋଚକ । କିନ୍ତୁ ଏହି ଯୁଗରେ ରଚନା କରାଯାଇଥିବା 'କେଶବ କୋଇଲି' କବି ମାର୍କଣ୍ଡ ଦାସଙ୍କର ଏକ ଅନବଦ୍ୟ କୃତି । ଏ ସୃଷ୍ଟିର ଆବେଦନ ଯେତେ ମମତ୍ୱପୂର୍ଣ୍ଣ ସେତେ ଅଶ୍ରୁଳ । ପଞ୍ଚସଖା ଯୁଗରେ କବି ଜଗନ୍ନାଥ ଦାସ ଏହାକୁ ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା କରି ସୃଷ୍ଟି କଲେ 'ଅର୍ଥ କୋଇଲି' । ଆତ୍ମା ଓ ପରମାତ୍ମାର ସମ୍ପର୍କକୁ କୋଇଲି ଭିତରେ ପ୍ରକାଶ କରି ଓଡ଼ିଆ ସାହିତ୍ୟରେ ବିଧିବଦ୍ଧ ସମାଲୋଚନା ସୃଷ୍ଟି କଲେ । ଓଡ଼ିଆ ସମାଲୋଚନା ସାହିତ୍ୟର କବି ଜଗନ୍ନାଥ ଦାସ ସମାଲୋଚନାର ଉଦାହରଣ ଅର୍ଥ କୋଇଲିର ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା ମଧ୍ୟରେ ପ୍ରକାଶ କରିଛନ୍ତି—

"କୋଇଲି, କେଶବ ଯେ ମଥୁରାକୁ ଗଲା,
କାହିଁ ବୋଇଲେ ଗଲା ପୁଣି ବାହୁଡ଼ି ନଇଲା ଲୋ ।"

(କେଶବ କୋଇଲି)

"କୋଇଲି ବୋଲିଣ ପାର୍ଥ ଜୀବଙ୍କୁଟି କହି,
ସେହି ଜୀବ ମୁହିଁ ଜାଣ ସନ୍ଦେହ ଅଟଇ ।
ଆପେ ଆସିଥିଲା ଜୀବ ଆପେ ଚାଲିଗଲା,
ସେହି ପୁଣି ଗୋଟି ଆଉ ବାହୁଡ଼ି ନଇଲା ।"

(ଅର୍ଥ କୋଇଲି)

ପଞ୍ଚସଖା ସାହିତ୍ୟରେ ରଚନା କରାଯାଇଥିବା ଅନେକ ଗୀତା, ପଟଳ-ମାନଙ୍କରେ ଆତ୍ମା ଓ ପରମାତ୍ମାର ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା କରାଯାଇ ଜୀବନର ସମାଲୋଚନା କରାଯାଇଛି । ଏ ସମସ୍ତରେ ଯଦିଓ କୌଣସି ସମାଲୋଚନା ପୁସ୍ତକ ସୃଷ୍ଟି

ହୋଇନାହିଁ ତଥାପି ଏସବୁ ମୌଳିକ ସୃଷ୍ଟି ଭିତରେ ସମାଲୋଚନାର ଏକ ମହତ କଳା ପରିଦୃଷ୍ଟ ହୁଏ । ଓଡ଼ିଆ କାବ୍ୟ ଯୁଗରେ ସମାଲୋଚନା କବିର କାବ୍ୟ ଭିତରେ ଆବଦ୍ଧ । କବି କାବ୍ୟର ଆଭିମୁଖ୍ୟ ଭିତରେ କବି ସମାଲୋଚନା ସମ୍ପର୍କରେ ସାମାନ୍ୟ ସୂଚନା ପ୍ରଦାନ କରନ୍ତି ।

ଓଡ଼ିଆ ସାହିତ୍ୟରେ ପ୍ରକୃତ ସମାଲୋଚନା ଆରମ୍ଭ ହୁଏ ଊନବିଂଶ ଶତକର ଶେଷ ଦଶକରେ । ଆଧୁନିକ ଶିକ୍ଷାର ପ୍ରସାର ଏବଂ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାର ପ୍ରକାଶ ଫଳରେ ସାହିତ୍ୟ ସୃଷ୍ଟି ପାଇଁ ସ୍ୱତନ୍ତ୍ର ଆନ୍ଦୋଳନ ଆରମ୍ଭ ହେଲା । ୧୮୬୬ ମସିହାରେ 'ଉତ୍କଳ ଦୀପିକା' ପ୍ରକାଶ ପାଇବା ପରେ 'ବାଲେଶ୍ୱର ସମ୍ବାଦ ବାହିକା', 'ଉତ୍କଳ ପୁତ୍ର', 'ଉତ୍କଳ ହିତୈଷିଣୀ', 'ନବ ସମ୍ବାଦ', 'ଉତ୍କଳ ସାହିତ୍ୟ', 'ପ୍ରଦୀପ', 'ଉତ୍କଳ ମଧୁପ' ଆଦି ପତ୍ରିକା ପ୍ରକାଶ ପାଇ ଓଡ଼ିଶାରେ ଆଧୁନିକ ସାହିତ୍ୟ ସୃଷ୍ଟି ପାଇଁ ପରିବେଶ ସୃଷ୍ଟି କଲେ । ୧୮୯୩ ମସିହାରେ ରାଧାନାଥ ସାହିତ୍ୟରେ ଅସନ୍ତୁଷ୍ଟ ହୋଇ ଦଳେ ଭଞ୍ଜ ସମର୍ଥକ ରାଧାନାଥଙ୍କୁ ଉକ୍ତ ପତ୍ରିକା ମାଧ୍ୟମରେ ଆକ୍ଷେପ କଲେ । ୧୮୯୪ ମସିହାରେ କେତେ ରାଧାନାଥପ୍ରେମୀ 'ବିଜୁଳି' ନାମକ ପତ୍ରିକା ପ୍ରକାଶ କରି ଏହାର ଉଚିତ ଜବାବ ଦେଲେ । ଭଞ୍ଜ ଓ ରାଧାନାଥଙ୍କ ଭିତରେ ଯେଉଁ ସାହିତ୍ୟିକ ଯୁଦ୍ଧ ଲାଗିଲା, ଏହାଦ୍ୱାରା ଓଡ଼ିଆ ଭାଷାରେ ନୂତନ ରୁଚିର ସମାଲୋଚନା ସୃଷ୍ଟି ହେବାପାଇଁ ଅବସର ଆସିଲା ।

ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥରେ ଡକ୍ଟର ନଟବର ସାମନ୍ତରାୟ ଏ ସମୟର ସମାଲୋଚନା ସମ୍ପର୍କରେ କହିଛନ୍ତି—"ଓଡ଼ିଆ ସମାଲୋଚନାର ପ୍ରକୃତ ପରମ୍ପରା ଗଢ଼ି ଉଠେ ଉତ୍କଳପ୍ରଭା (ଏପ୍ରିଲ ୧୮୯୧) ପ୍ରକାଶ ସମୟଠାରୁ । ଏ ପତ୍ରିକାର ପ୍ରଥମ ଭାଗ ପ୍ରଥମ ସଂଖ୍ୟାରେ ଥିବା ସମ୍ପାଦକ ଚୈତନ୍ୟ ପ୍ରସାଦ ରାୟଙ୍କ 'ସୂଚନା' ପରବର୍ତ୍ତୀ ସଂଖ୍ୟାରେ ଥିବା ବିଜୟ ଚନ୍ଦ୍ର ମଜୁମଦାରଙ୍କ 'ସାହିତ୍ୟ ଚର୍ଚ୍ଚା' ଏବଂ 'ବିପ୍ଳବ ଓ ସମାଲୋଚନା', ଅଭିନ୍ନ ନାୟକଙ୍କ 'ଉତ୍କଳକାବ୍ୟ ସମାଲୋଚନା' (ଉ.ପ୍ର ୧।୯), ଗଣପତି ଦାସଙ୍କ 'ଉତ୍କଳ ସାହିତ୍ୟ' । (ଉତ୍କଳ ପ୍ରଭା, ୨।୩) ସର୍ବୋପରି ଲାଲ ରମନାରାୟଣ ରାୟଙ୍କ 'କବି ଉପେନ୍ଦ୍ର ଭଞ୍ଜ' (ଉତ୍କଳ ପ୍ରଭା ୧।୯, ୨।୧, ୨।୫, ୨।୮, ୨।୯, ୩।୧, ୩।୩) ଆଧୁନିକ ରୁଚିସମ୍ପନ୍ନ, ପାଶ୍ଚାତ୍ୟ ଶିକ୍ଷା ମାର୍ଜିତ, ନୂତନ ଦୃଷ୍ଟିକୋଣ ଗର୍ଭିତ ସମାଲୋଚନାର ସାର୍ଥକ ଉଦାହରଣ । ୧ ।"

୧ । ଓଡ଼ିଆ ସାହିତ୍ୟର ଇତିହାସ-ଡକ୍ଟର ନଟବର ସାମନ୍ତରାୟ, ପୃ—୪୯୭ ।

ସତ୍ୟବାଦୀ ସାହିତ୍ୟରେ ଜାତିପ୍ରେମ ଓ ଦେଶପ୍ରେମକୁ ନେଇ କେତେକ ମୌଳିକ ପ୍ରବନ୍ଧ ରଚନା ସହ ସମାଲୋଚନା ଦେଖାଯାଇ ଥାଏ । 'ସମାଜ' ପତ୍ରିକା ପ୍ରକାଶନ ଏ ସମୟର ସମାଲୋଚନାକୁ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଛି । ଏ ଯୁଗରେ ନୀଳକଣ୍ଠ ତାଙ୍କର ତତ୍ତ୍ୱପୂର୍ଣ୍ଣ ସୃଷ୍ଟି ମାଧ୍ୟମରେ ସମାଲୋଚନାକୁ ବୁଦ୍ଧିମନ୍ତ କରିଛନ୍ତି । ରାଧାନାଥ କାବ୍ୟ ସାହିତ୍ୟର ଅପସଂସ୍କୃତିକୁ ସମାଲୋଚନା କରି ନୀଳକଣ୍ଠ ଲେଖିଥିଲେ—

"ଘର ଗୁଡ଼ି କମ୍ପା ଯିବ ସେ ଖାରବାଲା ନନ୍ଦିକା,
ସହକାର ଦ୍ରୁମ ଗହଳେ ତେଜ କ୍ଷୀଣ ଚନ୍ଦ୍ରିକା ।"

ନୀଳକଣ୍ଠଙ୍କ 'ରାଧାନାଥ ଓ ଉତ୍କଳ ସାହିତ୍ୟ' 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ଦୁଇଟି ସାର୍ଥକ ସମାଲୋଚନା ଗ୍ରନ୍ଥ । ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗ ପରେ ସାହିତ୍ୟ ସମାଲୋଚନାର ନୂତନ ଦିଗନ୍ତ ସୃଷ୍ଟି ହୋଇଛି । ସାହିତ୍ୟର ବିଭିନ୍ନ ବିଭାଗରେ ସମାଲୋଚନା ଲେଖାଯାଇ ସମାଲୋଚନା ସାହିତ୍ୟକୁ ସ୍ୱତନ୍ତ୍ର ପରିଚୟ ଦିଆଯାଇଛି ।

କାବ୍ୟ କବିତାର ସମାଲୋଚନା ମାଧ୍ୟମରେ ନୂତନ ସମାଲୋଚନାର ଧାରା ଓଡ଼ିଆ ସାହିତ୍ୟରେ ପ୍ରଚଳିତ ହୋଇଛି । ସବୁଜ ଯୁଗର ଆତ୍ମମୁଖୀ ସମ୍ପର୍କରେ ଅନ୍ନଦା ଶଙ୍କର ପ୍ରଗତିଯୁଗ ସମ୍ପର୍କରେ ଭଗବତୀ ଚରଣ ପାଣିଗ୍ରାହୀଙ୍କ ବ୍ୟାଖ୍ୟା ଯୁଗବାଣୀ ଓ ଆଧୁନିକ ପତ୍ରିକାରେ ପ୍ରକାଶ ପାଇଛି । ଡଃ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ପାଣ୍ଡୁଲିପି' (୧୯୪୭)ର ମୁଖବନ୍ଧ ଏବଂ 'କବିତା ୧୯୬୨'ର ମୁଖବନ୍ଧ ମାଧ୍ୟମରେ କାବ୍ୟ ସମାଲୋଚନାର ନୂତନ ଧାରା ସୃଷ୍ଟି ହୋଇଛି । ଗୁରୁପ୍ରସାଦ ଓ ଭାନୁଜୀ ରାଓଙ୍କ ମିଳିତ କବିତା ସଙ୍କଳନ 'ନୂତନ କବିତା' ପ୍ରକାଶ ପାଇବା ପରେ ଯତୀନ୍ଦ୍ରମୋହନ ମହାନ୍ତିଙ୍କ ସମାଲୋଚନା ଓଡ଼ିଆ କାବ୍ୟ ସାହିତ୍ୟରେ ତୁଳନାତ୍ମକ ସମାଲୋଚନାର ଧାରା ଉନ୍ମୋଚନ କରିଛି । ବିଭିନ୍ନ ସମୟରେ କବିତା ସମ୍ପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ଲେଖା ପତ୍ରିକାମାନଙ୍କରେ ପ୍ରକାଶ ପାଇଛି । ଆଧୁନିକ କବିତା ସମାଲୋଚନା ଭିତରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ 'ସବୁଜର ସାମ୍ପ୍ରତିକ' 'ପ୍ରମୁଖ କବି କତିପୟ' ପ୍ରଫେସର ଦାଶରଥି ଦାସଙ୍କର 'କାବ୍ୟ ସମ୍ବାଦ' 'ଆଧୁନିକ

କାବ୍ୟ ଜିଜ୍ଞାସା ଓ ଚିତ୍ରକଳ୍ପ' 'ଚନ୍ଦ୍ରମାଟି ଅଚନ୍ଦ୍ରା ଆକାଶ' 'ମୃତ୍ୟୁଲୋକରେ ଋତୁ ସମ୍ପନ' ଡକ୍ଟର ନରେନ୍ଦ୍ରନାଥଙ୍କର 'ଆଧୁନିକ ଓଡ଼ିଆ କାବ୍ୟଧାରା' ପ୍ରଫୁଲ୍ଲ ଶତପଥୀଙ୍କର 'କଳ୍ପନାର ଅଭିଷେକ' ହୃଷିକେଶ ପଣ୍ଡାଙ୍କର 'ରବୀନ୍ଦ୍ର ସମକାଳୀନ ଓଡ଼ିଆ କବିତା' ପ୍ରସନ୍ନ କୁମାର ପଟ୍ଟନାୟକଙ୍କର 'ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା' ଇନ୍ଦୁ ମିଶ୍ରଙ୍କର 'ଆଧୁନିକ ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନା' ବିଜୟ କୁମାର ଶତପଥୀଙ୍କର 'ପ୍ରଗତିବାଦୀ କାବ୍ୟ ଚେତନା' ଅଶ୍ୱିନୀକୁମାର ମିଶ୍ରଙ୍କର 'ସ୍ଫଟିକ କାବ୍ୟାଲୋକ' ଗିରିଶ ଚନ୍ଦ୍ର ମିଶ୍ରଙ୍କର 'ଆଧୁନିକ ଓଡ଼ିଆ କବିତା ଓ ମିଥ୍ ପ୍ରସଙ୍ଗ' ପ୍ରେମଲତା ଦେବୀଙ୍କର 'ସବୁଜରୁ ଧୂସର ପର୍କି' ଆଦି ଗୋଟିଏ ଗୋଟିଏ ଉଲ୍ଲେଖନୀୟ ସୃଷ୍ଟି । ଓଡ଼ିଆ କାବ୍ୟ କବିତାର ସମାଲୋଚକ ଭାବରେ ଗୌରୀକୁମାର ବ୍ରହ୍ମାଙ୍କ 'ଭଞ୍ଜଙ୍କ ନିର୍ବାଚନ ଇତ୍ୟାଦିର' ସୁଦର୍ଶନ ଆଚାର୍ଯ୍ୟଙ୍କର 'ଓଡ଼ିଆ କାବ୍ୟ କୌଶଳ' ଆଦି ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି ।

ପ୍ରାଚୀନ ନାଟ୍ୟକଳା ଓ ଆଧୁନିକ ନାଟକକୁ ନେଇ ଅନେକ ସମାଲୋଚନା ଗ୍ରନ୍ଥ ପ୍ରକାଶ ପାଇଛି । ଡକ୍ଟର ହେମନ୍ତ କୁମାର ଦାସ, ସଂଘମିତ୍ରା ମିଶ୍ର, ରତ୍ନାକର ଚଇନି, ନୀଳାଦ୍ରୀ ଭୂଷଣ ହରିଚନ୍ଦନ, ବୈଷ୍ଣବ ଚରଣ ସାମଲ, ରମେଶ ପ୍ରସାଦ ପାଣିଗ୍ରାହୀ ଆଦି ସ୍ରଷ୍ଟାମାନେ ନାଟ୍ୟ ସମାଲୋଚନାରେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି । ଗଳ୍ପ ଉପନ୍ୟାସ ସାହିତ୍ୟରେ ମଧ୍ୟ ଅନେକ ସମାଲୋଚନାତ୍ମକ ଲେଖା ପ୍ରକାଶ ପାଇଛି । କୃଷ୍ଣ ଚରଣ ବେହେରା, ଡକ୍ଟର ବୈଷ୍ଣବ ଚରଣ ସାମଲ, ପଠାଣି ପଟ୍ଟନାୟକ ପ୍ରମୁଖ ସ୍ରଷ୍ଟାମାନେ କଥାସାହିତ୍ୟର ସମୀକ୍ଷକ ଭାବରେ ନିଜକୁ ପ୍ରତିଷ୍ଠା ଦେଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟର ପରିସର ଦିନକୁ ଦିନ ବୃଦ୍ଧି ହେଉଛି । ଓଡ଼ିଆ ସାହିତ୍ୟର ଇତିହାସ ଅନେକ ପ୍ରତିଭାଧର ସ୍ରଷ୍ଟାମାନେ ରଚନା କରି ଓଡ଼ିଆ ସାହିତ୍ୟର ମାନ ବୃଦ୍ଧି କରିଛନ୍ତି । ସୁରେନ୍ଦ୍ର ମହାନ୍ତି, ମାୟାଧର ମାନସିଂ, ଦେବେନ୍ଦ୍ର ମହାନ୍ତି, ସୂର୍ଯ୍ୟନାରାୟଣ ଦାଶ, ବଂଶୀଧର ମହାନ୍ତିଙ୍କ ପରି ଆଲୋଚକମାନେ ଓଡ଼ିଆ ସାହିତ୍ୟର ବହୁ ଅନଆଲୋଚିତ ବିଷୟକୁ ବ୍ୟାଖ୍ୟା କରିଛନ୍ତି । ଅଭିଲେଖ ଓ ଶିଳାଲେଖମାନଙ୍କର ଉଦ୍ଧାର, ପ୍ରାଚୀନ ତାଳପତ୍ର ପୋଥି ସଂଗ୍ରହ ଏବଂ ସର୍ବୋପରି ଐତିହ୍ୟ ବିଷୟର ସହଯୋଗ କ୍ରମେ ଆମ ସାହିତ୍ୟର ବହୁ ଗୌରବମୟ ଅଧ୍ୟାୟ

ଉନ୍ମୋଚିତ ହୋଇଛି । ଓଡ଼ିଆ ସମାଲୋଚକମାନେ ଆଗ୍ରହ ସହିତ ଏସବୁ ଅଧ୍ୟୟନ କରି ଆମ ସାହିତ୍ୟର ପ୍ରାଚୀନ ସୌନ୍ଦର୍ଯ୍ୟ ପ୍ରକାଶ କରି ପାରିଛନ୍ତି । ଜନ୍ ବୀମ୍ସଙ୍କ ପରି ବିଦେଶୀ ଓ ନାମବ୍ୟାସ୍କାର ସିଂହଙ୍କ ପରି ପଡ଼ୋଶୀ ଓଡ଼ିଆ ସୃଷ୍ଟିକୁ ସମାଲୋଚନା କରି ଆମ ଭାଷା ସାହିତ୍ୟର ଗୌରବ ବୃଦ୍ଧି କରିଛନ୍ତି । ସମ୍ପ୍ରତି ଆମ ସାହିତ୍ୟରେ ଅନୁବାଦ ସାହିତ୍ୟ, ପ୍ରତିବେଶୀ ସାହିତ୍ୟ ଏବଂ ପ୍ରାଚୀନ ସାହିତ୍ୟର ଅଧ୍ୟୟନ ଆଗ୍ରହ ବୃଦ୍ଧି ହେଉଥିବାରୁ ସମାଲୋଚକର ଦାୟିତ୍ୱ ବୃଦ୍ଧି ହୋଇଛି । ଅନେକ ପ୍ରତିଭାବନ୍ତ ତରୁଣଙ୍କ ହାତରେ ଓଡ଼ିଆ ସମାଲୋଚନାର ଭବିଷ୍ୟତ ସୁରକ୍ଷିତ ଏକଥା ଆଶାକରିବା ଅମୂଳକ ନୁହେଁ ।

